# ଜୀବନ ଭାଷ୍ୟ

ସଂପାଦନା

ନଟବର ଶତପଥୀ

ପ୍ରକାଶକ :

ନିଖିଳ ଭାରତ ଓଡ଼ିଆ ଅଧ୍ୟାପକ ସମ୍ମେଳନ

# ଜୀବନ ଭାଷ୍ୟ

ସଂପାଦନା :
**ନଟବର ଶତପଥୀ**

ପ୍ରକାଶକ :
**ନିଖିଳ ଭାରତ ଓଡ଼ିଆ ଅଧ୍ୟାପକ ସମ୍ମେଳନ**

ପ୍ରଥମ ପ୍ରକାଶନ : ୨୦୧୬, ଡିସେମ୍ବର

ପ୍ରଚ୍ଛଦ : ଦିଲୀପ

ମୁଦ୍ରଣ : ସଂଗୀତା ପ୍ରିଣ୍ଟର୍ସ, କଟକ

---

ମୂଲ୍ୟ : ୨୦୦/- (ଦୁଇ ଶହ ଟଙ୍କା ମାତ୍ର)

ଡକ୍ଟର ଅରବିନ୍ଦ କୁମାର ପାଡୀ
ପୂର୍ବତନ ଜିଲ୍ଲାପାଳ, ଜଗତସିଂହପୁର

# ବାର୍ତ୍ତା

## *ଜଗତସିଂହପୁର : ଅତୀତ ବର୍ତ୍ତମାନ ପ୍ରକଳ୍ପ ପ୍ରକାଶନର ଆଦ୍ୟ ଉଦ୍ୟୋକ୍ତା*

## ଅଭିନନ୍ଦନୀୟ ଡକ୍ଟର ରାଉତ

ଡକ୍ଟର ଭୋଳାନାଥ ରାଉତ ଜଗତସିଂହପୁର ସାରସ୍ୱତ ଜଗତର ଏକ ବଳିଷ୍ଠ ପ୍ରତିଭା । ତାଙ୍କ ସହିତ ମୋର ପରିଚୟ ହୁଏ ଜଗତସିଂହପୁର ଜିଲ୍ଲାର ଜିଲ୍ଲାପାଳ ଥିବା ସମୟରେ । ସେ "ଜଗତସିଂହପୁର ଅତୀତ ଓ ବର୍ତ୍ତମାନ"ନାମକ ଏକ ପୁସ୍ତକ ସଂକଳନର ପାଣ୍ଡୁଲିପି ଧରି ମୋ ନିକଟକୁ ଆସିଥିଲେ । ଜିଲ୍ଲା ସଂସ୍କୃତି ପରିଷଦ ଆନୁକୂଲ୍ୟରେ ଏହାକୁ ପ୍ରକାଶ କରିବା ପାଇଁ ଅନୁରୋଧ କରିଥିଲେ । ପାଣ୍ଡୁଲିପିକୁ ସଂପୂର୍ଣ୍ଣ ପଢିବାର ସୁଯୋଗ ନ ମିଳିଥିଲେ ମଧ୍ୟ ଏହାର ସୂଚୀପତ୍ରରେ ସ୍ଥାନିତ ହୋଇଥିବା ବିଷୟ ଗୁଡ଼ିକ ପ୍ରକୃତରେ ଜଗତସିଂହପୁରର ଅତୀତ ଓ ବର୍ତ୍ତମାନକୁ ମୁଖ୍ୟ ଭାବରେ ଅନୁଶୀଳନ କରିବା ପାଇଁ ବେଶ୍ ପ୍ରଭାବଶାଳୀ । ମୋର ସ୍ୱଳ୍ପ ରହଣି କାଳରେ ଏହି ସଂକଳନଟିକୁ ପ୍ରକାଶ କରିବା ପାଇଁ ଉଦ୍ୟମ ଆରମ୍ଭ ହୋଇଥିଲା । ଡକ୍ଟର ରାଉତଙ୍କର ୭୮ ତମ ଜନ୍ମ ଉତ୍ସବରେ ଏକ ଅଭିନନ୍ଦନିକା ପ୍ରକାଶ ପାଇବା ଜାଣି ମୁଁ ଅତ୍ୟନ୍ତ ଆନନ୍ଦିତ । ତାଙ୍କର ସୁସ୍ଥ ଏବଂ ନିରାମୟ ଜୀବନ ପାଇଁ ମୁଁ ଅତ୍ୟନ୍ତ ଆଶାବାଦୀ ।



ସତ୍ୟବ୍ରତ ସାହୁ
ପୂର୍ବତନ ଜିଲ୍ଲାପାଳ, ଜଗତସିଂହପୁର

# ବାର୍ତ୍ତା

## *ଜଗତସିଂହପୁର ଅତୀତ ଓ ବର୍ତ୍ତମାନ ପ୍ରକାଶନର ପ୍ରତିବନ୍ଧକ ଅତିକ୍ରମ କରି ଯିଏ ଆଲୋକକୁ ଆଣିଲେ ।*

### ଜଗତସିଂହପୁର: ଅତୀତ ଓ ବର୍ତ୍ତମାନ ଓ ଡକ୍ଟର ଭୋଳାନାଥ ରାଉତ

ଡକ୍ଟର ଭୋଳାନାଥ ରାଉତ ଜଗତସିଂହପୁର ଜିଲ୍ଲାର ଜଣେ ସ୍ୱନାମଧନ୍ୟ ସାହିତ୍ୟିକ । ଏହି ଜିଲ୍ଲାର ଜିଲ୍ଲାପାଳ ରୂପେ ଯୋଗଦେବା ପରେ ଡକ୍ଟର ରାଉତଙ୍କ ସହିତ ମୋର ସଂପର୍କ ଆରମ୍ଭ ହୁଏ । "ଜଗତସିଂହପୁର ଅତୀତ ଓ ବର୍ତ୍ତମାନ" ଭଳି ଏକ ବିପୁଳାୟତନ ଗ୍ରନ୍ଥର ପ୍ରକାଶନ ନିମିତ୍ତ ଜିଲ୍ଲା ସଂସ୍କୃତି ପରିଷଦ ଦ୍ୱାରା ପ୍ରକାଶ ପାଇଁ ସେ ମୋ ନିକଟକୁ ଆସିଥିଲେ । ଯଦିଓ ଏ ପ୍ରସ୍ତାବ ପୂର୍ବରୁ ସଂସ୍କୃତି ପରିଷଦରେ ଉପସ୍ଥାପିତ ହୋଇଥିଲା ତଥାପି ଏହାର ଅଗ୍ରଗତି ବିଶେଷ ଭାବରେ ହୋଇ ପାରିନଥିଲା । ଜିଲ୍ଲା ସଂସ୍କୃତି ପରିଷଦର ଅଧ୍ୟକ୍ଷ ଭାବରେ ପ୍ରକାଶନ କାର୍ଯ୍ୟଟିକୁ ଆଗେଇ ନେବାପାଇଁ ମୁଁ ପ୍ରତିଶ୍ରୁତିବଦ୍ଧ ହୋଇଥିଲି । ବହୁ ଘାତପ୍ରତିଘାତ ପରେ ଏହି ସଂକଳନଟି ଆତ୍ମ ପ୍ରକାଶ କଲା । କିନ୍ତୁ ପୁସ୍ତକ ଉନ୍ମୋଚନ ଉତ୍ସବରେ ମୋର ସ୍ଥାନାନ୍ତର କାରଣରୁ ମୁଁ ଯୋଗଦେଇ ପାରି ନଥିଲି ତଥାପି ଏହି କାର୍ଯ୍ୟଟି ମୋ ସହଯୋଗରେ ହୋଇଥିବାରୁ ମୁଁ ବିଶେଷ ଭାବରେ ଆନନ୍ଦିତ । ଡକ୍ଟର ରାଉତଙ୍କ ପରି ଜଣେ ବିଶିଷ୍ଟ ବିଦ୍ୱାନଙ୍କର ୭୮ତମ ଜନ୍ମ ଉତ୍ସବରେ ଏକ ଅଭିନନ୍ଦନିକା ପତ୍ର ପ୍ରକାଶ ପାଉଥିବାରୁ ମୁଁ ବହୁ ଆନନ୍ଦିତ ହୋଇ ତାଙ୍କର ସୁସ୍ଥ ନିରାମୟ ଜୀବନ କାମନା କରୁଛି ।



# ଆମର କୃତଜ୍ଞତା

ଓଡ଼ିଆ ଅଧ୍ୟାପକ ସମ୍ମେଳନ ତାଙ୍କ ଉଦ୍ୟମରେ ଦୀର୍ଘଦିନ ଧରି ଶୋଇବାରୁ ଉଠି ଆସିଥିଲା । ଦୀର୍ଘ ୧୨ବର୍ଷ କାଳ ନିରବଚ୍ଛିନ୍ନ ଭାବେ ଅନେକ ଫଳପ୍ରସୂ ଉଦ୍ୟମ କରିଥିଲା ଭାଷା ସାହିତ୍ୟ କର୍ମର ଆୟୋଜନରେ । ତାଙ୍କ ଅଦମ୍ୟ ଉତ୍ସାହ ଥିଲା ଅନ୍ୟମାନଙ୍କ ପାଇଁ ଏକ ପ୍ରେରଣା । ମାତ୍ର କର୍ମକୁଣ୍ଠ ଯୁବ ଅଧ୍ୟାପକଙ୍କ ଲାଗି ତାହା ଏବେ ପୁଣି ମାନ୍ଦାଗତିରେ ଅଛି । ସେ ଅସୁସ୍ଥ ହେଲେ, ଅସୁସ୍ଥତା ଘାରିଲା ସଂଗଠନକୁ ।

ପ୍ରାଣ ଧୂମେଇଲେ ଦେହ ନିର୍ଜୀବ ହୁଏ । ସେଇ ନିର୍ଜୀବତାକୁ ଭାଙ୍ଗି ଟିକିଏ ଉଷ୍ଣତା ପାଇଁ ସମ୍ମେଳନ ତରଫରୁ ଭୋଳାନାଥ ସ୍ମୃତିରେ 'ଜୀବନ ଭାଷ୍ୟ' ସଂକଳନ କରିବାକୁ ଉଦ୍ୟମ ହୋଇଛି ।

ଆମର ଉଦ୍ୟମକୁ ଉତ୍ସାହିତ କରିଛନ୍ତି ଅନେକ ବଂଧୁ, ଯେଉଁମାନେ ଡକ୍ଟର ରାଉତଙ୍କୁ ଚିହ୍ନିଛନ୍ତି, ବୁଝିଛନ୍ତି, ଭଲପାଇଛନ୍ତି; ସେଇମାନେ ତାଙ୍କପାଇଁ ଶ୍ରଦ୍ଧାଫୁଲ ପରି ଲେଖାଟିଏ ଦେଇଛନ୍ତି । ସ୍ମୃତିରୁ ପ୍ରେମର ଗଙ୍ଗା ଫିଟିପଡ଼ିଛି ଲେଖାଗୁଡ଼ିକରେ ।

ଆମେ ସେମାନଙ୍କୁ ନମସ୍କାର ସହ କୃତଜ୍ଞ ରହୁଛୁ । ଏହି ସଂକଳନକୁ ଅଧିକ ମନୋଜ୍ଞ ଓ ସ୍ମରଣୀୟ କରିବା ଇଚ୍ଛାରେ ସଂଯୋଗ କରିଛୁ କେତେକ ଓଡ଼ିଆ ବିଜ୍ଞ ଓ ବିଶିଷ୍ଟ ସାରସ୍ୱତ ସାଧକଙ୍କ ଲେଖା । ସେମାନଙ୍କ ମଧ୍ୟରୁ କେତେଜଣ ପରଲୋକରେ । ସେମାନେ ଥିଲେ ଡକ୍ଟର ରାଉତଙ୍କର ଅତି ସମ୍ମାନିତ ପୂଜ୍ୟବ୍ୟକ୍ତି । ସେମାନଙ୍କ ଲେଖା ଏଥିରେ ସ୍ଥାନ ଦେଇ ଡକ୍ଟର ରାଉତଙ୍କ ପୁଷ୍ପାଞ୍ଜଳି ବଢ଼େଇ ଦେଉଛୁ ସେହି ସ୍ୱର୍ଗବାସୀ ବାଣୀପୂଜକଙ୍କ ଉଦ୍ଦେଶ୍ୟରେ । ଆଉ ଅନ୍ୟ କେତେଜଣ ବିଶିଷ୍ଟ ଓଡ଼ିଆ ଅଧ୍ୟାପକ ଓ ସମାଲୋଚକଙ୍କର ଲେଖା; ସେମାନଙ୍କ ଅନୁମତି ପାଇଁ ଆମେ ଅପେକ୍ଷା କରିନାହୁଁ । କାରଣ ସେମାନଙ୍କର ଶ୍ରଦ୍ଧା ସବୁବେଳେ ଭୋଳାନାଥବାବୁଙ୍କ ପ୍ରତି ଉଚ୍ଛ୍ୱସିତ । ସେମାନଙ୍କୁ ପ୍ରଣାମ ସହ କୃତଜ୍ଞତା ଜଣାଉଛୁ ।



## ସଂପାଦକୀୟ...



କ୍ୱଚିତ ଶିକ୍ଷିତ କର୍ମଜୀବୀ ଥାନ୍ତି ଆମ ଜାଣିବାରେ ଯେଉଁମାନେ ଆଦର୍ଶକୁ ଜୀବନରେ ନିଜେ ପାଳନ କରନ୍ତି, କେବଳ କଥାରେ କୁହନ୍ତି ନାହିଁ । କୁହାଳିଆ ଓ କାମିକା ଏମିତି ଦୁଇଟି ଶ୍ରେଣୀର ଲୋକ ଆମ ଭିତରେ ଥାନ୍ତି । କୁହାଳିଆକୁ ସମୟ ଅଣ୍ଟେ ନାହିଁ କାଶିବାକୁ, କିନ୍ତୁ କାମିକା ପାଇଁ ସମୟ ସବୁବେଳେ ପ୍ରଶସ୍ତ ଓ ସୁଲଭ । ଏ କି କଥା ! ଦିନରାତି ୨୪ଘଣ୍ଟା ତ ସମସ୍ତଙ୍କ ପାଇଁ ସମାନ । କଥା ରହିଛି ମନୋଭାବରେ, ଇଛା ଶକ୍ତିରେ, ନିଜର ପୌରୁଷରେ । "ପୌରୁଷାତ୍ ଜାୟତେ ସିଦ୍ଧିଃ ପୌରୁଷାତ୍ ଧୀମତାଂ କ୍ରମଃ" । ପୌରୁଷରୁ ମିଳେ ସିଦ୍ଧି, ବୁଦ୍ଧିମାନର ଜୀବନକ୍ରମର ମୂଳ ହେଉଛି ପୌରୁଷ । କହିବା ବାହୁଲ୍ୟ ହେବନାହିଁ, ଅଧ୍ୟାପକ ଡକ୍ଟର ଭୋଳାନାଥ ରାଉତ ଜଣେ ଏହିପରି ବ୍ୟକ୍ତିସତ୍ତା, ଯିଏ ନିରହଂକାର ଓ ସ୍ୱାର୍ଥହୀନ ଜଣେ କର୍ମୀ । ସାରସ୍ୱତ କର୍ମ ହେଉ ବା ଶିକ୍ଷକର କର୍ମ, ସେ ସବୁକର୍ମର ଶାଶ୍ୱତ ନାୟକ । ଚିରଦିନ କର୍ମକ୍ଷୁଧା ଜର୍ଜର । କର୍ମ ଯୁଦ୍ଧରେ ସେ ତତ୍ପର । ସେଇ ତତ୍ପରତା ବଶତ ଏବେ ଜଗତସିଂହପୁର ବାସୀ ପାଇଛନ୍ତି ନିଜ ମାଟିର ଏକ ବୃହତ ପରିଚୟ, ଯାର ବିଶାଳ ଐତିହ୍ୟ ଲୁକ୍କାୟିତ ଥିଲା ଅଦ୍ୟାବଧି, ତାକୁ ଡକ୍ଟର ରାଉତ ଲୋକଲୋଚନକୁ ଆଣିଛନ୍ତି । ଏତିକି କାମ ତାଙ୍କ ପାଇଁ ଯଥେଷ୍ଟ ହୋଇଥାନ୍ତା ତାଙ୍କ ଯଶୋଭାଲପଟରେ କୀର୍ତ୍ତିକିରୀଟି ଆଙ୍କିବାକୁ । ସେ କିନ୍ତୁ ଭିନ୍ନ ମଣିଷ । ଗୋଡ଼ହାତ ଗ୍ଭଲୁଛି ଯଦି କାମ ଗ୍ଭଲିବ । ଆଖିବୁଝିବା ଆଗରୁ ଦେଖିବି ମୋ ଭାଷା ମୋ ସାହିତ୍ୟର ଚିରୋଜ୍ଜ୍ୱଳ ବିଭବ କେଉଁଠି କିପରି ଅଛି, ତାକୁ ବି ଆଣିବି ଲୋକଜଗତକୁ । କି ଦମ୍ଭ, କି ଉତ୍ସର୍ଗ ଭାବ ! ଶତ୍ରୁ ହେଲେବି ନଇଁପଡ଼ିବ ।

ସେ କିନ୍ତୁ ନଇଁ ନାହାଁନ୍ତି । ମୁଣ୍ଡ ଟେକିଛନ୍ତି ସାମ୍ନାନର ସହ, ସେଇ ଟେକିଛନ୍ତି ଯେ ଟେକିଛନ୍ତି । ଗୋଟାପଣେ ଜୀବନତମାମ । କେତେବେଳେ ଗ୍ରନ୍ଥ ଲେଖିଛନ୍ତି, ଅଜାଡ଼ ଶିକ୍ଷକମାନଙ୍କୁ ଚେତେଇଛନ୍ତି ନିଜର ନାଗରିକ-ବ୍ୟକ୍ତି ଅଧିକାର ନେଇ କଲେଜ ପ୍ରଶାସନରୁ ଶିକ୍ଷକ ସମ୍ମିଳନୀ ଯାଏ । ସବୁଠି ଆଗଭର, ଆତୁର ତୁଣ୍ଡ । 'ଉତିଷ୍ଠତ ଜାଗ୍ରତ' ।

ସେ ଉତିଷ୍ଠାତ୍ମା / ସେ ବିଜ୍ଞାତ୍ମା / ସେ ନିରଙ୍କୁଶ ଯଶୋଧର ଦେହୀ । "ମନୋ ବାଚ ବାଚୋ ଭୂୟଃ ।" ମନହିଁ ବାଣୀଠାରୁ ଉତ୍କୃଷ୍ଟ । ତାଙ୍କ ମନ ସୁନ୍ଦର, ତେଣୁ ସେ ସୁନ୍ଦର, ତାଙ୍କ କାମ ସୁନ୍ଦର । ତାଙ୍କୁ ଆମର ପ୍ରଣାମ ।

ନଟବର ଶତପଥୀ



ନିଜ ଘରେ ଏକ ଆଧ୍ୟାତ୍ମିକ ପରିବେଶରେ ଦଂପତି



ନାତୁଣି ସହ



ଝିଅଜୋଇଁ ନାତିନାତୁଣିଙ୍କ ମେଳରେ



ନାତିନାତୁଣି ସହ




ବାମରୁ- ପ୍ରତିଭା ରାୟ, ସୀତାକାନ୍ତ ମହାପାତ୍ର, ଭୋଳାନାଥ ରାଉତ,
ମହେନ୍ଦ୍ର କୁମାର ଆଚାର୍ଯ୍ୟ ଏବଂ ହରପ୍ରସାଦ ଦାସ

ଏକ ସାରସ୍ୱତ କାର୍ଯ୍ୟକ୍ରମରେ ଡକ୍‌ଟର ରାଉତ



ସମ୍ବାଦ ପକ୍ଷରୁ ଆୟୋଜିତ ସ୍ୱାଭିମାନ ଦିବସରେ
ସ୍ୱାଭିମାନୀ ଡକ୍‌ଟର ରାଉତ

ସଂଗଠନ କାର୍ଯ୍ୟରେ ଡକ୍‌ଟର ରାଉତ

# ସୂଚୀପତ୍ର

## ବ୍ୟକ୍ତି ଓ ସାଧନା



## ସ୍ମୃତି ଅର୍ଘ୍ୟରେ ସାହିତ୍ୟାଲୋଚନା

## ସ୍ମୃତିରେ ସ୍ମୃତିରେ

# ବହୁମୁଖୀ ବ୍ୟକ୍ତିତ୍ୱ ଭୋଳାନାଥ ରାଉତ

ଡକ୍ଟର ନିରଞ୍ଜନ ବିଶ୍ୱାଳ

ଜଗତସିଂହପୁର ଜିଲ୍ଲାର ଯେଉଁ କେତେଜଣ କୃତୀ ସନ୍ତାନ ବିଭିନ୍ନ କ୍ଷେତ୍ରରେ ଉଲ୍ଲେଖନୀୟ ଭୂମିକା ନେଇ ମା' ମାଟିର ଗୌରବ ବର୍ଦ୍ଧନ କରିଛନ୍ତି , ସେମାନଙ୍କ ମଧ୍ୟରେ ପ୍ରଫେସର ଡକ୍ଟର ଭୋଳାନାଥ ରାଉତ ଅନ୍ୟତମ । ସେ ଏକାଧାରରେ ଜଣେ କୃତୀ ଅଧ୍ୟାପକ, ସଂଗଠକ, ଶିକ୍ଷକନେତା, ସାହିତ୍ୟିକ, ସମାଲୋଚକ, ତଥା ଜଣେ ଐତିହାସିକ ଭାବରେ କେବଳ ଜିଲ୍ଲା ଭିତରେ ନୁହେଁ, ଓଡ଼ିଶାରେ ସୁପରିଚିତ । ୧୯୩୮ ମସିହା ଫେବୃୟାରୀ ୫ତାରିଖ ଦିନ ନାଉଗାଁ ବ୍ଲକ୍‌ର ପ୍ରଖ୍ୟାତ ନନ୍ଦିଗ୍ରାମରେ (ନନିଗାଁ), ପିତା ବୃନ୍ଦାବନ ରାଉତ ଏବଂ ମାତା ଉଦ୍ଧଳମଣିଙ୍କ କୋଳମଣ୍ଡନ କରି ଜନ୍ମଲାଭ କରନ୍ତି ଶ୍ରୀଯୁକ୍ତ ରାଉତ । ତାଙ୍କ ପିତାମହଙ୍କ କହିବା ଅନୁସାରେ ଏହି କ୍ଷତ୍ରିୟ ବଂଶଟି ଖୋର୍ଦ୍ଧା ନିକଟବର୍ତ୍ତୀ ଏକ ଗ୍ରାମରୁ ଆସି ବଂଶାନୁକ୍ରମେ ଏହିଠାରେ ବାସ କରିଆସୁଛନ୍ତି । କେଉଁ ପୁରୁଷ ପ୍ରଥମେ ଆସି କେଉଁ ଉଦ୍ଦେଶ୍ୟରେ ଏହି

## ବଂଶାବଳୀ



ଗ୍ରାମରେ ପଦାର୍ପଣ କରିଥିଲେ ତାହା ଠିକ୍ ନିର୍ଣ୍ଣୟ କରି ନପାରିଲେ ମଧ୍ୟ ଅବିଭକ୍ତ କଟକ ଜିଲ୍ଲାର ଏହି ଗ୍ରାମରେ ସ୍ୱଚ୍ଛନ୍ଦ ଭାବରେ ଚଳି ଆସୁଥିବା ବଂଶଟିର ପାଞ୍ଚ ପିଢି ନିର୍ଣ୍ଣାୟକ ଶ୍ରୀଯୁକ୍ତ ରାଉତଙ୍କର ବଂଶଲତା ଥିଲା ଏହିପରି ।

ମାଧେଇ ରାଉତ - ବନ୍ତ ରାଉତ - ଗୁଣନିଧି ରାଉତ -ବୃନ୍ଦାବନ ରାଉତଙ୍କ ଜ୍ୟେଷ୍ଠ ପୁତ୍ର ଭୋଳାନାଥ ରାଉତ । ଏହି ଭାବରେ ତାଙ୍କର ବ୍ୟକ୍ତିଗତ ବଂଶ ପରିଚୟ ଉଲ୍ଲେଖ କରାଗଲାବେଳେ ତାଙ୍କ ତଳକୁ ଅନ୍ୟ ତିନିଭାଇ ହେଉଛନ୍ତି - ଡାକ୍ତର ଗୋକୁଳାନନ୍ଦ ରାଉତ, ବେଙ୍ଗଲ ସରକାରଙ୍କ ସ୍ୱାସ୍ଥ୍ୟ ବିଭାଗର ଡେପୁଟି ଡାଇରେକ୍ଟର ପଦରୁ ଅବସର ନେଇ ବର୍ତ୍ତମାନ ସଅଁରା ଛକ ଜଗତସିଂହପୁର ଠାରେ ନିଜ ବାସଭବନରେ ଅବସ୍ଥାନ କରୁଛନ୍ତି । ତାଙ୍କ ତଳକୁ ପ୍ରଭାସ ରାଉତ (ନକୁଳ) ବି.ଏଲ୍.ବି ଅଧ୍ୟୟନ କରିଥିଲେ ମଧ୍ୟ ସରକାରୀ ଚାକିରି ପ୍ରତି ମନ ନ ବଳାଇ ରାଜନୀତି କରିବାରେ ମନୋନିବେଶ କରି ସ୍ଥାନୀୟ ସରପଞ୍ଚ, ସମିତି ସଭ୍ୟ, ନାଉଗାଁ ବ୍ଲକ୍‌ର ଉପାଧ୍ୟକ୍ଷ ଓ କାର୍ଯ୍ୟକାରୀ ଅଧ୍ୟକ୍ଷ ଭାବରେ ନିର୍ବାଚିତ ହୋଇଥିଲେ । ବର୍ତ୍ତମାନ ସ୍ୱଗୃହ ନନ୍ଦିଗ୍ରାମରେ ସେ ସପରିବାର ଅବସ୍ଥାନ କରୁଛନ୍ତି । ସବା ସାନଭାଇ ବିଭାସ ରାଉତ (ସହଦେବ) ଓଡ଼ିଶା ସରକାରଙ୍କ ପୂର୍ତ୍ତ ଗୃହ ନିର୍ମାଣ ବିଭାଗ ଅଧୀନରେ ସୁପରିଟେଣ୍ଡେଣ୍ଟ୍ ଇଂଜିନିୟର ଭାବରେ କାର୍ଯ୍ୟରତ । ଶ୍ରୀଯୁକ୍ତ ଭୋଳାନାଥ ରାଉତ ୧୯୬୦ ମସିହାରେ କଟକ ସହରର ଉଚ୍ଚସାହିର ଧ୍ରୁବଚରଣ ମହାନ୍ତି ଓ ଯୋବଣୀ ମହାନ୍ତିଙ୍କ କନ୍ୟା ରାଧାରାଣୀ ମହାନ୍ତି (ଉମା)ଙ୍କୁ ବିବାହ କରିଥିଲେ । ତାଙ୍କ ଔରସରୁ ଦୁଇପୁତ୍ର ଓ ଦୁଇକନ୍ୟା ଜନ୍ମଲାଭ କରିଛନ୍ତି । ଜ୍ୟେଷ୍ଠ କନ୍ୟା ଶ୍ରୀମତୀ ସଂଘମିତ୍ରା (ମାମି) କଟକ ଜିଲ୍ଲାର ପହଙ୍ଗା ନିବାସୀ ଶ୍ରୀଯୁକ୍ତ ଶରତ ଚନ୍ଦ୍ର ବାରିକ୍ (ଓକିଲ)ଙ୍କୁ ବିବାହ କରି କଟକରେ ଅବସ୍ଥାନ କରୁଥିବା ବେଳେ ଜ୍ୟେଷ୍ଠ ପୁତ୍ର ସଞ୍ଜୟ (ଟୁଲୁ) ବାସଭବନରେ ବାପାଙ୍କ ସହ ଅବସ୍ଥାନ କରୁଛନ୍ତି । ସେ ଜଣେ ଓକିଲ । ସାନଝିଅ ଲୋପାମୁଦ୍ରା (ଡଲି) ନାଉଗାଁ ବ୍ଲକ୍ ଅନ୍ତର୍ଗତ ତେଲସରା ନିବାସୀ ଶ୍ରୀଯୁକ୍ତ ନିରଞ୍ଜନ ବିଶ୍ୱାଳ (ଅଧ୍ୟାପକ ଓଡ଼ିଆ ବିଭାଗ, ଶ୍ରୀ ଶ୍ରୀ ମଉଳା ଭଣଜା ମହାବିଦ୍ୟାଳୟ, ଗଙ୍ଗଦା)ଙ୍କୁ ବିବାହ କରି ଜଗତସିଂହପୁରରେ ଅବସ୍ଥାନ କରୁଛନ୍ତି । ସାନ ପୁଅ ଅଜୟ ରାଉତ ଜଣେ କମ୍ପ୍ୟୁଟର ଇଞ୍ଜିନିୟର ଭାବରେ ନିଜ ପତ୍ନୀ ସସ୍ମିତା ଓ କନ୍ୟା ସ୍ୱୟଂସିଦ୍ଧାଙ୍କ ସହିତ ଭୁବନେଶ୍ୱର ଠାରେ ଅବସ୍ଥାନ କରୁଛନ୍ତି ।

୧୯୩୮ ମସିହା ଭୋଳାନାଥ ରାଉତଙ୍କ ଜନ୍ମ ସମୟକୁ ନନ୍ଦିଗ୍ରାମ ଅବସ୍ଥା କଣ ଥିଲା କହିବା ସମ୍ଭବ ନୁହେଁ । ସେବେଳେ ନାଉଗାଁ ବ୍ଲକ୍‌ର ମୁଖ୍ୟ ଦପ୍ତରକୁ ମଧ୍ୟ ଯୋଗାଯୋଗ ରାସ୍ତା ନଥିଲା । ଦେବୀନଦୀ ଗୋରୁଖୁରା ପରି ଏହି ବ୍ଲକ୍‌କୁ ଘେରିରହିଥିଲା । ସୁଡ଼ ଅଳଙ୍କାର

ଶାଖା ଗୋବରୀ ଓ ବାଉଁଶଯୋଡ଼ି ପରି ଦେବୀନଦୀର ଶାଖାନଦୀ ଗୁଡ଼ିକର ଧାରକୁ ଭିତ୍ତିକରି ଏଠାକାର ଜନବସତି ଗଢିଉଠିଥିଲା । ଉପକୂଳର ଏହି ଉର୍ବର ମୃତ୍ତିକା ବନ୍ୟା ପ୍ଲାବିତ ଥିଲା ଏବଂ ମଝିରେ ମଝିରେ ଉଚ୍ଚ ଜମିଗୁଡ଼ିକରେ ଢିହ ପୋତି ଲୋକବସତି ଗଢି ଉଠିଥିଲା । ପରାଧୀନ ଭାରତରେ ଏ ଅଞ୍ଚଳର ଲୋକମାନଙ୍କର ଜୀବନ ଯାତ୍ରା ଥିଲା କଷ୍ଟକର । ଏସବୁ ସତ୍ତ୍ୱେ ନନ୍ଦିଗ୍ରାମ ପ୍ରଖ୍ୟାତ ଥିଲା ଗାଁର ଇଷ୍ଟଦେବ ନନ୍ଦିକେଶ୍ୱର ମହାଦେବଙ୍କ ପାଇଁ । କେଉଁକାଳରୁ ପ୍ରଭୁ ଏ ଗ୍ରାମରେ ଆରାଧ୍ୟ ଦେବତା ଭାବରେ ପ୍ରତିଷ୍ଠିତ ତଥା ମହିମାନ୍ୱିତ ହୋଇଥିଲେ । ଦୂର ଦୂରାନ୍ତର ଗ୍ରାମମାନଙ୍କରେ ମହାପ୍ରଭୁଙ୍କର ପ୍ରଚୁର ଭୂସଂପତ୍ତି ଥିଲା । ଏବେ ମଧ୍ୟ ବିଭିନ୍ନ ଗ୍ରାମରେ ଅମୃତମଣୋହି ସଂପତ୍ତି ରହିଛି । ଏକ ସୁଉଚ୍ଚ, ସୁନ୍ଦର ମନ୍ଦିରରେ ପ୍ରଭୁ ବିରାଜିତ ହୋଇଛନ୍ତି । ଜାନିଯାତ୍ରା ଉତ୍ସବ ମହୋତ୍ସବ ମହା ସମାରୋହରେ ପାଳିତ ହୋଇ ଦୂରଦୂରାନ୍ତର ଭକ୍ତ ଓ ଯାତ୍ରୀମାନଙ୍କୁ ଆକର୍ଷିତ କରିଆସୁଛି । ଏହିପରି ଏକ ଐତିହ୍ୟ ସଂପନ୍ନ, ସାଂସ୍କୃତିକ ପରିବେଶ ଓ ପ୍ରାକୃତିକ ବିଭବ ମଣ୍ଡିତ ପଲ୍ଲୀଗ୍ରାମରେ ଶୈଶବ ସମୟଟି ହସଖୁସି ଓ ଖେଳକୁଦରେ କଟିଯାଇଥିଲା ଭୋଳାନାଥଙ୍କର ।

***ଶିକ୍ଷା-***

କ୍ଷତ୍ରିୟ ବଂଶରେ ଜନ୍ମଲାଭ କରିଥିବାରୁ ବଂଶ ପରଂପରା ଅନୁସାରେ ଚାରିବର୍ଷ, ଚାରିମାସ, ଚାରିଦିନରେ ତାଙ୍କର ବ୍ରତୋପନୟନ ଓ ବିଦ୍ୟାରମ୍ଭ ସଂସ୍କାର ଖୁବ ଧୁମଧାମରେ ସମାହିତ ହୋଇଥିଲା । ସେ ନନ୍ଦିକେଶ୍ୱର ପୀଠକୁ ଲାଗି ପ୍ରତିଷ୍ଠିତ ଗାଁ ସ୍କୁଲରେ ତୃତୀୟ ଶ୍ରେଣୀ ପର୍ଯ୍ୟନ୍ତ ପାଠ ପଢିଥିଲେ । ଏହି ସମୟକୁ ପରିବାର ଗୁଜୁରାଣ ମେଣ୍ଟାଇବା ପାଇଁ ବାପା -ବୃନ୍ଦାବନ ରାଉତ ଗୃହଶାଳି ଶିକ୍ଷକରୁ, ଚେନ୍‌ମ୍ୟାନ୍, ସେଟଲ୍‌ମେଣ୍ଟ ଅମିନ ଆଦି ବହୁ ବୃତ୍ତି ବଦଳାଇ ଶେଷରେ ହାଇକୋର୍ଟର ମୋହରିର ଭାବରେ ଜୀବିକା ଅର୍ଜନ କରୁଥିଲେ । ଗାଁ ସ୍କୁଲରେ ତୃତୀୟ ଶ୍ରେଣୀ ପାସ କଲାପରେ ନାଉଗାଁ ନିକଟସ୍ଥ ବାଲିସାହି ଗ୍ରାମର ବିପିନି ବିହାରୀ ମଧ୍ୟ ଇଂରାଜୀ ବିଦ୍ୟାଳୟରେ ଚତୁର୍ଥ ଶ୍ରେଣୀରେ ନାମ ଲେଖାଇଲେ ଏବଂ ଅଷ୍ଟମ ଶ୍ରେଣୀରୁ ପ୍ରସିଦ୍ଧ ଅଲଣାହାଟ ହାଇସ୍କୁଲ୍‌ରେ ଅଧ୍ୟୟନ କରି ମାଟ୍ରିକ୍ ପାସ୍ କଲେ ୧୯୫୪ ମସିହାରେ । ଏହା ପରେ ଖ୍ରୀଷ୍ଟ କଲେଜରେ ଓଡ଼ିଆ, ଇତିହାସ ଓ ଅର୍ଥନୀତି ବିଷୟ ନେଇ ଅଧ୍ୟୟନ କଲେ । ଏହି ସମୟରେ ସୀମା ଆନ୍ଦୋଳନରେ ପ୍ରତ୍ୟକ୍ଷ ଭୂମିକା ଗ୍ରହଣ କରି ପରୀକ୍ଷା ଦେଇ ପାରି ନଥିଲେ ଏବଂ ୧୯୫୭ ମସିହାରେ ପୁନର୍ବାର ପରୀକ୍ଷା ଦେଇ ଆଇ.ଏ.ଶ୍ରେଣୀ ଉତୀର୍ଣ୍ଣ ହେବାପରେ ରାଜନୀତିକ ଜୀବନ ଲକ୍ଷ୍ୟରେ ଜନସଂଗଠନ କାର୍ଯ୍ୟରେ ଲିପ୍ତ ରହିଲେ ।

ମାତ୍ର ପାଠପ୍ରତି ଆକର୍ଷଣ ତାଙ୍କୁ ଟାଣିଆଣିଲା । ଖ୍ରୀଷ୍ଟ କଲେଜରେ ପଢି ୧୯୬୦ରେ ବି.ଏ.ଏବଂ ରେଭେନ୍ସା କଲେଜରେ ପଢି ୧୯୬୨ରେ ଏମ୍.ଏ. ପାଶ କରିଥିଲେ ।

## ବୃତ୍ତିଗତ ଜୀବନ -

ପାଠପଢା ଶେଷ କରିବା ପୂର୍ବରୁ ଶ୍ରୀଯୁକ୍ତ ରାଉତ ଦୁଇ ଦୁଇଟି ଚାକିରି କରି ଛାଡ଼ିଥିଲେ । ନାଟ୍ୟକାର କମଳଲୋଚନ ମହାନ୍ତିଙ୍କ ସଂପର୍କରେ ଆସି ସେ ପ୍ରଥମେ ଚାକିରି କରିଥିଲେ, କୃଷି ବିଭାଗ ଅଧୀନସ୍ଥ ବାୟୋକେମିଷ୍ଟ୍ରି ଡିପାର୍ଟମେଣ୍ଟରେ କମ୍ପୋଷ୍ଟ ଇନ୍‌ସ୍ପେକ୍ଟର ଭାବରେ। ଭୁବନେଶ୍ୱର ବ୍ଲକ୍ ଅଫିସ୍ ଥିଲା ତାଙ୍କର କାର୍ଯ୍ୟାଳୟ । ଏହାପରେ ଉତ୍କଳ ବିଶ୍ୱବିଦ୍ୟାଳୟରେ କିରାଣି ଭାବରେ ସେ ୧୯୬୦ ଅର୍ଥାତ୍ ବି.ଏ ପାଶ୍ କରିବା ପର୍ଯ୍ୟନ୍ତ ଚାକିରି କରିଥିଲେ । ତାଙ୍କର ବିଦ୍ୟାନୁରାଗ ଓ ଉଚ୍ଚାଭିଳାଷ ଯୋଗୁ ଚାକିରି ଛାଡ଼ିଥିଲେ । ବାଙ୍କି ଓ କେନ୍ଦ୍ରାପଡ଼ା କଲେଜରୁ ଏବଂ ବମ୍ବେର ଏଲ୍.ଆଇ.ସି ଅଫିସର ଅନୁବାଦକ ଚାକିରି ଛାଡ଼ି ୧୯୬୩ ମସିହାରେ ଜଗତସିଂହପୁର ଏସ୍.ଭି.ଏମ୍. କଲେଜରେ ଅଧ୍ୟାପକ ଜୀବନ ଆରମ୍ଭ କରିଥିଲେ । ସମୟ କ୍ରମେ ସର୍ବବରିଷ୍ଠ ଅଧ୍ୟାପକ ଭାବରେ ଏହି ମହାବିଦ୍ୟାଳୟରେ ଓଡ଼ିଆ ବିଭାଗର ମୁଖ୍ୟ ଅଧ୍ୟାପକ, ମହାବିଦ୍ୟାଳୟର ଉପାଧ୍ୟକ୍ଷ ତଥା ଭାରପ୍ରାପ୍ତ ଅଧ୍ୟକ୍ଷ ଭାବରେ ଅବସ୍ଥାପିତ ହେବା ସମୟରେ ମହାବିଦ୍ୟାଳୟର ଉନ୍ନତିରେ ଅଗ୍ରଣୀ ଭୂମିକା ନିର୍ବାହ କରିଥିଲେ । ସେଥିପାଇଁ ସେ ତତ୍କାଳୀନ ପରିଚାଳନା ସମିତିର ସମସ୍ତ ସଦସ୍ୟଙ୍କର ପ୍ରିୟପାତ୍ର ହୋଇଥିଲେ । କଲେଜର ଅଧିକାଂଶ ଅଧ୍ୟାପକ ଓ କର୍ମଚାରୀଙ୍କର ଶ୍ରଦ୍ଧା ଓ ଭକ୍ତିର ପାତ୍ର ହୋଇ ପାରିଥିଲେ । ଛାତ୍ରଛାତ୍ରୀମାନେ ତାଙ୍କ ପ୍ରତି ଶ୍ରଦ୍ଧା ଓ ଭକ୍ତି ନିବେଦନ କରୁଥିଲେ । ମାତ୍ର କେତେକ କ୍ଷେତ୍ରରେ ସେ କିଛି ସହକର୍ମୀଙ୍କର ଈର୍ଷା ଏବଂ ମୁଷ୍ଟିମେୟ ଛାତ୍ରଙ୍କର ନିନ୍ଦାର ଶରବ୍ୟ ହୋଇଛନ୍ତି । ଫଳରେ ତାଙ୍କୁ ମହାବିଦ୍ୟାଳୟରୁ ସ୍ଥାନାନ୍ତର କରାଯାଇଛି ।

ସେ ୧୬.୦୭.୮୪ ମସିହାରେ ତାଙ୍କର ପ୍ରିୟ ଲାଳିତ ଜଗତସିଂହପୁର କଲେଜରୁ ବଦଳି ହୋଇ ବାଙ୍କି ମହାବିଦ୍ୟାଳୟରେ ଯୋଗଦାନ କରନ୍ତି ଏବଂ ସେଠାରେ ୧୯୮୮ମସିହା ପର୍ଯ୍ୟନ୍ତ ଶ୍ରଦ୍ଧା ଓ ସମ୍ମାନର ସହ କାର୍ଯ୍ୟ ସଂପାଦନ କରି କଲେଜର ସହକର୍ମୀ, ଛାତ୍ରଛାତ୍ରୀ ଓ ସ୍ଥାନୀୟ ଜନତାର ଶ୍ରଦ୍ଧାଭାଜନ ହୁଅନ୍ତି । ଏହାପରେ ବେସରକାରୀ କଲେଜରେ ଅଧ୍ୟକ୍ଷ ପାହ୍ୟା ସୃଷ୍ଟି ହେବାପରେ ୮.୨.୮୮ମସିହାରେ ଜଗତସିଂହପୁର ଜିଲ୍ଲାର ତିର୍ତ୍ତୋଲର ଆଦିକବି ସାରଳାଦାସ ମହାବିଦ୍ୟାଳୟକୁ ଅଧ୍ୟକ୍ଷ ଭାବରେ ସ୍ଥାନାନ୍ତର ହୁଅନ୍ତି । ଅଧ୍ୟକ୍ଷ ଭାବରେ ସେହି ମହାବିଦ୍ୟାଳୟର ବହୁ ଅନିୟମିତତାକୁ ବ୍ୟବସ୍ଥିତ କରିବାରେ ତାଙ୍କର ଭୂମିକା ଅତୁଳନୀୟ ।

ଶିକ୍ଷକ ସଂଘର ନେତୃତ୍ୱ ନେଇ ୟୁ.ଜି.ସି. ସ୍କେଲ୍ ଦରମା ଲାଗୁପାଇଁ ଲଢି ରାଜ ଆକ୍ରୋଶର ଶିକାରହେବା ଫଳରେ ବରି ରାମଚନ୍ଦ୍ରପୁର ମହାବିଦ୍ୟାଳୟକୁ ବଦଳିହୋଇଥିଲେ ସେ । ସେଠାରେ କାର୍ଯ୍ୟଭାର ଗ୍ରହଣ ନକରି ଛୁଟିରେ ରହନ୍ତି, ଏବଂ ପରେ ପରେ ନୟାଗଡ଼ କଲେଜରେ ଜଏନ୍ କରି ଛୁଟିରେ ରହି ପି.ଏଚ୍.ଡି. ଥେସିସ୍ ପ୍ରସ୍ତୁତ କରି ଉତ୍କଳ ବିଶ୍ୱବିଦ୍ୟାଳୟରୁ ଡକ୍ଟରେଟ୍ ଉପାଧି ପ୍ରାପ୍ତ ହୁଅନ୍ତି । ନୟାଗଡ଼ କଲେଜରେ ସେ ତା ୧୧.୦୯.୮୯ମସିହାରେ କାର୍ଯ୍ୟଭାର ଗ୍ରହଣ କରିଥିଲେ । ସେଠାରୁ ୨୬.୦୯.୯୩ରେ କନ୍ଦରପୁର କଲେଜ ଓ ପରେ କିଶୋର ନଗର କଲେଜରେ ସ୍ୱଳ୍ପ କାଳପାଇଁ କାର୍ଯ୍ୟଭାର ଗ୍ରହଣ କଲାପରେ ୨୭.୧୨.୯୩ରୁ ୧୨.୦୬.୯୫ପର୍ଯ୍ୟନ୍ତ ପୁନର୍ବାର ଜଗତସିଂହପୁର ମହାବିଦ୍ୟାଳୟରେ ପ୍ରାଧ୍ୟାପକ ଭାବରେ ଯୋଗଦାନ କଲେ । ତାଙ୍କର ଚାକିରି ଜୀବନର ଶେଷ ଭାଗ ସେ କଟାଇ ଥିଲେ ଓଡ଼ିଶାର ସର୍ବବୃହତ ବେସରକାରୀ ମହାବିଦ୍ୟାଳୟ  କେନ୍ଦ୍ରାପଡ଼ାରେ । ୧୪.୦୮.୯୫ରେ ଯୋଗଦେଇ ଚାକିରିରୁ ଅବସର ଗ୍ରହଣ କଲେ ୨୮.୦୨.୯୮ମସିହାରେ ।

ଏହିସବୁ ଅନୁଷ୍ଠାନରେ କାର୍ଯ୍ୟକଲାବେଳେ ତାଙ୍କର ଜୀବନାନୁଭୂତି ଥିଲା ମିଶ୍ରରାଗରେ ଅନୁରଞ୍ଜିତ । ସ୍ୱାମୀ ବିବେକାନନ୍ଦ ସ୍ମାରକ ମହାବିଦ୍ୟାଳୟ ତାଙ୍କ ଲାଳିତ ସନ୍ତାନ ପରି । ଏହି ଅନୁଷ୍ଠାନ ପାଇଁ ଚାନ୍ଦାଭିକ୍ଷା ଗ୍ରହଣ କରିବା ଠାରୁ ଗୃହ ନିର୍ମାଣ, କର୍ମଚାରୀଙ୍କ ସ୍ୱାର୍ଥରକ୍ଷା, ପ୍ରଶାସନିକ ବ୍ୟବସ୍ଥା, ଛାତ୍ର ଅଶାନ୍ତି, ଘଟଣାରେ ହସ୍ତକ୍ଷେପ ପ୍ରଭୃତି ଠାରୁ ସାଂସ୍କୃତିକ କାର୍ଯ୍ୟ ସଂପାଦନ ପର୍ଯ୍ୟନ୍ତ ସବୁ କ୍ଷେତ୍ରରେ ଅଗ୍ରଣୀ ଭୂମିକା ନେଇ ନିଜର ଜୀବନ ଓ ଯୌବନ ଉତ୍ସର୍ଗ କରିଥିଲେ । ଫଳରେ ବହୁ ବାଧା ବିଘ୍ନ, ଶ୍ରଦ୍ଧା, ଭକ୍ତି, ଈର୍ଷା ବିରୋଧ, ଏକାକାର ହୋଇ ତାଙ୍କର ବ୍ୟକ୍ତିତ୍ୱକୁ ବହୁ ପରୀକ୍ଷାରେ ଉତ୍ତୀର୍ଣ୍ଣ କରାଇଥିଲା । ବରିରାମଚନ୍ଦ୍ରପୁର , କନ୍ଦରପୁର ଓ କିଶୋରନଗର ମହାବିଦ୍ୟାଳୟରେ ଅଳ୍ପ ସମୟର ଅବ୍ୟବସ୍ଥିତ ରହଣି ତାଙ୍କୁ ବହୁ ଯନ୍ତ୍ରଣା ଦେଇଥିଲା । ଫଳରେ ଅଧିକାଂଶ ସମୟ ସେ ଛୁଟିରେ ରହିଥିଲେ  କିନ୍ତୁ ବାଙ୍କି କଲେଜ ଓ କେନ୍ଦ୍ରାପଡ଼ା କଲେଜରେ ଶ୍ରଦ୍ଧା ସମ୍ମାନ ଭାଜନ ହୋଇ କାର୍ଯ୍ୟ କରିବାରେ ତାଙ୍କର ଆତ୍ମ ସନ୍ତୋଷ ବୃଦ୍ଧି ପାଇଥିଲା ।  ଜଗତସିଂହପୁର, ବାଙ୍କି ଓ କେନ୍ଦ୍ରାପଡ଼ା କଲେଜରେ ଅଧ୍ୟାପକ ଭାବରେ ସେ ବେଶି ଗୌରବ ଅର୍ଜନ କରିଥିଲେ ବିଭାଗୀୟ ପାଠଚକ୍ର, ନାଟକାଦି ସାଂସ୍କୃତିକ କାର୍ଯ୍ୟକ୍ରମ ଗୁଡ଼ିକର ପରିଚାଳନା ମାଧ୍ୟମରେ ।

## ନେତୃତ୍ୱ-

ସମସ୍ତ କ୍ଷେତ୍ରରେ ବାରିହୋଇ ପଡୁଥିଲା ତାଙ୍କର ନେତୃତ୍ୱ ନେବାର ସାମର୍ଥ୍ୟ । ବାଲ୍ୟକାଳରୁ ସେ ଯେଉଁଠି ଅବସ୍ଥାନ କରିଛନ୍ତି ତାଙ୍କର ପ୍ରଭାବ ଓ ପରାକାଷ୍ଠା ଆଙ୍କିହୋଇଛି

ଆପଣାଛାଏଁ । ସ୍କୁଲରେ ପଢିବାବେଳେ ନିଜ ଗାଁର ପ୍ରାଥମିକ ବିଦ୍ୟାଳୟର ଶିକ୍ଷକ ବଦଳି ପାଇଁ ଆନ୍ଦୋଳନ କରି ସଫଳ ହେବା ପରେ କୈଶୋର ଜୀବନର ବାଲ୍ୟ ଚପଳତା ବଶତଃ ଭୋଜିଭାତ ଠାରୁ ବାଗୁଡ଼ିଖେଳ ପର୍ଯ୍ୟନ୍ତ ଭଲ ହେଉକି ମନ୍ଦ ହେଉ କୌଣସି କାର୍ଯ୍ୟରେ ପଛରେ ପଡ଼ି ରହିବା ତାଙ୍କର ରୁଚି ନଥିଲା । ସେ ଭଲ ବାଗୁଡ଼ି ଖେଳି ସୁନାମ ଅର୍ଜନ କରିଥିଲେ । ଗାଁର ହରିଜନମାନଙ୍କୁ ସଂଗଠିତ କରି ସେମାନଙ୍କ ମଧ୍ୟରେ ସାମାଜିକ ଆତ୍ମ ପ୍ରତ୍ୟୟ ସୃଷ୍ଟି କରିବାରେ ସମର୍ଥ ହୋଇଥିଲେ ।

ଖ୍ରୀଷ୍ଟ କଲେଜରେ ଅଧ୍ୟୟନ କଲାବେଳେ ଜଣେ ସତ୍‌ସାହସୀ, ସଂଗ୍ରାମୀ, ଛାତ୍ରନେତା ଭାବରେ ନିଜକୁ ପ୍ରତିଷ୍ଠିତ କରିପାରିଥିଲେ । ସାହିତ୍ୟ, ସଂସ୍କୃତି ଓ ନାଟକ କ୍ଷେତ୍ରରେ ସୁନାମ ଅର୍ଜନ କରିବା ସହିତ ଛାତ୍ର ସଂଗଠକ ଭାବରେ ତାଙ୍କର ବ୍ୟକ୍ତିତ୍ୱ ଉଜ୍ଜ୍ୱଳି ଉଠିଥିଲା । ହରିଶ୍ଚନ୍ଦ୍ର ବକ୍ସିପାତ୍ର, ମନୋଜ ଦାସ,ରାମମନୋହର ହୋତା, ଜ୍ଞାନମହାନ୍ତି ପ୍ରଭୃତି କମ୍ୟୁନିଷ୍ଟ ନେତାମାନଙ୍କ ସଂପର୍କରେ ଆସି ତାଙ୍କ ହୃଦୟରେ ସାମ୍ୟବାଦର ତୀବ୍ର ପ୍ରଭାବ ଅନୁଭୂତ ହୋଇଥିଲା । ଯାହା ଫଳରେ ଖ୍ରୀଷ୍ଟ କଲେଜର ଛାତ୍ରନେତା ଭାବରେ ସେ ଝାସ ଦେଇଥିଲେ ଓଡ଼ିଶାର ସୀମା ଆନ୍ଦୋଳନର ପ୍ରତ୍ୟକ୍ଷ ସଂଗ୍ରାମରେ । ୧୯୫୬ ଛାତ୍ରକ୍ରିୟା ଅନୁଷ୍ଠାନ କମିଟିର ସଦସ୍ୟ ଭାବରେ ସରକାରଙ୍କ ସହିତ ଲଢ଼ି ସେ ଆଇ.ଏ. ପରୀକ୍ଷା ସଂପୂର୍ଣ୍ଣ ଦେଇ ପାରିନଥିଲେ । ଏ କ୍ଷେତ୍ରରେ ହରେକୃଷ୍ଣ ମହତାବ, ମନମୋହନ ମିଶ୍ର ଓ ମାଳତୀ ଚୌଧୁରୀ ପ୍ରଭୃତି ନେତୃବର୍ଗଙ୍କ ସାନ୍ନିଧ୍ୟ ପାଇ ଜଣେ ସଂଗ୍ରାମୀ ଜନନେତା ହେବାର ମୋହ ତାଙ୍କର ବଳବତ୍ତର ହେଲା ଏବଂ ସେ ଆଇ.ଏ. ପରୀକ୍ଷା ଦେଇ ଗାଁରେ ରହି ଜନ ସଂଗଠନ ଆରମ୍ଭ କରିଥିଲେ । ନିଜ ଗାଁର ହରିଜନ ସଂଗଠନ ଠାରୁ ଆରମ୍ଭ କରି ଆଖପାଖ ଗାଁରେ ବିଦ୍ୟାଳୟ ସ୍ଥାପନ, ଗମନାଗମନ ଆଦି ବିଭିନ୍ନ ସମସ୍ୟାରେ ମୁଣ୍ଡ ପୂରାଇ ତାର ସମାଧାନ ପାଇଁ ଚେଷ୍ଟା ଚଳାଇ ଜଣେ ଆଞ୍ଚଳିକ ସମାଜସେବୀ ଯୁବନେତାରେ ପରିଣତ ହୋଇଗଲେ ।

କର୍ମମୟ ଜୀବନରେ ଏସ୍.ଭି.ଏମ୍ କଲେଜରେ ଯୋଗଦେବା ଦିନହିଁ ତତ୍‌କାଳୀନ ପରିଚାଳନା ସମିତି ସଭାପତି ତଥା ଓଡ଼ିଶାର ପୂର୍ବତନ ମୁଖ୍ୟମନ୍ତ୍ରୀ ବୀରେନ୍ ମିତ୍ରଙ୍କ ସହିତ ଓଡ଼ିଶାର ବରେଣ୍ୟ ଜନନାୟକ ବିଜୁବାବୁ ଉଭୟ ତାଙ୍କୁ ବାଲିକୁଦା ନିର୍ବାଚନ ମଣ୍ଡଳୀର ବିଧାୟକ ପ୍ରାର୍ଥୀ କରିବା ପାଇଁ ପ୍ରତିଶ୍ରୁତି ଦେଇଥିଲେ । ଫଳରେ ସେ ଅଧ୍ୟାପନା ସହିତ ବାଲିକୁଦା ନିର୍ବାଚନ ମଣ୍ଡଳୀର ଜନ ସଂଗଠନ ଓ ସମାଜସେବା ମୂଳକ କାର୍ଯ୍ୟ ହାତକୁ ନେଇଥିଲେ । ଆଡଭୋକେଟ୍ ଚତୁର୍ଭୁଜ ଆଗ୍ରର୍ଯ୍ୟଙ୍କ ସଂପାଦକତ୍ୱରେ ଗଢି ଉଠିଲା ଜଗତସିଂହପୁର ଉନ୍ନୟନ ପରିଷଦ । ପ୍ରତ୍ୟେକ ରବିବାର ଓ ଛୁଟିଦିନ ରେ ବିଭିନ୍ନ ପଞ୍ଚାୟତ ଗସ୍ତକରି

ଲୋକମାନଙ୍କ ସୁବିଧା ଅସୁବିଧା ବୁଝିବା ପ୍ରତ୍ୟେକ ଗାଁରେ କିପରି ପ୍ରାଥମିକ ବିଦ୍ୟାଳୟ ସ୍ଥାପିତ ହେବ, ପ୍ରତି ପଞ୍ଚାୟତକୁ ସଡ଼କ ପଥ ଯୋଗାଯୋଗ ହେବ, ଗ୍ରାମକୁ ବିଜୁଳିଶକ୍ତି ଆସିବ ପ୍ରଭୃତି ଜନ କଲ୍ୟାଣ ପାଇଁ ସରକାରୀ ଦପ୍ତର ସହିତ ଯୋଗାଯୋଗ କରି ସମସ୍ୟାର ସମାଧାନ କରାଉଥିଲେ । ଜଗତସିଂହପୁରରୁ ନାଉଗାଁ ଏବଂ ଗାରୋଇ ଠାରୁ ମାଛଗାଁ ପର୍ଯ୍ୟନ୍ତ ପିଚୁରାସ୍ତା ଓ ବାଉଁଶଯୋଡ଼ି ବନ୍ୟା ନିରୋଧ ଯୋଜନାରେ ତିଆରି ହୋଇଥିବା ଲକ୍ ପ୍ରଭୃତି ବହୁ ଉନ୍ନୟନ ମୂଳକ କାର୍ଯ୍ୟରେ ତାଙ୍କର ସାଙ୍ଗଠନିକ ଦକ୍ଷତା ଓ ନେତୃତ୍ୱର ପରାକାଷ୍ଠା ପ୍ରଦର୍ଶିତ ହୋଇଛି ।

ଜଗତସିଂହପୁର ଅନାଥାଶ୍ରମ ପ୍ରତିଷ୍ଠାରେ ତାଙ୍କର ସହଯୋଗିତା ରହିଛି । ତାଙ୍କର ବାପା ବୃନ୍ଦାବନ ରାଉତ ଜଣେ କଂଗ୍ରେସ ସମର୍ଥକ ଥିଲେ । କଲେଜ ଜୀବନରେ ସାମ୍ୟବାଦୀ ନେତୃବର୍ଗଙ୍କ ସହକର୍ମୀହୋଇ ସେ ମାନସିକତାରେ କମ୍ୟୁନିଷ୍ଟ ଏବଂ କ୍ଷେତ୍ର ରାଜନୀତିରେ କଂଗ୍ରେସୀ ହୋଇରହିଥିଲେ । କଂଗ୍ରେସ ଦଳରେ ବିଭାଜନ ଘଟି ଇନ୍ଦିରା କଂଗ୍ରେସରୁ ବିଜୁବାବୁ ବାହାରି ଆସି ବିରୋଧୀ ଦଳ ଭାବରେ ଯେଉଁ ରାଜନୀତି ଆରମ୍ଭ କଲେ ସେତେବେଳେ ମଧ୍ୟ ଶ୍ରୀଯୁକ୍ତ ରାଉତଙ୍କ ସହପାଠୀ ପୂର୍ବତନ ମନ୍ତ୍ରୀ ଶରତ କରଙ୍କ ମାଧ୍ୟମରେ ତାଙ୍କୁ ଡକାଇ ବାଲିକୁଦା ନିର୍ବାଚନ ମଣ୍ଡଳୀରୁ କଂଗ୍ରେସ ବିରୁଦ୍ଧରେ ବିଧାୟକ ଭାବରେ ଲଢିବା ପାଇଁ ବିଜୁବାବୁ ପରାମର୍ଶ ଦେଇଥିଲେ । ମାତ୍ର ସେ ସମୟରେ ନିଜର ପାରିବାରିକ ଅବସ୍ଥା ଓ ଅଣକଂଗ୍ରେସ ଦଳର ସ୍ଥିତିକୁ ଆଖି ଆଗରେ ରଖି ଶ୍ରୀ ରାଉତ ଆଉ ରାଜନୀତି ପାଇଁ ଭରସି ପାରିନଥିଲେ । ସେଥିପାଇଁ ମହାବିଦ୍ୟାଳୟର ଓଡ଼ିଆ ବିଭାଗ ସେମିନାର୍‌କୁ ମୁଖ୍ୟ ଅତିଥିଭାବରେ ଆମନ୍ତ୍ରିତ ହୋଇ ଯୋଗ ଦେଇଥିବା ବିଜୁବାବୁ ଦିନେ ତାଙ୍କୁ କହିଥିଲେ "ଭୋଳି, ତୋତେ ମୁଁ ପଠାଇ ଥିଲି କ'ଣ ପାଇଁ, ତୁ ଏଠି କଲୁ କ'ଣ" ? ଏହି ସମୟରେ ସୋସାଲିଷ୍ଟ ପାର୍ଟିରୁ ଛିଡ଼ାହେବା ପାଇଁ ବିଶ୍ୱନାଥ ପଣ୍ଡିତ ଓ ରାଜେନ୍ଦ୍ର ଦାସ ପ୍ରସ୍ତାବ ଦେଇଥିଲେ ମଧ୍ୟ ସେ ଏହାକୁ ଗ୍ରହଣ କରିବା ଅବସ୍ଥାରେ ନଥିଲେ । ଜନନେତା ହେବାର ମୋହଭଙ୍ଗ କରି ସେ ନେତୃତ୍ୱ ପରାକାଷ୍ଠା ପ୍ରଦର୍ଶନ କଲେ ଜଣେ ବଳିଷ୍ଠ ଶିକ୍ଷକ ନେତା ଭାବରେ ।

### *ଶିକ୍ଷକ ନେତା -*

୧୯୬୩ ମସିହାରେ ଜଗତସିଂହପୁର ମହାବିଦ୍ୟାଳୟରେ ଯୋଗଦେଲାବେଳକୁ ଓଡ଼ିଶାର ଶିକ୍ଷା ବ୍ୟବସ୍ଥାରେ ଶିକ୍ଷକମାନେ ଅତ୍ୟନ୍ତ ଦୟନୀୟ ସ୍ଥିତିରେ ଥିଲେ । ସ୍ୱଳ୍ପ ବେତନ ସାଙ୍ଗକୁ ପରିଚାଳନା କମିଟିର ପ୍ରାଦୁର୍ଭାବ ଅସହ୍ୟ ସଂକଟଜନକ ଥିଲା । ଏହି ସମୟକୁ ବିଭିନ୍ନ ଶିକ୍ଷକ

ସଂଗଠନ ସୃଷ୍ଟିହୋଇ ସାରିଥିଲେ ମଧ୍ୟ ପ୍ରତ୍ୟକ୍ଷ ସଂଗ୍ରାମ ପାଇଁ ସାହସ ସଞ୍ଚୟ କରି ନଥିଲେ । ବେସରକାରୀ କଲେଜ ସ୍ତରରେ ଯେଉଁ ସଂଗଠନ ହୋଇଥିଲା ତାର ସଭାପତି ଥିଲେ ଖ୍ରୀଷ୍ଟ କଲେଜର ପ୍ରଫେସର ମୁଖାର୍ଜିବାବୁ । ଭଦ୍ରକ କଲେଜର ଅଧ୍ୟକ୍ଷ ବଳରାମ ସାହୁଥିଲେ ସାଧାରଣ ସଂପାଦକ । ଏହି ସଂଗଠନକୁ ଖୋର୍ଦ୍ଧା କଲେଜରୁ ଶ୍ରୀଯୁକ୍ତ ଅବନୀ ବରାଳ ଆସୁଥିବା ବେଳେ ଜଗତସିଂହପୁରରୁ ପ୍ରତିନିଧିତ୍ୱ କରୁଥିଲେ ଶ୍ରୀଯୁକ୍ତ ରାଉତ । ୧୯୬୯ ଅଧିବେଶନରେ ପ୍ରଫେସର ବଳରାମ ସାହୁ ସଭାପତି ଭାବରେ ମନୋନୀତ ହୋଇଥିଲେ ଏବଂ ସାଧାରଣ ସଂପାଦକ ଭାବରେ କାର୍ଯ୍ୟଭାର ଗ୍ରହଣ କରିଥିଲେ ଶିକ୍ଷକ ମହାସଂଘର ସର୍ବମାନ୍ୟ ନେତା ଶ୍ରୀଯୁକ୍ତ ଅବନୀ ବରାଳ । ଭୋଳାନାଥ ରାଉତ ଏହି କମିଟିର ଯୁଗ୍ମ ସଂପାଦକ ଭାବରେ କାର୍ଯ୍ୟକ୍ରମକୁ ବହୁ ଭାବରେ ଆଗେଇ ନେଇଥିଲେ । ଏହିବର୍ଷ ଅଗଷ୍ଟ ୧୬ତାରିଖ ଦିନ ଖ୍ରୀଷ୍ଟ କଲେଜ ପରିସରରେ ପ୍ରାଥମିକ ଶିକ୍ଷକ ସଂଘଠାରୁ ବିଶ୍ୱବିଦ୍ୟାଳୟ ସ୍ତରୀୟ ସଂଘ ପର୍ଯ୍ୟନ୍ତ ସମସ୍ତ ସଂଘକୁ ନେଇ ଯେଉଁ ମିଳିତ କ୍ରିୟାନୁଷ୍ଠାନ କମିଟି ଗଠିତ ହେଲା, ତାର ପ୍ରଥମ ସଦସ୍ୟ ଭାବରେ ମନୋନୀତ ବ୍ୟକ୍ତିବର୍ଗଙ୍କ ମଧ୍ୟରେ ଭୋଳାନାଥ ରାଉତ ଥିଲେ ଅନ୍ୟତମ । ୪୧ହଜାର ଶିକ୍ଷକ /ଶିକ୍ଷିକା ଓ କର୍ମଚାରୀମାନଙ୍କ ମିଳିତ ସଂଗଠନ ସଂଗ୍ରାମ କଲା ସମାନ କାମକୁ ସମାନ ଦରମା, ଚାକିରି ସର୍ତ୍ତାବଳି ଅବସରକାଳୀନ ସୁଯୋଗ, ପ୍ରଭୃତି ଅନେକ ଦାବି ଆନ୍ଦୋଳନ ଫଳରେ ସଫଳ ହେଲା । ଜଗତସିଂହପୁର ଜିଲ୍ଲାର ମିଳିତ ଶିକ୍ଷକ ସଂଘର ସଭାପତି ଭାବରେ ସର୍ବାନ୍ତକରଣରେ ଗ୍ରହଣୀୟ ହୋଇଥିଲେ ଶ୍ରୀଯୁକ୍ତ ରାଉତ । ଶ୍ରୀଯୁକ୍ତ ଅନାମ ଚରଣ ଦାସ ଥିଲେ ଏହି କମିଟିର ସାଧାରଣ ସଂପାଦକ ।

୧୯୭୧ ଅଗଷ୍ଟ ୫ତାରିଖ ଦିନ ଭୁବନେଶ୍ୱର କଳାମଣ୍ଡପରେ ଶିକ୍ଷକ ମହାସଂଘର ସମ୍ମିଳନୀରେ ବନମାଳୀ ବ୍ରହ୍ମଚାରୀ ମିଳିତ ଶିକ୍ଷକ ସଂଘର ସଭାପତି ରୂପେ ମନୋନୀତ ହୋଇଥିବା ସ୍ଥଳେ ଶ୍ରୀଯୁକ୍ତ ଅବନୀବରାଳ ସାଧାରଣ ସଂପାଦକ । କଲେଜ ଶିକ୍ଷକ ସଂଘର ସଭାପତି ସଭ୍ୟଭାବରେ ମନୋନୀତ ହୋଇଥିଲେ ଶ୍ରୀଯୁକ୍ତ ରାଉତ ।

୧୯୮୯ ମସିହାର ୟୁ.ଜି.ସି . ସ୍କେଲ୍‌ପାଇଁ ଲଢେଇ କରି କୃତକାର୍ଯ୍ୟ ହେବାପର୍ଯ୍ୟନ୍ତ ସେ ଶିକ୍ଷକ ସମାଜକୁ ଯେଉଁ ଦୃଢ଼ ନେତୃତ୍ୱ ଦେଇଥିଲେ ତାର ପଟାନ୍ତର ନାହିଁ ।

## *ଓଡ଼ିଆ ଅଧ୍ୟାପକ ସମ୍ମିଳନୀର୍ ନେତୃତ୍ୱ*

ଜଣେ ଓଡ଼ିଆ ଅଧ୍ୟାପକ ଭାବରେ ମଧ୍ୟ ନିଜ ବିଭାଗୀୟ ସଂଗଠନରେ ସେ ଜଣେ ଅଗ୍ରଣୀ କର୍ଣ୍ଣଧାର । ୧୯୭୨ ମସିହାରେ ପ୍ରଫେସର ଗୋଲୋକ ବିହାରୀ ଧଳଙ୍କ ନେତୃତ୍ୱରେ

ଓଡ଼ିଆ ଶିକ୍ଷା ସମ୍ମିଳନୀ ପ୍ରତିଷ୍ଠିତ ହୋଇଥିଲା । ୧୯୭୩ରେ ସମ୍ବଲପୁର ବିଶ୍ୱବିଦ୍ୟାଳୟରେ ପ୍ରଫେସର ଗୋପାଳମିଶ୍ରଙ୍କ ନେତୃତ୍ୱରେ ଓଡ଼ିଆ ଅଧ୍ୟାପକ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । ମାତ୍ର ଏହା ପରେ ସଂଗଠନଟି ଶିଥିଳ ହୋଇଗଲା । ୧୯୭୮ ମେ ମାସ ୧୪/୧୫ରେ ତାରିଖରେ ଏହି ସମ୍ମିଳନୀର ପୁନରୁଦ୍ଧାର ହୋଇଥିଲା । ଜଗତସିଂହପୁର କଲେଜ ପରିସରରେ ନିଖିଳ ଭାରତ ଓଡ଼ିଆ ଅଧ୍ୟାପକ ସମ୍ମିଳନୀର ଆବାହକ କରି ଏହି ସଂଗଠନକୁ ପୁନରୁଦ୍ଧାର କରିଥିଲେ ଶ୍ରୀଯୁକ୍ତ ଭୋଳାନାଥ ରାଉତ । ଏହି ସମ୍ମିଳନୀରେ ତାଙ୍କ ଦ୍ୱାରା ସଂପାଦିତ ଏକ ସ୍ମରଣିକା ପ୍ରକାଶ ପାଇଥିଲା ଏବଂ ସମ୍ମିଳନୀର ସମ୍ବିଧାନ ଅନୁମୋଦିତ ହୋଇ ଭବିଷ୍ୟତର କାର୍ଯ୍ୟପନ୍ଥା ସ୍ଥିରୀକୃତ ହେଲା । ୧୯୮୭ରୁ ପୁନଶ୍ଚ ନିଷ୍କ୍ରିୟ ହୋଇ ପଡ଼ିଥିବା ଏହି ସଂଗଠନକୁ ପୁନରୁଜ୍ଜୀବିତ କରିବା ଦିଗରେ ଶ୍ରୀଯୁକ୍ତ ରାଉତଙ୍କ ଅବଦାନ ଅତୁଳନୀୟ । ବାଣୀ ବିହାରରେ ପରୀକ୍ଷା ଖାତା ମୂଲ୍ୟାୟନ ହେଉଥିବା ସମୟରେ ଅଧ୍ୟାପକ ପରୀକ୍ଷିତ ନନ୍ଦଙ୍କ ପ୍ରସ୍ତାବ କ୍ରମେ ଶ୍ରୀଯୁକ୍ତ ରାଉତଙ୍କୁ ଆବାହକ ରୂପେ ମନୋନୀତ କରାଗଲା । ଏହି ନୂତନ ପଦକ୍ଷେପରେ ଡକ୍ଟର ନଟବର ଶତପଥୀ, ଡକ୍ଟର ନିତ୍ୟାନନ୍ଦ ନାୟକ ସଂପାଦକ ଭାବେ ନେତୃତ୍ୱ ନେଲେ କମିଟିର ସଭାପତି ଥିଲେ ଡକ୍ଟର ଆଶୁତୋଷ ପଟ୍ଟନାୟକ ।୧୯୯୮ରେ ଇନ୍ଦିରାଗାନ୍ଧୀ କଲେଜରେ ସଂଗଠନର ପୂର୍ଣ୍ଣାଙ୍ଗ ସମ୍ମିଳନୀ ବସିଲା । ଏଥିରେ ବିଶିଷ୍ଟ ଭାଷାତତ୍ତ୍ୱବିତ୍ ଦେବୀପ୍ରସନ୍ନ ପଟ୍ଟନାୟକଙ୍କୁ ସଭାପତି, ଶ୍ରୀଯୁକ୍ତ ରାଉତଙ୍କୁ କାର୍ଯ୍ୟକାରୀ ସଭାପତି ଏବଂ ଡକ୍ଟର ନଟବର ଶତପଥୀଙ୍କୁ ସାଧାରଣ ସଂପାଦକ କରାଗଲା । ୨୦୦୭ମସିହାରେ ଅନୁଷ୍ଠିତ ସମ୍ମିଳନୀରେ ଅନୁଷ୍ଠାନର ସର୍ବମାନ୍ୟ ସଭାପତି ଭାବରେ ଡକ୍ଟର ରାଉତ ମନୋନୀତ ହୋଇ କାର୍ଯ୍ୟକ୍ରମକୁ ଆଗେଇ ନେଲେ । ଅଖିଳ ଭାରତୀୟ ଓଡ଼ିଆ ଅଧ୍ୟାପକ ସମ୍ମିଳନୀର ନେତା ଭାବରେ ତାଙ୍କର ଅବଦାନ ଅନସ୍ୱୀକାର୍ଯ୍ୟ ।

### *ଅଭ୍ୟୁଦୟ ସାହିତ୍ୟ ସମାଜର ସଂପାଦନା -*

କେବଳ ଶିକ୍ଷକ ଓ ଶିକ୍ଷାୟତନରେ ନୁହେଁ ତାଙ୍କର ସାଙ୍ଗଠନିକ ଦକ୍ଷତା ଓ ନେତୃତ୍ୱ ବହୁ ଦିଗକୁ ପ୍ରସାରିତ ହୋଇଥିଲା । ଖ୍ରୀଷ୍ଟ ମହାବିଦ୍ୟାଳୟରେ ଛାତ୍ର ଥିବା ସମୟରେ ସେ ସାହିତ୍ୟ ସଂଗଠନରେ ମନ ଦେଇଥିଲେ । ପ୍ରଫେସର ପଠାଣି ପଟ୍ଟନାୟକଙ୍କ ନେତୃତ୍ୱରେ ଗଢି ଉଠିଥିବା ସାହିତ୍ୟ ସଂଗଠନ "ଅଭ୍ୟୁଦୟ ସାହିତ୍ୟ ସମାଜ"ର ଅଗ୍ରଣୀ ସଂଗଠକ ଭାବରେ ନିଜକୁ ସଂଯୁକ୍ତ କରିଥିଲେ । ଏହି ସଂଗଠନରେ ଅଧ୍ୟାପକ ଦେବେନ୍ଦ୍ର ମହାନ୍ତି, ଉତିନ୍ କୁମାର ମହାନ୍ତି, କିଶୋର ପୃଷ୍ଟି, ନଗେନ୍ଦ୍ରନାଥ ପ୍ରଧାନ, ଶ୍ୟାମପ୍ରସାଦ ମିଶ୍ର, ଗଙ୍ଗାଧର ବଳ, ବିଜୟାନନ୍ଦ

ଦାସ, ରବୀନ୍ଦ୍ର କୁମାର ପ୍ରହରାଜ, କ୍ଷେତ୍ରବାସୀ ନାୟକ, କୃଷ୍ଣଚନ୍ଦ୍ର ମହାନ୍ତି, ରାମଚନ୍ଦ୍ର ନନ୍ଦ ପ୍ରଭୃତି ସଦସ୍ୟ ଥିଲେ ଏବଂ ସାଧାରଣ ସଂପାଦକ ଓ ପ୍ରକାଶନ ପରିଚାଳକ ପ୍ରଭୃତି ଗୁରୁ ଦାୟିତ୍ୱ ତୁଲାଇ ଥିଲେ ଶ୍ରୀଯୁକ୍ତ ରାଉତ । ଅନୁଷ୍ଠାନ ତରଫରୁ ମେହେର ଆଲୋକ, ଭାରତୀୟ ସାହିତ୍ୟରେ ରହସ୍ୟବାଦ, ଓଡ଼ିଆ ଉପନ୍ୟାସ ସାହିତ୍ୟର ପରିଚୟ ପରି ମହତ୍ୱପୂର୍ଣ୍ଣ ବୃହତ ଗ୍ରନ୍ଥଗୁଡ଼ିକ ପ୍ରକାଶିତ ହୋଇଥିଲା । ଯାହାର ସଂପାଦନା ପ୍ରକାଶନ ପରିଚାଳନା ପ୍ରଭୃତି କ୍ଷେତ୍ରରେ ଶ୍ରୀଯୁକ୍ତ ରାଉତଙ୍କ ଭୂମିକା ଥିଲା ଗୁରୁତ୍ୱପୂର୍ଣ୍ଣ ।

ଅଧ୍ୟାପନା ଜୀବନ, ସାଂସାରିକ ଜଞ୍ଜାଳ ଓ ଶିକ୍ଷକ ସଂଘର ଗୁରୁଦାୟିତ୍ୱ ବହନ କରି ସାହିତ୍ୟ ରଚନା ଓ ସାହିତ୍ୟିକ ସଂଗଠନ ସହିତ ତାଙ୍କର ସଂପର୍କ କ୍ରମେ ଶିଥିଳ ହୋଇଯାଇଥିଲା । ଚାକିରିରୁ ଅବସର ନେବାପରେ ପୁଣି ଯୋଡି ହୋଇଗଲେ ସାହିତ୍ୟ ରଚନା, ସଂପାଦନା ଓ ସାଂସ୍କୃତିକ ସଂଗଠନରେ । ଜଗତସିଂହପୁର ପୁସ୍ତକ ମେଳା , ଜିଲ୍ଲା ମହୋତ୍ସବ ପ୍ରଭୃତି ଅନୁଷ୍ଠାନର ସଂଗଠକ ଓ ସାହିତ୍ୟ ପତ୍ର ସଂପାଦନାରେ ମନୋନିବେଶ କରି ପରବର୍ତ୍ତୀ ପର୍ଯ୍ୟାୟରେ ୨୦୦୩ ମସିହାରେ 'ଜଗତସିଂହପୁର : ଅତୀତ ଓ ବର୍ତ୍ତମାନ' ନାମରେ ବିରାଟ ଇତିହାସ ସଂକଳନ, ସଂପାଦନାର ଦାୟିତ୍ୱ ନେଇ ନିଜର ନିଷ୍ଠା ଓ ପରାକାଷ୍ଠା ପ୍ରଦର୍ଶନ କରିଛନ୍ତି ।

*ନାଟ୍ୟ ସଂଗଠନ-*

ସାଂସ୍କୃତିକ କାର୍ଯ୍ୟକ୍ରମ ଯଥା ନାଟ୍ୟସଂଗଠନ ପ୍ରତି ତାଙ୍କର ଦୁର୍ବଳତା ଥିଲା ରକ୍ତଗତ । ନିଜ ଗ୍ରାମରେ ଜାଗର ଯାତ୍ରାରେ ହେଉଥିବା ମହାଭାରତ ଲୀଳାରେ ନିଜ ଜେଜେବାପା ବାଳକୃଷ୍ଣ ରାଉତଙ୍କ ଭୀମ ଭୂମିକାରେ ଅଭିନୟ ତାଙ୍କୁ ମୁଗ୍ଧ କରିଥିଲା । ତାଙ୍କର ବାପା ଶ୍ରୀଯୁକ୍ତ ବୃନ୍ଦାବନ ରାଉତ ମଧ୍ୟ ଏକ ଯାତ୍ରାଦଳ ଗଢିଥିଲେ । ଷଷ୍ଠ ଶ୍ରେଣୀରେ ପାଠପଢୁଥିବା ସମୟରେ ଶ୍ରୀରାଉତ ରଚନା କରିଥିବା 'ଚାଣକ୍ୟ' ଏକାଙ୍କିକା କେତେକ ବିଦ୍ୟାଳୟରେ ଅଭିନୀତ ହୋଇଥିଲା । ନବମ ଶ୍ରେଣୀରେ ପଢୁଥିବା ସମୟରେ ଅଲଣାହାଟ ହାଇସ୍କୁଲର ନାଟକରେ ଅଭିନୟ କରୁଥିଲେ । ଖ୍ରୀଷ୍ଟ କଲେଜରେ ମଧ୍ୟ ଅଭିନୟ କରିବା ସହିତ ସାଙ୍ଗଠନିକ ଦକ୍ଷତା ପ୍ରଦର୍ଶନ କରିଥିଲେ । କଲେଜ ନାଟ୍ୟ ସଂସଦର ସଂପାଦକ ଭାବରେ ସେ ଉଭୟ ଖ୍ରୀଷ୍ଟ ଓ ରେଭେନ୍‌ସା କଲେଜରେ ନିର୍ବାଚିତ ହୋଇଥିଲେ । ନବନାଟ୍ୟ ଆନ୍ଦୋଳନର ସୂତ୍ରଧର ହେମନ୍ତ ଦାସ, ବିଶ୍ୱଜିତ୍ ଦାସ, ଅନନ୍ତ ମହାପାତ୍ର, ମନୋରଞ୍ଜନ ଦାସ, ଗୋପାଳ ଛୋଟରାୟ ଓ କମଳଲୋଚନ ମହାନ୍ତି ପ୍ରଭୃତିଙ୍କ ସହିତ ତାଙ୍କର ସଂପର୍କ ଥିଲା ଛାତ୍ର ଅବସ୍ଥାରୁ । ଖ୍ରୀଷ୍ଟ

କଲେଜରେ ପଢିବା ବେଳେ ତାଙ୍କ ରଚିତ "ଚଲା ବଉଦ" ବେତାର ନାଟକ ୧୯୫୯-୬୦ମସିହାରେ ସର୍ବଭାରତୀୟ ସ୍ତରରେ ଦ୍ୱିତୀୟ ସ୍ଥାନ ଅଧିକାର କରିବା ସହିତ ଖ୍ରୀଷ୍ଟ କଲେଜରେ ଅଭିନୀତ ହୋଇଥିଲା ଓ କଲେଜ ମୁଖପତ୍ରରେ ଛପାଯାଇଥିଲା । କମ୍ପୋଷ୍ଟ ଅଫିସର ଥିବାବେଳେ ବିଭିନ୍ନ ପ୍ରଦର୍ଶନୀରେ ସେ ତାଙ୍କର ସ୍ୱରଚିତ ଏକାଙ୍କିକା ମଞ୍ଚସ୍ଥ କରାଇ ଜନସଚେତନତା ସୃଷ୍ଟି କରାଉଥିଲେ । ଅବନୀ ବରାଳଙ୍କ ସହିତ ପରିଚୟ ହେବା ସମୟରେ ତାଙ୍କର ଜନତା ରଙ୍ଗମଞ୍ଚ ସହିତ ସଂପର୍କ ବଢିଥିଲା ଏବଂ କଳାକାରମାନଙ୍କ ଜୀବନୀକୁ ନେଇ କିଛି କିଛି ଲେଖାଲେଖି କରିଥିଲେ । ରେଭେନ୍ସାରେ ପଢିବା ସମୟରେ ସେ ଥିଲେ ନାଟ୍ୟସଂସଦର ସଂପାଦକ, ଓ କବିଚନ୍ଦ୍ର କାଳୀ ଚରଣ ପଟ୍ଟନାୟକଙ୍କ 'ଉତ୍କଳ ନାଟ୍ୟସଂଘ'ର ଯୁଗ୍ମ ସଂପାଦକ । ନାଟକ ସଂଗଠନରେ ଅଗ୍ରଣୀ ଭୂମିକା ଗ୍ରହଣ କରି ଓଡ଼ିଶୀ ନାଟକର ଶାସ୍ତ୍ରୀୟ ମାନ୍ୟତା ପାଇଁ ପ୍ରତ୍ୟକ୍ଷ ଆନ୍ଦୋଳନରେ ଯୋଗଦେଇଥିଲେ । ଏହିସମୟରେ ତାଙ୍କର "ଆଗନ୍ତୁକ", "ଅସମାପ୍ତ ସଂଳାପ" ଓ 'ସତରବର୍ଷ ତଳେ' ପ୍ରଭୃତି ନାଟକ ଜନତା ରଙ୍ଗମଞ୍ଚରେ ଅଭିନୀତ ହୋଇଥିଲା । କାଳୀଚରଣ ପଟ୍ଟନାୟକଙ୍କ ଅନୁରୋଧ କ୍ରମେ ଓଡ଼ିଶା ସଂଗୀତ ଏକାଡେମୀର ସଂପାଦକ ଗୌରୀକୁମାର ବ୍ରହ୍ମା ଶ୍ରୀଯୁକ୍ତ ରାଉତଙ୍କୁ ସ୍କଲାର ସିପ୍ ଦେଇ ଅଭିନୟ ଶିଖିବା ପାଇଁ ବମ୍ବେ ପଠାଇବାର ବ୍ୟବସ୍ଥା କରିଥିଲେ । ମାତ୍ର ବମ୍ବେ ଫେରନ୍ତା ବିଶିଷ୍ଟ ଅଭିନେତା ବ୍ୟୋମକେଶ ତ୍ରିପାଠୀଙ୍କ ପରାମର୍ଶ କ୍ରମେ ସେ ଏଥିରୁ ମନ ଫେରାଇଲେ ।

### *ଅଳକା କଳାମଣ୍ଡପ-*

ଜଗତସିଂହପୁରରେ ଚାକିରି ଜୀବନରେ ଅବସ୍ଥାନ କରିବା ସମୟରେ ଡାକ୍ତର କଳ୍ପତରୁ ବିଶ୍ୱାଳଙ୍କ ନେତୃତ୍ୱରେ ୧୯୬୫ମସିହାରେ ପ୍ରତିଷ୍ଠିତ ହୋଇଥିଲା ଅଳକା କଳାମଣ୍ଡପ । ଏହାର ସଭାପତି ଶ୍ରୀପତି ନନ୍ଦ ଓ ଉପସଭାପତି କଳ୍ପତରୁ ବିଶ୍ୱାଳ ଏବଂ ସାଧାରଣ ସଂପାଦକ ଥିଲେ ଭୋଳାନାଥ ରାଉତ । ସୋମନାଥ ମହାପାତ୍ର, ସୁରପ୍ରସାଦ ମହାପାତ୍ର, ଶୁକଦେବ ପାଣି, ହରେକୃଷ୍ଣ ମହାରଣା ପ୍ରଭୃତିଙ୍କୁ ନେଇ ଏହି ଅନୁଷ୍ଠାନ ସଂଗୀତ, ନୃତ୍ୟ ପ୍ରଭୃତି ବିଭିନ୍ନ କଳା ଓ ସଂସ୍କୃତିର ଉତ୍କର୍ଷ ଶିକ୍ଷା ପ୍ରଦାନ କରିବା ସହିତ ବାର୍ଷିକ ସାଂସ୍କୃତିକ କାର୍ଯ୍ୟକ୍ରମରେ ନାଟକ ପ୍ରଦର୍ଶନରେ ଜଗତସିଂହପୁରରେ ଏକ ନୂତନ ଅଧ୍ୟାୟ ସୃଷ୍ଟି କରିଥିଲେ । କଲେଜରେ ଛାତ୍ର/ଛାତ୍ରୀ ଓ ଅଧ୍ୟାପକ କର୍ମଚାରୀମାନଙ୍କୁ ନେଇ ନାଟକ କରାଇବାରେ ତାଙ୍କର ନାଟ୍ୟପ୍ରେମର ନିଦର୍ଶନ ମିଳେ ।

## *ଜଗତସିଂହପୁର୍ ପୁସ୍ତକମେଳା ଓ ଜିଲ୍ଲାମହୋତ୍ସବ -*

ଜଗତସିଂହପୁର ମହାବିଦ୍ୟାଳୟରୁ ବଦଳି ହୋଇଗଲାପରେ ଦୀର୍ଘଦିନ ଧରି ଜଗତସିଂହପୁର ସାଂସ୍କୃତିକ ପଟ୍ଟଭୂମିରୁ ନିଜକୁ ଦୂରେଇ ରଖିଥିଲେ । ଅବସର ଗ୍ରହଣ କରି ପୁନର୍ବାର ନିଜର ଜଗତସିଂହପୁରସ୍ଥ ବାସଭବନରେ ଅବସ୍ଥାନ କଲାବେଳେ ଜଣେ କର୍ମନିଷ୍ଠ ମଣିଷ ଭାବରେ ଚୁପ୍ ରହିପାରିଲେ ନାହିଁ । ଚାଲିଲା ସାହିତ୍ୟ ସାଧନା, ବହୁ ଉପାଦେୟ ପୁସ୍ତକ ରଚନା ଧାରା ମଧ୍ୟରେ ବୁଡ଼ିରହିଥିବା ସମୟରେ ୧୯୯୩ ମସିହାରେ ଜଗତସିଂହପୁର ସବ୍‌ଡିଭିଜନ୍‌ଟି ଜିଲ୍ଲା ମାନ୍ୟତା ପ୍ରାପ୍ତ ହେଲା । ୨୦୦୦ରେ ଶ୍ରୀଯୁକ୍ତ ମହେନ୍ଦ୍ର ଆଗ୍ରର୍ଯ୍ୟ, କୁଳମଣି ଦାଶ, ହେମନ୍ତ ରଥ, ଉତ୍କଳ ରଞ୍ଜନ ମହାନ୍ତି, ପ୍ରଦିପ୍ତ କିଶୋର ଚୌଧୁରୀ, ଭଗବାନ ଦାଶ, ଅମ୍ବିକା ପ୍ରସାଦ ମହାନ୍ତି, ମହେନ୍ଦ୍ର ଚାନ୍ଦ, ଗୋପାଳ ମିଶ୍ର, ପ୍ରଭୃତି ଉଦୀୟମାନ ବ୍ୟକ୍ତିବର୍ଗଙ୍କ ନେତୃତ୍ବରେ ଗଢ଼ିଉଠିଲା ଜଗତସିଂହପୁର ସାଂସ୍କୃତିକ ପରିଷଦ । ଏହି ଅନୁଷ୍ଠାନ ମାଧ୍ୟମରେ ପୁସ୍ତକମେଳା ଓ ଜିଲ୍ଲା ମହୋତ୍ସବ ଅନୁଷ୍ଠିତ ହେଲା ସ୍ଥାନୀୟ ବିଧାୟକ ବିଷ୍ଣୁଦାସଙ୍କ ସହଯୋଗରେ । ଶ୍ରୀଯୁକ୍ତ ରାଉତ ଏହି ଅନୁଷ୍ଠାନର କୌଣସି ପଦପଦବିରେ ନରହି ସହଯୋଗ କରିବା ପାଇଁ ସର୍ତ୍ତ ରଖିଥିଲେ ମଧ୍ୟ ସବୁକ୍ଷେତ୍ରରେ ସେ ଅଗ୍ରଣୀ ଭୂମିକା ନିର୍ବାହ କରି ଆସୁଛନ୍ତି ଏବଂ ଏହି ଦୁଇ ଅନୁଷ୍ଠାନର ମୁଖପତ୍ରର ମୁଖ୍ୟ ସଂପାଦକ ଭାବରେ ଗୁରୁଦାୟିତ୍ୱ ନିର୍ବାହ କରି ଜଗତସିଂହପୁର ଜିଲ୍ଲାର ଉତ୍ତରପିଢ଼ିପାଇଁ ଉପହାର ଦେଇଛନ୍ତି ବହୁ ତତ୍ତ୍ୱ ଓ ତଥ୍ୟ ସମ୍ବଳିତ ରଚନାବଳି । ପରିଶେଷରେ ଏହି ମୂଳ ଭିତ୍ତି ଉପରେ ଛିଡ଼ା ହୋଇଛି 'ଜଗତସିଂହପୁର: ଅତୀତ ଓ ବର୍ତ୍ତମାନ' ଭଳି ବୃହତ ସଂକଳନ ।

## *ନାଟ୍ୟଗ୍ରର୍ଯ୍ୟ ବାଳକୃଷ୍ଣ ଜୟନ୍ତୀ*

୧୯୭୪ ମସିହାରେ ଓଡ଼ିଶାର ପୂର୍ବତନ ମୁଖ୍ୟମନ୍ତ୍ରୀ ଡକ୍ଟର ହରେକୃଷ୍ଣ ମହତାବଙ୍କ ସଭାପତିତ୍ୱରେ ଗଢ଼ିଉଠିଥିଲା ନାଟ୍ୟାଗ୍ରର୍ଯ୍ୟ କବିବାଳକୃଷ୍ଣ ମହାନ୍ତିଙ୍କ ସ୍ମୃତି କମିଟି । ଏହି ଅନୁଷ୍ଠାନର ଉପସଭାପତି ଥିଲେ ଉଦୟ ନାଥ ଷଡ଼ଙ୍ଗୀ ଓ ଡାକ୍ତର ଜେନାମଣି ନରେନ୍ଦ୍ର କୁମାର । ଯୁଗ୍ମ ସଂପାଦକ ଥିଲେ ରୁଦ୍ରମହାନ୍ତି ଓ ଯୋଗେନ୍ଦ୍ରନାଥ ଷଡଙ୍ଗୀ । ସ୍ୱାଧୀନତା ସଂଗ୍ରାମୀ ବିଶ୍ୱମ୍ବର ପରିଡ଼ା ଥିଲେ ଏହି ଅନୁଷ୍ଠାନର କୋଷାଧ୍ୟକ୍ଷ । ଶ୍ରୀକୃଷ୍ଣ ଏକାଡେମୀ ପରିସରରେ ଅନୁଷ୍ଠାନର ଜିଲ୍ଲାସ୍ତରୀୟ ଜୟନ୍ତୀ ସଭାରେ ମୁଖ୍ୟବକ୍ତା ଭାବରେ ଯୋଗଦାନ କରିଥିଲେ ଡକ୍ଟର ଭୋଳାନାଥ ରାଉତ । ଏହି କମିଟିର ପଳାଶୋଳ ଠାରେ ଅନୁଷ୍ଠିତ ସ୍ମୃତି ସଭାରେ କାଳୀଚରଣ ପଟ୍ଟନାୟକ ଓ ନନ୍ଦିନୀ ଶତ୍‌ପଥୀ ଯୋଗଦେଇ ଥିଲେ । 'ଓଡ଼ିଆ

ଯାତ୍ରାଜଗତକୁ ବାଳକୃଷ୍ଣ ମହାନ୍ତିଙ୍କ ଅବଦାନ' ଶୀର୍ଷକ ପ୍ରବନ୍ଧ ପାଠ କରିଥିଲେ ଶ୍ରୀଯୁକ୍ତ ରାଉତ । ଜଗତସିଂହପୁରରେ ୧୯୮୨ମସିହାରେ ସ୍ୱାତୀ ରଙ୍ଗମଞ୍ଚରେ ବାଳକୃଷ୍ଣ ସ୍ମୃତି କମିଟିର ଜୟନ୍ତୀ ଉତ୍ସବ ସହିତ ନାଟ୍ୟକାରଙ୍କ ରଚିତ କେତେକ ନାଟକ ଅଭିନୟ ମଞ୍ଚସ୍ଥ କରାଯାଇଥିଲା । ଏହି କମିଟିର ସାଧାରଣ ସଂପାଦକ ଭାବରେ ଦାୟିତ୍ୱ ନିର୍ବାହ କରିଥିଲେ ଅଧ୍ୟାପକ ରାଉତ ଏବଂ ପରବର୍ତ୍ତୀ ପର୍ଯ୍ୟାୟରେ ପଳାଶୋଳଠାରେ ନାଟ୍ୟାଗ୍ରର୍ଯ୍ୟଙ୍କ ସ୍ମୃତି କମିଟିରେ ଗଗନ ବିଶ୍ୱାଳ ସଂପାଦକ ଓ ଭୋଳାନାଥ ରାଉତ ସଭାପତି ଭାବରେ ଅନେକ ଦିନ କାର୍ଯ୍ୟ କରିଛନ୍ତି ।

## *ଶ୍ରୀପତିନନ୍ଦ ସ୍ମୃତି କମିଟି*

ସ୍ୱାମୀ ବିବେକାନନ୍ଦ ସ୍ମାରକ ମହାବିଦ୍ୟାଳୟର ପ୍ରତିଷ୍ଠାତା ସଂପାଦକ ଶ୍ରୀପତି ନନ୍ଦଙ୍କ ଦେହାବସାନ ହୁଏ ୨.୫.୧୯୭୮ମସିହାରେ । ଏହିଦିନ ତତ୍‌କାଳୀନ ଅଧ୍ୟକ୍ଷ ଭୋଳାନାଥ ରାଉତଙ୍କୁ ଦାୟିତ୍ୱ ଦେଇ ଛୁଟିରେ ଥାଆନ୍ତି । ତେଣୁ ଶ୍ରୀଯୁକ୍ତ ରାଉତଙ୍କ ତତ୍ତ୍ୱାବଧାନରେ ଶ୍ରୀପତି ନନ୍ଦଙ୍କ ମରଶରୀରକୁ କଲେଜ କ୍ୟାମ୍ପସ୍‌କୁ ଅଣାଯାଇ ଶ୍ରଦ୍ଧାଞ୍ଜଳି ଦିଆଯାଇଥିଲା ଏବଂ ତାଙ୍କ ଉଦ୍ଦେଶ୍ୟରେ ଏକ ସ୍ମୃତି କମିଟି ଗଠନ କରାଯାଇ ପ୍ରସ୍ତାବ ସ୍ୱରୂପ ତାଙ୍କର ପ୍ରତିମୂର୍ତ୍ତି ଉନ୍ମୋଚନ, ତାଙ୍କ ନାମରେ କଲେଜ ପାଠାଗାରର ନାମକରଣ ଏବଂ ତାଙ୍କ ଉଦ୍ଦେଶ୍ୟରେ ଏକ ସ୍ମରଣିକା ପ୍ରକାଶନର ବ୍ୟବସ୍ଥା ହୋଇଥିଲା । ଏହି କମିଟିର ସଭାପତି ଥିଲେ ଡକ୍ଟର ସଦାଶିବ ମିଶ୍ର । କୋଷାଧ୍ୟକ୍ଷ ଡାକ୍ତର କଳ୍ପତରୁ ବିଶ୍ୱାଳ, ସାଧାରଣ ସଂପାଦକ ସୋମନାଥ ମହାପାତ୍ର ୧୯୭୯ ମେ ୨ତାରିଖ ତାଙ୍କ ଶ୍ରାଦ୍ଧ ବାର୍ଷିକରେ ପ୍ରକାଶିତ ସ୍ମରଣିକାର ସଂପାଦକ ଥିଲେ ଡକ୍ଟର ଭୋଳାନାଥ ରାଉତ ଓ କବି ନିତ୍ୟାନନ୍ଦ ନାୟକ ।

ଅବସର ଗ୍ରହଣ ପରେ ଶ୍ରୀଯୁକ୍ତ ରାଉତ ମାଳତୀ ଚୌଧୁରୀଙ୍କ ଜନ୍ମ ଶତବାର୍ଷିକିର ମୁଖପତ୍ର "ବିପ୍ଳବିଣୀ ମାଳତୀ ଚୌଧୁରୀ," "ଜାତୀୟ କବି ବୀରକିଶୋର" ସ୍ମରଣିକା ସ୍ୱାଧୀନତା "ସଂଗ୍ରାମୀ ବିଶ୍ୱମ୍ବର ପରିଡ଼ା" ଏବଂ "ପ୍ରିୟନାଥ ଦେ"ଙ୍କ ଅଭିନନ୍ଦନିକା ପ୍ରଭୃତିର ମୁଖ୍ୟ ସଂପାଦକ ଭାବରେ ଦାୟିତ୍ୱ ନିର୍ବାହ କରି ପୂଜ୍ୟପୂଜାର ନିଦର୍ଶନ ରଖିଯାଇଛନ୍ତି ।

## *ଆଧ୍ୟାତ୍ମିକ ଉତ୍ତରଣ-*

ବାଲ୍ୟକାଳରୁ ଜଣେ ଓଡ଼ିଆ ହିନ୍ଦୁପରିବାର ପୁଅ ହିସାବରେ ତାଙ୍କ ପରିବାରରେ ଅନୁଷ୍ଠିତ ହେଉଥିବା ଅନନ୍ତବ୍ରତ, ଦଶହରାର ଦୁର୍ଗାପୂଜା ଇତ୍ୟାଦି ବାରମାସର ତେରପର୍ବରେ

ଉଦ୍ଦିଷ୍ଟ ଦେବାଦେବୀଙ୍କ ପ୍ରତି ଭକ୍ତି ଉତ୍ସର୍ଗ କରି ଆସୁଥିବା ଶ୍ରୀଯୁକ୍ତ ରାଉତ ଗାଁ ଇଷ୍ଟଦେବ ନନ୍ଦିକେଶ୍ୱର ମହାଦେବଙ୍କ ପ୍ରତି ଭକ୍ତି ପ୍ରକାଶ କରୁଥିଲେ । କ୍ଷତ୍ରିୟ ପରିବାରର ପରଂପରା କ୍ରମେ ନିଜ ପରିବାରରେ ଦୁର୍ଗାପୂଜା (ଉଭୟ ଶାରଦୀୟ ଓ ବାସନ୍ତୀ) ବିଧିବିଧାନ ସହ କରି ଆସୁଥିଲେ ପର୍ଯ୍ୟାୟ କ୍ରମେ ଜଣେ ପୁଲିସ୍ ଅଧିକାରୀ ଓ ମାତୃଶକ୍ତିର ସାଧକ ସ୍ୱର୍ଗତ ଅମ୍ବିକା ପ୍ରସାଦ ଦାସଙ୍କ ସାହାଚର୍ଯ୍ୟ ଶକ୍ତି ଆରଧନା ପାଇଁ ତାଙ୍କର ହାର୍ଦ୍ଦିକ ରୁଚି ବୃଦ୍ଧି କରିଥିଲା । ଜଗତସିଂହପୁରରେ ଚାକିରି କରିବା ପରେ ତାଙ୍କ ଉପରେ ଡାକ୍ତର କଳ୍ପତରୁ ବିଶ୍ୱାଳଙ୍କ ଆଧ୍ୟାତ୍ମିକ ରୁଚିର ପ୍ରଭାବ ପଡ଼ିଥିଲା । ଡାକ୍ତର ବିଶ୍ୱାଳ ଥିଲେ ଶ୍ରୀମା ଶ୍ରୀ ଅରବିନ୍ଦଙ୍କ ଭକ୍ତ । ତାଙ୍କ ନେତୃତ୍ୱରେ ଜଗତସିଂହପୁର ଅରବିନ୍ଦ ପାଠଚକ୍ର ଗଢିଉଠିଥିଲା । ରାମକୃଷ୍ଣ ଦାସ ବାବାଜୀ ମହାରାଜାଙ୍କ ପ୍ରେରଣାରେ କଟକରୁ ଲଳିତ ମୋହନ ଘୋଷ, ରଘୁନାଥ ମହାନ୍ତି, ନରେନ୍ଦ୍ର କିଶୋର ଦାସ ପ୍ରଭୃତି ମୋଟର ଆସୋସିଏସନ୍‌ର ଏକ ଝାଟିମାଟି ଘରେ ୧୯୬୧ ମସିହାରେ ଆରମ୍ଭ କରିଥିଲେ ଅରବିନ୍ଦ ପାଠଚକ୍ର । ଜଗନ୍ନାଥ ମହାନ୍ତି, ମନୀନ୍ଦ୍ର ନାଥ ଘୋଷ, କଳ୍ପତରୁ ବିଶ୍ୱାଳ, ଖଗେନ୍ଦ୍ରନାଥ ଚୌଧୁରୀ, ଲିଙ୍ଗରାଜ ଦାସ, କାମିନୀ ବିଶ୍ୱାଳ, ଶୈଳବାଳା ମହାପାତ୍ର, ରଘୁନାଥ ମହାପାତ୍ର, ସରୋଜିନୀ ମହାପାତ୍ର, ଉତ୍କଳ ଚୌଧୁରୀ, ବିଶ୍ୱମ୍ଭର ମହାନ୍ତି, ଗୋପୀନାଥ ମହାପାତ୍ର ଓ ସୁଦର୍ଶନ ପଟ୍ଟନାୟକ ପ୍ରଭୃତି ଅନେକ ଭକ୍ତ ଏହି ପାଠଚକ୍ରରେ ଯୋଗ ଦେଉଥିଲେ । ୧୯୬୭-୭୦ ମସିହାରେ ଅନୁଷ୍ଠାନର ସ୍ଥାୟୀ ଗୃହ ନିର୍ମାଣ ଯୋଜନା ଫଳବତୀ ହୋଇଥିଲା । ୯.୧୨.୧୯୭୦ ଏହି ପୀଠରେ ଶ୍ରୀ ଅରବିନ୍ଦଙ୍କ ପବିତ୍ର ଦେହାବଶେଷ ପଣ୍ଡିଚେରୀରୁ ଅଣାଯାଇ ସ୍ଥାପନ କରାଗଲା । ଏହି ଉଦ୍ଦେଶ୍ୟରେ ଯେଉଁ ଅଭ୍ୟର୍ଥନା କମିଟି ଗଠିତ ହୋଇଥିଲା ରାମସ୍ୱାମୀ ସେନାପତି ଏହାର ସଭାପତି ଥିବାବେଳେ ସାଧାରଣ ସଂପାଦକ ଭାବରେ ସମସ୍ତ ସାଙ୍ଗଠନିକ ଦାୟିତ୍ୱ ବହନ କରିଥିଲେ ଭୋଳାନାଥ ରାଉତ । ଭୁବନେଶ୍ୱର ବିମାନ ବନ୍ଦରରୁ ଗାଡ୍ଅଫ୍ ଅନର ସହିତ ଜଗତସିଂହପୁରକୁ ଦେହାବଶେଷ ଆଣିବାରେ ବହୁ ବାଧାବିଘ୍ନକୁ ଭ୍ରୂକ୍ଷେପ ନକରି ସମିତି ଯେଉଁ ସଫଳତା ଲାଭ କରିଥିଲା ସେଥିରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଥିଲା ତାଙ୍କର । ଏହି ଅବସରରେ ନିଜ ସଂପାଦିତ ଏକ ସ୍ମରଣିକା ମଧ୍ୟ ପ୍ରକାଶ କରିଥିଲେ ଶ୍ରୀରାଉତ ।

ପରେ ଏହି ଅନୁଷ୍ଠାନଟିର ଉତ୍ତରୋତ୍ତର ଉନ୍ନତି ଘଟି ୩୦.୮.୧୯୯୦ମସିହାରେ ଶ୍ରୀ ଅରବିନ୍ଦପୂର୍ଣ୍ଣଙ୍କ ଶିକ୍ଷାକେନ୍ଦ୍ରରେ ପରିଣତ ହୋଇଛି । ଶେଷ ଜୀବନ ପର୍ଯ୍ୟନ୍ତ ଡାକ୍ତର କଳ୍ପତରୁ ବିଶ୍ୱାଳ ଏହାର ସୁପରିଚାଳନା କରି ଆସୁଥିଲେ । ତାଙ୍କ ସହିତ ଶ୍ରୀଯୁକ୍ତ ରାଉତ ଜଗତସିଂହପୁର ଜିଲ୍ଲାର ବିଭିନ୍ନ କେନ୍ଦ୍ରରେ ଶ୍ରୀ ଅରବିନ୍ଦ ପାଠଚକ୍ରର ଆୟୋଜନ ଓ ବିଭିନ୍ନ ପାଠଚକ୍ରରେ

ଯୋଗଦାନ କରିବା ସହିତ ଜଗତସିଂହପୁର କଲେଜ ଏବଂ ବାଙ୍କି କଲେଜରେ ଥିବା ସମୟରେ କଲେଜ ପରିସରରେ ବିଭିନ୍ନ ସମୟରେ ପଣ୍ଡିଚେରୀ ଆଶ୍ରମରୁ ପ୍ରମୁଖ ପ୍ରବକ୍ତାମାନଙ୍କୁ ନିମନ୍ତ୍ରଣ କରି ପାଠଚକ୍ରର ଆୟୋଜନ କରାଉଥିଲେ । ଏବେ ମଧ୍ୟ ଶ୍ରୀରାଉତ ପ୍ରତିବର୍ଷ ବିଭିନ୍ନ ସମୟରେ ଶ୍ରୀମା ଶ୍ରୀ ଅରବିନ୍ଦଙ୍କ ଦର୍ଶନ ନିମନ୍ତେ ଅରବିନ୍ଦ ନିବାସରେ ଉପସ୍ଥିତ ହୁଅନ୍ତି ।ଶିକ୍ଷକ ମହାସଂଘର ନେତୃତ୍ୱ ନେବା ସହିତ ଅନ୍ୟାନ୍ୟ ଜଞ୍ଜାଳ ତଥା ଚାକିରି ଜୀବନରେ ବିଭିନ୍ନ ସ୍ଥାନକୁ ବଦଳିହୋଇ ଯିବା କାରଣରୁ ଅରବିନ୍ଦ ନିବାସରେ ପୂର୍ବବତ ସମୟ ଦେଇ ପାରିଲେ ନାହିଁ ।

ଭୋଳାନାଥ ରାଉତଙ୍କ ଆଧ୍ୟାତ୍ମିକ ଜୀବନାଦର୍ଶ ସଂପର୍କରେ ଆଲୋଚନା କରାଗଲାବେଳେ ମା' ଚିନ୍ମୟୀ ଟ୍ରଷ୍ଟ ସଂପର୍କରେ ଆଲୋଚନା ନକଲେ ତାହା ଅଧା ରହିଯିବ । କଟକ ଜିଲ୍ଲାର ଦେବୀନଦୀ ତଟସ୍ଥ ପଲ୍ଲୀଗ୍ରାମ ଶାସନପଦା; ଯେଉଁଠାରେ ମା' ଚିନ୍ମୟୀଙ୍କର ଆବିର୍ଭାବ ଓ ମହିମା ବିସ୍ତାର ହୋଇଥିଲା । ଶ୍ରୀଯୁକ୍ତ ରାଉତ ତାଙ୍କର ଜଣେ ପ୍ରିୟ ଛାତ୍ର ସ୍ୱର୍ଗତ ରାମଚନ୍ଦ୍ର ମହାନ୍ତିଙ୍କ ଠାରୁ ମା'ଙ୍କ ମହିମା ସଂପର୍କରେ ଅବଗତ ହୋଇ ତାଙ୍କ ସହିତ ମା'ଙ୍କର ଦର୍ଶନ ନିମନ୍ତେ ଉପସ୍ଥିତ ହୋଇଥିଲେ । ପ୍ରଥମ ଦର୍ଶନରୁ ମା'ର ସାନିଧ୍ୟ ପ୍ରାପ୍ତି ପରେ ଅଦ୍ୟାବଧି ମା'ଙ୍କର ଜଣେ ପରମ ଭକ୍ତ ଭାବରେ ନିଜର ଆଧ୍ୟାତ୍ମିକ ପିପାସାର ଚରିତାର୍ଥ କରୁଛନ୍ତି । ଶୈବ, ଶାକ୍ତ, ବୈଷ୍ଣବ ସ୍ତରରୁ ଉନ୍ନିତ ତାଙ୍କର ଆଧ୍ୟାତ୍ମିକ ଭାବନା ଶ୍ରୀମା ଶ୍ରୀ ଅରବିନ୍ଦ ଦର୍ଶନ ଦେଇ ମା' ଚିନ୍ମୟୀଙ୍କ ଚରଣ କମଳରେ ଶରଣ ଲୋଡ଼ିଛି । ମା' ସହିତ ନିଜକୁ ଓତଃପ୍ରୋତ ଭାବରେ ଜଡ଼ିତ ରଖି ଚିନ୍ମୟୀ ଟ୍ରଷ୍ଟର ଅଗ୍ରଗତିରେ ସେ ସହଯୋଗ କରି ଆସିଛନ୍ତି । ଶାସନ ପଦାରୁ ମା' ବିଭିନ୍ନ ପ୍ରତିରୋଧର ଶିକାର ହୋଇ କଟକରେ ଅବସ୍ଥାନ କରନ୍ତି । କିଛି ଦିନ ପାଇଁ ବ୍ରହ୍ମଗିରିରେ ଅବସ୍ଥାନ କରନ୍ତି ତା'ପରେ କଟକ ରାଉସାପାଟଣାଠାରେ ଅବସ୍ଥାନ ଓ ଭଜନ, କୀର୍ତ୍ତନ ଆଦି କାର୍ଯ୍ୟକ୍ରମରେ ନିଜକୁ ମଜ୍ଜେଇ ରଖନ୍ତି । ପରବର୍ତ୍ତୀ ପର୍ଯ୍ୟାୟରେ ଯାଜପୁର ଜିଲ୍ଲାର ବନ୍ଧପଲ୍ଲୀ ଗ୍ରାମରେ ଚିନ୍ମୟୀ ଟ୍ରଷ୍ଟ ଗଠନ କରି ଏହି ପୀଠରେ ଅବସ୍ଥାନ କରୁଛନ୍ତି ମା' । ଏହି କ୍ଷେତ୍ରର ଜମି ବିବାଦ ସମାଧାନ ଠାରୁ ଗୃହନିର୍ମାଣ, ପ୍ରାର୍ଥନା ମଣ୍ଡପ ନିର୍ମାଣ, ମନ୍ଦିର ନିର୍ମାଣ, ଓ ପରିବେଶ ବିକାଶ ପର୍ଯ୍ୟନ୍ତ ସକଳ କ୍ଷେତ୍ରରେ ଶ୍ରୀରାଉତଙ୍କର ନେତୃତ୍ୱ ଓ କୃତିତ୍ୱ ପ୍ରତିଫଳିତ ହେଉଥିଲେ ମଧ୍ୟ ସେ ସବୁବେଳେ ସମସ୍ତ ଶ୍ରେୟ ମା'ଙ୍କୁ ହିଁ ଦେଇଥାନ୍ତି । ମା'ଙ୍କ ଇଚ୍ଛାରେ ଏ ସବୁ ସମ୍ଭବ ହେଉଛି ଏବଂ ମା' ଇଚ୍ଛା ନକଲେ କୌଣସି କାର୍ଯ୍ୟ ସମ୍ଭବ ନୁହେଁ ଏ ବିଶ୍ୱାସ କାୟମନ ବାକ୍ୟରେ ଅଙ୍ଗୀକାର କରିଛନ୍ତି ଶ୍ରୀ ରାଉତ ।

## *ସାହିତ୍ୟ ସେବା-*

ଶ୍ରୀଯୁକ୍ତ ରାଉତଙ୍କର ସହଜାତ ସାହିତ୍ୟ ପ୍ରତିଭା ଛାତ୍ର ଜୀବନରୁ ବାରି ହୋଇପଡ଼ିଥିଲା । ଷଷ୍ଠ ଶ୍ରେଣୀରେ 'ଚାଣକ୍ୟ' ନାଟକ ରଚନାରୁ । ଆଇ.ଏ. ପଢୁଥିବା ସମୟରେ ନାଟ୍ୟ ସଂସଦରେ କାର୍ଯ୍ୟକରିବା ସହ ବିଭିନ୍ନ ଗଳ୍ପ ପ୍ରବନ୍ଧ ପ୍ରଭୃତି ରଚନା କରି ପତ୍ର ପତ୍ରିକାରେ ପ୍ରକାଶନ କରିଥିଲେ । ଅଭ୍ୟୁଦୟ ସାହିତ୍ୟ ସମାଜର ପୂର୍ବୋକ୍ତ ପୁସ୍ତକ ସମୂହ ସଂକଳନ ମାଧ୍ୟମରେ ସାହିତ୍ୟ ସେବା କରି ଆସିଥିଲେ ଅଧ୍ୟାପକ ଥିବା ସମୟରେ ଜଗତସିଂହପୁର ଠାରେ ଖଗେନ୍ଦ୍ରନାଥ ଚୌଧୁରୀଙ୍କ ଭଡ଼ାଘରେ ଅଳକା ପ୍ରେସ୍ ପକାଇ ପରୋକ୍ଷ ସାହିତ୍ୟ ସେବା ଆରମ୍ଭ କରିଥିଲେ । ଉକ୍ତ ପ୍ରେସ୍‌ଟି ଓଡ଼ିଶାର ପ୍ରଖ୍ୟାତ କଥାକାର ମନୋଜ ଦାସଙ୍କ ଠାରୁ ତାଙ୍କର ଶ୍ୱଶୁର ଶ୍ରୀଯୁକ୍ତ ଧ୍ରୁବଚରଣ ମହାନ୍ତି କିଣିଦେଇ ତାଙ୍କୁ ଉପହାର ଦେଇଥିଲେ । ଯାହା ଫଳରେ ଉପନ୍ୟାସ ସାହିତ୍ୟ ପରିଚୟ ଠାରୁ ଆରମ୍ଭ କରି ବହୁ ପତ୍ରପତ୍ରିକା ପ୍ରକାଶିତ ହୋଇ ସାହିତ୍ୟ ଚର୍ଚ୍ଚାରେ ପ୍ରଗତି ଆଣିଥିଲା ।

ଏକିରି ଜୀବନ, ସଂସାର ଜଞ୍ଜାଳ, ବିଭିନ୍ନ ସାଂସ୍କୃତିକ ସଂଗଠନ ତଥା ଶିକ୍ଷକ ଆନ୍ଦୋଳନରେ ସମୟ ଦେଇ ସାହିତ୍ୟ ସାଧନାରେ ଅବହେଳା କରିଥିବା ଶ୍ରୀରାଉତ ପରବର୍ତ୍ତୀ କାଳରେ ଅବସର ଗ୍ରହଣ ପରେ ସାହିତ୍ୟ ସାଧନାରେ ବ୍ରତୀହୋଇ ବହୁ ମୂଲ୍ୟବାନ ଗ୍ରନ୍ଥ ପ୍ରଣୟନ କରି ଓଡ଼ିଶାର ବାଣୀଭଣ୍ଡାରକୁ ସମୃଦ୍ଧ କରିଛନ୍ତି । ଏକୁ ଆରେକ ବଳି ଏହି ସବୁ ଗ୍ରନ୍ଥର ଆକଳନ ନିମନ୍ତେ ସ୍ୱତନ୍ତ୍ର ଆଲୋଚନାର ଆବଶ୍ୟକତା ରହିଛି । ■

# ସଂସ୍କୃତି ପୁରୁଷ ଭୋଳାନାଥ ଓ ତାଙ୍କ ରଚନାବଳି

ଡକ୍ଟର ପ୍ରଦୀପ୍ତ କୁମାର ପଣ୍ଡା

ଆମ ସମୟର କୌଣସି ସାହିତ୍ୟ /ସଂସ୍କୃତି ସଙ୍ଗଠନ କଥା ପଡ଼ିଲେ ମନକୁ ଆସନ୍ତି ଡକ୍ଟର ଭୋଳାନାଥ ରାଉତ । ଜଗତସିଂହପୁର ସ୍ୱାମୀ ବିବେକାନନ୍ଦ ସ୍ମାରକୀ ମହାବିଦ୍ୟାଳୟରୁ ଆପଣାର କର୍ମମୟ ଜୀବନ ଆରମ୍ଭ କରି ପରବର୍ତ୍ତୀ ସମୟରେ ସେ ହୋଇ ଯାଇଛନ୍ତି ଜଗତସିଂହପୁର ଜିଲ୍ଲାର ସଂସ୍କୃତି ପୁରୁଷ । ଛାତ୍ରାବସ୍ଥାରୁ ସାଂଗଠନିକ କାର୍ଯ୍ୟରେ ଯୋଗଦେଇ ଆଜିଯାଏ (ଦେହ ଅବଶ ହେବା ପର୍ଯ୍ୟନ୍ତ) ଲାଗିରହିଛନ୍ତି ଭୋଳିସାର୍ । ତାଙ୍କର ବ୍ୟକ୍ତିଗତ ସାଂଗଠନିକ ଓ ସାଂସ୍କୃତିକ ଜୀବନଚର୍ଯ୍ୟା ଏଇ ସଂକଳନରେ ଅନେକ କରିଛନ୍ତି, କିନ୍ତୁ ମନେହୁଏ ସାର୍‌ଙ୍କ ବିଷୟରେ ଯେତେ ଲେଖିଲେ ବି ଯେମିତି କମ୍ ହୋଇଯିବ । କେଉଁଠୁ ଏତେ ଜୀବନ ପ୍ରେରଣା ଆସୁଥିଲା ତାଙ୍କର ସେଇ ଛୋଟ ଶରୀରଟିରୁ ! କାମଟିଏ ଆଦାୟ କରିବା ପାଇଁ ଦିନକ ଭିତରେ ପାଞ୍ଚଥର ଫୋନ୍ କରିବାକୁ ମଧ୍ୟ ସେ ପଛାନ୍ତି ନାହିଁ । ସାହିତ୍ୟ/ସଂସ୍କୃତି ସଂଗଠନ ଅପେକ୍ଷା ଅଖିଳ ଭାରତ ଓଡ଼ିଆ ଅଧ୍ୟାପକ ସମ୍ମେଳନ ପ୍ରସଙ୍ଗରେ ତାଙ୍କ ସହିତ କାର୍ଯ୍ୟ କରିବାର ସୁଯୋଗ ମୁଁ ପାଇଥିଲି । ଅନୁଷ୍ଠାନର ସଭାପତି ଓ ସବୁଠାରୁ ବୟସ୍କ ବ୍ୟକ୍ତି ଥାଇ ମଧ୍ୟ ଭୋଳିସାର୍ ଥିଲେ ମନରେ ଓ କାମକରିବାରେ ସମସ୍ତଙ୍କ ଠାରୁ ଯୁବକ । ସଭା ଆୟୋଜନ କରିବାଠାରୁ ଆରମ୍ଭକରି ସ୍ମରଣିକା ଛାପିବା, ବନ୍ଧୁମାନଙ୍କର ରହିବାର ବ୍ୟବସ୍ଥା କରିବା, କାହାକୁ ନିମନ୍ତ୍ରଣ କରାଯିବ ତାର ବ୍ୟବସ୍ଥା କରିବା, ଅର୍ଥ ଆୟୋଜନ କରିବା, ସବୁକାର୍ଯ୍ୟର ପରିପୂର୍ଣ୍ଣ ତଦାରଖ ସେ ହିଁ କରନ୍ତି । କେବେ କାହା ଉପରେ ରାଗି ନାହାଁନ୍ତି । ବିରକ୍ତ ହୋଇ ନାହାଁନ୍ତି, ଥକି ପଡ଼ିନାହାଁନ୍ତି କି ମୋ ଦ୍ୱାରା ଏହା ହୋଇ ପାରିବ ନାହିଁ ବୋଲି କହି ନାହାଁନ୍ତି । ସାର୍‌ଙ୍କୁ ଦେଖି ମୁଁ ଅନେକ ସମୟରେ ନିଜକୁ ପ୍ରେରିତ କରିଛି, ମୋ ଭିତରର ଆଳସ୍ୟ, ଅଭିମାନ, ଅଳ୍ପପଣ ସବୁ ମିଳେଇ ଯାଇଛି । ବାନର ସେନା ପରି ସାର୍‌ଙ୍କ ଦିଗ୍‌ଦର୍ଶନରେ ପୁଣି ଲାଗି ପଡିଛି ସଂଗଠନର କାମରେ ।

ସଂଗଠନ କାମରେ ଏତେ ଲାଗି ସୁଦ୍ଧା ଭୋଳିସାର୍ କେବେ ଅବହେଳା କରି ନାହାଁନ୍ତି ଆପଣାର ସାହିତ୍ୟ ସାଧନାରେ । ତାଙ୍କ ଜ୍ୱାଇଁ ନିରଞ୍ଜନଙ୍କ ଠାରୁ ତାଙ୍କର ସମସ୍ତ ପୁସ୍ତକ ପାଇଲା ପରେ ମୁଁ ଆଶ୍ଚର୍ଯ୍ୟ ହୋଇଗଲି । କେତେବେଳେ ସାର୍ ବେଳ ପାଇଲେ ଏ ସବୁ କରିବା ପାଇଁ । ମନେ ପଡ଼ିଲା ମହାକବି ସାରଳାଦାସଙ୍କ କଥା । ଜୀବଦ୍ଦଶାରେ କ'ଣ ଏତେ ସବୁ କାମ ମଣିଷ କରିପାରନ୍ତି । ସାରଳା ତେଣୁ ସବୁ ଶ୍ରେୟ ଦେଇ ଦେଇଛନ୍ତି ତାଙ୍କର ଇଷ୍ଟଦେବୀଙ୍କୁ । ଯେ ରାତିରେ ତାଙ୍କୁ ଶୁଆଇ ଦିଅନ୍ତି ନାହିଁ । ତେନ୍ତୁଳି ଛାଟରେ ପିଟି ଉଠାନ୍ତି । ତାଳପତ୍ର ଲେଖନୀ ଧରିଲେ ଆପେ ଆପେ ଲେଖି ହୋଇଯାଏ । ମୂର୍ଖ ଅପଣ୍ଡିତ ସିଦ୍ଧେଶ୍ୱର ପରିଣତ ହୁଅନ୍ତି ସାରଳାଦାସରେ ସେଇ ମାଟିର ସନ୍ତାନ ଭୋଳିବାବୁ । ତାଙ୍କରି ଭିତରେ ସେଇ ପ୍ରେରଣା ନିଶ୍ଚିତ ଥିବ । ତାଙ୍କର ସବୁ ରଚନାର ତାଲିକା ପ୍ରଦତ୍ତ ହୋଇଛି ତାଙ୍କ ରଚିତ ପୁସ୍ତକ ଗୁଡ଼ିକର ମଲାଟ ପୃଷ୍ଠାରେ । ସେଗୁଡ଼ିକ ହେଲା -

ପ୍ରବନ୍ଧ ଓ ସମାଲୋଚନା :-

୧- ଦାଣ୍ଡି ରାମାୟଣରେ ଓଡ଼ିଶାର ଲୋକ ସଂସ୍କୃତି (ମହାନିବନ୍ଧ)
୨- କାବ୍ୟ ଓ କବି
୩- ଓଡ଼ିଆ ସାହିତ୍ୟର ତତ୍ତ୍ୱ ଓ ତଥ୍ୟ
୪- ବୈଦିକ ସମାଜ, ସାହିତ୍ୟ ଓ ସଂସ୍କୃତି
୫- ଲେଖା ଓ ଲେଖକ
୬- ଓଡ଼ିଶାର ରାଜନୈତିକ, ସାମାଜିକ ଓ ସାଂସ୍କୃତିକ ଇତିହାସ
୭- ସାହିତ୍ୟିକ ସମାଲୋଚନା
୮- ଅଚ୍ୟୁତାନନ୍ଦଙ୍କ ସାରସ୍ୱତ ଦିଗନ୍ତ ।

ମୌଳିକ ରଚନା :-

୧- ଅନୁଚ୍ଚାରିତ ସ୍ୱର (ଗଳ୍ପ)
୨- ଶତାବ୍ଦୀର ସ୍ୱପ୍ନ (ଏକାଙ୍କିକା)
୩- ଗ୍ରୋଟି ଏକାଙ୍କିକା
୪- ତିନୋଟି ନାଟକ
୫- ପଣ୍ଡିତ ଗୋଦାବରୀଶ (ଜୀବନୀ)

ସଂକଳନ ଓ ସଂପାଦନା -

୧- ଓଡ଼ିଆ ଉପନ୍ୟାସ ସାହିତ୍ୟର ପରିଚୟ (ପଠାଣି ପଟ୍ଟନାୟକଙ୍କ ସହ ଯୁଗ୍ମ ସଂପାଦନାରେ)

୨- ଜଗତସିଂହପୁରଃ ଅତୀତ ଓ ବର୍ତ୍ତମାନ (ତିନିଖଣ୍ଡରେ ପ୍ରକାଶିତ)

୩- ସାହିତ୍ୟରେ ରହସ୍ୟବାଦ

୪- ପ୍ରବନ୍ଧ ସେଯୁଗ ଏଯୁଗ

୫- ଗଳ୍ପ ସମାରୋହ

୬- ଏକାଙ୍କିକା ସୌରଭ

୭- କବିତା ସେ ଯୁଗ ଏଯୁଗ

୮- ମେହେର ଆଲୋକ' ଇତ୍ୟାଦି ।

୯- ପ୍ରକାଶ ଅପେକ୍ଷାରେ ସରଳାଦେବୀ ଗ୍ରନ୍ଥାବଳି,

୧୦- ସମନ୍ୱୟର ଦେବତା ଶ୍ରୀଜଗନ୍ନାଥ

୧୧- ଚାରୋଟି ନାଟକ ଇତ୍ୟାଦି ।

ଏଇ ସବୁ ରଚନାବଳି ମଧ୍ୟରୁ ଶ୍ରୀଯୁକ୍ତ ରାଉତ ତାଙ୍କ ସାଂସ୍କୃତିକ ରଚନା ଗୁଡ଼ିକ ଲାଗି ବେଶ୍ ପ୍ରସିଦ୍ଧ । 'ଜଗତସିଂହପୁରଃ ଅତୀତ ଓ ବର୍ତ୍ତମାନ' ଏବଂ "ଦାଣ୍ଡି ରାମାୟଣରେ ଓଡ଼ିଶାର ଲୋକ ସଂସ୍କୃତି " ପୁସ୍ତକଦ୍ୱୟର ପୃଥକ ଆଲୋଚନା କରାଯାଇଛି । ତେଣୁ ସେ ଦୁଇଟିକୁ ଛାଡ଼ି ତାଙ୍କ ଅବଶିଷ୍ଟ ରଚନାରେ ଓଡ଼ିଶୀ ଓ ଭାରତୀୟ ସଂସ୍କୃତିର ଯେଉଁ ବ୍ୟାପକ ବିସ୍ତୃତ ବିମର୍ଶ ପ୍ରଦତ୍ତ ହୋଇଛି ତାହା ଏହି ପ୍ରବନ୍ଧରେ ଆଲୋଚନା କରାଯାଇଛି ।

ଭାରତୀୟ ସଂସ୍କୃତି କଥା ଉଠିଲେ ଆମ ନଜରକୁ ପ୍ରଥମେ ଆସେ ବେଦ । ବେଦ କେବଳ ଭାରତ କାହିଁକି ସମଗ୍ର ମାନବ ଜାତିର ସର୍ବପ୍ରଥମ ସାହିତ୍ୟିକ ସୃଷ୍ଟି । ଆନୁମାନିକ ଖ୍ରୀଷ୍ଟପୂର୍ବ ପାଞ୍ଚହଜାର ବର୍ଷ ପୂର୍ବରୁ ଏ ରଚନା । ଆଜି ମଧ୍ୟ ଆମ ସଂସ୍କୃତି ଉପରେ ଏହାର ପ୍ରତ୍ୟକ୍ଷ ଓ ପରୋକ୍ଷ ପ୍ରଭାବ ରହିଛି । ଡକ୍ଟର ରାଉତଙ୍କର ଏକ ସମାଲୋଚନା ଗ୍ରନ୍ଥ "ବୈଦିକ ସମାଜ ସାହିତ୍ୟ ଓ ସଂସ୍କୃତି" । ମୋଟ୍ ନଅଗୋଟି ପରିଚ୍ଛେଦରେ ବୈଦିକ କାଳ ଓ ଏହାର କଳନା , ବେଦ ଉତ୍ପତ୍ତିର ସମୟ ବେଦର ବିଭିନ୍ନ ବିଭାଗ, ବୈଦିକ ସମାଜର ସ୍ୱରୂପ, ବୈଦିକ ସାହିତ୍ୟରେ ସମାଜର ଓ ସଂସ୍କୃତିର ବହୁ ଉପାଦାନ, ବୈଦିକ ଦର୍ଶନ, ଧର୍ମ, ଆଦି ବିଷୟରେ ବିସ୍ତୃତ ଆଲୋଚନା କରାଯାଇଅଛି । ବେଦ ଏବଂ ପର ବୈଦିକ ସାହିତ୍ୟର ବ୍ୟାପକ ଅଧ୍ୟୟନର ଫଳଶ୍ରୁତି ଏହି ପୁସ୍ତକ । ବେଦ ଓ ବୈଦିକ ସାହିତ୍ୟ ସଂପର୍କରେ ଜଣେ ଅଜ୍ଞ ପାଠକ ଏ ପୁସ୍ତକର ପାଠକଲେ ବେଦ ବିଷୟକ ବହୁଜ୍ଞାନ ଲାଭ କରି ପାରିବ । ଗୋଟିଏ ଦୁଇଟି ଉଦାହରଣରୁ ଏହା ସ୍ପଷ୍ଟହେବ । ବେଦର ରଚନାକାଳ ସଂପର୍କରେ ବିଶିଷ୍ଟ ବିଦ୍ୱାନ ବାଳଗଙ୍ଗାଧର ତିଳକଙ୍କ ମତ ଉଦ୍ଧାର କରି ସେ ଲେଖିଛନ୍ତି-

"ପୁନର୍ବସୁ ନକ୍ଷତ୍ରର ଦେବତା ହେଉଛନ୍ତି ଅଦିତି । ତେଣୁ ଅଦିତିଙ୍କୁ ଦେବ ଜନନୀ କୁହାଯାଏ । ଏହାର ତାତ୍ପର୍ଯ୍ୟ ହେଉଛି ପୁନର୍ବସୁ ନକ୍ଷତ୍ରରେ ବସନ୍ତ ସଂପାତ ହେଲେ ସେହି ଦିନକୁ ବର୍ଷ ଓ ଦେବଯାନର ଆରମ୍ଭ ବୋଲି ସ୍ୱୀକାର କରାଯାଏ । ପୁନର୍ବସୁରେ ସୂର୍ଯ୍ୟଙ୍କ ସଂକ୍ରମଣ ଆରମ୍ଭ ହେଲେ ଦେବତାମାନଙ୍କ ପବିତ୍ରକାଳ (ଉତ୍ତରାୟଣ ଦେବଯାନ) ଆରମ୍ଭ ହେଉଥିଲା । ଏହି କାଳ ଦୁଇଟି ନକ୍ଷତ୍ରର ପଛକୁ ଗ୍ଲିଯାଇ ଘଟିଥିବାରୁ ମୃଗଶିରା ରାଶି ଘଟିତ ସମୟଠାରୁ ଦୁଇ ହଜାର ବର୍ଷର ପୂର୍ବର ବୋଲି କୁହାଯାଇ ପାରେ । ଅର୍ଥାତ୍ ତିଲକ ଅଦିତି ଯୁଗକୁ ଖ୍ରୀ. ପୂ ୬୦୦୦-୪୦୦୦ ଭିତରେ ସ୍ୱୀକାର କରିଛନ୍ତି । ଏହି ଅଦିତି ଯୁଗ ଭାରତୀୟ ସଂସ୍କୃତିର ସର୍ବାପେକ୍ଷା ପ୍ରାଚୀନ ଯୁଗ । ପୃଥିବୀର ଅନ୍ୟକୌଣସି ସଭ୍ୟତା ଓ ସଂସ୍କୃତିରେ ଏ ଯୁଗର କଳନା ଦେଖାଯାଏନାହିଁ । ତିଳକ ବୈଦିକ ଯୁଗକୁ ମୋଟ୍ ଗ୍ୱରି ଭାଗରେ ବିଭକ୍ତ କରିଛନ୍ତି -

୧- ଅଦିତ କାଳ- ଖ୍ରୀପୂ-୬୦୦୦-୪୦୦୦

୨- ମୃଗଶିରା କାଳ - ଖ୍ରୀପୂ- ୪୦୦୦-୨୫୦୦

୩- କୃତ୍ତିକା କାଳ - ଖ୍ରୀପୂ -୨୫୦୦-୧୪୦୦

୪- ଶେଷକାଳ - ଖ୍ରୀପୂ -୧୪୦୦-୫୦୦

ସେହିପରି ବୈଦିକ ସମାଜରେ ସଂସ୍କାର ସଂପର୍କରେ ଆଲୋଚନା କରିବାକୁ ଯାଇ ସେ ଚତୁରାଶ୍ରମ ପଦ୍ଧତି, ଷୋଡ଼ଶ ସଂସ୍କାର ବ୍ୟବସ୍ଥା, ଚତୁର୍ବର୍ଗ ଫଳ, ଅତିଥି ସଂସ୍କାର, ପରିବାର ଓ ବିବାହ ଆଦିର ବିସ୍ତୃତ ବର୍ଣ୍ଣନା କରିଅଛନ୍ତି । ବୈଦିକ ବିବାହ ସଂପର୍କରେ ଡକ୍ଟର ରାଉତ ଯାହା ଲେଖିଛନ୍ତି ଦେଖାଯାଉ ୧-୪ ବୈଦିକ ବିବାହରେ ସ୍ୱାମୀ-ସ୍ତ୍ରୀଙ୍କର କେବେ ମନୋମାଳିନ୍ୟ ହେଉ ନଥିଲା । ଜଣେ ଅପରକୁ ନିଜ ଆତ୍ମାର ଅଙ୍ଗ ବୋଲି ଗ୍ରହଣ କରୁଥିଲେ । ଉଭୟଙ୍କର ଉତ୍ତମ ବୁଝାମଣା ଥିଲା । ଏହାକୁ ଅତୁଟ ରଖିବାକୁ ଉଭୟ ଉଦ୍ୟମ କରୁଥିଲେ । ବୈଦିକ ଚିନ୍ତାଧାରାରେ ଏ ନିଜର ଅର୍ଦ୍ଧେକ ବୋଲି ଏହାକୁ ଜାୟା କୁହାଯାଏ । xxx ସ୍ୱାମୀ ସତ୍ୟ ହେଲେ ସ୍ତ୍ରୀ ହେଉଛନ୍ତି ଶ୍ରଦ୍ଧା, ସ୍ୱାମୀ ମନ ହେଲେ ସ୍ତ୍ରୀ ହେଉଛନ୍ତି ବାଣୀ xxx ଉଭୟ ଉଭୟଙ୍କୁ ଅର୍ଦ୍ଧେକ ସ୍ଥାନ କଲେ ଦାମ୍ପତ୍ୟ ଜୀବନ ମଧୁମୟ ହୁଏ ଏବଂ ପରସ୍ପରର ଅଭିବୃଦ୍ଧି ଓ ସନ୍ତୋଷ ସାଧିତ ହୁଏ । ଏହାଦ୍ୱାରା ପରିବାରରେ ଶାନ୍ତି ବିରାଜମାନ କରେ । ଅତ୍ୟନ୍ତ ସୁଖପାଠ୍ୟ ଭାଷାରେ ଡକ୍ଟର ରାଉତ ଏହିପରି ବୈଦିକ ସମାଜ ଓ ସଂସ୍କୃତିର ସୁନ୍ଦର ଚର୍ଚ୍ଚା କରିଅଛନ୍ତି ।

ଭୋଳିନାଥଙ୍କ ଅନ୍ୟଏକ ପୁସ୍ତକ ହେଲା *"ଓଡ଼ିଶାର୍ ରାଜନୈତିକ୍, ସାମାଜିକ ଓ ସାଂସ୍କୃତିକ ଇତିହାସ ।* ମୋଟ୍ ୨୧ଟି ପ୍ରସଙ୍ଗରେ ସେ ଓଡ଼ିଶା ରାଜ୍ୟର ଉଦ୍ଭବ, ଓଡ଼ିଶାର ରାଜନୈତିକ ଇତିହାସ, ସାଂସ୍କୃତିକ ବିବର୍ତ୍ତନ ଧାରା, ସାମରିକ ସଂସ୍କୃତି, ଧର୍ମଧାରା ଓ ପର୍ବପର୍ବାଣି, ଓଡ଼ିଆ ରାଜନୀତିର ବିଭିନ୍ନ କାଳ (ଗଜପତି ବଂଶ, ଭୋଇବଂଶ, ପଠାଣ ମୋଗଲ୍, ମରହଟା କାଳ, ଇଂରେଜ ରାଜତ୍ୱ) ଓଡ଼ିଶାର ସ୍ୱାଧୀନତା ଆନ୍ଦୋଳନରେ ଗଡ଼ଜାତ ରାଜାମାନଙ୍କର ଭୂମିକା, ଓଡ଼ିଶାର ସାଂସ୍କୃତିକ ଜୀବନର ବିବିଧଚକ୍ର, ମହିମାଧର୍ମ ଏବଂ ସର୍ବୋପରି ଓଡ଼ିଆ ଆଧୁନିକ ସାହିତ୍ୟର ଯୁଗ ସଂପର୍କରେ ପୁଙ୍ଖାନୁପୁଙ୍ଖ ଆଲୋଚନା କରାଯାଇଛି । ବହିଟିର ଭାଷା ଖୁବ୍ ସରଳ, ସୁଖପାଠ୍ୟ ଓ ସୂଚନା ଧର୍ମୀ । ଓଡ଼ିଆର ବହୁ ପ୍ରାଚୀନ ସାମରିକ ସଂସ୍କୃତି ସଂପର୍କରେ ଆଲୋଚନା କରିବାକୁ ଯାଇ ଡକ୍ଟର ରାଉତ ଉଦ୍ଧାର କରିଛନ୍ତି ; "ପ୍ରାଚୀନ ଓଡ଼ିଶାର ସାମରିକ ବିଭବ କେବେ ଓଡ଼ିଆ ଭୂଖଣ୍ଡ ବା ଭାରତ ମଧ୍ୟରେ ସୀମାବଦ୍ଧ ନରହି ତାହା ସମୁଦ୍ର ପରପାରିରେ ମଧ୍ୟ ପରିବ୍ୟାପ୍ତ ହୋଇଥିଲା । ବ୍ରହ୍ମଦେଶ, ଇଣ୍ଡୋଚୀନ, ଶ୍ୟାମ, ମାଳୟ ଜାଭା ସୁମାତ୍ରା, ବାଲି, ଶ୍ରୀଲଙ୍କା ଓ ବୋର୍ଣ୍ଣିଓ ରେ ଏହି ସାମ୍ରାଜ୍ୟ ସ୍ଥାପିତ ହୋଇଥିଲା । xxx ଯଦିଓ ଏଗୁଡ଼ିକ ସଂପୂର୍ଣ୍ଣ ରୂପେ ବାଣିଜ୍ୟକ ଉପନିବେଶ ତଥାପି ଏଗୁଡ଼ିକ ସ୍ଥାପିତ ହୋଇଥିଲେ ନୌବାହିନୀର କୃତିତ୍ୱ ବଳରେ ।

*'ଲେଖା ଓ ଲେଖକ'* ପୁସ୍ତକରେ ସାହିତ୍ୟ, ସଂସ୍କୃତି ଓ ଜୀବନୀ ସଂପର୍କରେ ଆଲୋଚନା କରିଛନ୍ତି । ସାହିତ୍ୟ ବିଭାଗରେ କୋଡ଼ିଏ ଗୋଟି ପ୍ରବନ୍ଧ, ସଂସ୍କୃତି ବିଭାଗରେ ଛଅ ଗୋଟି ପ୍ରବନ୍ଧ ଓ ଜୀବନୀ ବିଭାଗରେ ମୋଟ ତିନିଗୋଟି ପ୍ରବନ୍ଧକୁ ମିଶାଇ ସଂପୂର୍ଣ୍ଣରୂପେ ଅଣତିରିଶ ଗୋଟି ପ୍ରବନ୍ଧ ଏ ପୁସ୍ତକରେ ସ୍ଥାନିତ ହୋଇଛି । ସାହିତ୍ୟ ବିଭାଗର ପ୍ରବନ୍ଧ ଗୁଡ଼ିକ ସଂପୂର୍ଣ୍ଣ ମୌଳିକ ଓ ନୂତନ ସ୍ୱାଦଯୁକ୍ତ । ଶ୍ରୀ ଅରବିନ୍ଦଙ୍କ 'ସାବିତ୍ରୀ' ଠାରୁ 'ଗୀତ ଗୋବିନ୍ଦର ଶୃଙ୍ଗାରିକତା' ପର୍ଯ୍ୟନ୍ତ ପ୍ରତିଟି ପ୍ରବନ୍ଧରେ ଡକ୍ଟର ରାଉତଙ୍କର ଶାଣିତ ଦୃଷ୍ଟି ମୌଳିକ ଚିନ୍ତା, ସୁଖପାଠ୍ୟ ସହଜ ବୋଧ ଭାଷା ଏବଂ ସର୍ବୋପରି ସ୍ୱଚ୍ଛ ଅବବୋଧ ଦେଖିବାକୁ ମିଳିଥାଏ । ସଂସ୍କୃତି ବିଷୟକ ପ୍ରବନ୍ଧ ଗୁଡ଼ିକରେ ଓଡ଼ିଶାର ସାଂସ୍କୃତିକ ଜୀବନର ବିସ୍ତାରିତ ଚିତ୍ର ପ୍ରଦତ୍ତ ହୋଇଛି । ଓଡ଼ିଆ ଗ୍ରାମ୍ୟଜୀବନର ସଂସ୍କୃତି ସଂପର୍କରେ ଲେଖିବାକୁ ଯାଇ ସେ ଲେଖିଛନ୍ତି 'ସଂପ୍ରତି ଦେଶର ସଂସ୍କୃତି ଏବଂ ଆଧ୍ୟାତ୍ମିକତାର ପୃଷ୍ଠଭୂମି ଓଲଟ ପାଲଟ ହୋଇଯାଇଛି ଆଧୁନିକ ସଭ୍ୟତାର ସଂଘାତରେ । ମାତ୍ର ଗ୍ରାମବାସୀମାନଙ୍କ ଜୀବନରୁ ଏ ପ୍ରୀତି ହ୍ରାସ ପାଇନି । ହିନ୍ଦୁବହୁଳ ଗ୍ରାମରେ ଗ୍ରାମଦେବତୀ କିମ୍ବା ଭାଗବତ ଘରଠାରେ, ମୁସଲମାନ ବହୁଳ ଗ୍ରାମରେ ମସ୍‌ଜିଦରେ ଖ୍ରୀଷ୍ଟିଆନ ବହୁଳ ଗ୍ରାମରେ ଗୀର୍ଜାରେ ଆଜିମଧ୍ୟ ଗ୍ରାମର

ଧନୀ- ଦରିଦ୍ର, ଉଚ,ନୀଚ ସବର୍ଣ୍ଣ, ଅସବର୍ଣ୍ଣ, ହିନ୍ଦୁ, ମୁସଲମାନ, ଖ୍ରୀଷ୍ଟିଆନ୍ ଏକାଠି ବାସକରନ୍ତି । ନିଜନିଜ ମଧ୍ୟରେ ଭାବର ଆଦାନ ପ୍ରଦାନ କରନ୍ତି । ନୃତ୍ୟ ଗୀତ, ମଉଜ ମଜଲିସ ଭିତରେ ଜୀବନକୁ ଉପଭୋଗ କରନ୍ତି । ଏହି ସମନ୍ୱିତ ଚିନ୍ତାଧାରା ମଧ୍ୟରୁ ଅନେକ ରାମ -ରହିମ୍, କୃଷ୍ଣ-ଖ୍ରୀଷ୍ଟ, ସୃଷ୍ଟିର ନମୁନା, ସାମାଜିକ ଜୀବନକୁ ଆଜି ବନ୍ଧୁତ୍ୱ ଡୋରିରେ ବାନ୍ଧି ରଖିଛି ।

ଓଡ଼ିଶା ସଂସ୍କୃତିର ଆଲୋଚନା ପ୍ରସଙ୍ଗରେ ଭୋଳି ବାବୁଙ୍କ ଅନ୍ୟ ଏକ ଗ୍ରନ୍ଥ ହେଲା *"ଅଚ୍ୟୁତାନନ୍ଦଙ୍କ ସାରସ୍ୱତ ଦିଗନ୍ତ"* । ଓଡ଼ିଆ ସନ୍ଥ ସାହିତ୍ୟ ପରଂପରାର ମହାନ ସ୍ରଷ୍ଟା ସନ୍ଥ କବି ଅଚ୍ୟୁତାନନ୍ଦଙ୍କ ସାଂସ୍କୃତିକ ରଚନାବଳିର ବ୍ୟାପକ ଚର୍ଚ୍ଚା ଏହି ପୁସ୍ତକରେ କରାଯାଇଛି । ସନ୍ଥକବି ଅଚ୍ୟୁତାନନ୍ଦ ଲକ୍ଷେ ଗ୍ରନ୍ଥ ଲେଖିଥିଲେ ବୋଲି ସ୍ୱୀକାର କରିଥିଲେ । ସେ ମଧ୍ୟରୁ ଅନେକ ସନ୍ଥ ସାଧନାର ଗ୍ରନ୍ଥ । କ୍ଷୁଦ୍ର ରଚନା ଗୁଡ଼ିକରେ ବୃହତ ରଚନା ଅପେକ୍ଷା ସାହିତ୍ୟିକତା ଅଧିକ । ଭୋଳିସାରଙ୍କ ସାଧନା ଭୂମି ଜଗତସିଂହପୁର ଠାରୁ ସନ୍ଥକବି ଅଚ୍ୟୁତାଙ୍କ ସାଧନା ପୀଠ ନେମାଳର ଦୂରତା ବେଶୀ ନୁହେଁ । ପୁଣି ତାଙ୍କ ନିକଟବର୍ତ୍ତୀ ଅଞ୍ଚଳରେ ବହୁ ଅଚ୍ୟୁତପନ୍ଥୀ ସାଧକ ରହିଛନ୍ତି । ମୁଖବନ୍ଧରେ ଯାହା ଲେଖିଛନ୍ତି ଜାମାତା ନିରଞ୍ଜନଙ୍କ ଗବେଷଣା ନିବନ୍ଧ ପ୍ରସ୍ତୁତି ଲାଗି ସେ ସଂଗ୍ରହ କରିଥିବା 'ଅଚ୍ୟୁତାନନ୍ଦ ସ୍ମୃତି ସଂସଦ' ପ୍ରକାଶିତ ରଚନାବଳୀ, ଲଉଡ଼ି ଭାଇ ଶ୍ୟାମ ସୁନ୍ଦର ଦାସଙ୍କ ପ୍ରେରଣା ଓ ବନ୍ଧୁ ମହେନ୍ଦ୍ର କୁମାର ଆଚାର୍ଯ୍ୟଙ୍କ ଆଗ୍ରହ ତାଙ୍କୁ ଏହି ପୁସ୍ତକ ରଚନା କରିବାକୁ ପ୍ରେରିତ କରିଥିଲା । ପୁସ୍ତକଟିରେ ସନ୍ଥକବିଙ୍କ ଜନ୍ମ, ଜୀବନୀ, ସାଧନା, ଗ୍ରନ୍ଥ ରଚନା ସହିତ, ଗ୍ରନ୍ଥ ଗୁଡ଼ିକର ସଂକ୍ଷିପ୍ତ ଆଲୋଚନା ପ୍ରଦତ୍ତ ହୋଇଛି ଅଚ୍ୟୁତିପ୍ରେମୀ ପାଠକମାନଙ୍କ ନିକଟରେ ବହିଟି ଏକ ହ୍ୟାଣ୍ଡବୁକ୍‌ର ଭୂମିକା ନିର୍ବାହ କରିପାରିବ ।

*"ଓଡ଼ିଆ ସାହିତ୍ୟ : ତତ୍ତ୍ୱ ଓ ତଥ୍ୟ* ଏବଂ *କାବ୍ୟ ଓ କବି"* ଗ୍ରନ୍ଥଦିଓଟି ନିରୁତା ସାହିତ୍ୟ ଆଲୋଚନା ଗ୍ରନ୍ଥ । ପ୍ରଥମଟିକୁ ଭୋଳିବାବୁ ଓଡ଼ିଆ ସ୍ନାତକ ଓ ସ୍ନାତକୋତ୍ତର ଶ୍ରେଣୀରେ ଅଧ୍ୟୟନ କରୁଥିବା ଛାତ୍ରଛାତ୍ରୀଙ୍କ ପାଇଁ ରଚନା କରିଛନ୍ତି । ଦ୍ୱିତୀୟଟିର ଆଲୋଚନା ପାଣ୍ଡିତ୍ୟପୂର୍ଣ୍ଣ । ଓଡ଼ିଆ ସାହିତ୍ୟର ତତ୍ତ୍ୱ ଓ ତଥ୍ୟ ଗ୍ରନ୍ଥରେ ସେ କାବ୍ୟ, କବିତା, ନାଟକ, ଏକାଙ୍କିକା, ଉପନ୍ୟାସ, କ୍ଷୁଦ୍ରଗଳ୍ପ, ପ୍ରବନ୍ଧ, ସମାଲୋଚନା ସାହିତ୍ୟ ଏବଂ ଚରିତ ସାହିତ୍ୟ ଏହିପରି ନଅଗୋଟି ବିଭାଗରେ ମୋଟ ୧୧ଟି ପ୍ରବନ୍ଧରେ ଆଲୋଚନା କରିଅଛନ୍ତି । ସାହିତ୍ୟର ବିଭିନ୍ନ ପ୍ରାରୂପ ବା ଆଙ୍ଗିକର ସଂଜ୍ଞା, ସ୍ୱରୂପ ପ୍ରକାରଭେଦ, ଓଡ଼ିଆ ସାହିତ୍ୟରେ ତାର ବ୍ୟାପ୍ତି ଏବଂ ଓଡ଼ିଆ ସ୍ରଷ୍ଟାମାନଙ୍କର ବିଶେଷତ୍ୱକୁ ଅତି ସୁନ୍ଦର ଭାବରେ ଆଲୋଚନା କରିଛନ୍ତି । ତାହା ବେଶ ଛାତ୍ରୋପଯୋଗୀ । ଲେଖକଙ୍କ ସ୍ପଷ୍ଟ ଅବବୋଧ ଓ ସହଜ ସରଳ ଭାଷା ଜଟିଳ ସାହିତ୍ୟିକ ତତ୍ତ୍ୱଗୁଡ଼ିକୁ ଛାତ୍ରମାନଙ୍କ ପାଇଁ ସୁବୋଧ୍ୟ କରି ପାରିଛି ।

***କାବ୍ୟ ଓ କବି*** ପୁସ୍ତକରେ ମୋଟ ପାଞ୍ଚଗୋଟି ପ୍ରବନ୍ଧ ସ୍ଥାନିତ ହୋଇଛି । ସେଗୁଡ଼ିକ ହେଲା । ଓଡ଼ିଆ କବିତାରେ ଶ୍ରୀଜଗନ୍ନାଥଙ୍କ ରଥଯାତ୍ରା, ପହଣ୍ଡି ବିଜେ ଓ ଛେରା ପହଁରା, ଓଡ଼ିଶାର ଲୋକପ୍ରିୟ କବି ବସ୍ତାଦାସ, ଓଡ଼ିଆ ସାହିତ୍ୟରେ ବୈଷ୍ଣବ ଦର୍ଶନର ପ୍ରଭାବ, ଭକ୍ତ କବିଙ୍କ ବ୍ୟଙ୍ଗ କବିତା ଏବଂ ସାଂପ୍ରତିକ ଓଡ଼ିଆ କବିତାରେ ରହସ୍ୟବାଦ । ୧୯୯୧ ମସିହାରେ ଫ୍ରେଣ୍ଡ୍ସ୍ ପବ୍ଲିଶର୍ସ ପ୍ରକାଶିତ ଏହି ପୁସ୍ତକରେ ସ୍ଥାନିତ ପ୍ରବନ୍ଧଗୁଡ଼ିକ କିନ୍ତୁ ଭୋଳାନାଥଙ୍କ ବହୁ ପୁରୁଣା ଲେଖା । ଭିନ୍ନ ଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ ପ୍ରବନ୍ଧଗୁଡ଼ିକୁ ଏଥିରେ ସଂକଳିତ କରିଅଛନ୍ତି । ପ୍ରବନ୍ଧଗୁଡ଼ିକ ପାଣ୍ଡିତ୍ୟପୂର୍ଣ୍ଣ ଚର୍ଚ୍ଚା ପାଠକକୁ ସ୍ପଷ୍ଟ ଧାରଣା ଦେଇଥାଏ । ଜଗନ୍ନାଥ ସଂସ୍କୃତି ସଂପର୍କରେ ଆଲୋଚନା କରି ଲେଖକ ଲେଖିଛନ୍ତି "ଜଗନ୍ନାଥ ସଂସ୍କୃତିର ତ୍ରିମୂର୍ତ୍ତି ସୁଭଦ୍ରା, ଜଗନ୍ନାଥ, ବଳଭଦ୍ରଙ୍କୁ ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର ଭାବରେ ହିନ୍ଦୁଧର୍ମର ପ୍ରବକ୍ତାମାନେ ପରିକଳ୍ପନା କରିଥାନ୍ତି । ସେମାନଙ୍କ ମତରେ ସୁଭଦ୍ରା-ବ୍ରହ୍ମା, ଜଗନ୍ନାଥ-ବିଷ୍ଣୁ, ଏବଂ ବଳଭଦ୍ର ଶିବ । ସୁଭଦ୍ରାଙ୍କୁ ବ୍ରହ୍ମାଭାବରେ କଳ୍ପନା କରିବା ମୂଳରେ ସୃଷ୍ଟିକାରିଣୀ ଶକ୍ତି ସୁଭଦ୍ରା ଏବଂ ସୃଷ୍ଟିକର୍ତ୍ତା ବ୍ରହ୍ମାଙ୍କ ମଧ୍ୟରେ ଅଭିନ୍ନ ଭାବ ସଂଯୁକ୍ତ ହୋଇଛି ।" ପୁଣି ଅନ୍ୟତ୍ର ଲେଖିଛନ୍ତି "ଜଗନ୍ନାଥଙ୍କ ସର୍ବବ୍ୟାପକତା, ମହନୀୟତା ପୃଥିବୀର ଧର୍ମ ଇତିହାସରେ ବିରଳ । ଈଶ୍ୱରଙ୍କ ପୁତ୍ର ଯୀଶୁ ଜଗନ୍ନାଥଙ୍କ ଠାରୁ ଆଧ୍ୟାତ୍ମିକ ପ୍ରେରଣା ଲାଭ କରିଛନ୍ତି । ମୁସଲମାନ ଧର୍ମରେ ଦୀକ୍ଷିତ କବୀର, ସାଲବେଗ, ଯବନ ହରିଦାସ ପ୍ରମୁଖ ନିଜକୁ ସଂପୂର୍ଣ୍ଣରୂପେ ସମର୍ପିତ କରିଦେଇଛନ୍ତି, ପୁରୁଷୋତ୍ତମ ଜଗନ୍ନାଥଙ୍କ ନିକଟରେ । କୃତାଞ୍ଜଳି ପୁଟରେ ତାହାରି ଭଜନ, ଜଣାଣ, କୀର୍ତ୍ତନରେ ମଜ୍ଜି ରହିଛନ୍ତି ସାରା ଜୀବନ ।" ଖାଲି ଜଗନ୍ନାଥଙ୍କ ସଂପର୍କିତ ଆଲୋଚନା କାହିଁକି "ସାଂପ୍ରତିକ ଓଡ଼ିଆ କବିତାରେ ରହସ୍ୟବାଦ" ସଂପର୍କରେ ଆଲୋଚନା କଲାବେଳେ ଭୋଳିବାବୁଙ୍କ ପାଣ୍ଡିତ୍ୟପୂର୍ଣ୍ଣ ବିଚାର ଦେଖାଯାଉ । "କବିର ଦିବ୍ୟାନୁଭୂତିର ବାର୍ତ୍ତା ଆମେ ଅନୁଭବ କରୁ ଯେତେବେଳେ ଆମର ବୋଧଶକ୍ତି ରହସ୍ୟବାଦୀ କବିତାର ମନକଥା ବୁଝିବାକୁ ଚେଷ୍ଟାକରେ । ଦିବ୍ୟାନୁଭୂତି ବ୍ୟକ୍ତିରେକ ରହସ୍ୟବାଦୀ କବିତାର ସୃଷ୍ଟି ସମ୍ଭବ ନୁହେଁ ବୋଲି ଅନେକ ମତବ୍ୟକ୍ତ କରିଥାନ୍ତି । ସାଂପ୍ରତିକ କବିର ଏହି ଦିବ୍ୟାନୁଭୂତି ସଂପର୍କରେ ସମୀକ୍ଷା ସବିଶେଷ ନୁହେଁ । ତଥାପି ଯେ ନ ହୋଇଛି ତାହା କହିହେବ ନାହିଁ । ଏଠି ଦିବ୍ୟାନୁଭୂତି ପାଇଁ କବି ଯେଉଁ ପ୍ରୟାସ କରିଛନ୍ତି, ତାହାକୁ ସେ ପାରଂପରିକ ରୀତିରେ ଗ୍ରହଣ କରିପାରି ନାହିଁ । ସମୟର ବାଲିଚରରେ ସେ ଯେଉଁ ପଦଚିହ୍ନ ଦେଖିଛି ହୁଏତ ଆତ୍ମିକ ଦୃଷ୍ଟିରୁ ରବୀନ୍ଦ୍ର ନାଥ, ୱାର୍ଡସ୍‌ୱାର୍ଥ ଇତ୍ୟାଦି ରହସ୍ୟବାଦୀ କବିମାନଙ୍କର ସମଗୋତ୍ରୀୟ ହୋଇ ନପାରେ, ମାତ୍ର ଆତ୍ମାର ଉଦ୍‌ଗମନ" ପାଇଁ ସେ ଯେ ଚେଷ୍ଟା ନ କରିଛି ଏକଥା କହିହେବ ନାହିଁ ।"

ସଂସ୍କୃତି ପୁରୁଷ ଭୋଳାନାଥ ରାଉତଙ୍କ ରଚନାବଳି ଏହିଭଳି ବହୁ ବର୍ଣ୍ଣବିଭାରେ ଚିତ୍ରିତ । ଜଗତସିଂହପୁର ଜିଲ୍ଲାର ଐତିହ୍ୟ ସଂସ୍କୃତି, ରାଜନୀତି, ବାଣିଜ୍ୟ, ଗମନାଗମନ, ଧର୍ମଧାରଣା ଓ ପର୍ବପର୍ବାଣି ସଂପର୍କରେ  ସେ ଯେଉଁ ତିନିଗୋଟି ବୃହତ ସଂକଳନ କରିଛନ୍ତି ତାହା ଜଣେ ସାଧାରଣ ଅଧ୍ୟାପକ ପକ୍ଷେ ଚିନ୍ତାର ବାହାରେ । ଛାତ୍ରାବସ୍ଥାରୁ  ଶ୍ରୀଯୁକ୍ତ ପଠାଣି ପଟ୍ଟନାୟକଙ୍କ ସହମିଶି "ଓଡ଼ିଆ ଉପନ୍ୟାସ ସାହିତ୍ୟର ପରିଚୟ" ସଂକଳନ କରିବାରେ ତାଙ୍କର ଏହି ଦୂରଦୃଷ୍ଟିର ପରିଚୟ ମିଳିଯାଇଥିଲା । ଆଜି ବୟସର ଅପରାହ୍‌ଣରେ ମଧ୍ୟ ସାର ଥକି ପଡ଼ିନାହାଁନ୍ତି । ରୋଗ ଓ ବ୍ୟାଧି ତାଙ୍କୁ କଠୋର ସାଧନାରୁ ନିବୃତ୍ତ କରିଦେଇଛି ସତ; କିନ୍ତୁ ସାମାନ୍ୟ ଚେତା ଆସିଲେ  ସେ ଉଦ୍‌ବେଗର ସହ ପଚାରି ବୁଝୁଛନ୍ତି ସାହିତ୍ୟ କଥା, ସଂସ୍କୃତି କଥା, ଅଧ୍ୟାପକ ସମ୍ମିଳନୀ କଥା, ଓଡ଼ିଆ ଜାତିର ଭବିଷ୍ୟତ କଥା । ଭଗବାନ ତାଙ୍କୁ ଅଧିକ କାଳ ସୁସ୍ଥ ରଖନ୍ତୁ ଓ ସାହିତ୍ୟ ସଂସ୍କୃତି ପାଇଁ ସେ ସେମିତି ଲାଗି ରହିଥାନ୍ତୁ । ଈଶ୍ୱରଙ୍କ ନିକଟରେ ମୋର ଏତିକି ପ୍ରାର୍ଥନା । ■

ଅଧ୍ୟାପକ 'ରମାଦେବୀ ମହିଳା' କଲେଜ (ବିଶ୍ୱବିଦ୍ୟାଳୟ)
ଭୁବନେଶ୍ୱର

# ଦାଣ୍ଡିରାମାୟଣରେ ଓଡ଼ିଶାର ଲୋକ ସଂସ୍କୃତି-
# ଏକ ଦୃଷ୍ଟିପାତ

ଡକ୍ଟର ବାବାଜୀ ଚରଣ ପଟ୍ଟନାୟକ

ଡକ୍ଟର ଭୋଳାନାଥ ରାଉତଙ୍କ "ଦାଣ୍ଡିରାମାୟଣରେ ଓଡ଼ିଶାର ଲୋକସଂସ୍କୃତି" ପୁସ୍ତକ କଟକର ଓଡ଼ିଶା ବୁକ୍‌ଷ୍ଟୋର୍ ପ୍ରକାଶନ ତରଫରୁ ୧୯୯୮ରେ ପ୍ରକାଶ ପାଇଛି । ନାମକରଣ ଦୃଷ୍ଟିରୁ ବହିଟି ପଢିବା ପାଇଁ ଯେତିକି ଆକୃଷ୍ଟ କରିଛି ତଦାପେକ୍ଷା ଲେଖକଙ୍କନାମ ବେଶୀ ଆଗ୍ରହୀ କରାଇଛି ବୋଲି କହିବା ଏ ଲେଖକପକ୍ଷେ ସତ୍ୟର ଅପଳାପ ହେବନାହିଁ । କାରଣ ମାଟ୍ରିକ୍ ପଢିବା (୧୯୬୮) ବେଳକୁ ଭୋଳାନାଥ ବାବୁଙ୍କୁ ମୁଁ ଜାଣେ । ଅଭ୍ୟୁଦୟ ସାହିତ୍ୟ ସମାଜ ବା ଅଭ୍ୟୁଦୟ ସାହିତ୍ୟ ପାଠଚକ୍ରର ଆବାହକଭାବେ ତାଙ୍କ ପରିକଳ୍ପନା ଓ ଦୃଷ୍ଟିର ସଫଳ ଗୌରବର ସାକ୍ଷୀ "ଓଡ଼ିଆ ଉପନ୍ୟାସ ସାହିତ୍ୟର ପରିଚୟ" (୧୯୬୯), "ମେହେର ଆଲୋକ", "ସାହିତ୍ୟରେ ରହସ୍ୟବାଦ" ଇତ୍ୟାଦି । ସାହିତ୍ୟିକ ସଂଗଠନର ଆଗରେ ଥାଇ ସେ ଯାହାଯାହା କରାଇ ପାରିଥିଲେ ତାହା କେତେ ପରିମାଣରେ ଓ କିଭଳି ଉପକାର କରିପାରିଥିଲା ତାହା ସେଦିନର ଓଡ଼ିଆ ସ୍ନାତକ ଓ ସ୍ନାତକୋତ୍ତର ଶ୍ରେଣୀରେ ଛାତ୍ରଥିବା (୧୯୭୨-୧୯୭୬) ଓ ଆଜି ଓଡ଼ିଆ ଭାଷା -ସାହିତ୍ୟ ବିଷୟ ଅଧ୍ୟାପନାରୁ ଅବସର ଗ୍ରହଣ କରି ସାରିଥିବା ଏ ଲେଖକ ପକ୍ଷେ ଭାଷାରେ ପ୍ରକାଶ କରିବା ସମ୍ଭବପର ନୁହେଁ । ବୋଧହୁଏ ଏ ଧରଣର କାମ କରାଇବାରେ ତାଙ୍କର ଚୂଡ଼ାନ୍ତ ସାରସ୍ୱତ କୀର୍ତ୍ତି ବା କୃତି "ଜଗତସିଂହପୁର ଅତୀତ ଓ ବର୍ତ୍ତମାନ "(ତିନୋଟି ଖଣ୍ଡରେ ପ୍ରକାଶକାଳ - ୨୦୦୬, ପ୍ରକାଶକ -ଜିଲ୍ଲା ସଂସ୍କୃତି ପରିଷଦ, ଜଗତସିଂହପୁର ) । ସାହିତ୍ୟିକ ସାମାଜିକ ଜୀବନ ଓ ବୃତ୍ତିଗତ ଜୀବନ ବିତାଇଥିବା ଲୋକମାନଙ୍କ ସୁଖ- ସ୍ୱାଚ୍ଛନ୍ଦ୍ୟପାଇଁ ଆନ୍ଦୋଳନ କରିବାରେ ସେ ଆଗୁସାର ହୋଇଛନ୍ତି । ଏବେ ଓଡ଼ିଆ ଅଧ୍ୟାପକ ସମ୍ମିଳନୀର ସଭାପତି ଦାୟିତ୍ୱ ସେ ନିର୍ବାହ କରୁଛନ୍ତି । ଏତେ କାମ ଭିତରେ ସେ "ଦାଣ୍ଡିରାମାୟଣ ଓଡ଼ିଶାର ଲୋକସଂସ୍କୃତି" ବିଷୟ ଚର୍ଚ୍ଚା କରିପାରିଛନ୍ତି । ଏହା ମୋତେ ବିସ୍ମିତ କରିନଥିଲା, ଆଗହ୍ରୀ କରିଥିଲା ତାହାକୁ ଆମୂଳାନ୍ତ ପଢିବାପାଇଁ । ପଢା

ଆରମ୍ଭ କରିବା କ୍ଷଣି ଜାଣିଲି ଏହା ଓଡ଼ିଆରେ ପି.ଏଚ.ଡି. ଡିଗ୍ରିପ୍ରାପ୍ତ ନିମିତ୍ତ ଲେଖାଯାଇଥିବା ନିବନ୍ଧ ।

ପୂର୍ବରୁ କହିଛି, ବହିର ନାମକରଣ ଆକୃଷ୍ଟ କଲା । କାରଣ ଓଡ଼ିଶାର ଲୋକ ସଂସ୍କୃତି ହେଉଛି ଓଡ଼ିଆଙ୍କ ସ୍ୱାତନ୍ତ୍ର୍ୟ, ତାହା ପାଞ୍ଚଗୋଟି ମୌଳିକ ଓଡ଼ିଆ ପୁରାଣରୁ ଲକ୍ଷ୍ୟକରିହୁଏ, ବିପ୍ର ପୀତାମ୍ବର ଦାଶ ଓଡ଼ିଆ ପଞ୍ଚ ବା ପାଞ୍ଚପୁରାଣର ତାଲିକା ତାଙ୍କ ନୃସିଂହ ପୁରାଣରେ ଦେଇଛନ୍ତି । ତାହା ଏହିପରି; ସାରଳାଦାସଙ୍କ ମହାଭାରତ, ବଳରାମ ଦାଶଙ୍କ ରାମାୟଣ, ଜଗନ୍ନାଥ ଦାଶଙ୍କ ଭାଗବତ, ବିପ୍ର ନାରାୟଣ ଦାଶଙ୍କ ହରିବଂଶ । ଗବେଷକ ସଚ୍ଚିଦାନନ୍ଦ ମିଶ୍ରଙ୍କ ମତରେ ପୋଥିରେ କୁଆଡ଼େ ଅଛି ଅଚ୍ୟୁତାନନ୍ଦ ଦାସଙ୍କ ହରିବଂଶ ଓ ବିପ୍ର ପୀତାମ୍ବର ଦାଶଙ୍କ ନୃସିଂହପୁରାଣ । ବଳରାମଦାସଙ୍କ ରାମାୟଣକୁ ଦାଣ୍ଡିରାମାୟଣ, ଜଗମୋହନ ରାମାୟଣ, ଦାଣ୍ଡି -ବାଲ୍ମୀକି ରାମାୟଣ, ଦକ୍ଷିଣୀ ରାମାୟଣ କୁହାଯାଇଛି । ବୋଧହୁଏ ଏହି ରାମାୟଣକୁ ପୋଥିରୁ ସଂଶୋଧନ ପୂର୍ବକ ସଂକଳନ ପ୍ରଥମେ କରିଥିଲେ ଗୋବିନ୍ଦ ରଥ । ବହିର ନାଁ ରଖିଥିଲେ ଦାଣ୍ଡି ବାଲ୍ମୀକି ରାମାୟଣ । ପ୍ରଫେସର କୃଷ୍ଣଚରଣ ସାହୁ ପରବର୍ତ୍ତୀ ସମୟରେ ସଂପାଦନା ଓ ସଂକଳନ କରିଛନ୍ତି ବଳରାମଙ୍କ ରାମାୟଣ । ବହିର ନାଁ ରହିଛି "ଜଗମୋହନ ରାମାୟଣ" । ପୁନଶ୍ଚ ବଳରାମଙ୍କ ରାମାୟଣର ଗୁରୁତ୍ୱ ସ୍ୱୀକାର କରିଛନ୍ତି କାବ୍ୟକାର ଉପେନ୍ଦ୍ର ଭଞ୍ଜ ତାଙ୍କ "ବୈଦେହୀଶ ବିଳାସ" କାବ୍ୟରେ । ଏସବୁ ଦୃଷ୍ଟିରୁ ଦାଣ୍ଡିରାମାୟଣ ପ୍ରତି ଓଡ଼ିଆ ଭାଷା ସାହିତ୍ୟ ଅଧ୍ୟାପନା ସହ ସଂପୃକ୍ତ ଥିବା ଏ ଲେଖକର ଅନୁରାଗ ରହିବା ସ୍ୱାଭାବିକ । ପିଏଚ.ଡି ପରୀକ୍ଷାରେ ସଫଳ ଅନୁମୋଦିତ ଏ ନିବନ୍ଧ ଯଥାର୍ଥତଃ ନିବନ୍ଧ ରଚୟିତାଙ୍କ କୃତିତ୍ୱର ପରିଚ୍ଛାୟକ । ନିବନ୍ଧଟି ପୁସ୍ତକରୂପ ଘେନିଛି । ବହିଟି ପଢ଼ିବା ସମୟରେ ଓ ଶେଷ କରିବା ପରେ ଯେଉଁ ଯେଉଁ ଅନୁଭବ ଆସିଛି ତାହାକୁ ନିମ୍ନରେ ପ୍ରକାଶ କରାଯାଉଅଛି ।

ଏକଦା ଉଇଲ ଡୁରାଣ୍ଟ ଲେଖିଥିଲେ Culture suggests agriculture civilization city. ଅର୍ଥାତ୍ ସଂସ୍କୃତି ସୂଚାଏ କୃଷିକୁ, ସଭ୍ୟତା ସୂଚାଏ ସହରକୁ । ପାଶ୍ଚାତ୍ୟ ଜଗତରେ culture ଶବ୍ଦ ଆଜିଭଳି ସଂସ୍କୃତି ଅର୍ଥରେ ୧୫୧୦ ଠାରୁ ବ୍ୟବହୃତ ହୋଇଛି ବୋଲି ହର୍ବଟ୍‌ରିଡ୍ ଦର୍ଶାଇଛନ୍ତି । କିନ୍ତୁ ଭାରତବର୍ଷରେ "ସଂସ୍କୃତି ସୂଚକ ଶବ୍ଦ ଭାବରେ କୃଷ୍ଟି ଶବ୍ଦର ବ୍ୟବହାର କରାଯାଇଥିଲା । କୃଷ୍ଟି ଶବ୍ଦର କୃଷି ସହ ଥିବା ସାମ୍ୟ ଭଗବତଗୀତାର " ଅନ୍ନାଦ୍ ଭବନ୍ତି ଭୂତାନି ପର୍ଜନ୍ୟାଦନ୍ନ ସମ୍ଭବ/ଯଜ୍ଞାଦ୍ ଭବନ୍ତି ପର୍ଜନ୍ୟୋ ଯଜ୍ଞ କର୍ମ ସମୁଦ୍‌ଭ ।" ଶ୍ଳୋକରୁ ଜାଣିହୁଏ । ପୂର୍ବରୁ ଅଧୀତ ହୋଇଥିବା Folk lore ସଂପ୍ରତି Folk - Culture ଭାବେ

ଅଧ୍ୟୟନ କରାଯାଉଛି । ଲେଖକର ଏହି ଅଧ୍ୟୟନ ସଂପର୍କିତ ସଚେତନତା ପୁସ୍ତକର ଆଦ୍ୟକଥନୀରୁ ଜାଣିହୁଏ । ଯେପରି; " କୌଣସି ଜାତିର ପ୍ରାଣସ୍ପନ୍ଦନ ଜାଣିବା ପାଇଁ ଏହାର ଲୋକ ସଂସ୍କୃତିର ଅନୁଶୀଳନ ଅତ୍ୟନ୍ତ ଆବଶ୍ୟକ ହୋଇଥାଏ । ଲୋକ ସଂସ୍କୃତି ଅଧ୍ୟୟନରୁ ଜାଣିହୁଏ ତାହାର ଆଶା, ନିରାଶା, ଦୁଃଖ, ସୁଖ, ବିଶ୍ୱାସ, ଅବିଶ୍ୱାସ, ଗ୍ଲାନିଚଳଣି, ରୀତି ଓ ପରମ୍ପରାର ଲୁକ୍କାୟିତ ଇତିହାସ ।" ପୁଣି ଲେଖକଙ୍କ ଭାଷାରେ "ଲୋକ ସଂସ୍କୃତି ପ୍ରକାଶପାଏ ଦେଶର ସାମାଜିକ ନୀତିନିୟମରେ, ଧର୍ମରେ, ସଭ୍ୟତାର ବିଭିନ୍ନ ଅଙ୍ଗପ୍ରତ୍ୟଙ୍ଗରେ ଏବଂ ମଣିଷର ଜୀବନଯାପନ ପ୍ରଣାଳୀରେ " । ଏସବୁ ସହ ଲୋକ ଜୀବନ ସଂପୃକ୍ତ । ପୁନଶ୍ଚ ସାହିତ୍ୟ ଦେଇ ଲୋକ ଓ ତାହାସହ ଘଟିତ ପ୍ରସଙ୍ଗାଦି ପ୍ରତିଫଳିତ ହୋଇଥାଏ । ଓଡ଼ିଆ ଭାଷାରେ ଲିଖିତ ମୌଳିକ ଓଡ଼ିଆ ପୁରାଣ ସାହିତ୍ୟ କୃତିଭାବେ ମାନିତ ଦାଣ୍ଡିରାମାୟଣରେ ଓଡ଼ିଶାର ଲୋକସଂସ୍କୃତି ପ୍ରତିଫଳିତ ହେବା ସ୍ୱାଭାବିକ । ଏହାକୁ ଅବଧାରଣ କରାଯିବା ପାଇଁ ପଣ୍ଡିତ ନୀଳକଣ୍ଠ ଦାସ ଯେଉଁ ସୂତ୍ର- ନିର୍ଦ୍ଦେଶ କରି ଅଛନ୍ତି ତାହା ଉଦ୍ଧାରଯୋଗ୍ୟ । ପଣ୍ଡିତଙ୍କ ମତରେ "ବ୍ୟାପକଭାବେ ବୁଝିଲେ, ସମାଜ ବିକାଶର ପ୍ରକାଶ ହେଉଚି ସାହିତ୍ୟ । ଏଇ ବିକାଶର ଚଳଣି ସଂସ୍କୃତିରେ ଧରାହୁଏ । ସାହିତ୍ୟରେ ଏଇ ସଂସ୍କୃତି ମପାହୁଏ ।" ସଂସ୍କୃତିକୁ ସାହିତ୍ୟରୁ ବାଛି ଦେଖାଇବା ପାଇଁ ନୀଳକଣ୍ଠ ତିନୋଟି ଦିଗ ଦର୍ଶାଇଛନ୍ତି । ଗ୍ୱହାଣି, ଚଳଣି ଓ ଚମକ । ଗ୍ୱହାଣି କହିଲେ ତତ୍ତ୍ୱ କଥା, ଆଲୋଚନା ଆବିଷ୍କାର, ଚଳଣି ବୋଇଲେ ସମାଜରେ ଦିଆ ନିଆ ବ୍ୟାପାର ଓ ଚମକ କହିଲେ 'ସଂକେତର ଆକସ୍ମିକତା ଓ ଭାବର ଅମାପ ସ୍ଫୁରଣ ।" ଖୁବ୍ ସମ୍ଭବତଃ ଏଇ ଧାରାରେ ଭୋଳାନାଥବାବୁ ଦାଣ୍ଡିରାମାୟଣରୁ ଲୋକ ସଂସ୍କୃତିର ଅନ୍ୱେଷଣ କରିଛନ୍ତି ।

ନରେନ୍ଦ୍ର ମିଶ୍ରଙ୍କ ଅଭିମତକୁ ଉଦ୍ଧାରପୂର୍ବକ ଭୋଳାନାଥ ରାଉତ ଦାଣ୍ଡିରାମାୟଣକୁ ଏକ ପାରିବାରିକ ମହାକାବ୍ୟ କହିଛନ୍ତି । ତହିଁରେ ପରିବାରର ପୂଜା, ପାର୍ବଣ, ବ୍ରତ, ଜାତକର୍ମ, ବିବାହ ଓ ମୃତକ୍ରିୟା ଭଳି ଲୋକସଂସ୍କୃତି ପ୍ରତିଫଳିତ ହୋଇଛି । ଷୋଡ଼ଶ ଶତାବ୍ଦୀରେ ଓଡ଼ିଶାର ସମାଜ ଜୀବନନରେ ପିଲା ଜନ୍ମ ହେଲେ କିଭଳି ଉତ୍ସବ ପାଳନ ଓ ତାର ନାମକରଣ ଆଦି ବିଧାନ କରାଯାଇଥିଲା ତହିଁର ଚିତ୍ର ରାମାୟଣରେ ବର୍ଣ୍ଣିତ । ଗର୍ଭାଧାନ ଉତ୍ସବ ପ୍ରସଙ୍ଗରେ ଅବତାରଣା କରିଛନ୍ତି ବଳରାମ । ଗର୍ଭସ୍ରାବ ସହଜ କରାଇବା ପାଇଁ ଗର୍ଭବତୀକୁ ମନ୍ତୁରାପାଣି ପିଆଇବା ଥିଲା ସେ ସମୟର ଲୋକାଚାର । ଏହା ବଳରାମ ଦାସ ଉତ୍ତରାକାଣ୍ଡରେ ସୀତାଙ୍କ ଲବ-କୁଶ ଜାତ ପରିପ୍ରେକ୍ଷୀରେ ଉଲ୍ଲେଖ କରିଅଛନ୍ତି । ଗର୍ଭାବସ୍ଥାରେ ନାରୀମାନଙ୍କୁ ସାଦ ଖାଇବାକୁ ଦିଆଯିବା ସେକାଳର ଲୋକଚଳଣି ଥିଲା । ବଳରାମଙ୍କ ରାମାୟଣରେ ବର୍ଣ୍ଣିତ

କର୍ଣ୍ଣବେଧ, ଉପନୟନ, ବିବାହ ବିଧି ମୃତକର ଅନ୍ତ୍ୟେଷ୍ଟିକ୍ରିୟା ତତ୍‌କାଳୀନ ଲୋକଚଳଣିରେ ପ୍ରବର୍ତ୍ତିତ ଥିବା ଏକ ଏକ ସାଂସ୍କୃତିକ ଅନୁଷ୍ଠାନ । ବିବାହ ପରେ କନ୍ୟାକୁ ବିଦାୟ ଦିଆଯିବା ଏକ ସାମାଜିକ ପରଂପରା । ଶାଶୁଘରେ କିପରି ଚଳିବାକୁ ହେବ, ଏ ସମ୍ବନ୍ଧୀୟ କନ୍ୟାକୁ ଉପଦେଶ ପ୍ରଦାନ ଏକ ଲୋକସାଂସ୍କୃତିକ ବିଧି । ବଳରାମଙ୍କ ରାମାୟଣରେ ଏହାର ଚିତ୍ର ଦେଖିବାକୁ ମିଳେ । ସୀତାଙ୍କୁ ଜନକ ଉପଦେଶ ଦିଅନ୍ତି ।

"ଶଶୁର ଘରକୁ ଏବେ ଯାଉଅଛୁ ମାଏ
ତହିଁ ନ କରିବୁ ମାଗୋ ବାପଘର ପ୍ରାୟେ ।
ଶାଶୁଙ୍କୁ ଦେଖିଣ ବେଗେ ଆସନୁ ଉଠିବୁ
ପାଦରେ ଓଳଗି ହୋଇ ଅନ୍ତରେ ବସିବୁ ।
x x x
ଦାସୀଙ୍କ ସଙ୍ଗତେ ନୋହିବୁ ମେଳମତି
ଅବିରତେ କରୁଥିବୁ ସ୍ୱାମୀରେ ଭଗତି"
x x x
ଅପୂର୍ବ ପଦାର୍ଥ ଗୋ ଦେଖିଲେ ନ ମାଗିବୁ
ରାତ୍ରି ଦିବସ ଗୋ ତୁ ବିନୟୀ ହୋଇଥିବୁ ।।"

ଅଧିକନ୍ତୁ ବିବାହ ସମୟର ପାଣିତୋଳା (ବଳରାମଙ୍କ ଭାଷାରେ ସାତ ଅହ୍ୟନାରୀ ଘର ଘର ବୁଲି ଅହ୍ୟନାରୀମାନଙ୍କ ଠାରୁ ପାଣିଆଣନ୍ତି- "ଦିବସରେ ନ ଯାଇଁ ଆଣିଲେ ଯହୁଁ ରାତି/ ତେଣୁକରି ଗ୍ରେରିପାଣି ସଂସାରେ ବୋଲନ୍ତି)" କୋଇଲି ବୁଡ଼' (ଗୃହୀତ ପାଣିରେ ବରକୁ ଗାଧୁଆନ୍ତି- "ଏମନ୍ତ ସମୟେ ଯେ କୋକିଳ ଧ୍ୱନି କଲା/ କୋଇଲିର ବୁଡ଼ ବୋଲି ଶବ୍ଦ ଶୁଭିଲା ।") ଲବଣ ଚଉଁରି, ଅତୁଠରୁ ପାଣିଅଣା , ଗୀତଗାନ ଭଳି ଲୋକସଂସ୍କୃତିର ଚିତ୍ର ଆଦିକାଣ୍ଡର ସୀତାବିବାହ ପ୍ରସଙ୍ଗରେ ବର୍ଣ୍ଣିତ ।

ଭୋଳାନାଥ ରାଉତ ଦାଣ୍ଡିରାମାୟଣ ଆଧାରରେ ଉଲ୍ଲେଖ କରିଛନ୍ତି "ପାପାଗ୍ରପ୍ରତି ବିଦ୍ୱେଷ ଭାବ ଉତ୍କଳୀୟ ଲୋକସଂସ୍କୃତିର ଆଦର୍ଶ । ବଳରାମ ଦାସ ଚକ୍ରବାକ ପକ୍ଷୀର ଶ୍ରୀରାମଙ୍କୁ ଭର୍ତ୍ସନା ପ୍ରସଙ୍ଗରେ ଏହାର ସୂଚନା ଦେଇଅଛନ୍ତି । ପଶୁପକ୍ଷୀର ରମଣ ଦେଖିବା, ଉଲଗ୍ନ ଋଷି, ଋଷିକନ୍ୟା, ଯୁବତୀର ମୁଖ ଦର୍ଶନ କରିବା ପାପ ।" ରାମାୟଣର ଅଯୋଧ୍ୟା କାଣ୍ଡରେ ବି ଲୋକ ବିଶ୍ୱାସରେ ଥିବା ପାପକାର୍ଯ୍ୟର ବିବରଣୀ ପ୍ରଦାନ କରିଛନ୍ତି ଭରତଙ୍କ ଚିନ୍ତାରେ । ଯେପରି -

"ପୁତ୍ର ନଥିଲା ଲୋକ ଯେବଣ ଗତିଯାଇ
ଶ୍ରୀରାମଙ୍କୁ ମୋହର ଯେବେ ହୃଦରେ ପାପଥାଇ ।
ସେଗତି ମୋତେ ଯେ ହୋଇବ ପରାପତ
ଯେ ଅବା ହରଇ ପରର ଆଏ ବିତ୍ତ ।"

ଅନୁରୂପ ରୀତିରେ ପାପର ତାଲିକା ଏହିପରି- ଯେ ବିନା କାରଣରେ ପ୍ରାଣୀକୁ ଦଣ୍ଡଦିଏ, ଦିନର ଦିବାଭାଗରେ ଦୁଇଥର ଭୋଜନ କରେ, ପର୍ବଦିନରେ ଛଅର ଛୁଏ, ଯେଉଁ କ୍ଷତ୍ରିୟ ପୁଷ୍ଠକୁ ମୁହଁମୋଡ଼େ, ଅନ୍ୟର ସ୍ତ୍ରୀକୁ ବଳାତ୍କାର କରେ, ରବିବାରରେ ମାଛ ଭୋଜନ କରେ, ବାଟର ଗଛ କାଟେ, ରାତିରେ ବେଲ କଇଥ ଖାଏ, ଅମାବାସ୍ୟା ସଂକ୍ରାନ୍ତି ଓ ଏକାଦଶୀରେ ତେଲଲଗାଏ ଗାଧାଏ ଇତ୍ୟାଦି । ଷୋଡ଼ଶ ଶତାବ୍ଦୀର ସମାଜ ଜୀବନରେ ଲିଖିତ ପ୍ରସଙ୍ଗ ଗୁଡ଼ିକ ପାପକାର୍ଯ୍ୟ ରୂପେ ଗୃହୀତ ହେଉଥିଲା ।

ଲୋକ ସଂସ୍କୃତିରେ ଲୋକବିଶ୍ୱାସ, ଲୋକାଗ୍ରହ, ଲୋକପ୍ରଥା ହେଉଛି ମୁଖ୍ୟ କଥା । ଲୋକ ବିଶ୍ୱାସ ଆଧାରରେ ଲୋକାଗ୍ରହ ପାଳିତ ଓ ଲୋକପ୍ରଥା ପ୍ରବର୍ତ୍ତିତ ହୋଇଥାଏ ସମାଜରେ । ବଳରାମ ଦାସଙ୍କ ଦାଣ୍ଡିରାମାୟଣରେ ବର୍ଣ୍ଣିତ ଲୋକ ବିଶ୍ୱାସକୁ ଭୋଳାନାଥବାବୁ ଶକୁନ, ସ୍ୱପ୍ନ, ଜ୍ୟୋତିଷ, ତନ୍ତ୍ରଆଦି ଭିତ୍ତିରୁ ବିଭାଗ କରି ଉପସ୍ଥାପନ କରିଅଛନ୍ତି । ଶକୁନର ଉତ୍ସ ସମ୍ବନ୍ଧରେ ଲେଖକ ବରାହ ମିହିରଙ୍କ 'ବୃହତ୍‌ସଂହିତା' କଥା ଦର୍ଶାଇଛନ୍ତି । ଶକୁନର ପର୍ଯ୍ୟାୟବାଚୀ ଶବ୍ଦ ପକ୍ଷୀ ବୋଲି ସେ ଦର୍ଶାଇଛନ୍ତି । ତେବେ ସଙ୍କେତ ଦୃଷ୍ଟିରୁ ଏହାର ପ୍ରଚଳନ ରହିଛି । ଯେପରି ବାଁ ଆଖି ତେଇଁବା ଖରାପ, ଡାହାଣ ଆଖି ତେଇଁବା ଭଲ । ଜଳପୂର୍ଣ୍ଣ ମାଠିଆ ଦେଖି ଯାତ୍ରା କରିବା ଶୁଭ, ଖାଲି ମାଠିଆ ଅଶୁଭ । ବଳରାମଙ୍କ ରାମାୟଣରେ ଶୃଗାଳ ବୋବାଇବା, ଆକାଶରେ ଧୂମକେତୁ ଦେଖାଯିବା, ସାପଫେଣାଟେକି ଗର୍ଜିବା ବତାସ ବହିବାକୁ ଅଶୁଭ ଶକୁନ ଓ ଆକାଶରେ ନାନାବର୍ଣ୍ଣ ପକ୍ଷୀ ଉଡ଼ିବା, ପୂର୍ଣ୍ଣକୁମ୍ଭ, ରୋହିମାଛ ଦେଖିବାକୁ ଶୁଭ ଶକୁନରୂପେ ବର୍ଣ୍ଣନା କରାଯାଇଛି ।

ଜନ୍ମଠାରୁ ମୃତ୍ୟୁପର୍ଯ୍ୟନ୍ତ ବ୍ୟକ୍ତିର କ୍ରିୟାକର୍ମ ଜ୍ୟୋତିଷୀ ଗଣନା ଅର୍ଥାତ୍ ଦିନ, ବାର, ତିଥି, ମୁହୂର୍ତ୍ତ ଆଦି ବିଶ୍ୱରିତ ଘଟନାଦ୍ୱାରା ପରିଗ୍ରାଳିତ ହେବା ଲୋକ ସଂସ୍କୃତିର ଏକ ବିଶେଷ ଦିଗ । ଏହି ଭିତ୍ତିରେ ସୃଷ୍ଟିହୋଇଛି ନାନା ଲୋକପ୍ରଥା, ବେଳକାଳ, ଭାଗ୍ୟ, କର୍ମଫଳ ଆଦି କଥା । ଲୋକ ସଂସ୍କୃତିର ପ୍ରଥାକୁ କିଭଳି ନିମନ୍ତ୍ରଣ କରିଛି ତାହା ଉଦାହରଣ ସହ ଚର୍ଚ୍ଚା କରାଯାଇଛି ଦାଣ୍ଡିରାମାୟଣରେ ଓଡ଼ିଶାର ଲୋକସଂସ୍କୃତି ପୁସ୍ତକରେ । ଲୋକଚଳଣି ଓ ଲୋକଦେବତା ମଧ୍ୟ ଲୋକସଂସ୍କୃତି ଅଧ୍ୟୟନର ଦୁଇଟି ଦିଗ । ଷୋଡ଼ଶ ଶତାବ୍ଦୀରେ ସାମାଜିକ

ଜୀବନ କିଭଳି ଲୋକଚଳଣି ଅବଲମ୍ବନ କରିଥିଲା ଓ କେଉଁକେଉଁ ଦେବଦେବୀ ଲୋକଙ୍କ ଦ୍ୱାରା ପୂଜିତ, ଉପାସିତ ହୋଇଥିଲେ ତାହା ଦାଣ୍ଡିରାମାୟଣରୁ ଦର୍ଶାଇଛନ୍ତି ଡକ୍ଟର ରାଉତ । ସବୁଠୁ ବଡ଼କଥା ହେଉଛି ଏସବୁ କଥାଗୁଡ଼ିକୁ ସେ ଭାରତବର୍ଷର ମହାନ ଶାସ୍ତ୍ରୀୟ ଗ୍ରନ୍ଥ ଦର୍ଶନ, ସଂହିତା, ଉପନିଷଦ ଆଦି ଭିତ୍ତିରେ ବଳିଷ୍ଠ ଯୁକ୍ତିପୂର୍ବକ ଲେଖିଅଛନ୍ତି ।

ଆଲୋଚ୍ୟ ପୁସ୍ତକର ଆଉ ଏକ ବଳିଷ୍ଠ ଅଧ୍ୟାୟ ହେଉଛି ବାଲ୍ମୀକିଙ୍କ ଠାରୁ ଷୋଡ଼ଶ ଶତାବ୍ଦୀ ପର୍ଯ୍ୟନ୍ତ ଭାରତ ଓ ଭାରତ ବାହାରେ ରଚିତ ରାମ ସାହିତ୍ୟର ଚର୍ଚ୍ଚା । ବଳରାମ ଦାସଙ୍କ ଜୀବନର ଇତିବୃତ୍ତ ଓ ତାଙ୍କ ସାହିତ୍ୟକୃତିଗୁଡ଼ିକ ସଂକ୍ଷେପରେ ତଥା ପ୍ରଭାବଶାଳୀ ଭାଷାରେ ଅଭିବ୍ୟକ୍ତ କରାଇବାରେ ଭୋଳାନାଥବାବୁଙ୍କ କୃତିତ୍ୱ ବାରିହୋଇପଡ଼େ । ଇତି ପୂର୍ବରୁ ସମାଲୋଚକ ଓ ଗବେଷକ ଡକ୍ଟର ନରେନ୍ଦ୍ରନାଥ ମିଶ୍ର ଲେଖିଥିବା "ବଳରାମ ଦାସ ଓ ଓଡ଼ିଆ ରାମାୟଣ" (୧୯୫୫) ଡକ୍ଟର ସଂଧ୍ୟା ପଟ୍ଟନାୟକଙ୍କ "ଜଗମୋହନ ରାମାୟଣରେ ସାମାଜିକ ଚିତ୍ର" (୧୯୯୭) ବହିରେ ରହିଯାଇଥିବା 'ଦାଣ୍ଡି ରାମାୟଣ ସଂପର୍କିତ ଆଲୋଚନାର ଅପୂର୍ଣ୍ଣତା କିୟତ ପରିମାଣରେ ପୂର୍ଣ୍ଣତାପ୍ରାପ୍ତ ହୋଇଛି ଦାଣ୍ଡିରାମାୟଣରେ ଓଡ଼ିଶାର ଲୋକ ସଂସ୍କୃତି' ପୁସ୍ତକ ପ୍ରଣୟନ ଦ୍ୱାରା । ଏହି ବହିର ଆଦ୍ୟ କଥନୀ ପର୍ଯ୍ୟାୟରେ ଲେଖକ ଏହା ସୂଚାଇଛନ୍ତି । ଦାଣ୍ଡି ରାମାୟଣରେ ବର୍ଣ୍ଣିତ ଦେହଲାଗି ଅଳଙ୍କାର, ଟୋପି, ପରିଧାନ ଓ କେଶବିନ୍ୟାସ ରୀତିର ଚିତ୍ର ଏ ବହିର ଆଉ ଏକ ଗୁରୁତ୍ୱପୂର୍ଣ୍ଣ ବିଭବ । ଦାଣ୍ଡିରାମାୟଣରେ ଚିତ୍ରିତ ଲୋକସଂସ୍କୃତି ସମ୍ବନ୍ଧୀୟ ବିବିଧ ବ୍ୟାପାର କିଭଳି ପ୍ରାଚୀନ କାଳର ଗୁମ୍ଫାଚିତ୍ର, ପ୍ରସ୍ତର ମୂର୍ତ୍ତିରେ ଉତ୍କୀର୍ଣ୍ଣ ତହିଁର ଫଟୋ ଏ ପୁସ୍ତକରେ ପ୍ରଦତ୍ତ । ଉପସଂହାରରେ ଏତିକି କହିଲେ ଯଥେଷ୍ଟ ହେବ ସମାଜତତ୍ତ୍ୱ, ନୃତତ୍ତ୍ୱ, ଇତିହାସ, ଧର୍ମଶାସ୍ତ୍ର, ଜ୍ୟୋତିଷ, ଶିଳ୍ପଶାସ୍ତ୍ର ଏବଂ ସାହିତ୍ୟ ଅଧ୍ୟୟନର ସମନ୍ୱୟ ଶୃଙ୍ଖଳାରେ ରଚିତ "ଦାଣ୍ଡିରାମାୟଣରେ ଓଡ଼ିଶାର ଲୋକସଂସ୍କୃତି" କେବଳ ପିଏଚ୍‌ଡି ଡିଗ୍ରୀ କର୍ମର ଏକ ଆଦର୍ଶ ନିବନ୍ଧ ନୁହେଁ; ବରଂ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, କେଦାରନାଥ ମହାପାତ୍ର, ଚକ୍ରଧର ମହାପାତ୍ର ଆଦିଙ୍କ ଓଡ଼ିଆ ସାହିତ୍ୟ ରଚନା ଧାରାରେ ଆଉ ଏକ ଅପୂର୍ବ ଗ୍ରନ୍ଥକୃତି । ଏଭଳି ଏକ ମହତକୃତିପାଇଁ ଡକ୍ଟର ଭୋଳାନାଥ ରାଉତ ଓଡ଼ିଆ ସାହିତ୍ୟର ଇତିହାସରେ ଜଣେ ବଳିଷ୍ଠ ଗବେଷକ ରୂପେ ସ୍ୱୀକୃତ ହେବେ ଓ ସ୍ମରଣୀୟ ରହିବେ ନିଶ୍ଚୟ । ■

ବି/୪୯, ସେକ୍ଟର-୮, ସିଡିଏ, କଟକ-୧୪

ମୋ- ୯୪୩୭୭୧୯୯୧୪

# ଜଗତସିଂହପୁର : ଅତୀତ ଓ ବର୍ତ୍ତମାନ ଏବଂ ଡଃ ଭୋଳାନାଥ ରାଉତ

ଡକ୍ଟର ଦୀନବନ୍ଧୁ ଦାଶ

ଡକ୍ଟର ଭୋଳାନାଥ ରାଉତ ଜଗତସିଂହପୁର ଜିଲ୍ଲାର ଜଣେ ବିଶିଷ୍ଟ ସାହିତ୍ୟ ଓ ସଂସ୍କୃତି ସଂଗଠକ ଭାବରେ ବୁଦ୍ଧିଜୀବୀ ଗୋଷ୍ଠୀର ନମସ୍ୟ । ଜିଲ୍ଲାର ମାଟି, ପାଣି, ପବନ ପ୍ରତି ତାଙ୍କର ଶ୍ରଦ୍ଧା ଓ ସମ୍ମାନ ଅପ୍ରତିମ । ତାଙ୍କର ବିଶ୍ୱାସ ଏମାଟିର ପ୍ରତ୍ୟେକଟି କଣିକାରେ ଭରିରହିଛି ସୃଜନଶକ୍ତିର ପ୍ରାଚୁର୍ଯ୍ୟ ରୂପରେ । ପାଣିର ପ୍ରଭାବରେ ଅଛି ଜୀବନରସର ଉଲ୍ଲାସ ଏବଂ ପବନର ହିଲ୍ଲୋଳରେ ଅଛି ଦଶଦିଶଙ୍କୁ ମହକିତ କରିବାର ମାଦକତା । ଶିକ୍ଷା ଓ ସାହିତ୍ୟ ସଂସ୍କୃତି କୃଷି ପ୍ରତ୍ୟେକଟି କ୍ଷେତ୍ରରେ ଏ ଜିଲ୍ଲା ଅଗ୍ରଣୀ । ସେ ଦାମ୍ଭିକ ନୁହଁନ୍ତି, ଏସବୁ ଅସ୍ଫାଳନ ତାଙ୍କର ବୃଥା ଆତ୍ମମ୍ଭରିତା ନୁହେଁ; କାରଣ ପ୍ରମାଣ ସିଦ୍ଧ ଉପାୟରେ ଏ ଜିଲ୍ଲାର ଗରିମା ସେ ବାରମ୍ବାର ସାର୍ବଜନୀନ କରି ଆସିଛନ୍ତି । ଏହାର ଏଯାବତ୍ ଶେଷ ଫର୍ଦ୍ଦଟି ହେଲା "ଜଗତସିଂହପୁର : ଅତୀତ ଓ ବର୍ତ୍ତମାନ" ଶୀର୍ଷକ ଏକ ବିରାଟ ସଂକଳନର ସଂପାଦନା ।

ବୃତ୍ତି ଦୃଷ୍ଟିରୁ ଜଣେ ଅଧ୍ୟାପକ ଦୀର୍ଘ ଚ୍ୱରି ଦଶନ୍ଧି ଧରି ସେ ଓଡ଼ିଆ ଭାଷା, ସାହିତ୍ୟ ଓ ସଂସ୍କୃତି ସେବା କରି ଆସିଛନ୍ତି । କେବଳ ଅଧ୍ୟୟନ ଓ ଅଧ୍ୟାପନା ମଧ୍ୟରେ ଏହା ସୀମିତ ରହିନାହିଁ । ଛାତ୍ରଛାତ୍ରୀ ଓ ଜନସାଧାରଣଙ୍କ ମଧ୍ୟରେ ସାହିତ୍ୟ ପ୍ରତି ଶ୍ରଦ୍ଧା ସୃଷ୍ଟିରେ ତାଙ୍କର ନିରବଚ୍ଛିନ୍ନ ଉଦ୍ୟମ ତାଙ୍କୁ ପ୍ରଶଂସନୀୟ କରିଛି । ଜଗତସିଂହପୁର ସଂସ୍କୃତି ପରିଷଦ, ଜଗତସିଂହପୁର ଗବେଷଣା ପରିଷଦ ଭଳି ସକ୍ରିୟ ସଙ୍ଗଠନ ସହ ସେ ଅଙ୍ଗାଙ୍ଗୀ ଜଡ଼ିତ । ଜିଲ୍ଲାର ମହତ୍ତ୍ୱ ବା ବୈଶିଷ୍ଟ୍ୟର ବିସ୍ତାର ଲାଗି ଏସବୁ ଅନୁଷ୍ଠାନକୁ ସେ ବ୍ୟବହାର କରିଛନ୍ତି । ଏଥିପାଇଁ ତାଙ୍କର ବୃତ୍ତିତାଙ୍କୁ ଅଧିକ ପ୍ରେରିତ ଓ ସହଯୋଗ କରିଛି । ଓଡ଼ିଆ ସାହିତ୍ୟର ବିଚ୍ୱର କାଳରେ ଜଗତସିଂହପୁରର ଭୂମିକା ନିର୍ଦ୍ଧାରଣର ନିୟମିତ ସୁଯୋଗ ପାଇଛନ୍ତି ସେ । ଲକ୍ଷ୍ୟ କରିଛନ୍ତି - ପ୍ରାଦେଶିକ ସାହିତ୍ୟର ମହକ ଏଇ ତ୍ରିକୋଣଭୂମିରୁ ହିଁ ସଞ୍ଚରିତ ହୋଇ ପ୍ରସରିତ ହୋଇଛି ଓଡ଼ିଶାକୁ । ଭାଷାର ଶୈଶବ କାଳରେ ସାହିତ୍ୟ ସୃଷ୍ଟି ଲାଗି ଏହାର

ସାମର୍ଥ୍ୟ ପ୍ରମାଣ କରିଛନ୍ତି ଆଦିକବି ସାରଳା ଦାସ । ତାହା ପୁଣି ଛୋଟମୋଟ୍ ବା ବିକ୍ଷିପ୍ତ ରଚନା ଜରିଆରେ ନୁହେଁ, ବିପୁଳ ଅଠର ଖଣ୍ଡିଆ ମହାଭାରତ ଜରିଆରେ । ସାରଳାଙ୍କର ବିପ୍ଳବ ଅତ୍ୟାଧୁନିକ କାଳରେ ଆହୁରି ବ୍ୟାପକ ହୋଇଛି । ଏବେକାର ବହୁ ଗଣ୍ୟମାନ୍ୟ ଲେଖକ ଏଇମାଟିର । ଜିଲ୍ଲାର ଏହିଭଳି ସାରସ୍ୱତ ଅତୀତ ଓ ବର୍ତ୍ତମାନକୁ ନେଇ ଡକ୍ଟର ରାଉତ ସତତ ସ୍ପର୍ଦ୍ଧୀ । ସଂଯୋଗବଶତଃ ତାଙ୍କର ସୁଦୀର୍ଘ ଚାକିରି କାଳର ସିଂହଭାଗ କଟିଛି ଏଇ ଜିଲ୍ଲାରେ, ମୁଖ୍ୟତଃ ସଦର ମହକୁମାର ସ୍ୱାମୀ ବିବେକାନନ୍ଦ ସ୍ମାରକୀ ମହାବିଦ୍ୟାଳୟରେ । ମହାବିଦ୍ୟାଳୟ ଅତିରିକ୍ତ ସହରର ଜଣେ ପ୍ରମୁଖ ବ୍ୟକ୍ତି ଭାବରେ ତାଙ୍କର ପତିଆରା ପ୍ରତିଷ୍ଠିତ । ଦଶନ୍ଧି ଦଶନ୍ଧିର ତାଙ୍କ ଛାତ୍ରଛାତ୍ରୀ ବିବିଧ କ୍ଷେତ୍ରରେ ଯଶସ୍ୱୀ । ଏଣୁ ନିଜର ସାହିତ୍ୟିକ ତଥା ସାଂସ୍କୃତିକ ଅଭୀପ୍ସାର ପରିପୂର୍ତ୍ତି ଲାଗି ଗଠିତ ସଂଗଠନର ସଞ୍ଚାଳନ ତାଙ୍କ ପାଇଁ ସୁଗମ ହୋଇଛି । ବିଭିନ୍ନ ସମୟରେ ଏହାର ପ୍ରମାଣ ଆମ ସମ୍ମୁଖକୁ ଆସିଛି । ତେବେ ତାଙ୍କର ଅଭିଳାଷ ଓ ସୁଯୋଗ ସମନ୍ୱିତ ହୋଇ ଶେଷତଃ ଜିଲ୍ଲାବାସୀଙ୍କ ହାତକୁ ଆସିଛି "ଜଗତସିଂହପୁର : ଅତୀତ ଓ ବର୍ତ୍ତମାନ" ଯାହା ଜିଲ୍ଲାର ପ୍ରତ୍ୟେକ ବିଭବର ପରିଚୟ ବିଜ୍ଞାପିତ କରିବାରେ ସମର୍ଥ ।

ଡକ୍ଟର ରାଉତଙ୍କର ବିଶ୍ୱାସ, ଜଗତସିଂହପୁର ଏକ ଗୌରବାବହ ସ୍ଥାନ ଏବଂ ଜାତୀୟ ଇତିହାସରେ ଏହାର ସ୍ୱାତନ୍ତ୍ର୍ୟ ବେଶ ସ୍ପଷ୍ଟ । କେବଳ ସାହିତ୍ୟ ନୁହେଁ; ସଂସ୍କୃତି ଐତିହ୍ୟ, ପରଂପରା ଓ ସର୍ବୋପରି ସ୍ୱାଧୀନତା ଆନ୍ଦୋଳନରେ ଏ ଜିଲ୍ଲାର ଭୂମିକା ତଥା ଗରିମା ସନ୍ଦେହାତୀତ । (ଦ୍ରଷ୍ଟବ୍ୟ- ଜ.ଅ.ବ. ୧ମଖଣ୍ଡ ମୁଖବନ୍ଧ-ପୃ ଘ) "ପୂର୍ବରୁ ଏ ସବୁର ବିସ୍ତୃତ ଆଲୋଚନା ଯେ ହୋଇନାହିଁ , ଏମନ୍ତ ନୁହେଁ । ମାତ୍ର ସେସବୁ ସୀମିତ ଥିଲା ଭାଷଣବାଜିରେ ଓ ବିକ୍ଷିପ୍ତ ରଚନାରେ ଅନେକ କ୍ଷେତ୍ର ମଧ୍ୟ ଅସ୍ପଷ୍ଟ ହୋଇ ରହିଥିଲା । ବିଧିବଦ୍ଧ ଭାବେ ସବୁକିଛିକୁ ଗୋଟିଏ ମାଳାରେ ଲିଖିତ କରିବା ଥିଲା ତାଙ୍କର ସ୍ୱପ୍ନ । ଏ ସ୍ୱପ୍ନର ଉଦ୍‌ଭାସନ କାଳ ବିଗତ ଶତାବ୍ଦୀର ୯ମ ଦଶକର ପ୍ରାରମ୍ଭ । ବିବିଧ ବିଡ଼ମ୍ବନା ତାଙ୍କ ସହ ଲୁଚିକାଳି ଖେଳିଛି । ସାହସ ସୁଯୋଗର ଅପେକ୍ଷା କରିଛି, ଯାହା ଫଳବତୀ ହୋଇଛି ୨୦୦୬ ମସିହାରେ ଏବଂ ଉତ୍ସୁକ ଜିଲ୍ଲାବାସୀ ପାଇଛନ୍ତି ଜିଲ୍ଲାର ପରିଚୟ ଦର୍ପଣ, ତିନିଖଣ୍ଡିଆ "ଜଗତସିଂହପୁର ଅତୀତ ଓ ବର୍ତ୍ତମାନ" ।

୨୦୦୬ ମସିହାରୁ ପ୍ରକାଶ ପାଇଥିଲେହେଁ ୧୬୫୦ ପୃଷ୍ଠାର ସୁଦୀର୍ଘ ଏହି ସଂକଳନଟିର ସମୀକ୍ଷା ବା ବିସ୍ତୃତ ଆଲୋଚନା ଦୃଷ୍ଟିକୁ ନଆସିବା ଦୁର୍ଭାଗ୍ୟର କଥା । ଜଗତସିଂହପୁର ଶିକ୍ଷାରେ ସର୍ବାଗ୍ରେ. ଏଠି ଗୋଡ଼ିମାଟି ସଚେତନ; ଅଥଚ ଜିଲ୍ଲାର ହିତକଳ୍ପେ ଜନୈକ ପ୍ରମୁଖ

ବ୍ୟକ୍ତିଙ୍କ ତିନି ଦଶନ୍ଧିର ସାଧନା ପ୍ରସ୍ଫୁତ ସିଦ୍ଧି, ପତ୍ର ଏଠାକାର ଭୂମିରୁ ଭୂମା ଯାବତ ପ୍ରତ୍ୟେକଟି କଡ଼ି ଉରିବର ପ୍ରୟାସ କରାଯାଇଛି, ଯେଉଁଥିରେ ଓଡ଼ିଶାର ବହୁ ପ୍ରମୁଖ ସିଦ୍ଧ ସାଧକଙ୍କର ଗବେଷଣାର ସ୍ୱାକ୍ଷର ଲିପିବଦ୍ଧ । ବିପୁଳ ସରକାରୀ ଅର୍ଥ ବିନିଯୁକ୍ତ ସେପ୍ରତି କୌଣସି ସୁଧୀ ପାଠକର ଦୃଷ୍ଟି ଆକର୍ଷିତ ନହେବା ଆଦୌ ଶୁଭଲକ୍ଷଣ ନୁହେଁ । ତେବେ, ଏହା ଏକ ଅଭିନନ୍ଦନ ମୂଳକ ରଚନା ସଂକ୍ଷିପ୍ତତା ଏହାର ଚରିତ୍ର ଏଠାରେ ସବିସ୍ତର ଆଲୋଚନାର ପରିସର ନାହିଁ, ତ୍ରୁଟି ନିର୍ଦ୍ଧାରଣ ଏହାର ସ୍ୱାଭାବବିରୁଦ୍ଧ । ଏଣୁ ପ୍ରକାରାନ୍ତରେ ସଙ୍କଳନଟିର ସମୀକ୍ଷାର ପ୍ରତିଶ୍ରୁତି ସହିତ ଏଠାରେ କେବଳ ସଙ୍କଳକଙ୍କର ସ୍ୱପ୍ନର ପରିଚୟ ଦିଆଯାଉଛି ।

" ଜଗତସିଂହପୁର ଅତୀତ ଓ ବର୍ତ୍ତମାନ" ନାମାଙ୍କନ ସଙ୍କଳନରେ ଅନ୍ତର୍ଗତ ସାମଗ୍ରୀର ସ୍ପଷ୍ଟ ନିର୍ଦ୍ଦେଶ ଦିଏ । ଅତୀତ ଇତିହାସ । ଉପଲବ୍ଧ ତଥ୍ୟ ଓ ସୂଚନା ଆଧାରରେ ଐତିହାସିକ କାଳରେ ଏହି କ୍ଷୁଦ୍ର ଭୂଖଣ୍ଡର ସ୍ଥିତି ଓ ଗତି ଗ୍ରନ୍ଥଟିର ଅତୀତ ପର୍ଯ୍ୟାୟରେ ବିଶ୍ଳେଷିତ । ପୂର୍ଣ୍ଣତଃ ପ୍ରଥମ ଖଣ୍ଡ ଓ ଦ୍ୱିତୀୟ ଖଣ୍ଡର କିଛି ଅଂଶ ଏଥିପାଇଁ ବ୍ୟୟ କରାଯାଇଛି । ଜିଲ୍ଲାର ଭୂତାତ୍ତ୍ୱିକ ବୈଚିତ୍ର୍ୟ ତଥ୍ୟ ବିଶ୍ଳେଷଣରୁ ଆଲୋଚନାର ନିଅଁ ଉଠିଛି । ପ୍ରାଗୈତିହାସିକ କାଳରେ ଏବେକାର ମହାନଦୀ- କାଠଯୋଡ଼ି ତ୍ରିକୋଣଭୂମି ସମୁଦ୍ରର ଅନ୍ତର୍ଗତ ଥିବା ଓ ତିନିହଜାରରୁ ଚାରିହଜାର ବର୍ଷ ମଧ୍ୟରେ ମହାନଦୀ ଅବହାଳିକା ଗଠିତ ହୋଇଥିବାର ସମ୍ଭାବନା କରାଯାଇଛି । ପୁନଶ୍ଚ ଏହି ଅଞ୍ଚଳରେ ଉପଲବ୍ଧ ପ୍ରତ୍ନତାତ୍ତ୍ୱିକ ନିଦର୍ଶନ ୮ମ-୯ମ ଶତକରୁ ଆଦୌ ପ୍ରାଚୀନ ନୁହେଁ । ଏଣୁ ଖ୍ରୀଷ୍ଟୀୟ ୪ର୍ଥ/୫ମ ଶତକ ବେଳକୁ ଏଠାରେ ଜନବସତିର ଶୁଭାରମ୍ଭ ଘଟିଥିବାର କୁହାଯାଇଛି । ବସତି ଖୁବ ପ୍ରାଚୀନ ନହେଲେହେଁ, ଭୂଖଣ୍ଡଟି ଐତିହ୍ୟରେ ପରିପୂର୍ଣ୍ଣ । ପ୍ରଥମ ଖଣ୍ଡର ବିପୁଳାଂଶ ଏହାର ପ୍ରମାଣରେ ନିୟୋଜିତ ହୋଇଛି । ସଂକଳକ ଭୂତାତ୍ତ୍ୱିକ ବିଶେଷତ୍ୱ ସହିତ ନୃତାତ୍ତ୍ୱିକ ବିଶେଷତ୍ୱ, ଭୂଗୋଳ ଓ ଜାତି ବ୍ୟବସ୍ଥାର ଆବଶ୍ୟକୀୟ ବିଚାର ପରେ ଜିଲ୍ଲାର ପ୍ରତ୍ନତାତ୍ତ୍ୱିକ ବିଶେଷତ୍ୱ ଓ ଧର୍ମ ପରଂପରାକୁ ପ୍ରାଧାନ୍ୟ ଦେଇଛନ୍ତି । ପ୍ରତ୍ନତତ୍ତ୍ୱ, ଧର୍ମ ଓ ସାହିତ୍ୟ ପ୍ରାୟତଃ ଗୋଟିଏ ଗୋଟିଏ ପ୍ରବନ୍ଧରେ ଏକତ୍ର ଆଲୋଚିତ ହୋଇଛି । ଏଠାରେ ଜୈନ ଓ ବୌଦ୍ଧଧର୍ମର ପ୍ରାଚୀନତା ସାଙ୍ଗକୁ ବିଭିନ୍ନ ମନ୍ଦିରରେ ତାହାର ସ୍ମାରକୀର ଉଲ୍ଲେଖ ରହିଛି । ସମୟାନ୍ତରରେ ବୌଦ୍ଧ ଓ ଜୈନ ଦେବଦେବୀ ହିନ୍ଦୁବିଗ୍ରହକୁ ରୂପାନ୍ତର ହୋଇଛନ୍ତି । ପରବର୍ତ୍ତୀ କାଳର ଶୈବ ଓ ଶାକ୍ତପୀଠଗୁଡ଼ିକରେ ମୁଖ୍ୟତଃ ଏଭଳି ଘଟଣା ଘଟିଛି । ଏହା ସହିତ ବୈଷ୍ଣବ, ସୌର, ଗାଣପତ୍ୟ ଧର୍ମ ସଂଶ୍ଲିଷ୍ଟ ମନ୍ଦିରଗୁଡ଼ିକର ଭାସ୍କର୍ଯ୍ୟର ପରିଚୟ ପ୍ରଦାନ କରାଯାଇଛି । ଆଲୋଚକମାନେ ବିବିଧ ଧର୍ମର କଳା ଭାସ୍କର୍ଯ୍ୟର ସ୍ମାରକୀର ଉଲ୍ଲେଖ ଅତିରିକ୍ତ । ସାରଳା ସାହିତ୍ୟରୁ ସେହିସବୁ ଧର୍ମ ଓ ଦେବଦେବୀଙ୍କର ଉଲ୍ଲେଖର

ବିସ୍ତୃତ ଅବତାରଣା କରିଛନ୍ତି । ପ୍ରଥମ ଖଣ୍ଡରେ ଜିଲ୍ଲାର ନୌବାଣିଜ୍ୟ ପରଂପରାର ଗୌରବ ଉପସ୍ଥାପନ କରାହୋଇଛି । କେତେକ ପରିବ୍ରାଜକଙ୍କ ବିବରଣୀ ଭିତରେ ଚେଳିତୋଳ ବନ୍ଦରର ଐତିହାସିକ ଗୁରୁତ୍ୱ ପ୍ରମାଣ ହୋଇଛି । ଦେଶ ବିଦେଶ ସହ ବାଣିଜ୍ୟିକ ଯୋଗାଯୋଗରେ ଏହି ବନ୍ଦରର ଭୂମିକା ଥିଲା ତାତ୍ପର୍ଯ୍ୟପୂର୍ଣ୍ଣ । ସମାନ ପରିପ୍ରେକ୍ଷୀରେ ଆଉ କେତେକ ସକ୍ରିୟ ବନ୍ଦର ମଧ୍ୟ ଆଲୋଚନା ପରିସରକୁ ଆସିଛି । ଅନ୍ୟ ଏକ ପ୍ରବନ୍ଧରେ ମୋଗଲ୍, ମରହଟ୍ଟା, ଇଂରେଜ ରାଜତ୍ୱରେ ଏ ଅଞ୍ଚଳର ପ୍ରଶାସନିକ ବ୍ୟବସ୍ଥାର ବିବରଣୀ ପ୍ରଦାନ କରାଯାଇଛି । ଏହା ସହିତ ଅବିଭକ୍ତ କଟକ ଅନ୍ତର୍ଗତ ଜଗତସିଂହପୁର ସଂପର୍କରେ ଇଂରେଜ ସରକାରଙ୍କର କେତେଜଣ ପଦସ୍ଥ କର୍ମକର୍ତ୍ତାଙ୍କ ବିବରଣୀ ଓ କୁଜଙ୍ଗ ବନଭୂଖଣ୍ଡ ବନ୍ଦୋବସ୍ତର ବିବରଣୀ ଇତିହାସ ଦୃଷ୍ଟିରୁ ବେଶ ଉପାଦେୟ ।

ଜିଲ୍ଲାର ପରିଚ୍ଛନ୍ନ ପରିଚିତ ପାଇଁ ଉପର୍ଯ୍ୟୁକ୍ତ ପ୍ରସଙ୍ଗଗୁଡ଼ିକୁ ଧାର୍ଯ୍ୟ କରିବା ସଙ୍କଳକ ଡକ୍ଟର ରାଉତଙ୍କ ଦୂରଦୃଷ୍ଟିର ପରିଚାୟକ । ଏସବୁର ବିସ୍ତୃତ ଆଲୋଚନା ଲାଗି ସେ ସେହି ସେହି ବିଷୟର ବିଶେଷଜ୍ଞମାନଙ୍କୁହିଁ ନିର୍ବାଚନ କରିଛନ୍ତି ଓ ସଫଳତାର ସ୍ୱପ୍ନ ଦେଖିଛନ୍ତି । ପ୍ରସଙ୍ଗଗୁଡ଼ିକୁ ଅଧିକ ବିଶ୍ୱସନୀୟ କରିବା ଲାଗି ସେ ପ୍ରତ୍ନତାତ୍ତ୍ୱିକ ବିଭବ ସୂଚୀରେ ସ୍ଥାନିତ ବିଭିନ୍ନ ମନ୍ଦିର ଏଠାର ଦେବଦେବୀ, କୀର୍ତ୍ତିରାଜିର ଫଟୋଚିତ୍ର ସଂଯୁକ୍ତ କରିଛନ୍ତି । ଜିଲ୍ଲାର ଭୂଗୋଳର ସ୍ପଷ୍ଟତା ଲାଗି ପ୍ରସ୍ତୁତ ହୋଇଛି କିଛି ମାନଚିତ୍ର ଓ ନକ୍ସା । ଏ ସମସ୍ତ ପ୍ରସ୍ତୁତି ଓ ସଂଗ୍ରହ ସଂକଳନର ମାନ ବୃଦ୍ଧିର ପରିପୂରକ ତଥ୍ୟ ସଙ୍କଳକଙ୍କର ନିଷ୍ଠାର ପ୍ରତୀକ ।

"ଜଗତସିଂହପୁର : ଅତୀତ ଓ ବର୍ତ୍ତମାନ"ର ଦ୍ୱିତୀୟ ଖଣ୍ଡ ମୁଖ୍ୟତଃ ଜିଲ୍ଲାର ସାହିତ୍ୟ ଓ ସଂସ୍କୃତିର ବିଶେଷତା ନିରୂପଣ ପାଇଁ ଉଦ୍ଦିଷ୍ଟ ଉତ୍ସର୍ଗିତ । ପ୍ରଥମ ଖଣ୍ଡରେ ବିବିଧ ଧର୍ମର ଧାରା ପ୍ରସଙ୍ଗରେ ସାରଳା ସାହିତ୍ୟରେ ସେହି ସେହି ଧର୍ମର ସ୍ମାରକୀର ବିକ୍ଷିପ୍ତ ଉଲ୍ଲେଖ ରହିଛି । ଏଣୁ ଦ୍ୱିତୀୟ ଖଣ୍ଡରେ ସାରଳାଙ୍କୁ ସବିଶେଷ ଗୁରୁତ୍ୱ ଦେବାର ଆବଶ୍ୟକତା ବୋଧହୁଏ ଅନୁଭବ କରାଯାଇନାହିଁ । ଆଧୁନିକ କାଳରେ ଓଡ଼ିଆ ସାହିତ୍ୟର ବିକାଶରେ ଜିଲ୍ଲାର ଲେଖକମାନଙ୍କର ସହଯୋଗ ବ୍ୟାପକ ଭାବରେ ଉପସ୍ଥାପନ କରାଯାଇଛି । ଏହା ସାହିତ୍ୟର ବିଭିନ୍ନ ବିଭାବ ଭିତ୍ତିରେ ଘଟିଛି । କବିତା, ଗଳ୍ପ, ଉପନ୍ୟାସ, ନାଟକ ସମାଲୋଚନା ସାହିତ୍ୟ କ୍ଷେତ୍ରର କୃତୀ ସାଧକମାନଙ୍କର କୃତିତ୍ୱ ଓ ସଫଳତାର ସମୀକ୍ଷା ସ୍ୱତନ୍ତ୍ର ପ୍ରବନ୍ଧ ମାଧ୍ୟମରେ ଆଲୋଚିତ ହୋଇଛି । ଏଥିରେ କେତେଗୋଟି ଉତ୍କୃଷ୍ଟ ପ୍ରବନ୍ଧ ଅଛି । ସଙ୍କଳକ ଆବଶ୍ୟକୀୟ ଗୁରୁତ୍ୱ ଦେଇଛନ୍ତି ଆଞ୍ଚଳିକ ଲୋକସାହିତ୍ୟକୁ । ଲୋକନାଟକ ଓ ଯାତ୍ରା ଏଠାକାର ସଂସ୍କୃତି ସଂଗଠନର ପ୍ରମୁଖ ଅଂଶୀଦାର ବୋଲି ତାଙ୍କର ଧାରଣା । ନୃତ୍ୟ, ସଙ୍ଗୀତ, ବାଦ୍ୟ, ଗୁରୁକଳା,

କାରୁକଳା, ଚଳଚିତ୍ର ଆଦି କ୍ଷେତ୍ରରେ ଜଗତସିଂହପୁର ଅବଦାନର ପରିଚୟ ମିଳେ । ଏଠାକାର ଜନଜୀବନ, ସଂସ୍କୃତି ଯାନିଯାତ୍ରା, ପର୍ବପର୍ବାଣି, ଓଷାବ୍ରତ, ଲୋକାଗ୍ରହ ଭଳି ପ୍ରତ୍ୟେକ ଦିଗକୁ ସ୍ପର୍ଶ କରିବାରେ ଉଦ୍ୟମ ପ୍ରଶଂସାର ଯୋଗ୍ୟ ।

ସଂକଳନର ତୃତୀୟ ଖଣ୍ଡ ଦୁଇ ଭାଗରେ ବିଭକ୍ତ । ପ୍ରଥମ ଭାଗ ଆଧୁନିକ କାଳର ଜଗତସିଂହପୁରକୁ ଆଧାର କରିଛି । ଜାତୀୟ ପରିପ୍ରେକ୍ଷୀରେ ଜିଲ୍ଲାରେ ସ୍ୱାଧୀନତା ଆନ୍ଦୋଳନ, ରାଜନୀତି, ରାଜନୀତିକ ଦଳ, ଶିକ୍ଷାବ୍ୟବସ୍ଥା ପ୍ରଭୃତି ବିଗ୍ରହ ପରିସରକୁ ଆସିଛି । ଅଗ୍ରଗଣ୍ୟ ଜିଲ୍ଲାର ମାନ୍ୟତା ପାଇଁ ଏସବୁ କ୍ଷେତ୍ରରେ ଜଗତସିଂହପୁର ସକ୍ରିୟତା ଉଦ୍‌ଘାଟିତ ହୋଇଛି । ଦ୍ୱିତୀୟ ଭାଗରେ ଜିଲ୍ଲାର ସରକାରୀ କଳଗୁଡ଼ିକର ପରିଚୟ ଦିଆଯିବା ସହିତ ଜିଲ୍ଲାର ବିକାଶରେ ଏଗୁଡ଼ିକର ଭୂମିକା ବିଜ୍ଞାପିତ ହୋଇଛି ।

ପୂର୍ବରୁ କହିଛି - "ଜଗତସିଂହପୁର ଅତୀତ ଓ ବର୍ତ୍ତମାନ" ସଂକଳନର ସଫଳତା , ବିଫଳତା ନିର୍ଦ୍ଧାରଣ ଲାଗି ଏଠାରେ କ୍ଷେତ୍ରର ଅଭାବ ରହିଛି । ତେବେ ସଂକଳନ ଡକ୍ଟର ରାଉତ ଗୋଟିଏ ଜିଲ୍ଲାର ସ୍ଥୂଳ ବିବରଣୀ ମାଧ୍ୟମରେ ସୂକ୍ଷ୍ମତାକୁ ଛୁଇଁ ଯେଉଁ ସ୍ୱପ୍ନ ଦେଖିଛନ୍ତି ତାହା ଅନ୍ତର୍ଭୁକ୍ତ ପ୍ରବନ୍ଧର ଶିରୋନାମାଗୁଡ଼ିକରୁ ବୁଝିହୁଏ । ସ୍ୱପ୍ନର ଫଳପ୍ରସୂତା ଲାଗି ତାଙ୍କର ଯୋଜନାରେ ତ୍ରୁଟିନାହିଁ । ସେ ବୟସୋତ୍ତୀର୍ଣ୍ଣ ତଥାପି ତାଙ୍କର ଉଦ୍ୟମ ସନ୍ଦେହାତୀତ । ମୁଖବନ୍ଧରେ ତାଙ୍କର ଆତ୍ମନେପଦୀରେ ସୂଚାଇଛନ୍ତି ପ୍ରତିକୂଳତାକୁ ଭ୍ରୂକ୍ଷେପ ନକରି ସ୍ୱପ୍ନର ସଫଳତା ନିମନ୍ତେ ସେ ସମଗ୍ର ଜିଲ୍ଲା ପରିକ୍ରମା କରିଛନ୍ତି ; ସ୍ଥାନ କାଳ, ପାତ୍ରର ମହତ୍ତ୍ୱ ସନ୍ଧାନ କରିଛନ୍ତି । ଲେଖକମାନଙ୍କ ସଂପର୍କରେ ସ୍ୱୟଂ ତଥ୍ୟ ସଂଗ୍ରହ କରିଛନ୍ତି । କହିବା ବାହୁଲ୍ୟ, ଜିଲ୍ଲାର ଏହି ପରିଚୟ ଦର୍ପଣଟି ଏକ ସମୟୋପଯୋଗୀ ପରିକଳ୍ପନା । ତାଙ୍କ ଭାଷାରେ ଏହା ଏକ ଦସ୍ତାବିଜ, ଭବିଷ୍ୟତ ବଂଶଧରଙ୍କ ପାଇଁ ଏକ ଆଶାବାଡ଼ି ତୁଲ୍ୟ । ଏଭଳି ଏକ ବ୍ୟାପକ କାର୍ଯ୍ୟ ହାତକୁ ନେବା ଓ ମୁଣ୍ଡିମାରିବା ଡକ୍ଟର ରାଉତଙ୍କର ପ୍ରଚଣ୍ଡ ବ୍ୟକ୍ତିତ୍ୱର ଇଙ୍ଗିତ ଦିଏ । ସେ ଏ ଜିଲ୍ଲାର ପ୍ରକୃଷ୍ଟ ନେତୃସ୍ଥାନୀୟ ବ୍ୟକ୍ତି ।

ଜୀବେମ ଶରଦଂ ଶତମ୍
ପଶ୍ୟେମ ଶରଦଂ ଶତମ୍ ।



ମାଣପୁର, କୋଟିଆଁ, ଜଗତସିଂହପୁର

# ନାଟକ ସଂକଳନ "ତ୍ରିବେଣୀ"- ଏକ ଆକଳନ

ଡକ୍ଟର ସୁଧୀର ଚନ୍ଦ୍ର ମହାନ୍ତି

ନାଟ୍ୟକାର ଡକ୍ଟର ଭୋଳାନାଥ ରାଉତଙ୍କ ଭିନ୍ନ ସ୍ୱାଦର ନାଟକତ୍ରୟର ସଂକଳନ ହେଉଛି "ତ୍ରିବେଣୀ" । ମାତ୍ର ଏଥିରେ ତ୍ରିବେଣୀ ଶବ୍ଦର ଯଥାର୍ଥ୍ୟର କାରଣ ତ୍ରିନେତ୍ର, ତ୍ରିକୂଟ ଭଳି ନାମ ଦେଇଥିଲେ କିଛି ମହାଭାରତ ଅଶୁଦ୍ଧ ହୋଇନଥାନ୍ତା । ବିଶେଷ ଗ୍ରାହ୍ୟ ହୋଇଥାନ୍ତା, କାରଣ ମୁଖବନ୍ଧରେ ନାଟ୍ୟକାର ସ୍ୱୀକାର କରିଛନ୍ତି ଯେ- 'ଆଗନ୍ତୁକ' ଏବଂ 'ଅସମାପ୍ତ' ଦୁଇଟି ଛୋଟନାଟକ ଏବଂ ବ୍ୟବସାୟିକ ରଙ୍ଗମଞ୍ଚ ଉଦ୍ଦେଶ୍ୟରେ ରଚିତ ହୋଇଛି ତୃତୀୟଟି "ସତରବର୍ଷ ତଳେ" ।

ପ୍ରଥମେ ତାଙ୍କ ପୂର୍ଣ୍ଣାଙ୍ଗ ନାଟକ "ସତର ବର୍ଷ ତଳେ" ରୁ ଆଲୋଚନା ଆରମ୍ଭ କରିବା । ଏଥିରେ ସତରବର୍ଷ ଶବ୍ଦଟି ଅନାକାଂକ୍ଷିତ । ତେବେ ପନ୍ଦର ବର୍ଷ ବା କୋଡ଼ିଏ ବର୍ଷ କାହିଁକି ନହେବ ? ଏହାର ଯଥାର୍ଥ ଉତ୍ତର ନାଟକରେ ନାହିଁ । ନାଟକର ଆରମ୍ଭରେ ଚରିତ୍ର ତାଲିକା ମଧ୍ୟନାହିଁ । ତେବେ ଏଥିରେ ଚରିତ୍ରମାନେ ମୋଟାମୋଟି ନିମ୍ନ ପ୍ରକାର ।

ବିକ୍ରମ ରାୟ (ମିଲ ମାଲିକ) ବୟସ ୫୦ରୁ ୫୫ ('ଅରୁ ଏ ବୁଢା ବୟସରେ ମୋତେ'......ପୃ ୯୨ । ) ତାଙ୍କ ଅବାଧ୍ୟ ଏବଂ ପରେ ନିରୁଦ୍ଦିଷ୍ଟ ଏକମାତ୍ର ମାତୃହରା ପୁତ୍ର ଅରୁଣ, ଚାକର ରାଜୀବ ।

ମିଲ ମେନେଜର ଶଶାଙ୍କ (ଅବିବାହିତ ) ବ୍ୟକ୍ତିଗତ ସହକାରୀ ମନୀଷା ।

ଚିଫ୍ ଫୋରମ୍ୟାନ୍ ଶେଖର ପତ୍ନୀ ପୁଷ୍ପା ଏବଂ ଅବିବାହିତା ଭଉଣୀ ଶୁଭ୍ରା । ଶୁଭ୍ରା ନର୍ତ୍ତକୀ ଏବଂ ଶଶାଙ୍କର ପ୍ରେମିକା । ଶ୍ରମିକ ନେତା ହେଉଛନ୍ତି ଅଭୟ, ଗୌଣଚରିତ୍ର ଡାକ୍ତର ଏବଂ ଶେଖରଙ୍କ ଚାକର ନାଗୁ । ମୋଟ୍ ୧୧ଟି ଚରିତ୍ରକୁ କେନ୍ଦ୍ରକରି କାହାଣୀ ଗଢି ଉଠିଛି । କାହାଣୀ ଭାରି ସଂକ୍ଷିପ୍ତ । ମିଲମାଲିକ ବିକ୍ରମ ରାୟ ନିଜ ପୁତ୍ରର ଅବାଧ୍ୟପଣରେ ଅସନ୍ତୁଷ୍ଟ ଓ ବିବ୍ରତ । ଅପରପକ୍ଷରେ ତାଙ୍କର ଏହି ଅସହାୟତାର ସୁଯୋଗ ନେଇ ମ୍ୟାନେଜର ଶଶାଙ୍କ ନିଜର ହେବାକୁ ଆଗେଇ ଆସିଛନ୍ତି । ଘଟଣାଚକ୍ରରେ ମିଲରେ ଶ୍ରମିକ ଧର୍ମଘଟର ଭୟଦେଖାଇ ଶଶାଙ୍କ ମିଲ୍‌ର ମାଲିକାନା ହାତେଇବାକୁ ଚକ୍ରାନ୍ତ କରନ୍ତି । ଅସହାୟ ବିକ୍ରମ

ରାୟ ପରିଣତ ବୟସରେ ଟିକିଏ ଶାନ୍ତି ପାଇବା ପାଇଁ ତୀର୍ଥାଟନରେ ବାହାରନ୍ତି ଏବଂ ଶଶାଙ୍କଙ୍କୁ ଶ୍ରମିକ ଅଶାନ୍ତିର ସମାଧାନ ପାଇଁ କ୍ଷମତା ପ୍ରଦାନ କରନ୍ତି ।

ମେନେଜର ତାଙ୍କର ବାଲ୍ୟବନ୍ଧୁ କାରଖାନାର ଟିଫ୍ ଫୋର୍‌ମ୍ୟାନଙ୍କ ଅବିବାହିତା ଭଉଣୀ ଶୁଭ୍ରାକୁ ପ୍ରେମର ଜାଲରେ ଫସାଇ ତାଙ୍କର ନିକଟତର ହୋଇଛନ୍ତି । କାଳକ୍ରମେ ଶୁଭ୍ରା ଅନ୍ତଃସ୍ୱତ୍ତ୍ୱା ହେବାରୁ ସେ ତାକୁ ବିବାହକୁ ପ୍ରତ୍ୟାଖ୍ୟାନ କରନ୍ତି ଏଥିରେ ଶୁଭ୍ରା ଆହତ ହୋଇ ଆତ୍ମହତ୍ୟା କରିବାକୁ ବାଧ୍ୟ ହୁଏ । ନିଜେ ଆତ୍ମଘୋଷିତ ମିଲ ମାଲିକ ସାଜି ଉତ୍ପାଦକ ଧାମେଇ ଯାଇଥିବାର ଅଭିଯୋଗ ଟିଫ୍ ଫୋରମ୍ୟାନଙ୍କ ଉପରେ ଆଣନ୍ତି ।

ସମୟକ୍ରମେ ଶଶାଙ୍କ ମିଲ୍‌ମାଲିକ ବିଦେଶ ପ୍ରତ୍ୟାବର୍ତ୍ତନ ପରେ ଧୂର୍ତ୍ତ ଶଶାଙ୍କ ତାଙ୍କୁ ମାଲିକାନା ହସ୍ତାନ୍ତର କରିବାକୁ ମନା କରିଦିଏ । ଏଥିରେ ଉତ୍ୟକ୍ତ ହୋଇ ମିଲ୍ ମାଲିକ ବିକ୍ରମ ଶଶାଙ୍କଙ୍କୁ ଛୁରି ଦେଖାଇ ହତ୍ୟାର ଧମକ ଦିଏ । ଏହି ସୁଯୋଗରେ ଶେଖର ଗୋପନରେ ରହି ଶଶାଙ୍କଙ୍କୁ ଗୁଳି କରି ହତ୍ୟା କରିଛି । ମାତ୍ର ପରେ ଶେଖର ମାନସିକ ଭାରସାମ୍ୟ ହରାଇ ପ୍ରତି ମୁହୂର୍ତ୍ତରେ ତାଙ୍କୁ କିଏ ଆକ୍ରମଣ କରୁଥିବାର ଭୟ ପାଇଛି । ସେ ଦିନେ ଦୁର୍ବଳ ମୁହୂର୍ତ୍ତରେ ତାର ଏହି ଅତୀତକୁ ଡାକ୍ତର ଆଗରେ ଖୋଲିଦେଇଛି । ଏହାହିଁ ହେଉଛି ନାଟକର ବିଷୟ ଯାହା ଶେଷ ଘଟଣାରୁ ଆରମ୍ଭ ହୋଇଛି ।

ମୂଳ କାହାଣୀର ସମୟ ସୀମା ସୀମିତ ଥିଲାବେଳେ ଶେଖର ଅନୁତାପ ଓ ମାନସିକ ବ୍ୟାଧିର କାରଣ ଦେଖାଇବାକୁ ଲେଖକ ନାଟକର ଘଟଣାକୁ ସତର ବର୍ଷ ସମୟ ନେଇଯାଇଛନ୍ତି ।

ନାଟକର ପ୍ରାରମ୍ଭରେ ଶେଖର କିଏ ଜାଣିବା କଷ୍ଟକର ହୋଇଛି ଏବଂ ତାଙ୍କ ମାନସିକ ବ୍ୟାଧିର କିଛି କାରଣ ଜଣାଯାଇନାହିଁ । ନାୟିକା ଶୁଭ୍ରା ଓ ତାଙ୍କ ଭାଉଜ ପୁଷ୍ପାର ଚରିତ୍ର ନେପଥ୍ୟରେ ଶେଷ ହୋଇଯାଇଛି । ଶୁଭ୍ରା ଶଶାଙ୍କର ପ୍ରେମକୁ ଦୁଷ୍ମନ୍ତ ଶକୁନ୍ତଳା ପ୍ରେମ କାହାଣୀ ସହ ତୁଳନା କରି ନୃତ୍ୟ କାଳରେ ବେହୋସ ହୋଇପାଇଛି । ମାତ୍ର ନିଜେ ଶକୁନ୍ତଳା ପରି ଧୈର୍ଯ୍ୟଶୀଳ ହୋଇପାରିନାହିଁ ।

ନାଟକଟି ପେଷାଦାର ରଙ୍ଗମଞ୍ଚ ଉଦ୍ଦେଶ୍ୟରେ ରଚିତ ହୋଇଥିବାରୁ ଏଥିରେ ନୃତ୍ୟ ଗୀତର ଅବତାରଣା ଉପଯୋଗୀ ହୋଇଛି । ମାତ୍ର ନୃତ୍ୟର ଶେଷ ଆଡ଼କୁ ଶୁଭ୍ରା ସଂଜ୍ଞାହୀନ ହେବାର କୌଣସି ଆବଶ୍ୟକତା ନାହିଁ ବରଂ ଏହା ମେଲୋଡ୍ରାମାଟିକ ହୋଇଯାଇଛି ଏବଂ ରସ ଭଙ୍ଗ ହେବାର ସୁଯୋଗ ସୃଷ୍ଟି କରିଛି ।

ଶୁଭ୍ରା ଏବଂ ଶଶାଙ୍କଙ୍କ ଏକାନ୍ତ ହେବାପାଇଁ ନାଟ୍ୟକାର ସପ୍ତଶଯ୍ୟାର ପୃଷ୍ଠଭୂମି

ଅବତାରଣା କରିଛନ୍ତି । ଶୁଭ୍ରାର ମାନସିକ ଦ୍ୱନ୍ଦ୍ୱ ସୃଷ୍ଟିପାଇଁ ସୁଯୋଗ ଥିଲେ ମଧ୍ୟ ନାଟ୍ୟକାର ଏପରି ଦୃଶ୍ୟ ଅବତାରଣାରେ ବ୍ୟର୍ଥ ହୋଇଛନ୍ତି । ସେହିପରି ପୁଷ୍ପାର ଚରିତ୍ର ଅତ୍ୟନ୍ତ ଶିଥିଳ ହୋଇଛି । ନାଟକରେ ଏତେ ସଂଖ୍ୟକ ଚରିତ୍ର ଥିଲେ ମଧ୍ୟ କେବଳର ଶଶାଙ୍କ ଚରିତ୍ର ବ୍ୟତୀତ ଅନ୍ୟ ଚରିତ୍ରମାନେ ବିକଶିତ ହେବାର ସୁଯୋଗ ପାଇ ନାହାଁନ୍ତି । ଅଭୟ ଚରିତ୍ର ନାଟକରେ  ଅନାବଶ୍ୟକ ମନେ ହେଉଛି । କାରଣ ଜଣେ ଶ୍ରମିକ ନେତା ଭାବେ ଚରିତ୍ରଙ୍କୁ ସେପରି ଆଦର୍ଶବାନ୍  ଗୁରୁଗମ୍ଭୀର ବା  ଧୈର୍ଯ୍ୟଶୀଳ କରାଯାଇନାହିଁ ବରଂ ତାଙ୍କୁ  ଲାଞ୍ଚଖୋର ସଜେଇ ଦିଆ ଯାଇଛି । ମିଲମାଲିକ ବୃଦ୍ଧ ହୋଇଥିଲା ବେଳ ଜଣେ ଯୁବକ ମ୍ୟାନେଜରଙ୍କୁ ଛୁରି ଦେଖାଇ ଧମକାଇବା ଅସ୍ୱାଭାବିକ ମନେ ହେଉଛି ।

ଏହା ସତ୍ତ୍ୱେ  ନାଟକରେ  ସଂଘର୍ଷ ସୃଷ୍ଟିରେ ନାଟ୍ୟକାର ସଫଳ ହୋଇଛନ୍ତି । ନାଟକରୁ ପ୍ରାରମ୍ଭରୁ ମିଲମାଲିକଠାରେ  ମୂଲ୍ୟବୋଧ ବନାମ ଆଧୁନିକତାର ସଂଘର୍ଷ ଆରମ୍ଭ ହୋଇଯାଇଛି । ତାଙ୍କର ଚରିତ୍ରହୀନ ପୁଅ ଆଗରେ  ସେ ଅସହାୟ ହୋଇଉଠିଛନ୍ତି । ପୁଅ ଜଣେ ଇତର ଯୁବତୀ ସହ ଘରର କିଛି ଧନ ସଂପଦ ନେଇ ନିରୁଦ୍ଦିଷ୍ଟ ହୋଇଯାଇଛି । ସଂଘର୍ଷର ଆରମ୍ଭ ହୋଇଛି ମାତ୍ର ତାକୁ ବଳିଷ୍ଠ କରିବାର ସୁଯୋଗ ନାଟ୍ୟକାର ହରାଇ ବସିଲା ଭଳି ମନେ ହେଉଛି  ବରଂ ଏ  ସଂଘର୍ଷ ପରବର୍ତ୍ତୀ  ସଂଘର୍ଷପାଇଁ  ସୁଯୋଗ ସୃଷ୍ଟି କରିଛି । ମିଲ୍‌ମାଲିକଙ୍କ ଅସହାୟତା ସୁଯୋଗ ନେଇ ମ୍ୟାନେଜର ସହାୟତାର ହାତ ବଢାଇ ଦେଇଛନ୍ତି । ଏଣୁ ଶଶାଙ୍କ ପ୍ରଥମରୁ  ଖଳନାୟକ ହୋଇଥିବାର କୌଣସି ସମାନ୍ୟ ସୂଚନା ମିଳେନାହିଁ । କେବଳ ମିଳେ ତାଙ୍କର ଏକ ସଂଳାପରୁ । ମାଲିକକୁ ଶ୍ରମିକଠାରୁ ଦୂରେଇ ରଖିବାପାଇଁ  ସେ କୌଶଳ ସୃଷ୍ଟି କରିଛନ୍ତି, ଯେ ଶ୍ରମିକମାନେ ମାଲିକଙ୍କ ନାମ ଶୁଣି ମୁହଁ ଫେରାଇ ନେଉଛନ୍ତି ।

"ବାପ୍ ରେ ବାପ୍ । ସେ ପରା ଆପଣଙ୍କ ନାଁ ଶୁଣିଲା ବେଳକୁ ଖାଲି ଫଁ ଫଁ ହେଉଛନ୍ତି । ସେମାନେ କହୁଛନ୍ତି ଯଦି ବିକ୍ରମବାବୁ କାରଖାନାର କୌଣସି କଥା  ବୁଝା ସୁଝା କରନ୍ତି ତା' ହେଲେ  କାରଖାନା ଛାଡ଼ି ସମସ୍ତେ  ଚାଲିଯିବେ ।" (୧ମ ଅଙ୍କ / ୭ମ ଦୃଶ୍ୟ)

ପୁଣି ଶୁଭ୍ରାସହ ସେ ପ୍ରତାରଣା ପୂର୍ଣ୍ଣ ପ୍ରଣୟର ଅଭିନୟ କରିଛନ୍ତି  । ମାତ୍ର ଶୁଭ୍ରା ଅନ୍ତଃସ୍ୱତ୍ତ୍ୱା ହେବାର ଶୁଣି ତାକୁ  ପ୍ରତ୍ୟାଖ୍ୟାନ କରି ଶୁଭ୍ରାକୁ କରିଛନ୍ତି ପ୍ରତାରଣା ।

"ଏ ବିବାହ ବନ୍ଧନକୁ ତୁମେ ଏତେ ଚଞ୍ଚଳ କାହିଁକି ସ୍ୱାଗତ କରୁଛ ଶୁଭ୍ରା ? " (୨ୟ ଅଙ୍କ / ୩ୟ ଦୃଶ୍ୟ) । "ମୋର ତ କାହିଁ ମନେ ହେଉନି ମୁଁ ତୁମକୁ ବିବାହ କରିବାକୁ ଏଭଳି ପ୍ରତିଶ୍ରୁତି ଦେଇଛି ବୋଲି.... ପୁଞ୍ଜିପତି ଶଶାଙ୍କ ମହାପାତ୍ରକୁ କରଗତ କରିବାର ଏ ଗୋଟିଏ ଚାଲବାଜି ଥିଲା ତୁମ ଭାଇ ଶେଖରର  । (୨ୟ ଅଙ୍କ/  ୫ମ ଦୃଶ୍ୟ)

ମିଲ୍‌ମାଲିକ ବିକ୍ରମ ଫେରିଲା ପରେ ଶଶାଙ୍କ କ୍ଷମତାପତ୍ରକୁ ମାଲିକାନା ହସ୍ତାନ୍ତର ରୂପ ଦେବାର ଚେଷ୍ଟା କରିଛନ୍ତି ।"ମୋତେ ତ କିଛି କ୍ଷମତାପତ୍ର ଦେଇନ । ବରଂ ସଂପୂର୍ଣ୍ଣଭାବେ ଏ କାରଖାନାକୁ ବିକ୍ରି କରି ଦେଇଯାଇଛ ।" (୩ୟ ଅଙ୍କ /୧ଦୃଶ୍ୟ)

କହିବାକୁ ଗଲେ ନାଟ୍ୟକାର ସଂଘର୍ଷ ସୃଷ୍ଟି କରିଛନ୍ତି । ମାତ୍ର ତାହା ଅନ୍ତଃସଲିଳା ଫଲ୍‌ଗୁ ଭଳି ଦର୍ଶକଙ୍କ ଚିନ୍ତାର ଆଢୁଆଳରେ ରହି ଯାଇଛି । ପୁଣି କେଉଁଠି ସଂଘର୍ଷକୁ ଘନୀଭୂତ ହେବାର ସୁଯୋଗ ଦେଇ ନାହାଁନ୍ତି । ଯାହା ଫଳରେ ନାଟକ ଉତ୍କଣ୍ଠା ସୃଷ୍ଟି କରିବାରେ ବିଫଳ ହୋଇଛି ।

ନାଟକର ପରିସମାପ୍ତି ବେଳକୁ ମିଲ୍‌ମାଲିକ ଏକ ଛୁରି ଧରି ଶଶାଙ୍କଙ୍କୁ ଖୁନ୍ କରିବାର ଧମକ ଦେଇଛନ୍ତି । ପିଅନ ତାଙ୍କୁ ଧକ୍କା ଦେଇ ଫାଟକ ପାରି କରି ଦେଇଛି । (ମାତ୍ର ବୃଦ୍ଧ ଭୁଲିଗଲେ ଯେ ଏପରି ଛୁରି ଦେଖାଇ ଧମକ ଦେବା ଅବାସ୍ତବ) । ପୁଣି ଶଶାଙ୍କର ମୃତ୍ୟୁ ହୋଇଛି ଆତତାୟୀର ଗୁଳିରେ । ଏଣୁ ଶଶାଙ୍କର ହତ୍ୟାକାରୀ ଭାବେ ମିଲ୍‌ମାଲିକ ବିକ୍ରମକୁ ଦୋଷୀ ସାବ୍ୟସ୍ତ କରିବା ଅଯୌକ୍ତିକ ଓ ଅନ୍ୟାୟ ।

ନାଟକର ପ୍ରାରମ୍ଭିକ ଦୃଶ୍ୟରେ ନାଟ୍ୟୋତ୍କଣ୍ଠା ସୃଷ୍ଟି କରିବା ପାଇଁ ମଞ୍ଚରେ ପୋଲିସ୍ ଇନିସ୍‌ପେକ୍ଟରକୁ ଠିଆ କରାଇଛନ୍ତି । ପୋଲିସ୍ ଅନୁସନ୍ଧାନ କରୁଥିବା ବେଳେ ପରଦା ଅନ୍ତରାଳରୁ ହସର ଲହରୀ ଶୁଭିବା ଯେପରି ଅପ୍ରାସଙ୍ଗିକ, ସେହିପରି ସତର ବର୍ଷ ଧରି ମାନସିକ ଭାରସାମ୍ୟ ହରାଇଥିବା ଶେଖର ଆଗରେ ସ୍ୱାଭାବିକ ଭାବେ ସ୍ୱୀକାରୋକ୍ତି ହେବା ଅସମ୍ଭବ । ଦର୍ଶକ ନାଟକର ପ୍ରାରମ୍ଭରେ ଦେଖୁଥିବା ଉତ୍କଣ୍ଠା ଇତି ମଧ୍ୟରେ ଭୁଲି ସାରିଲାଣି ।

ଏତତ୍‌ସତ୍ତ୍ୱେ ନାଟକଟି ସୁଗଠିତ ହୋଇଛି । ନାଟକଟିରେ କୌଣସି ଦୁଃଖାବହ ଘଟଣା ପ୍ରଦର୍ଶିତ ହୋଇନାହିଁ ବରଂ ନୃତ୍ୟ ଗୀତରେ ଏହାକୁ ରସାଳ କରାଯାଇଛି । ଫଳରେ ପ୍ରଥମ ଦୃଶ୍ୟଟି ଅନାବଶ୍ୟକ ହୋଇପଡ଼ିଛି ।

ମାତ୍ର ୭ଟି ଦୃଶ୍ୟପଟ ଏଥିରେ ରହିଛି । ଅବଶ୍ୟ ଅଧିକାଂଶ ଦୃଶ୍ୟ ଡ୍ରଇଂରୁମ୍, ରାଜପଥ ଓ ବାରଣ୍ଡାରେ ଅଭିନୀତ ହୋଇଛି । ଗୋଟିଏ ଜଙ୍ଗଲ ଦୃଶ୍ୟ ଦୁଇଥର ପ୍ରଦର୍ଶିତ ହୋଇଛି ଯାହା ପ୍ରେମ ସଂପର୍କିତ । ଡାକ୍ତରଖାନା, ଅଫିସ୍ ଚେମ୍ବର ଦୃଶ୍ୟପଟ ଥିଏଟରର ଦୃଶ୍ୟ ସଜ୍ଜା ଅନୁରୂପ ହୋଇଛି । ମାତ୍ର କେତେକ ସ୍ଥଳରେ ଦୁଇ ଦୁଇଟି ଶୟନକକ୍ଷ ଦୃଶ୍ୟ ରହିଛି ଯାହା ମଞ୍ଚ ପରିଚାଳକକୁ ଅସୁବିଧାରେ ପକାଇବ । ଚାମ୍ବର ଓ ଡାକ୍ତରଖାନା ସଜ୍ଜା ପାଇଁ ଆବଶ୍ୟକ ସରଞ୍ଜାମ ନଥିଲେ ଏହା ଡାକ୍ତରଖାନା ଭଳି ଲାଗିବ ନାହିଁ । ନୃତ୍ୟକୁ ରାଜପଥ ଦୃଶ୍ୟରେ ଆବଦ୍ଧ କରିହେବନାହିଁ ।

"ଅସମାପ୍ତ ସଂଳାପ" ଏକ ଛୋଟ ନାଟକ ବୋଲି ନାଟ୍ୟକାର ମନେ କରନ୍ତି । "ପ୍ରଥମ ଦୁଇଟି ନାଟକ 'ଆଗନ୍ତୁକ' ଏବଂ 'ଅସମାପ୍ତ ସଂଳାପ' ହେଉଛି ଛୋଟ ନାଟକ" । ଏ ଦୁଇଟିକୁ ଏକାଙ୍କିକା କୁହାଯାଇ ପାରିବନାହିଁ । କାରଣ ଏକାଙ୍କିକାର ସଘନ ଦ୍ୱନ୍ଦ୍ୱ, ଗତିବେଗ ଓ ସାଂଳାପିକ ଆବେଗ ଏଥିରେ ନାହିଁ । ପକ୍ଷାନ୍ତରେ ଏହାକୁ ନାଟିକା ବୋଲି କୁହାଯାଇପାରେ । ସଂଘର୍ଷ ବିହୀନ ନାଟିକା ।

ନାଟିକାଟିରେ ସମସ୍ୟା ଅଛି ମାତ୍ର ସଂଘର୍ଷ ନାହିଁ । ଜଣେ ଅବସରପ୍ରାପ୍ତ ଚାକିରିଆର ଏକାର ଗ୍ରାଜୁଏଟ୍ ପୁଅକୁ ନେଇ ସମସ୍ୟା ଦେଖାଦେଇଛି । ପୁତ୍ର ଶୁଭେନ୍ଦୁ ଜଣେ କଳାକାର । ସେ ନାଟକ ରଚନାରେ ବିଭୋର । ଏଣୁ ବାସ୍ତବତାକୁ ଉପେକ୍ଷା କରି ସେ ଚାକିରି ନକରିବାକୁ ସ୍ଥିର କରିଛି । ତା ଦୃଷ୍ଟିରେ ଦେଶର ଭାଷା ସାହିତ୍ୟ ସଂସ୍କୃତିକୁ ତ ପୁଣି କେହି ବଞ୍ଚାଇବା ଦରକାର । ପକ୍ଷାନ୍ତରେ ଚାକିରି ଖଣ୍ଡେପାଇଁ ବାପା ବିଭିନ୍ନ ସଂସ୍ଥାରେ ଯାଇ ନେହୁରା ହେଉଛନ୍ତି । ପୁଅ କହୁଛି" ହେଲେ ସମସ୍ତେ ଯଦି ଏପରି କୁହନ୍ତି ତା ହେଲେ ଏ ଜାତିର ଭାଷା ଓ ସାହିତ୍ୟ ଆଉ ରକ୍ଷା ହୋଇପାରିବ ? ବରଂ ସେ ବାପା ତାକୁ ମଣିଷ ପରି ମଣିଷ ନକରି ଅଧା ବାଟରେ ଛାଡ଼ିଦେଲେ (୧ମ ଦୃଶ୍ୟ) ବୋଲି ସେ ଦୋଷାରୋପ କରିଛି । ଏଣୁ ସ୍ଥିର କରି ନେଇଛି "ନା ମୁଁ ଚାକରି କରିବି ନାହିଁ," (ପୃ୫୨) ।

ନାଟ୍ୟକାର ଆଦର୍ଶ ଓ ବାସ୍ତବତାର ସମସ୍ୟା ଉପସ୍ଥାପନ କରିଥିଲେ ହେଁ ଏ ଦୁଇଟି ଭିତରେ ସଂଘର୍ଷ ଦେଖାଇ ପାରିନାହାଁନ୍ତି ବରଂ ଏକ ଗୌଣ ଚରିତ୍ର ଭଳି ଶୁଭେନ୍ଦୁ ଗୋଟିଏ ନିଶାରେ ଭାସି ଚାଲିଛି । ପାରିବାରିକ ଆର୍ଥିକ ଅନଟନପାଇଁ ଖାତିର ନାହିଁ । ତାର ସୃଷ୍ଟିର ପ୍ରଶଂସା ସମ୍ବାଦରେ ସେ ବିଭୋର ।

ପରବର୍ତ୍ତୀ ପର୍ଯ୍ୟାୟରେ ଶୁଭେନ୍ଦୁ ଚାକିରି କରିଥିବାର ସମ୍ବାଦ ମିଳିଛି । ମାତ୍ର ପୁଅ ଚାକିରି ପାଇଲା ପରେ ଘର ଭିତରେ ଯେପରି ଆନନ୍ଦ ଖେଳିଯିବାର କଥା ତାହା ହୋଇନାହିଁ ବରଂ ପ୍ରଥମ ଦରମାପାଇ ସେ ଶାଢୀଟିଏ (ମାଆ କି ଭଉଣୀ ଜଣାପଡୁନାହିଁ) ଏବଂ ସାନଭାଇ ପାଇଁ ଖେଳଣା ଉଡ଼ାଜାହାଜ ଧରି ଆସିବାର ଦର୍ଶକ ଜାଣିଲେ ଇଏ ରୋଜଗାର କଲାଣି । ପରେ ତାର ବାପା ରାମହରି ବାବୁଙ୍କୁ କହିଲେ "ତୁମେ ଜାଣିନ, ଶୁଭେନ୍ଦୁ ଆଜକୁ ମାସେହେଲା ସେକ୍ରେଟେରୀଏଟ୍‌ରେ ଚାକିରି କରିଛି ," (୨ୟ ଦୃଶ୍ୟ ) । ଶୁଭେନ୍ଦୁର ଏ ମୋହଭଙ୍ଗ ପାଇଁ ଲେଖକ ଦୁଇଟି ସମସ୍ୟା ଉତ୍‌ଥାପନ କରିଛନ୍ତି- ସାନଭଉଣୀର ବାହାଘର ଏବଂ ସାନଭାଇର ପାଠପଢା ।

ମା ତାରେଣୀ ଚାକିରି କରିବା ପାଇଁ ପୁଅକୁ କହି କହି ଥକି ଯାଇଛନ୍ତି । ଶେଷରେ ସାନଭଉଣୀ କହିଛି " ଭାଇ ସମସ୍ତଙ୍କ ଆଖିରେ ଲୁହ ଦେଖି ତମେ କ'ଣ ସୁଖପାଇବ ?

ବାପାଙ୍କୁ ଏ ବୟସରେ ..... ଶୁଭେନ୍ଦୁ ବାସ୍ତବତାକୁ ଫେରି ଆସିଛି । ତା ମନ ଭିତରେ ବସାବାନ୍ଧିଥିବା ଆଦର୍ଶବାଦର ନିର୍ମୋକ ଖସିପଡ଼ିଛି । ସେକାଳ ବିଳମ୍ବ ନକରି ସିଦ୍ଧାନ୍ତ ବଦଳାଇ ଦେଇ ଦାର୍ଶନିକ ଢଙ୍ଗରେ କହିଛି- " ଆଶା କେବେ ଗରିବ ଜୀବନରେ ସଫଳ ହୋଇପାରେନା । ବାସ୍ତବତାର ଚାପରେ ସବୁ ଚୂରମାର ହୋଇଯାଏ । ବାପା ମୁଁ ଚାକିରି କରିବି । ଗ୍ରକିରି କରି ତୁମ ଅବସ୍ଥାର ଯଦି କିଛି ପରିବର୍ତ୍ତନ ହୁଏ ତାହାହେଲେ ସେଥିରେ ମୋର ...। ଦେଖ ବାପା ଆଜିଠାରୁ ମୁଁ ଶପଥ ନେଉଛି ମୁଁ ଦିନେ ହେଲେ ସେ ଲେଖାଲେଖି କରିବିନି । " ହେଲେ ବିଚରା ଶୁଭେନ୍ଦୁ ଭୁଲିଯାଇଛି ଲେଖିବା ଏକ ପେଷା ନୁହେଁ- ଏକ ନିଶା । ଚାକିରି କରି କ'ଣ କେହି ଲେଖୁ ନାହାଁନ୍ତି ?

ନାଟକଟିରେ ଆଉ ଦୁଇଟି ସମସ୍ୟା ଉପସ୍ଥାପିତ ହୋଇଛି- ଗୋଟିଏ ହେଉଛି ଯୌତୁକ ବ୍ୟାଧି ଏବଂ ଅନ୍ୟଟି ଲାଞ୍ଚନେବା । ମଧ୍ୟବିତ୍ତ ଏବଂ ନିମ୍ନ ମଧ୍ୟବିତ୍ତ ପରିବାରରେ ଏ ଯୌତୁକ ବ୍ୟାଧିରେ ଆକ୍ରାନ୍ତ କେତେ ଯେ ନିଷ୍ପାପ କଳିକା ଯୌତୁକର ଜୁଇରେ ପୂର୍ଣ୍ଣାହୂତି ଦେଉଛନ୍ତି ତାର ଇୟତ୍ତା ନାହିଁ । ରାମହରିଙ୍କ ଝିଅର ବାହାଘର ପ୍ରସ୍ତାବ ଦୁଇଲକ୍ଷ ଟଙ୍କା ଓ ମୋଟରସାଇକେଲ୍ ଯୌତୁକ ଦାବିରେ ଭାଙ୍ଗି ଯାଇଛି ।

ଏପରି ଅସମୟରେ ବନ୍ଧୁ ସୁରଜମଲ୍ଲ ସ୍ୱତଃ ସାହାଯ୍ୟ କରିବାକୁ ଆଗେଇ ଆସିଛନ୍ତି । ସୁରଜମଲ୍ଲ ଜଣେ ଠିକାଦାର । ଏପରି ଆର୍ଥିକ ଅନଟନ ଭିତରେ ଅଫିସରୁ କିଛି କିଳାପୋତେଇ ଟଙ୍କା ରୋଜଗାର କଲେ ଅବସ୍ଥା ସୁଧୁରିଯିବାର ସ୍ୱପ୍ନ ଶୁଭେନ୍ଦୁକୁ ଦେଖେଇଛନ୍ତି । ସେ ପ୍ରତି ଟେଣ୍ଡର ପିଛା ଶତକଡ଼ା ୨୦ଭାଗ ଦେବାର ପ୍ରସ୍ତାବ ରଖିଛନ୍ତି । ଭଉଣୀ ବାହାଘର ପାଇଁ ନଗଦ ୫୦ ହଜାର ଟଙ୍କା ଅଗ୍ରିମ ଦେବାକୁ ପ୍ରସ୍ତୁତ ବୋଲି ଲୋଭ ଦେଖେଇଛନ୍ତି ।

ଏଠାରେ ଶୁଭେନ୍ଦୁର ମାନସିକ ଦ୍ୱନ୍ଦ୍ୱ ଦେଖାଦେବା ସ୍ୱାଭାବିକ । ମାତ୍ର ନାଟ୍ୟକାର ଶୁଭେନ୍ଦୁକୁ ଆଦର୍ଶବାଦୀ କରି ଗଢ଼ିବାପାଇଁ ଚାହିଁଛନ୍ତି । ଏଣୁ ଶୁଭେନ୍ଦୁ ତତ୍‌କ୍ଷଣାତ୍ ସିଦ୍ଧାନ୍ତ ନେଇଛି ଯେ ସେ ଲାଞ୍ଚ ଭଳି ଘୃଣ୍ୟ ବୃତ୍ତିରେ ପଶିବ ନାହିଁ ବୋଲି ସୁରଜକୁ କହିଛି ।

"ମୋ ଭବିଷ୍ୟତ, ମୋ ପରିବାରର ଭବିଷ୍ୟତ, ମୋ ଭଉଣୀର ଭବିଷ୍ୟତ ସଂପର୍କରେ ମୁଁ ବେଶି ସଚେତନ ହେଲେ ହଜାର ହଜାର ନରନାରୀଙ୍କ ଲହୁ ଓ ଲୁହରେ ଯେଉଁ ରାଜସ୍ୱ ଗଢ଼ି ଉଠିଛି ମୁଁ ତାକୁ ସାମାନ୍ୟ କେତେ ଟଙ୍କା କିଳାପୋତେଇ ନେଇ ମୋ ଭଉଣୀର ଭବିଷ୍ୟତ ପାଇଁ ସେ ଟଙ୍କାର ଅସଦ୍‌ବ୍ୟବହାର କରିପାରିବିନି ।"

ଅବଶ୍ୟ ପରେ ଶୁଭେନ୍ଦୁ ଲାଞ୍ଚ ନେବାକୁ ସମ୍ମତ ହୋଇଛି । ବାପା ହାତରେ ୫୦ହଜାର ଟଙ୍କା ଧରେଇ ଦେଇ ସେ କହିଛି "ଠିକ୍ ଅଛି ମୋ ଭିତରେ ମୋର ମାନବିକତା ନାହିଁ । ମୁଁ ଆଜି ମୋର ପ୍ରେତାତ୍ମା ହୋଇ ବୁଲୁଛି । ମୁଁ ନିଜକୁ ହତ୍ୟା କରିଛି .."(ପୃ ୮୧)

ଗୋଟିଏ ସରଳରୈଖିକ ଚରିତ୍ର କ୍ରମେ ଜଟିଳ ହୋଇଯାଇଛି । ସେ ଭାବି ନେଇଛି ଦାସତ୍ୱ କଲେ ପରିସ୍ଥିତି ବଦଳି ଯିବ ନାହିଁ । ପିତା ରାମହରି ମଧ୍ୟ ପରିସ୍ଥିତି ଓ କର୍ତ୍ତବ୍ୟ ଉପରେ ଦୀର୍ଘ ଭାଷଣ ଦେଇଛନ୍ତି ।

" ତାହା ହେଲେ ଆମେ କ'ଣ ସମସ୍ତେ କର୍ତ୍ତବ୍ୟର ବାହାନା କରୁଛେ ? ଗୋଟିଏ କଥା ଜାଣିଛି ପରିବାର ପାଇଁ କର୍ତ୍ତବ୍ୟ କେବଳ ବାହାନା ନୁହେଁ । ତୁ ଯେଉଁ କର୍ତ୍ତବ୍ୟ କଲୁ ସେ କେବେ କର୍ତ୍ତବ୍ୟ ନୁହେଁ । ଏ ଟଙ୍କାରେ ମୋର ଆବଶ୍ୟକତା ନାହିଁ" ।

ନାଟିକାର ପରିସମାପ୍ତି ଆଦର୍ଶବାଦର ଜୟଗାନରେ ଶେଷ ହୋଇଛି ।

ନାଟ୍ୟକାରଙ୍କ "ଆଗନ୍ତୁକ" ଏକ ଅନୁସନ୍ଧାନମୂକ ନାଟକ । ଏହାର କାହାଣୀ ହେଉଛି ଅନିରୁଦ୍ଧ ରାୟ ତାଙ୍କ ବଡ଼ଭାଇ ଦେବେଶ ରାୟଙ୍କୁ ଗୁଣ୍ଡା ଲଗାଇ ଚଳନ୍ତା ଟ୍ରେନ୍‌ରେ ହତ୍ୟା କରିଛନ୍ତି । ମାତ୍ର ଦୀର୍ଘ ଦଶବର୍ଷ ଧରି ମୃତ ଭାଇଙ୍କ ଜନ୍ମଦିନ ପାଳନ କରି କୁମ୍ଭୀରକାନ୍ଦଣା କାନ୍ଦିଛନ୍ତି ଏବଂ ଭାଇର ବାଗ୍‌ଦତ୍ତା ନମିତାକୁ ବିବାହ ଜାଲରେ ଛନ୍ଦିବାରେ ପ୍ରଯତ୍ନ କରିଛନ୍ତି । ଜନ୍ମ ଦିନରେ ଉପସ୍ଥିତ ଥିବା ଜନୈକ ଆତ୍ମୀୟଙ୍କ ଉଦ୍ଦେଶ୍ୟରେ ଅନିରୁଦ୍ଧ କହିଛି ।

"ହଁ ଠିକ୍ ଦଶବର୍ଷ ହେଲା ଭାଉଜ । ତାଙ୍କର ଗୋଟିଏ ନିହାତି ବଦ୍ ଖିଆଲ ଥିଲା..... ତାଙ୍କର ଜନ୍ମଦିନ ଏଇଠି ପାଳନ ହେବ ।"

ଅନିରୁଦ୍ଧ ନମିତା ଆଗରେ ବାରମ୍ବାର ବିବାହ ପ୍ରସ୍ତାବ ଦେଇ ପିଲାଦିନର ବୋହୂଚୋରୀ ଖେଳ କଥା ସ୍ମରଣ କରାଇ ଦେଇଛନ୍ତି । ମାତ୍ର ନମିତା ଏହାକୁ ପିଲା ଦିନର ଖେଳ ଭଳି ଭୁଲିଯିବାକୁ କହିଛନ୍ତି ।

" ତା ମୁଁ ବୁଝିଛି । ହେଲେ ତାଙ୍କର ଭଲପାଇବାର ମୂଳରେ ଥିବା ଆନ୍ତରିକତାକୁ ତ ମୁଁ ଭୁଲି ପାରିବି ନାହିଁ । ...ଛଳନା ନୁହେଁ, ଅନିରୁଦ୍ଧ ବାବୁ । ଭଲପାଇବା ସେତେବେଳେ ମୋ ପକ୍ଷରେ ଗୋଟାଏ ଏତେ ମାରାତ୍ମକ ରୋଗ ନଥିଲା । ଛୁଆ ମନ ଭିତରେ ଧୂଳି ଖେଳ ପରି ସେ ମମତା ଆସୁଥିଲା, ଆଉ ଯାଉଥିଲା ।"

ଜନ୍ମଦିନ ରାତ୍ରିରେ ଜଣେ ଛଦ୍ମବେଶୀ ପୋଲିସ୍ ଅଫିସର ଦେବେଶ ବେଶରେ ଆସି ସବୁ ଗୋଳମାଳ କରିଦେଇଛନ୍ତି । ଅନିରୁଦ୍ଧ ତାଙ୍କୁ ବଡ଼ଭାଇ ବୋଲି ଚିହ୍ନି ଅଚିହ୍ନା ହେବାର ଛଳନା କରିଛି । ନିଜ ଅସହାୟତା ଛଦ୍ମବେଶୀ ଆଗରେ ଖୋଲି ଦେଇଛି ।

"ତୁମେ ଯେତେବେଳେ ମିଛ ବୋଲି କହୁଛ ମୋର ଅବସ୍ଥା କ'ଣ ହେବ । ଏ ସମାଜରେ ମୋର ସ୍ଥାନ କେଉଁଠି ? ଲୋକମାନଙ୍କୁ କି କୈଫିୟତ ଦେବି ? " (ପୃ.୩୧) ।

ମାତ୍ର ଯେତେବେଳେ ବାହାର ଲୋକେ ଛଦ୍ମବେଶୀକୁ ଦେବେଶ ରାୟ ଭାବି ସାକ୍ଷାତ କରିବାକୁ ଉତ୍ସୁକ ଅନିରୁଦ୍ଧ ନିଜ ମୁଖା ଖୋଲି ଦେଇଛି ।

ମିଛ । ମିଛ । ମୋ ଭାଇକୁ ମୁଁ ମୋ ନିଜ ହାତରେ ମାରିଛି । ଏଇ ରିଭଲଭରରେ ମାରିଛି, (ପୃ୩୮) । ପରେ ଆଗନ୍ତୁକ ନିଜର ପରିଚୟ ପ୍ରଦାନ କରି ଅନିରୁଦ୍ଧକୁ ଆରେଷ୍ଟ କରିଛନ୍ତି । ନାଟକଟିର ପରି ସମାପ୍ତି ହୋଇଛି ।

ନାଟ୍ୟକାର ରାଉତ କେବଳ ନାଟକ ଲେଖନ୍ତି ନାହିଁ । ସାହିତ୍ୟର ବିଭିନ୍ନ ବିଭାଗ ଉପରେ ସେ ଅନବରତ କଲମ ଚଳାଇଛନ୍ତି । ନାଟକ ରଚନା କରିବା ତାଙ୍କର ଏକ ସୌକ । ତଥାପି ସେ ନାଟକ ରଚନାରେ କୃତିତ୍ୱ ସହ ଉତ୍ତୀର୍ଣ୍ଣ ହୋଇଛନ୍ତି କହିଲେ ଭୁଲ୍ ହେବନାହିଁ । ■

ରାଜଲକ୍ଷ୍ମୀ ଭବନ, ମହାନ୍ତିପଡ଼ା, କଟକ-୭୫୩୦୦୨
ମୋ-୯୨୩୮୭୦୫୩୪୨
ମେଲ୍ : profsudhir@rediffmail.com

# ଅନୁଚ୍ଚାରିତରୁ ଉଚ୍ଚାରିତ ସ୍ୱର : ଭୋଳାନାଥଙ୍କ ଗଳ୍ପଦୃଷ୍ଟି

ଡକ୍ଟର କପିଳେଶ୍ୱର ଗାହାଣ

ଭୋଳାନାଥ ରାଉତଙ୍କ ସୃଜନୀୟ ସୃଷ୍ଟି "ଅନୁଚ୍ଚାରିତ ସ୍ୱର" ସଂପର୍କରେ କହିବା ପୂର୍ବରୁ ତାଙ୍କ ସହ ଘଟିଥିବା କିଛି ସ୍ମରଣୀୟ ମୂହୂର୍ତ୍ତର କଥା କହିବି । ମୁଁ ସ୍ୱାମୀ ବିବେକାନନ୍ଦ ମେମୋରିଆଲ (ଏସ୍.ଭି.ଏମ୍) କଲେଜରେ ଅଧ୍ୟାପକ ଭାବେ ଯୋଗ ଦେବାବେଳକୁ ଭୋଳାନାଥ ରାଉତ ଓଡ଼ିଆ ବିଭାଗର ମୁଖ୍ୟ । କଲେଜରେ ଯୋଗ ଦେବାର ସେହି ବିରଳ ମୁହୂର୍ତ୍ତଟିର କଥା । ଟିକେମାତ୍ର ବିଳମ୍ବ ନ କରି ସେ ମୋତେ ଶେଷବର୍ଷ ଅନର୍ସ ଶ୍ରେଣୀର ଉପସ୍ଥାନ ବହିଟି ଧରାଇଦେଲେ । ଅନର୍ସରେ ଥାନ୍ତି ଷୋଳଜଣ ପିଲା । ନୂଆ ସାର୍‌ଙ୍କୁ ସ୍ୱାଗତ କରିବାକୁ ସେମାନେ ପ୍ରାୟ ପ୍ରସ୍ତୁତ ଥିଲେ । ମୋର ସହପାଠୀ ପ୍ରିୟବନ୍ଧୁ ବିଭୂତି ଭୂଷଣ ମହାପାତ୍ର ମୋ ସଂପର୍କରେ ସେମାନଙ୍କୁ ଜଣାଇଦେଇ ଥିବାରୁ ସେମାନେ ବୋଧହୁଏ ମୋତେ ଅପେକ୍ଷା କରିଥିଲେ ସମ୍ବର୍ଦ୍ଧନା ଜଣାଇବା ପାଇଁ ।

ବୃତ୍ତିଗତ ଦୃଷ୍ଟିରୁ ଭୋଳାନାଥ ରାଉତଙ୍କ ସହ ସଂପର୍କ କ୍ରମେ ଏକ ଭାବଗତ ସଂପର୍କରେ ପରିଣତ ହୋଇଗଲା । ପରଦିନ ଆଇ.ଏ. ଦ୍ୱିତୀୟ ବର୍ଷର ଓଡ଼ିଆ ଇଚ୍ଛାଧୀନ ଶ୍ରେଣୀକୁ ସେ ସତୀର୍ଥ ଅଧ୍ୟାପକ ନାରାୟଣ ଚୌଧୁରୀଙ୍କୁ ମୋ ସହ ପଠାଇଲେ । ଓଡ଼ିଆ ଇଚ୍ଛାଧିନ ଶ୍ରେଣୀରେ କେତେବା ପିଲା ଥିବେ ? ଖୁବ୍ କମ୍ ନିଷ୍ଟୟ । ଆଷ୍ଟର୍ଯ୍ୟ ହେଲି 'ଏ' ଏବଂ 'ବି' ସେକ୍‌ସନ ମିଶି ସେ ଶ୍ରେଣୀରେ ଥିଲେ ଶହେ ଷାଠିଏ ପିଲା । ଏ ସବୁ ମୂଳରେ ଥିଲା ଭୋଳାନାଥ ରାଉତଙ୍କ ପ୍ରଚେଷ୍ଟା । ଭାଷା -ସାହିତ୍ୟ ପ୍ରତି ଅନୁରାଗ ଥିବା ଏପରି ଅଧ୍ୟାପକ ଜଣକୁ ମୁଁ ବୋଧହୁଏ ଜୀବନରେ କେବେ ଭେଟି ନଥିଲି । ସେତେବେଳେ ଏସ୍.ଭି.ଏମ୍ କଲେଜରେ 'ସି' ସେକ୍‌ସନ ଥିଲା ଏବଂ ସମୁଦାୟ ୩୮୪ ପିଲାଙ୍କ ମଧ୍ୟରୁ ୨୧୪ ଥିଲେ ଓଡ଼ିଆ ଇଚ୍ଛାଧୀନ ନେଇଥିବା ପିଲା । ଅବଶିଷ୍ଠ ୫୪ ପିଲା ଥିଲେ 'ସି' ସେକ୍‌ସନରେ । ସେହିପରି ବି.ଏ ପାସ୍‌ରେ ଥିଲେ ୬୪ ପିଲା । ଭୋଳିବାବୁଙ୍କ ଏ ବିଚକ୍ଷଣ ଦୂରଦୃଷ୍ଟି ଦେଖି ତାଙ୍କ ପ୍ରତି ଅଜାଣତରେ ଶ୍ରଦ୍ଧା ଓ ସମ୍ମାନ ବଢିଯାଇଥିଲା ।

ପ୍ରଥମେ ପ୍ରଥମେ ବରାଦି ଶ୍ରେଣୀ । ପ୍ରାୟ ଗୋଟିଏ ମାସ ପରେ ନିୟମିତ ଭାବେ ଶ୍ରେଣୀ ବାଣ୍ଟି ଦିଆଗଲା । ସମୁଦାୟ ବାରଟି ଅନର୍ସ କ୍ଲାସ୍ ଏବଂ ଆମେ ବିଭାଗରେ ଥାଉ ଦଶଜଣ ଅଧ୍ୟାପକ । ଅନ୍ୟ ଆଠଜଣଙ୍କୁ ଗୋଟିଏ ଲେଖାଏଁ ଅନର୍ସ କ୍ଲାସ ଦେଇ ସେ ମୋତେ ଦୁଇଟି ଏବଂ ନିଜେ ଦୁଇଟି କ୍ଲାସ୍ ନେବାକୁ ନିଷ୍ପତ୍ତି ନେଲେ । ଆମ ଭିତରୁ କେହି କେହି ବରିଷ୍ଠ ମୋ'ପରି ସର୍ବକନିଷ୍ଠଙ୍କୁ ଅଧିକ ଅନର୍ସ କ୍ଲାସ୍ ଦେବାର ପ୍ରତିବାଦ କଲେ ହେଁ ସେ କିଛି ଶୁଣିଲେ ନାହିଁ । ବରଂ ପରେ ମୋତେ ଡାକି କହିଲେ ତାଙ୍କ ଦୁଇଟି କ୍ଲାସ୍‌ରୁ ଗୋଟିଏ କ୍ଲାସ୍ ମଧ୍ୟ ମୋର ଅର୍ଥାତ୍ ମୋ ପାଇଁ ତିନୋଟି ଅନର୍ସ କ୍ଲାସ୍ ନିର୍ଦ୍ଦିଷ୍ଟ କରାଗଲା । ସର୍ତ୍ତଥିଲା "ଏ ଯାଏ ଏସ୍.ଭି.ଏମ୍.ରୁ ଜଣେ କେହି ପ୍ରଥମଶ୍ରେଣୀରେ ଅନର୍ସ ପାସ୍ କରିନାହାଁନ୍ତି । ଜଣେ ଫାଷ୍ଟକ୍ଲାସ୍ ମୋର ପାଇବା ଦରକାର ।" ତାଙ୍କ ମନରେ ଥିବା ଏ ବିଶ୍ୱାସକୁ ମୁଁ ସମ୍ମାନ ଜଣାଇଥିଲି । ସୌଭାଗ୍ୟକୁ ସେ ବର୍ଷ ୧୬ଜଣ ଅନର୍ସ ପିଲାଙ୍କ ଭିତରୁ ୩ଜଣ ପାଇଲେ ପ୍ରଥମ ଶ୍ରେଣୀ । ସେହିବର୍ଷ ସେ ଏସ୍.ଭି.ଏମ୍. ରେ ଓଡ଼ିଆ ଏମ୍.ଏ. ଶ୍ରେଣୀ ଖୋଲିଲେ । ପ୍ରଫେସର ଡକ୍ଟର କୁଞ୍ଜବିହାରୀ ତ୍ରିପାଠୀ, କଟକରୁ ଯାଉଥିଲେ ଏମ୍.ଏ. ଶ୍ରେଣୀରେ ଭାଷା ପଢାଇବାକୁ ।

ପ୍ରକୃତରେ ଭୋଳିବାବୁ ନିଜେ ନିଜର ଏକ ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିପାରିଥିଲେ ସାରା କଲେଜରେ । ତାଙ୍କ ଉପସ୍ଥିତି ଏକକ ଭାବେ ବାରିହୋଇ ପଡୁଥିଲା । ଭାଇସ୍-ପ୍ରିନ୍‌ସିପାଲ୍‌ର ନାମଫଳକ, ଏକ ସୁସଜ୍ଜିତ କୋଠରି ଏବଂ ବାହାରେ ବସିଥିବା ପିଅନ ତାଙ୍କ ଗୁରୁତ୍ୱ ବଢାଇ ପାରିଥିଲା ଅକ୍ଳେଶରେ । ସେହିପରି ତାଙ୍କ ଆୟୋଜିତ ଓଡ଼ିଆ ସାହିତ୍ୟ ସମାଜର ବାର୍ଷିକୋତ୍ସବ ଓଡ଼ିଆ ବିଭାଗର ଗୌରବମୟ ଅଧ୍ୟାୟ ଥିଲା । ସେ ବର୍ଷ ସରଳାଦେବୀ (ଯେ ଥିଲେ ବାସନ୍ତୀ ଉପନ୍ୟାସର ଅନ୍ୟତମ ଲେଖିକା)ଙ୍କୁ ସମ୍ବର୍ଦ୍ଧନା କରାଯାଉଥିବା ବେଳେ ସମଗ୍ର ଜଗତସିଂହପୁର ସାହିତ୍ୟପ୍ରେମୀମାନେ ଭୋଳିବାବୁଙ୍କୁ ପ୍ରଶଂସା ନକରି ରହିପାରି ନଥିଲେ । ସେହି ଉତ୍ସବରେ 'ଅଶାନ୍ତ' ନାଟକ ଅଭିନୀତ ହେବାକୁ ପ୍ରସ୍ତାବ ରଖିଥିଲେ ଭୋଳିବାବୁ । 'ନାୟିକା' ହେବାକୁ ଝିଅମାନେ ନାହିଁ କରିବାରୁ ଭୋଳିବାବୁଙ୍କ କ୍ରୋଧମିଶ୍ରିତ ରସିକତା ଥିଲା ବେଶ୍ ସ୍ମରଣୀୟ । ଝିଅମାନଙ୍କୁ ଆକ୍ଷେପ କରି କହିଲେ "ବୁଝିଲ ! ପିଲାଟି ଦିନରୁ ଏଇ ଗାଲରେ ରଙ୍ଗମାଖି କେତେ ରଙ୍ଗମଞ୍ଚରେ ମୁଁ ଅଭିନୟ କରିଛି । କେତେ ତନ୍ଦ୍ରା, କେତେ ଛନ୍ଦାଙ୍କୁ ମୁଁ ଭେଟିଛି ।" କଥା କଥାରେ ତାଙ୍କ କୈଶୋରରେ ସ୍ୱପ୍ନ ଆଉ ରୋମାଞ୍ଚର କଥା । ଏକାଧାରାରେ ଜଣେ ଦକ୍ଷ ସଂଗଠକ, ଜଣେ ବିଦଗ୍ଧ ବ୍ୟକ୍ତି ଭାବେ ଭୋଳିବାବୁ କେବଳ ନିଜ ସହ ନିଜେ ତୁଳନୀୟ ହୋଇପାରନ୍ତି । ଏହିପରି ବହୁକଥା ସେସବୁ ପୁରୁଣା ଦିନମାନଙ୍କର, ଏବେ ମଧ୍ୟ ଅପାଶୋରା ।

ଏବେ ତାଙ୍କ ଅନୁଚ୍ଚାରିତ ସ୍ୱର ବହି ସଂପର୍କରେ କିଛି କହିବାକୁ ଇଚ୍ଛା । ଭୋଳିବାବୁଙ୍କର ଏକ କ୍ଷୁଦ୍ର ଗଳ୍ପ ସମାହାର । ଏହାର ପ୍ରଥମଭାଗରେ ରହିଛି 'ବାରଟି ଗଳ୍ପ' ଏବଂ ଦ୍ୱିତୀୟଭାଗରେ 'ପାଞ୍ଚଟି' । ଏଥିରେ ସନ୍ନିହିତ ଗଳ୍ପଗୁଡ଼ିକ ପ୍ରାୟ ସମୟ ସ୍ୱରରେ ବନ୍ଧା ଯାହା ଫ୍ରୟେଡ୍ରୀୟ ମନସ୍ତତ୍ତ୍ୱ ଆଧାରିତ । ମଣିଷର ଦେହ ଓ ମନର ତୀବ୍ର ପ୍ରବାହ ଏବଂ ବିଶେଷତଃ ମଣିଷର ଅବଚେତନ ମନର ଗୋପନକଥାକୁ ନେଇ ଏଗୁଡ଼ିକର ସୃଷ୍ଟି । ମଣିଷର ମନଭିତରେ ଅନ୍ଧାର ଆଲୁଅର ଯେଉଁ ଲୁଚକାଳି ଖେଳ ଗ୍ୱଲେ ତା'ର ଏକ ନିଛକ କାହାଣୀ ହେଉଛି ତାଙ୍କର ପ୍ରଥମ ଗଳ୍ପ । ମନର କଥା କେତେବେଳେ ସାମାଜିକ ଶୃଙ୍ଖଳା ବା ମାନବିକତାର ଦାୟରେ ଅପ୍ରକାଶ ହୋଇ ରହିଯାଏ ସତ, ମାତ୍ର ମନଭିତରେ ଉଠିଥିବା ଝଡ଼ ହଁ-ନାହିଁର ଦ୍ୱନ୍ଦ୍ୱ ମଧ୍ୟରେ ତାକୁ କମ୍ ଜର୍ଜରିତ କରେନି । ଏହିପରି ଏକ ଗଳ୍ପ ହେଉଛି "ଅନ୍ଧକାରର ଆତ୍ମହତ୍ୟା ।" ସବୁ ମାନବୀୟ ବିଗ୍ରହକୁ ଭାଙ୍ଗି ସୃଷ୍ଟି ହୋଇଥିବା ସେହି କାମନାର ଜ୍ୱାଳା କିଛିକ୍ଷଣ ପାଇଁ ଚିରକୁମାର ଥିବା ମହେଶ ରାୟଙ୍କୁ ଅସ୍ଥିର ଓ ଅନ୍ୟମନସ୍କ କରିଦିଏ । କୁହାଯାଏ ମଣିଷ ଭିତରର କାମନା -ବାସନା ସତେ ଯେପରି ଅନ୍ତଃସଲିଳ ଫଲ୍‌ଗୁ ପରି । ଏହା ହେଉଛି ମୂଳତଃ ଭୋଗପ୍ରଧାନ ଲିବିଡ଼ୋର ତାଡ଼ନାଶକ୍ତି । ତେଣୁ ଯେଉଁ ନିବେଦିତାକୁ ପିଲାଦିନୁ ସେ ଝିଅପରି ପାଳିଥିଲେ ତାକୁ ସେ ପ୍ରଣୟୀର ନିକିତିରେ ତଉଲିବାକୁ ଇଚ୍ଛା କରିଛନ୍ତି ଓ ତା'ର ସାନ୍ନିଧ୍ୟ ଲୋଡ଼ିଛନ୍ତି । ଅନ୍ଧାରରେ ମହେଶ ରାୟଙ୍କ ମନରେ ଜାତ ହୋଇଥିବା ଏ ପଶୁପ୍ରବୃତ୍ତି କିନ୍ତୁ ଦମ୍ଭଧରି ଠିଆ ହୋଇ ପାରିନି ଟର୍ଚ୍ଚ ଆଲୁଅ ଧରି ଆସୁଥିବା ନିବେଦିତା ପାଖରେ । ଅନ୍ଧାର ଅପସରି ଯାଇଛି ଆଲୁଅର ଉପସ୍ଥିତିରେ ।

ସେହିପରି ଶିଳ୍ପୀ ସୁରରଞ୍ଜନଙ୍କ ମନରେ ସବିତା ପାଇଁ ଥିବା ପାଗଳାମି । ପତ୍ନୀ, ସଂସାର, ରାଗରୋଷ- ଏ ସବୁର ସୀମାଭିତରେ ଅନ୍ୟମନସ୍କ ରହୁଥିବା ସୁରରଞ୍ଜନଙ୍କ ସ୍ମୃତିରେ ସେଇ ଷୋଡ଼ଶୀ ତରୁଣୀ ସୁଧାମୟୀଙ୍କ ପ୍ରତି ଆସକ୍ତିର କଥା । ଭାବନାରେ ତନ୍ମୟ ରହି ସୁରରଞ୍ଜନଙ୍କ ଆତ୍ମହରା ସ୍ଥିତି ଏବଂ ସୁଧାମୟୀଙ୍କ ଅପ୍ରତ୍ୟାଶିତ ଆକ୍ରମଣ ସାରା ଖ୍ୱାର୍ଟରର ଲୋକମାନଙ୍କୁ ଏକପ୍ରକାର ତଟସ୍ଥ କରିଦେଇଛି । ଶିଳ୍ପୀ ତୂଳୀରେ ଚିତ୍ରମୟ ହୋଇଉଠିଥିଲା, ସେ ଥିଲା ନୀରବ କୋହଟିଏ, ମନର ବେଦନାଟିଏ । ତେଣୁ 'କୃଷ୍ଣଚୂଡ଼ାର ସ୍ତବକ' ଗଳ୍ପରେ ତାହା ମନର ବ୍ୟାକୁଳତା ହିଁ ବୁଝାଇବାକୁ ଚେଷ୍ଟା କରିଛି ଯାହା ପରିସ୍ଥିତିଟିକୁ ଅସହଜ କରିଦେଇଅଛି । ଏହା ପ୍ରେମାନୁଭୂତିର ଏକ ସୃଜନ କାର୍ଯ୍ୟ ଓ ମାନସିକ ଆଚରଣର ଏକ ପ୍ରତିଫଳନ ରୂପେ ହିଁ ସମଗ୍ର ଗଳ୍ପଟିକୁ ପ୍ରଭାବିତ କରିଛି । ତାଙ୍କ 'ଧୂସର ଦିଗନ୍ତ' ଗଳ୍ପଟିରେ, ଅଶୋକବାବୁଙ୍କ ଭାବନା ମଧ୍ୟରେ ସୃଷ୍ଟିହୋଇଥିବା ଏକ ଅଜଣା ବ୍ୟଥା ଶେଷରେ ସକ୍ରିୟ

ହୋଇ ଦେଖାଦେଇଛି ପରୋକ୍ଷଭାବରେ । ଅଶୋକ ବାବୁଙ୍କ ପରି ଜୀବନାନନ୍ଦ ମଧ୍ୟ ସେହିପରି ବାଲିର କବିତା' ଗଳ୍ପରେ ରୂପରେ ଅରୂପ ସୃଷ୍ଟିକରି ପୁଣି ଅରୂପକୁ ରୂପ ଦେବାପାଇଁ ଚେଷ୍ଟା କରିଛନ୍ତି ।

"ସାଇଟିକା ପେସେଣ୍ଟ୍" ଗଳ୍ପଟିରେ ରତିକାନ୍ତଙ୍କ ମନର ଗୋପନ ତଥ୍ୟ ତାଙ୍କ ଦାଂପତ୍ୟ ଜୀବନରେ ପ୍ରଶ୍ନବାଚୀ ସୃଷ୍ଟିକରିଛି । ଅନେକ ସାଇତା ଚିଠି ଏବଂ ଗୋଟିଏ ଫଟୋର ଇତିହାସ ମଧ୍ୟରେ ଦେଖାଦେଇଛି ରତିକାନ୍ତଙ୍କ ଅତୀତ । ତାଙ୍କ ଜାଜ୍ୱଲ୍ୟମାନ ପ୍ରତିଭା ନିକଟରେ ଅନେକ ଏମିତି ଆସିଛନ୍ତି, ନିଜକୁ ଜାଳିପୋଡ଼ି ଦେବାକୁ । ଏହା ମଣିଷର ମାନସିକ ସ୍ଥିତିକୁ ଯେତିକି ପ୍ରଭାବିତ କରିଛି, ସେତିକି ବି ଗତିଶୀଳ କରିଛି । ଏହିପରି ଅତୀତର କର୍ମ, ପାପର ପ୍ରାୟଶ୍ଚିତ, ମନର ଦ୍ୱନ୍ଦ୍ୱହିଁ ହୋଇଛି ଭୋଳାନାଥଙ୍କ ଗଳ୍ପଗୁଡ଼ିକର ଆଧାର । "ଶଶାଙ୍କ ବାବୁଙ୍କ ଘର" ଗଳ୍ପରେ ତାହା ଏକାନ୍ତ ବ୍ୟକ୍ତିଗତ ଓ ଘରୋଇ ହୋଇପଡ଼ିଛି । ସ୍ୱାମୀ-ସ୍ତ୍ରୀଙ୍କ ମଧ୍ୟରେ ହାରିବା ଜିତିବାର ଲଢେଇ ଜୀବନର ପରିଧିକୁ ଅତିକ୍ରମ କରି ଶେଷରେ ବେସୁରା ଗାଇବାକୁ ଏକ ବିଶେଷ ମୁହୂର୍ତ୍ତର ଅପେକ୍ଷା ରଖିଛି ।

ଏହିପରି ସମାନ ଛାଞ୍ଚରେ ଗଢାହୋଇଛି ଭୋଳାନାଥଙ୍କ ପ୍ରାୟ ସମସ୍ତ ଗଳ୍ପ "ଗୋଟିଏ ତ୍ରିଭୁଜାକାର ରଙ୍ଗମଞ୍ଚ' ଗଳ୍ପଟିରେ ତେଣୁ ତରୁଣୀ ଅଧ୍ୟାପିକା ଏବଂ ଅଧ୍ୟାପକ ପାଣିଗ୍ରାହୀଙ୍କ ବାଙ୍କଗ୍ରହାଣି ସେ ଦୁହିଁଙ୍କ ଭିତରେ ମନକଥାର ଇସାରା ଦେଇଛି । 'ଏକ ଅନୁଚ୍ଚାରିତ ସ୍ୱର' ଗଳ୍ପରେ ଉର୍ମିଳାଙ୍କ ବାସର ରାତି ଲକ୍ଷ୍ମଣଙ୍କ ପ୍ରତ୍ୟାଖ୍ୟାନରେ ବିଳପି ଉଠିଥିବାବେଳେ ଅନେକ ବେଦନା ଓ ବିଳାପର ସ୍ୱର ସେଠାରେ ଉଚ୍ଚାରିତ ହେବାପରି ଲାଗିଛି । 'ଅଜଣା ମନର ଅକୁହା କଥା' ଗଳ୍ପରେ ତେଣୁ ସବୁକଥା ଜଣା ଓ କୁହା ଲାଗୁଛି ।

ଦେହ ଓ ମନର ନିଆଁ ତାଙ୍କ ଗଳ୍ପଗୁଡ଼ିକରେ ଅନେକତ୍ର ସୁସ୍ଥ ଅବସ୍ଥା ଓ ଶୃଙ୍ଖଳାକୁ ଭାଙ୍ଗିଦେବାର ପ୍ରୟାସ କରିଛି । ଯେତେବେଳେ ଭିତରର ଅବସ୍ଥା ଧ୍ୱଂସ କରିଦେଇଛି ବ୍ୟକ୍ତିସତ୍ତାକୁ ତା' ନାହିଁ ନଥିବା ପାଗଳାମୀରେ । 'ମଧୁମତ୍ତାର ଇତିକଥା' ଗଳ୍ପଟି କହିଛି ଭିତରର ସେହି ସମ୍ମୋହନର କଥା । ଅଗ୍ନିହୋତ୍ରୀ ଏବଂ ମଧୁମତ୍ତା ଉଭୟ ହିତାହିତ ଜ୍ଞାନ ଭୁଲିଛନ୍ତି ଏକ ପାଶବିକ ଉଲ୍ଲାସରେ । ସାମୟିକ ଉତ୍ତେଜନା ଭିତରେ ଅତ୍ୟନ୍ତ ବଶ୍ୟ ହୋଇଉଠିଛି ସେମାନଙ୍କ ସାନ୍ନିଧ୍ୟ । ଫ୍ରୟେଡଙ୍କ ମତରେ 'ଲିବିଡ଼ୋ' ଯେତେବେଳେ ମଣିଷ ମନରେ ଉଦ୍ଦୀପନା ଇଚ୍ଛା ଜାଗ୍ରତ କରାଏ ତାହା ଧ୍ୱଂସ କରିଦିଏ ସମସ୍ତ ଶୃଙ୍ଖଳାକୁ । ପ୍ରବୃତ୍ତିକୁ ରୋକିପାରିବାର ଶକ୍ତି ସେତେବେଳେ ଆଉ କାହାପାଖରେ ନଥାଏ ।

ଭୋଳାନାଥ ରାଉତ ତାଙ୍କର ଏହି ବାରଟିଗଳ୍ପରେ ମଣିଷ ମନର ଅଭ୍ୟନ୍ତରକୁ ଯେପରି

ଚିହ୍ନି ଚିହ୍ନାଇଛନ୍ତି ତାହା ଦ୍ୱିତୀୟ ଭାଗର ପାଞ୍ଚଟି ଗଳ୍ପରେ ଏକ ଯୋଗସୂତ୍ର ରକ୍ଷାକରି ଆହୁରି ତୀବ୍ର ମନେହୋଇଛି । 'ଆଗ୍ନେୟ' ଏବଂ 'ତର୍ଷା' ହେଉଛନ୍ତି ପାଞ୍ଚଟି ଯାକ ଗଳ୍ପର କେନ୍ଦ୍ରବିନ୍ଦୁ । ସେମାନଙ୍କ ସଂପର୍କ ଓ ଅଭିଳାଷ ମୂଳତଃ ଭୋଗପ୍ରଧାନ । ଫ୍ରୟେଡ଼ୀୟ ମନସ୍ତତ୍ତ୍ୱ ଅନୁଯାୟୀ ମଣିଷର ଆଦିମ ଓ ଦୈହିକ ଆନନ୍ଦ ଯେତେ ସକ୍ରିୟ ହେଲେ ମଧ୍ୟ ତାହା ସଂପୂର୍ଣ୍ଣ ଲୋପ ହୋଇ ପାରେନା । ସେଥିରେ କୌଣସି ଶୃଙ୍ଖଳା ନଥାଏ କି ଯୁକ୍ତି ସବୁ ସେଇ ଅବଦମିତ ଇଚ୍ଛାର ଇନ୍ଦ୍ରଜାଲ ତେଣୁ ସୃଷ୍ଟିକରିଛି 'ତର୍ଷାର' ମନରେ; ଯାହା ଏକାନ୍ତ ଭାବରେ ନୀତିହୀନ ଓ ପଙ୍କିଳ । ସଜ୍ଞାନ ଓ ସଚେତନ ପରିବେଶ ଓ ପରିସ୍ଥିତି ପ୍ରତି ତେଣୁ 'ତର୍ଷା' ଯେତେ ସଚେତନ ହେଲେ ମଧ୍ୟ କାମନାର ପୋଷଣ, ପ୍ରବୃତ୍ତିର ତୃପ୍ତିସାଧନ ତଥା ଭୋଗଆକାଂକ୍ଷା ଏହି ପାଞ୍ଚଟିଯାକ ଗଳ୍ପରେ ଏକୀଭୂତ ହୋଇଯାଇଛି, ତେବେ ଶେଷଗଳ୍ପ 'ଦେହ ଆଉ ଅଦେହ'ରେ ବହିଃପ୍ରକୃତି ସହ ଅନ୍ତଃପ୍ରକୃତିର ମିଳନ ବୁଦ୍ଧଙ୍କ ନିର୍ବାଣର ପରିକଳ୍ପନା କଲାବେଳେ ଜୀବନର ସମସ୍ତ ତାମସିକ ତୃପ୍ତି ଯେପରି ଏକ ଦିବ୍ୟ ଉପଲବ୍ଧିରେ ଆଲୋକିତ ହେବାକୁ ପାଦ ବଢାଇଛି । ସେଠାରେ ହିଁ ତଥାଗତଙ୍କଠାରେ ବିଲୀନ ହୋଇଯାଇଛି ବ୍ୟକ୍ତିସତ୍ତା, କାମନା ଓ ଦୁଃଖର ବିନାଶ କରିବା ଲକ୍ଷ୍ୟରେ ।

ମୋଟ ଉପରେ ଭୋଳାନାଥ ରାଉତଙ୍କ 'ଅନୁଚ୍ଚାରିତ ସ୍ୱର' ମଣିଷ ମନର ଗୋପନଦିଗକୁ ବର୍ଣ୍ଣନା କରିବା କାଳରେ ଯଥାସମ୍ଭବ କଳାତ୍ମକ କରିବାକୁ ଗ୍ରହିଁଛି । ଫ୍ରୟେଡ଼ୀୟ ଅର୍ଥରେ ଏହା ମଣିଷର ଶାରିରୀକ, ଜୈବିକ ଓ ମାନସିକ ଚିତ୍ତବୃତ୍ତିର କଥାକୁ ମୁଖ୍ୟ ଉପାଦାନ ଭାବେ ଗ୍ରହଣକରି ଗଳ୍ପଗୁଡ଼ିକର କଥାବସ୍ତୁକୁ ଯେତିକି ଉଚାରିତ କରିପାରିଛି ତା'ର ଯେତେ ଯାହା ସବୁ ଅନୁଚ୍ଚାରିତ ସ୍ୱର ମଧ୍ୟରୁ । ■

ଚନ୍ଦ୍ରାଲୋକ ଆପାର୍ଟମେଣ୍ଟ, ଫ୍ଲାଟ ନଂ- ୩୦୪
ପ୍ରଫେସରପଡ଼ା, କଲେଜସ୍କୋୟାର, କଟକ

# ମଣିଷ, ଶିକ୍ଷା ଓ ସଂସ୍କୃତି

ପ୍ରଫେସର୍ ବିଧୁଭୂଷଣ ଦାସ

ଆଜି ଓଡ଼ିଶା ରାଜ୍ୟର ପ୍ରତିଷ୍ଠା ଦିବସ । ପ୍ରାୟ ଷାଠିଏ ବର୍ଷ ପୂର୍ବେ ଏହି ରାଜ୍ୟ ପ୍ରତିଷ୍ଠା କରାଯାଇଥିଲା । ଓଡ଼ିଆ ଜାତିର ଲୁପ୍ତ ଗୌରବ, ମର୍ଯ୍ୟାଦା ଓ ସ୍ୱାଭିମାନର ପୁନଃ ପ୍ରତିଷ୍ଠା ପାଇଁ । ସେହି ଲକ୍ଷ୍ୟ କେତେଦୂର ସାଧିତ ହୋଇଛି ଏବଂ ଯଦି ନହୋଇଛି ତାହାର କାରଣ କ'ଣ- ଏହି ବିଷୟରେ ଆଜି ସମୀକ୍ଷା କରି ସମାଧାନର ପନ୍ଥା ନିରୂପଣ କରିବା ଆତ୍ମସମ୍ମାନ ବିଷୟରେ ସଚେତନ ପ୍ରତ୍ୟେକ ଓଡ଼ିଆର କର୍ତ୍ତବ୍ୟ ବୋଲି ମୁଁ ମନେ କରେ । ଆମକୁ ପ୍ରଶ୍ନ କରିବାକୁ ହେବ ଆଜି ରାଜ୍ୟ ସ୍ତରରେ, ସର୍ବଭାରତୀୟ ସ୍ତରରେ ଏବଂ ଆନ୍ତର୍ଜାତୀୟ ସ୍ତରରେ ଓଡ଼ିଆ ମାନଙ୍କର ସ୍ଥିତି ଓ ପରିଚୟ କେଉଁ ଅବସ୍ଥାରେ ପହଞ୍ଚିଛି । ଏହି ପରିଚୟ ସାଧାରଣତଃ ଚାରୋଟି କ୍ଷେତ୍ରରୁ ମୂଲ୍ୟାୟନ କରାଯାଇପାରେ ଯଥା-ରାଜନୀତି, ବାଣିଜ୍ୟ ଓ ଶିଳ୍ପ, ପେଶା ଓ ବୃତ୍ତି, ଏବଂ ଚାକିରି (ସରକାରୀ ଓ ବେସରକାରୀ) ଏହି ସବୁ କ୍ଷେତ୍ରରେ ପ୍ରତିଯୋଗିତା କରି ସର୍ବୋଚ୍ଚ ସ୍ଥାନ ଅଧିକାର କରିବା ପାଇଁ ପ୍ରଥମ ଆବଶ୍ୟକତା ହେଉଛି ଉପଯୁକ୍ତ ମାନବ ସମ୍ବଳର ବିକାଶ ପାଇଁ ସୁଚିନ୍ତିତ ଓ ସମ୍ୟକ ଯୋଜନାର ପ୍ରଣୟନ ଓ ତାହାର ରୂପାୟନ । ସେଥିପାଇଁ ଗଭୀର ଚିନ୍ତା ଓ ଆନ୍ତରିକତା ଆବଶ୍ୟକ । ଆମ ରାଜ୍ୟରେ ଏହି ବିଷୟ ପ୍ରତି ଯେ ଯଥୋଚିତ ଧ୍ୟାନ ଦିଆଯାଉନାହିଁ ତାହାର ତିନୋଟି ଉଦାହରଣ ହେଲା ଯେ ଏ ପର୍ଯ୍ୟନ୍ତ ସାମରିକ ବାହିନୀରେ ଜଣେ ଓଡ଼ିଆ ଜେନେରାଲ୍ ପଦବୀ ପାଇଁ ଯୋଗ୍ୟ ବିବେଚିତ ହୋଇନାହିଁ । ଏହିପରି ଜଣେ ଅଧିକାରୀକୁ ପ୍ରସ୍ତୁତ କରିବାକୁ ହେଲେ ୨୫ରୁ ୩୦ବର୍ଷ ସମୟ ଲାଗେ । ଦ୍ୱିତୀୟ ଉଦାହରଣ ହେଉଛି ଏ ପର୍ଯ୍ୟନ୍ତ ଓଡ଼ିଶାରୁ କୌଣସି ବୈଜ୍ଞାନିକ ରୟାଲ ସୋସାଇଟିର (F.R.S.) ଫେଲୋ ନିର୍ବାଚିତ ହୋଇନାହିଁ । ତୃତୀୟ ଉଦାହରଣ ହେଉଛି ଏ ପର୍ଯ୍ୟନ୍ତ କୌଣସି ଓଡ଼ିଆ କୌଣସି ଦେଶରେ ଭାରତର ରାଜଦୂତ ଭାବରେ ନିଯୁକ୍ତ ହୋଇନାହାଁନ୍ତି ।

ଏହି ଉଦାହରଣର ତାତ୍ପର୍ଯ୍ୟ ହେଉଛି ଓଡ଼ିଶାରେ ବର୍ତ୍ତମାନ ୫ଟି ବିଶ୍ୱବିଦ୍ୟାଳୟ ଓ

ପ୍ରାୟ ୧୨ଶହ ମହାବିଦ୍ୟାଳୟ କାର୍ଯ୍ୟକରୁଛି, ଏବଂ ଏହି ଦୃଷ୍ଟିରୁ ଲୋକସଂଖ୍ୟା ଅନୁପାତରେ ପଶ୍ଚିମବଙ୍ଗ, ଆନ୍ଧ୍ର ଓ କେରଳ ପରି ରାଜ୍ୟମାନଙ୍କୁ ଓଡ଼ିଶା ଅତିକ୍ରମ କରି ଯାଇଛି, ଅଥଚ ଯେଉଁ ଉଦାହରଣ ଆଗରୁ ଦେଇଛି ତାହା ସ୍ପଷ୍ଟ ସୂଚିତ କରୁଛି ଯେ ଗୁଣାତ୍ମକମାନ ଦୃଷ୍ଟିରୁ ଆମର ଶିକ୍ଷା ଏହି ରାଜ୍ୟମାନଙ୍କର ବହୁତ ପଛରେ ପଡିଛି । ମୋ ମତରେ ଆମର ଏହି ପଶ୍ଚାତ୍‌ଗତି ଆହୁରି ବଢିବ ଯଦି ଆମର ଶିକ୍ଷା ପ୍ରଣାଳୀ ଗତାନୁଗତିବ ଭାବରେ ଚାଲିଥିବ ଏବଂ ତାହା ଦିନକୁ ଦିନ ଦୁର୍ନୀତିଗ୍ରସ୍ତ ହୋଇ ତାହାର ବିଶ୍ୱାସନୀୟତା ହରାଉଥିବ । ଏହିପରି ଉଚ୍ଚଶିକ୍ଷା ଦ୍ୱାରା ଆମର ଯୁବ ସମାଜ ଲାଭାନ୍ୱିତ ହେବା ପରିବର୍ତ୍ତେ ଘୋର କ୍ଷତିଗ୍ରସ୍ତ ହେବ ଏବଂ ଆମ ରାଜ୍ୟ ଓ ଜାତିକୁ ଭବିଷ୍ୟତରେ ଦିଗ୍‌ଦର୍ଶନ ଦେବାକୁ ସକ୍ଷମ ହେବ ନାହିଁ ।

ଆଜି ଆମର ଶିକ୍ଷା ପ୍ରଣାଳୀ ଅନୁଧ୍ୟାନ କଲେ ସ୍ପଷ୍ଟ ଜଣାଯାଏ ଯେ ତାହାର ପୃଷ୍ଠଭୂମିରେ ଯେଉଁ ତାତ୍ତ୍ୱିକ ଜୀବନଦର୍ଶନ ରହିବା ଏକାନ୍ତ ଆବଶ୍ୟକ ଆମ ଦେଶରେ ତାହାର ଏକାନ୍ତ ଅଭାବ ରହିଛି । ଏହି ଜୀବନ ଦର୍ଶନ ଶିକ୍ଷାକୁ ଦିଗ୍‌ଦର୍ଶନ ଦିଏ ଓ ପ୍ରଭାବିତ କରେ, ଏବଂ ଶିକ୍ଷା ଦର୍ଶନରେ ପରିଣତ ହୁଏ, ଯଥା ଆଦର୍ଶବାଦ, ବାସ୍ତବବାଦ, ପ୍ରକୃତିବାଦ ଇତ୍ୟାଦିରେ । ଯେତେବେଳେ ଏହି ଉଭୟ ଦର୍ଶନରେ ଅଭାବ ପରିଲକ୍ଷିତ ହୁଏ ସେତେବେଳେ ଶିକ୍ଷାରେ ସଂକଟ ସୃଷ୍ଟି ହୁଏ । ଏହି ସଂକଟ ନାନା ପ୍ରକାରର ହୋଇପାରେ, ଯଥା -ସଂଖ୍ୟା ବିସ୍ଫୋରଣ, ଜ୍ଞାନ ବିସ୍ଫୋରଣ, ଆର୍ଥିକ ଅଭାବ, ପାଠ୍ୟକ୍ରମର ପ୍ରାସଂଗିକତା, ଏବଂ ଯୁବଗୋଷ୍ଠୀର ନୂତନ ଦୃଷ୍ଟିଭଙ୍ଗୀ ଯାହାକୁ ପିଢି ପାର୍ଥକ୍ୟ ବୋଲି ଅଭିହିତ କରାଯାଏ । ଏହି ସଂକଟରୁ ମୋଚନ ପାଇଁ ତାତ୍କାଳିକ ପନ୍ଥା ଅବଲମ୍ବନ କରାଯାଏ । ସେପରି ପରିସ୍ଥିତିରେ ଶିକ୍ଷା ସଂସ୍ଥାନ, ସମ୍ବଳ ବିକାଶ ପରିବର୍ତ୍ତେ ସଂକଟ ସମାଧାନ ସଂସ୍ଥାରେ ପରିଣତ ହୁଏ ଏବଂ ସମସ୍ୟାର ସ୍ଥାୟୀ ସମାଧାନ ହୁଏ ନାହିଁ । ସେଥିପାଇଁ ଏଚ.ଜି.ୱେଲସ୍ ଯଥାର୍ଥରେ କହିଥିଲେ , ଶିକ୍ଷା ଓ ବିପର୍ଯ୍ୟୟ ମଧ୍ୟରେ ଦୌଡ଼ ପ୍ରତିଯୋଗିତାହିଁ ମଣିଷର ଇତିହାସ ।

ଏହି ଦୃଷ୍ଟି କୋଣରୁ ଉଚ୍ଚଶିକ୍ଷାର ସର୍ବପ୍ରଧାନ ଲକ୍ଷ୍ୟ ହ୍ୱାଇଟ୍‌ହେଡ୍‌ଙ୍କ ମତରେ ଜାତିର ଅଭ୍ୟୁତ୍‌ଥାନ ପାଇଁ ମହାନ ପରିକଳ୍ପନା ପାଇଁ । ଏହି ପରିକଳ୍ପନାକୁ ରୂପାୟିତ କରିବା ପାଇଁ କେତେଗୁଡ଼ିଏ ପ୍ରକ୍ରିୟାକୁ ପ୍ରୟୋଗ କରାଯାଏ, ଯାହାକୁ ବ୍ରୁନର ଶିକ୍ଷାର ଧାରା ବୋଲି ଅଭିହିତ କରିଛନ୍ତି । ତାଙ୍କର ଦୃଷ୍ଟିକୋଣ ଗଠନ ପ୍ରଣାଳୀ ଉପରେ ନ୍ୟସ୍ତ । କିନ୍ତୁ ସାଧାରଣ ଭାବରେ କହିବାକୁ ଗଲେ ଏହି ପ୍ରକ୍ରିୟା ଦ୍ୱାରା କ'ଣ ପଢାଯିବ, କେତେବେଳେ ପଢାଯିବ ଏବଂ କେଉଁ ଭାବରେ ପଢାଯିବ ତାହା ସ୍ଥିର କରାଯାଏ । ଏହି ପ୍ରକ୍ରିୟା ଗୁଡ଼ିକ ଯଦି ଯଥାର୍ଥ ହୁଏ ତେବେ ତାହାର ଫଳ ହୁଏ ମାନବ ସମ୍ବଳର ଉତ୍କର୍ଷ, ଯାହାକୁ ଜନ୍ ଗାର୍ଡନର ସର୍ବୋତ୍ତମ ବୋଲି

କହିଛନ୍ତି । ଏହି ଉତ୍କର୍ଷ ଶାରୀରିକ, ବୌଦ୍ଧିକ ଓ ନୈତିକ ବିକାଶର ଏହା ଏକ ସମନ୍ୱୟ । ଆମ ସଂସ୍କୃତିରେ ଆଉ ଗୋଟିଏ ଦିଗ ରହିଛି । ଆଧ୍ୟାତ୍ମିକ ବିକାଶ, ଯାହାର ମୂଳମନ୍ତ୍ର ହେଲା 'ତମସା ମାଂ ଜ୍ୟୋତିର୍ଗମୟ' ଏବଂ ''ସର୍ବେଭବନ୍ତୁ ସୁଖୀନ' ଏବଂ 'ସା ବିଦ୍ୟା ଯା ବିମୁକ୍ତୟେ' । ସର୍ବୋଚ୍ଚ ସ୍ତରରେ ଏହି ମୂଲ୍ୟବୋଧର ସୂଚକ ହେଉଛି ସତ୍ୟ, ଶିବ ଓ ସୁନ୍ଦରମ୍ ବା ପାଶ୍ଚାତ୍ୟ ଦେଶର Truth Goodness, Beauty. ଏହାହିଁ ସହଜାତମୂଲ୍ୟ ଏବଂ ସ୍ୱୟଂସଂପୂର୍ଣ୍ଣ ।

ଏହି ଉତ୍କର୍ଷକୁ ଆୟତ୍ତ କରିଥିବା ବ୍ୟକ୍ତିମାନେ ଦେଶରେ ସବୁକ୍ଷେତ୍ରରେ ନେତୃତ୍ୱ ନେଇ ଦେଶ ଓ ଦେଶବାସୀଙ୍କର ଅଗ୍ରଗତିକୁ ତ୍ୱରାନ୍ୱିତ କରନ୍ତି, ଓ ଦେଶର ସାମୂହିକ ମର୍ଯ୍ୟାଦା ଓ ଗୌରବର ଅଭିବୃଦ୍ଧି ସାଧନ କରନ୍ତି । ଉଦାହରଣ ସ୍ୱରୂପ, ପୃଥିବୀର ଯେଉଁ ବିକଶିତ ଦେଶମାନେ ଆଜି ପୃଥିବୀର ରାଜନୈତିକ ଓ ଅର୍ଥନୈତିକ କ୍ଷେତ୍ରରେ ଶୀର୍ଷସ୍ଥାନ ଅଧିକାର କରି ନୂତନ ପୃଥିବୀର ବିନ୍ୟାସ ଗଠନ କରିବା ପାଇଁ ପ୍ରୟାସରତ ସେମାନଙ୍କର ଏହି ଅଗ୍ରସରତା ପୃଷ୍ଠଭୂମିରେ ରହିଛି ସେମାନଙ୍କର ଶିକ୍ଷାନୁଷ୍ଠାନମାନଙ୍କର ଅନବଦ୍ୟ ଅବଦାନ । ଏଠି ଏତିକି କହିଲେ ଯଥେଷ୍ଟ ହେବ ଯେ ପୃଥିବୀରେ ନାନା ପ୍ରକାର ଉତ୍‌ଥାନ ପତନ ସତ୍ତ୍ୱେ ଅକ୍ସଫୋର୍ଡ, କ୍ୟାମ୍ବ୍ରିଜ୍, ଲଣ୍ଡନ୍, ହାର୍ଭାଡ୍ ପ୍ରିନ୍‌ସଟନ, ସିକାଗୋ, ଷ୍ଟାନ୍‌ଫୋର୍ଡ, ପାରିସ୍, ମସ୍କୋ, ହାଇଡେଲବର୍ଗ, ବର୍ଲିନ୍ ଓ ଟୋକିଓ ବିଶ୍ୱବିଦ୍ୟାଳୟରେ ଶିକ୍ଷାର ମାନ ପରିବର୍ଦ୍ଧିତ ହେବାରେ ଲାଗିଛି, ଏବଂ ସେହି ଜ୍ଞାନଶକ୍ତି ଯୋଗୁ ସେହି ଦେଶମାନେ ପୃଥିବୀର ନେତୃତ୍ୱ ନେଇପାରିଛନ୍ତି । ଏଠି "Group of 7" ଦେଶମାନଙ୍କରେ ଉଚ୍ଚଶିକ୍ଷାରେ ମାନ ସ୍ମରଣ କରାଯାଇପାରେ ।

ଏହି ପରିପ୍ରେକ୍ଷୀରେ ଯେତେବେଳେ ଆମେ ଆମ ଦେଶର ବା ରାଜ୍ୟର ଉଚ୍ଚ ଶିକ୍ଷାନୁଷ୍ଠାନର ଅବସ୍ଥା ଅନୁଧ୍ୟାନ କରୁ ସେତେବେଳେ ଯେଉଁ ଚିତ୍ର ଆମ ଆଖି ଆଗରେ ଭାସି ଉଠେ ତାହା ଅତି ଦୁଃଖଦାୟକ । ଏହି ଦୁଃଖର କାରଣ ହେଲା ଆଲଭିନ୍ ଟଫଲରଙ୍କର ତଥ୍ୟ ଯାହାକୁ ସେ ପରିବେଷଣ କରିଛନ୍ତି ତାଙ୍କର Power shifi ଏବଂ War and Antiwar ଗ୍ରନ୍ଥରେ, ଏବଂ ପାଠକକୁ ହୃଦୟଙ୍ଗମ କରାଇଛନ୍ତି ଯେ ଏକବିଂଶ ଶତାବ୍ଦୀରେ ମାକ ଲୁହାନଙ୍କର Global Village ବା ବିଶ୍ୱବ୍ୟାପୀ ଗ୍ରାମରେ ପ୍ରତିଷ୍ଠା ଅର୍ଜନ କରିବାକୁ ହେଲେ ବାହୁବଳ ଓ ଅର୍ଥବଳ ଭଳି ପୁରୁଣାକାଳିଆ ପ୍ରଣାଳୀକୁ ପରିତ୍ୟାଗ କରି ଆମକୁ ଜ୍ଞାନଶକ୍ତିକୁ ଅବଲମ୍ବନ କରିବାକୁ ପଡ଼ିବ । ଏହି ଜ୍ଞାନଶକ୍ତିର ଅବତାରଣା ବହୁ ପୁରାତନ କାଳରୁ ପ୍ରସିଦ୍ଧ- ଉଭୟ ପାଶ୍ଚାତ୍ୟ ଓ ପ୍ରାଚ୍ୟ ସଭ୍ୟତାରେ । ଏକ ଦିଗରେ ପ୍ଲାଟୋ ଏବଂ ଆରିଷ୍ଟଟଲ, ଅନ୍ୟଦିଗରେ କନଫୁସିୟସ, ବଶିଷ୍ଠ, ଯାଜ୍ଞବଲ୍କ୍ୟ, ପରାଶର, ବ୍ୟାସ, ବାଲ୍ମିକୀ, ମନୁ- ସମସ୍ତେ ଏକମତ ଯେ ''ଜ୍ଞାନମେବ ଶକ୍ତି'' ।

ଏହି ଉକ୍ତି ଯଦି ସତ୍ୟ ତାହାଲେ ଆମ ଦେଶରେ Decline and fall of Allhabad/ Calcutta/ Patna/Utkal University' ଏହିପରି ପ୍ରବନ୍ଧମାନ କାହିଁକି ପ୍ରକାଶିତ ହେଉଛି ? ବିକଶିତ ଦେଶଗୁଡ଼ିକରେ ବିଶ୍ୱବିଦ୍ୟାଳୟ ବିଷୟରେ ଏହିପରି ପ୍ରବନ୍ଧମାନ କାହିଁକି ବାହାରୁନାହିଁ ? ଏହାର ମୁଖ୍ୟ କାରଣ ହେଲା ଯେ ସେସବୁ ଦେଶମାନଙ୍କର ନେତୃବୃନ୍ଦ ଏବଂ ବୁଦ୍ଧିଜୀବୀମାନେ ସେମାନଙ୍କର ବିଶ୍ୱବିଦ୍ୟାଳୟ ଓ ମହାବିଦ୍ୟାଳୟଗୁଡ଼ିକର ଉତ୍କୃଷ୍ଟ ଅବଦାନ । ସେମାନେ ସମ୍ୟକ ଭାବରେ ଅବହିତ ଯେ ସେମାନଙ୍କର ପ୍ରତିଷ୍ଠା ମୂଳରେ ରହିଛି ସେହି ଶିକ୍ଷାୟତନଗୁଡ଼ିକର ଉଚ୍ଚକୋଟୀର ଶିକ୍ଷା ଓ ତାଲିମ୍ ।

ଯେଉଁ ପ୍ରବନ୍ଧଗୁଡ଼ିକର ଶୀର୍ଷକ ମୁଁ ଉଦ୍ଧୃତ କରିଛି ସେଗୁଡ଼ିକ ଯେ କୌଣସି ବୁଦ୍ଧିଦୀପ୍ତ ଚିନ୍ତାଶୀଳ ବ୍ୟକ୍ତି ମନରେ ଗିବନଙ୍କ Decline and Fall of Roman Empire ନାମକ ମହାଗ୍ରନ୍ଥରେ ରୋମାନ ସାମ୍ରାଜ୍ୟର ଅବକ୍ଷୟ ଓ ପତନ ସମୟରେ ଯେଉଁସବୁ ଲକ୍ଷଣ ଦେଖା ଦେଇଥିଲା ସେସବୁ ଶିକ୍ଷାକ୍ଷେତ୍ରରେ କିପରି ଓ କେତେଦୂର ପରିଲକ୍ଷିତ ହେଉଛି ତାହା ନିଶ୍ଚିତ ଭାବରେ ସ୍ମରଣ କରାଇ ଦେବ ।

ଶିକ୍ଷା ପ୍ରତ୍ୟେକ ସ୍ତରରେ ଗୋଟିଏ ଜାତିର ନିଜସ୍ୱ ଐତିହ୍ୟ ଓ ସଂସ୍କୃତିର ମୂଳଭିତ୍ତି ଉପରେ ପ୍ରତିଷ୍ଠିତ, ଏବଂ ସମୟର ଗତି ସହିତ ଶିକ୍ଷାରେ ଆବଶ୍ୟକ ପରିବର୍ତ୍ତନ କରାଯାଏ, କିନ୍ତୁ ମୂଳଭିତ୍ତି ଅପରିବର୍ତ୍ତିତ ରହେ । ଶିକ୍ଷା ଓ ସଂସ୍କୃତିର ସଂପର୍କ ଗୋଟିଏ ଜଟିଳ ବିଷୟ ଏବଂ ଏହାକୁ ଆଲୋଚନା କରିବା ପାଇଁ ଏଠାରେ ଅବକାଶ ନାହିଁ । କେବଳ ଏତିକି କହିଲେ ଯଥେଷ୍ଟ ହେବ ଯେ ଉନବିଂଶ ଶତାବ୍ଦୀରେ ଯେଉଁ ଶିକ୍ଷା ପ୍ରଣାଳୀ ପାଶ୍ଚାତ୍ୟ ଦେଶମାନଙ୍କରୁ ଆମେ ଆଣିଥିଲୁ ତାହାର ପୃଷ୍ଠଦେଶରେ ଥିଲା ଗୋଟିଏ ଜୀବନଦର୍ଶନ, ଯାହାକୁ Utilitarianism କୁହାଯାଏ । ଏହି ଶିକ୍ଷାକୁ Liberal Education କୁହାଯାଏ ଏବଂ ଗୋଟିଏ ମଧ୍ୟମବର୍ଗର ସୃଷ୍ଟି ଏହାର ଲକ୍ଷ୍ୟ । ଏହା ବୁଦ୍ଧି ବା ଯୁକ୍ତିର ସିଦ୍ଧାନ୍ତ ଦ୍ୱାରା ଅସୀମ ପ୍ରଗତିରେ ବିଶ୍ୱାସ କରେ ।

ଆଧୁନିକତାର ଯୁଗରେ ଏହି ଜୀବନଦର୍ଶନକୁ ପ୍ରତ୍ୟାଖ୍ୟାନ କରାଯାଇଛି । ସେଥିପାଇଁ ଷଷ୍ଠ ଦଶକରେ ପାଶ୍ଚାତ୍ୟ ବିଶ୍ୱବିଦ୍ୟାଳୟମାନଙ୍କରେ ଯେଉଁ ଛାତ୍ର ଆନ୍ଦୋଳନ କରାଯାଇଥିଲା ତାହା ଆଧୁନିକ ଯୁଗ ସ୍ଥାନରେ ଆଧୁନିକୋତ୍ତର ଯୁଗର ସୂତ୍ରପାତ କରିଥିଲା । ଏହାକୁ ଫୋକୋ Epistemic Break' ବୋଲି କହିଛନ୍ତି ଏବଂ ଏହି Break ତାତ୍ପର୍ଯ୍ୟ ବୁଝିବାକୁ ହେଲେ ଆମକୁ ଯିବାକୁ ହେବ ଟି . କାହନସଙ୍କର The Structure of Scientific Revolutions ଗ୍ରନ୍ଥକୁ ଏବଂ ତାଙ୍କର scientific paradigms ର ବ୍ୟାଖ୍ୟାକୁ । ଆଜି ଏହି ବୈଜ୍ଞାନିକ

ବିପ୍ଳବ ଆମକୁ ଆଣି ଉପନୀତ କରାଇଛି ଗୋଟିଏ ସାଇବରଟେନିକ୍ସ ଯୁଗରେ । ଯେଉଁ ଯୁଗ ଆଗରେ ରହିଛି designer baby virtual reality ମଣିଷର ମସ୍ତିଷ୍କଠାରୁ ଉନ୍ନତତର କୃତ୍ରିମ ବୁଦ୍ଧି, ଏବଂ ଡ୍ରିନ୍ ଫର୍ନରଙ୍କର ଯୁଗାନ୍ତକାରୀ "କୃତ୍ରିମ ଜୀବନ" । ଏହି ଆଧୁନିକୋତ୍ତର ସଭ୍ୟତାରୁ ପ୍ରସୂତ ମଣିଷ ତାହାର ପ୍ରକୃତି ଓ ଭାଗ୍ୟ ବିଷୟରେ ସନ୍ଦିହାନ ହୋଇ ପଡ଼ିଛି । ସେଥିପାଇଁ ତାଙ୍କୁ ଫମ୍ପା ଲୋକ, ଝୁଲା ଲୋକ, ଭୂମିତଳର ଲୋକ ଓ ଏକ ଆୟତନର ଲୋକ ବୋଲି ବର୍ଣ୍ଣନା କରାଯାଇଛି । ସବୁଠାରୁ ସ୍ମରଣୀୟ ନାମକରଣ ହେଉଛି ହାଇଡ଼େଗରଙ୍କର 'ଅବିଶୁଦ୍ଧ ଲୋକ' (Inauthentic man). ଏହି ପ୍ରକାର ମଣିଷ ତାହାର ନିଜସ୍ୱ ବା ବ୍ୟକ୍ତିତ୍ୱ ହରାଇ କିମ୍ଭୂତକିମାକାର ଜୀବନରେ ପରିଣତ ହୋଇଛି । ସେଥିପାଇଁ ପଲଗୁଡ଼ମାନ ଦାୟୀ କରିଛନ୍ତି ପ୍ରଚଳିତ ଶିକ୍ଷା ପ୍ରଣାଳୀକୁ ତାଙ୍କର Growing Absurd ପୁସ୍ତକରେ ।

ଏହି ମଣିଷକୁ ବର୍ତ୍ତମାନ ମନସ୍ତାତ୍ତ୍ୱିକ, ସାମାଜିକ, ନୈତିକ ଦୃଷ୍ଟିକୋଣରୁ ଅଧ୍ୟୟନ କରାଯାଇ ଅନେକ ନିବନ୍ଧ ଓ ପୁସ୍ତକ ପ୍ରକାଶିତ ହୋଇଛି, ଯେଉଁଥିରେ ଦର୍ଶାଇ ଦିଆଯାଇଛି ବିଭକ୍ତ ବ୍ୟକ୍ତିତ୍ୱକୁ, ତାହାର ନିଜସ୍ୱ ସତ୍ତାର ବିଲୋପନକୁ, ତାହାର ବାହାର ଓ ଭିତର ବ୍ୟବହାରର ଅସାମଞ୍ଜସ୍ୟକୁ । ଯେଉଁ ବାହାର /ଭିତରର କଥା କରିଛନ୍ତି ଟେଲ୍‌ହାର୍ଡ ଡ଼ି ଚାଡ଼ିନ ତାଙ୍କର Phenomenon of Man ରେ, ସେହିକଥା ଆମ ସଂସ୍କୃତିରେ ବହୁପୂର୍ବେ କୁହାଯାଇଛି 'କ୍ଷେତ୍ର' ଓ 'କ୍ଷେତ୍ରଜ୍ଞ' ପାର୍ଥକ୍ୟ ଦ୍ୱାରା । ମଣିଷ କେବଳ ଗୋଟିଏ ଯନ୍ତ୍ର ବା ଶରୀର ନୁହେଁ ।

ପାଶ୍ଚାତ୍ୟ ଶିକ୍ଷାଦର୍ଶନ ଦ୍ୱାରା ପ୍ରଭାବିତ ଏହି ଏକ ଆୟତନର ମଣିଷ ତାହାର ସତ୍ତାକୁ ଅନ୍ୱେଷଣ କରି ବିଫଳକାମ ହୋଇ ଭିନ୍ନ ଭିନ୍ନ ଧରଣର ପ୍ରତିକଳ୍ପ ବାସନାର ଆଶ୍ରୟ ନେଇ ଯେଉଁ ସଂସ୍କୃତିକୁ ପ୍ରଚାର କରେ ତାହା ଉତ୍ତେଜନାମୂଳକ ଇନ୍ଦ୍ରିୟଜ ସଂସ୍କୃତି, ଯାହାକୁ ମନସ୍ତତ୍ତ୍ୱ ଦିଗରୁ ଇଡ୍, ଇଗୋ, ସୁପର ଇଗୋର ସଂଘର୍ଷ ବା ଆମ ସଂସ୍କୃତିର ସତ୍ତ୍ୱ, ତମ ଓ ରଜ ଗୁଣର ସଂଘର୍ଷ ରୂପେ ବିଗ୍ରହ କରାଯାଇ, ଶିକ୍ଷା ଦ୍ୱାରା ସମନ୍ୱିତ ବ୍ୟକ୍ତିତ୍ୱ କିପରି ସୃଷ୍ଟି କରାଯାଇ ପାରିବ ଏବଂ ସେଥିପାଇଁ, ଶିକ୍ଷା ପ୍ରଣାଳୀରେ କି ବ୍ୟବସ୍ଥା ରହିଛି ତାହାର ଅନୁଧ୍ୟାନ ହେବା ଆବଶ୍ୟକ । କାରଣ ଯେଉଁ ଯାନ୍ତ୍ରିକ ସଭ୍ୟତା ବର୍ତ୍ତମାନ ସାରା ପୃଥିବୀରେ ପରିବ୍ୟାପ୍ତ ତାହାର ପ୍ରଭାବ ଶିକ୍ଷାକୁ ଏବଂ ଶିକ୍ଷାର ମୂଲ୍ୟବୋଧକୁ ଅହରହ ଆକ୍ରାନ୍ତ କରିଗ୍ଲିଛି । ଏହାକୁ ବିସ୍ତାରିତ ଭାବରେ ଆଲୋଚନା କରିଛନ୍ତି ଲୁଇ ମମଫୋର୍ଡ ତାଙ୍କର Techniques & Civilization ଏବଂ ଜାକସ ଏଲୁଲ ତାଙ୍କର Technological Society ରେ । ଉଭୟ ଲେଖକଙ୍କର ଏକ ମତ ଯେ ଆଧୁନିକ ଯୁଗରେ ମଣିଷର ସବୁଠାରୁ ବଡ଼ କ୍ଷତି ହୋଇଛି ତାହାର ମାନବିକତା ବା ମାନବିକ ସଂସ୍କୃତିରେ ବିସ୍ତାରିତ ଅମାନବିକତା ଯୋଗୁ ।

ଏହି ଅମାନବିକ ପ୍ରକ୍ରିୟା ଆମର ଗଣମାଧ୍ୟମ ଦ୍ୱାରା ଆଜି ସାଧାରଣ ମଣିଷର ପ୍ରକୃତିକୁ ପରିବର୍ତ୍ତିତ କରି ଚଲିଛି, ବିଶେଷ କରି ଅନଗ୍ରସର ଦେଶମାନଙ୍କରେ । ଏହାକୁ ଗ୍ରାମସି କହିଛନ୍ତି "ସାଂସ୍କୃତିକ କର୍ତ୍ତୃତ୍ୱ' ଏବଂ ଏଡଓ୍ୟାର୍ଡ ସଇଦ "ସାଂସ୍କୃତିକ" ସାମ୍ରାଜ୍ୟ ବାଦ' ବୋଲି । ଏହାର ଗୋଟିଏ ଗୋଟିଏ ଦୃଷ୍ଟାନ୍ତ ହେଉଛି ଓନିଡ଼ା ଟିଭିର ବିଜ୍ଞାପନ, "Owner's pride and Neighhbour's Envy" ଯାହା ଅଗଣିତ ଦର୍ଶକମାନଙ୍କୁ ପ୍ରଭାବିତ କରୁଛି ଗର୍ବ ଓ ଈର୍ଷାକୁ ଗ୍ରହଣୀୟ ମୂଲ୍ୟ ଭାବରେ ନେବାପାଇଁ । ଆଜି ଯେଉଁ ଶିକ୍ଷଣୀୟ ସମାଜରେ ଆମେ ବାସ କରୁଛୁ ସେଠି ଶିକ୍ଷା ନାନା ଦିଗରୁ ଆହରିତ ହେଉଛି ଏବଂ ଜ୍ଞାନର ଦ୍ରୁତ ସଂପ୍ରସାରଣ ଯୋଗୁ ସାରା ଜୀବନ ବ୍ୟାପୀ ହେଉଛି । ଏଠି କିନ୍ତୁ ଶିକ୍ଷା ଓ କୁଶିକ୍ଷା ମଧ୍ୟରେ ଯେଉଁ ପାର୍ଥକ୍ୟ ତାହା ସାଧାରଣତଃ ଦୃଷ୍ଟିଗୋଚର ନହେବା ଯୋଗୁ ଆଜି ପୃଥିବୀ ମେଡ଼ିଆ ସମାଜ ବା ଦୃଶ୍ୟବହୁଳ ସମାଜରେ ପରିଣତ ହୋଇଛି ଏବଂ ଏହି କୁଶିକ୍ଷା ଅନ୍ୟାନ୍ୟ ଦେଶର ନାଗରିକ ଓ ସଂସ୍କୃତିର ବାହକମାନଙ୍କୁ ଆକ୍ରମଣ କରି ସେମାନଙ୍କ ବ୍ୟକ୍ତିତ୍ୱ ଓ ଅସ୍ତିତ୍ୱକୁ ସ୍ତିମିତ ଓ ମଳିନ କରି ସେମାନଙ୍କୁ ଗୋଟାଏ ନିମ୍ନବର୍ଗର ସଂସ୍କୃତିର ଦାସାନୁଦାସ ରୂପେ ପରିବର୍ତ୍ତିତ କରିଛି, ଯେଉଁଥିପାଇଁ ଆମେରିକାର ଅଶ୍ୱେତ ଅଧିବାସୀମାନେ ଆଲ୍‌ସେ ହାଲିଙ୍କ ପରି ତାଙ୍କର ମୂଳ ବା ଉତ୍ସକୁ ଅନ୍ୱେଷଣ କରୁଛନ୍ତି ।

ଆମ ଦେଶରେ ଏଇ ପ୍ରଭାବ ତାର କାୟା କିପରି ବିସ୍ତାର କରିଚାଲିଛି ଏବଂ ଯୁବଗୋଷ୍ଠୀର ମାନସିକତା ବା ସମ୍ବେଦନକୁ ପ୍ରତ୍ୟେକ୍ଷ ଓ ପରୋକ୍ଷ ଭାବରେ ପ୍ରଭାବିତ କରୁଛି, ତାହାର ଗୋଟିଏ ଦୃଷ୍ଟାନ୍ତ ଆମେ ପାଇବା ପ୍ରସିଦ୍ଧ ବ୍ୟଙ୍ଗ ଚିତ୍ରକାର ମେରିଓ ମିରାଣ୍ଡାଙ୍କର ଚିତ୍ର ନବମ ଦଶକର ଉଚ୍ଚଶିକ୍ଷିତ ଭାରତୀୟ ଯୁବକରେ । ଏହି ଚିତ୍ରକୁ ଯେଉଁମାନେ ଦେଖିଥିବେ ସେମାନଙ୍କ ମନରେ ଯେଉଁ ପ୍ରଶ୍ନ ଉଠିବ ତାହା ହେଲା ଏହା ସତ୍ୟ ନା ସତ୍ୟର ମୁଖା ବା ଛଳନା ? ଯଦି ସତ୍ୟ ତାହାଲେ ଏହା ସାଂଘାତିକ, କାରଣ ଏହା ଆମ ଶିକ୍ଷା ବ୍ୟବସ୍ଥାରେ ବିପର୍ଯ୍ୟୟର ପ୍ରତୀକ ।

ମିରାଣ୍ଡାଙ୍କର ଚିତ୍ର ହେଉଛି ଗୋଟିଏ ଡିସ୍କୋରେ , ଗୋଟିଏ ପବ୍‌ରେ, ଗୋଟିଏ ଉଚ୍ଚ ଷ୍ଟୁଲ ଉପରେ ବସିଥିବା ଜଣେ ଯୁବକର । ତାର ପରିଧାନରେ ଅଛି ପିଏରି କାର୍ଡିନଙ୍କର ଟି ସାର୍ଟ, ଈଷତ୍ ନୀଳାଭ ଜିନ୍‌ସ ସସ୍‌ପେଣ୍ଡର ସହିତ ଲାଲ ଓ ଧଳା ମୋଜା, ଧଳା କେଡ୍ ଜୋତା, ମୁଣ୍ଡରେ ଲାଲ ଓ ସବୁଜ ଟୋପି, ଆଖିରେ ଗ୍ରାନି ଗଗଲସ । ଗୋଟିଏ ଲମ୍ବା ବିଦେଶୀ ସିଗାରେଟ ତା ଓଠରୁ ଝୁଲୁଛି । ତାହାର ଗୋଟିଏ ଲମ୍ବା କେଶ ଗୁଚ୍ଛ ମୁଣ୍ଡ ପଛରେ ଘୋଡ଼ାଲାଞ୍ଜ ଭାବରେ ରବର ବ୍ୟାଣ୍ଡ୍ ଦ୍ୱାରା ସଜ୍ଜିତ । ତାର କାନରେ ଇୟରରିଙ୍ଗ୍, ତାର ମଣିବନ୍ଧରେ ସୁନା

ଓ ରୂପାର ବେସ୍‌ଲେଟ୍, ଡାହାଣ ହାତରେ ପେପ୍‌ସିକୋକ୍ ବୋତଲ । ଡାହାଣ ପାଖରେ ଗୋଟିଏ ଟିଭି ସେଟ, ପଛ ପାଖରେ ବିଅର ବୋତଲ, ଡାହାଣ ହାତତଳେ ରହିଛି ହଟ୍‌ଡଗ୍ ଏବଂ ହ୍ୟାମବର୍ଗର, ପାଦ ନିକଟରେ ଅଛି ମ୍ୟାଡ଼ୋନା ଓ ର୍‍ୟାପ୍ ସଂଗୀତର କ୍ୟାସେଟ୍, ଗୋଟିଏ ଫ୍ୟାସନ ପତ୍ରିକା ଏବଂ ମାଇକେଲ୍ ଜ୍ୟାକସନର ଫଟ । ତାହାର ବାଁ ପାଖରେ ବସିଛି ହସୁଥିବା ତାର ଝିଅ ସାଙ୍ଗ, ସେ ମଧ୍ୟ ଜିନସ୍ ପିନ୍ଧିଛି, ଏବଂ ହାତରେ ଟେକି ଧରିଛି ଗୋଟିଏ ଫେନାୟିତ ବିଅର ମଗ । ତାହାର ବାଁ ପାଖରେ ଛିଡ଼ା ହୋଇଛି ତାର ପୁଅସାଙ୍ଗ । ତାହାର ଡାହାଣ ପାଦ ପାଖରେ ରହିଛି ଗୋଟିଏ ଟେଲିଫୋନ୍ ଏବଂ ଆମେରିକୀୟ ବିଶ୍ୱବିଦ୍ୟାଳୟ ମାନଙ୍କର ଗୋଟିଏ ତାଲିକା, ଏବଂ ଆମେରିକା ଯିବା ପାଇଁ ଅନୁମତିପତ୍ର ବା ଭିସା ।

ବ୍ୟଙ୍ଗ ଚିତ୍ର ସଭ୍ୟତାକୁ ବିଦ୍ରୂପ କରେ, ଆଦର୍ଶ ଓ ବାସ୍ତବର ପାର୍ଥକ୍ୟ ସୂଚାଇଦିଏ । ଏହି ଯୁବକ ଜଣକ ଆପାତତଃ ଯାହାକୁ'ଜେଟ୍ ୟୁପି' (Jet- set yupie) ଶ୍ରେଣୀ କୁହନ୍ତି ତାହାର ପ୍ରତିନିଧି, ତାହାର ବିଶ୍ୱାସ ଯେ ସେ ବଞ୍ଚିଛି ତାହାର ନିଜର ଅଭ୍ୟୁଦୟ ପାଇଁ । ଏବଂ ସେଥିପାଇଁ ତାହାର ସତୀର୍ଥ ଯେଉଁ ଗୀତ ସେ ଟିଭିରେ ଗାଉଛି ତାହା ହେଲା 'ଆରେ ଏନଜୟ ୟାର' ଏବଂ ଏ ଜିନ୍ଦଗୀ ହେ ମେରେ ଲିୟେ । ହରପଲ ହେ ମେରେ ଲିୟେ ।' ଏହି ମେରେ'ର ପୁନଃ ପୁନଃ ଉଚ୍ଚାରଣ ଦ୍ୱାରା ସେ ତାହାର ନିଜତ୍ୱ ଉପରେ ଯେଉଁ ଜୋର ଦେଉଛି ତାହା ତାହାର ଖଣ୍ଡିତ ନିଜତ୍ୱକୁ ବା ଅଣୁତ୍ୱକୁ ପ୍ରତିପାଦିତ କରୁଛି । ଆହୁରି ଭୟାବହ ହୋଇଛି 'ହର୍ ପଲ୍'ର ପ୍ରୟୋଗ ଦ୍ୱାରା ଯାହା ସମୟ ବା କାଳ ପ୍ରତି ତାର ତ୍ରସ୍ତ ଦୃଷ୍ଟିଭଙ୍ଗୀକୁ ସୂଚିତ କରୁଛି । ସମୟର ଏହି ପ୍ରକାର ମୂଲ୍ୟାୟନ ପାଶ୍ଚାତ୍ୟ ଜୀବନ ଦର୍ଶନ ଉପରେ ପ୍ରତିଷ୍ଠିତ, ଭାରତୀୟ ବା ଅନ୍ୟାନ୍ୟ ପ୍ରାଚ୍ୟ ଦର୍ଶନ ଉପରେ ନୁହେଁ । ସମୟକୁ ଯିଏ ଏପରି ବିଖଣ୍ଡିତ କରିପାରେ ତାହାର ଜୀବନ ସବୁବେଳେ ଉଦ୍‌ବେଗ ଓ ଆଶଙ୍କା ଦ୍ୱାରା ବିଚଳିତ, ଏହି ପ୍ରକାର ଜୀବନକୁ ନିରବ ହତାଶାର ଜୀବନ ବା Life of angst' ବୋଲି ବର୍ଣ୍ଣନା କରାଯାଇଛି । ଏହି ଜୀବନ ସହିତ ସତ୍- ଚିତ୍ ଆନନ୍ଦର ସଂପର୍କ ନାହିଁ ଏବଂ ଏହି ଯୁବକ 'ଅମୃତସ୍ୟ ପୁତ୍ରାଃ' ବା ପୁରୁଷମ୍ ମହନ୍ତମ୍' ବା ମାଇକେଲ ଆଁଜେଲୋଙ୍କ ଆଦାମର ଅର୍ଥ ବୁଝିବା ପାଇଁ ଅକ୍ଷମ । ତାହାର ଗୀତ ଶେଷରେ ରହିଛି ଦାନ୍ତଘସାର ବିଜ୍ଞାପନ । ସେହି ତାର ସତ୍ୟ ।

ଏହି ଯୁବକ ବିଷୟରେ ଏତେ ତର୍ଜମା କରିବାର କାରଣ ହେଉଛି ଏହି ଶ୍ରେଣୀର ଯୁବକ ଆମ ଦେଶରେ ସବୁ କ୍ଷେତ୍ରରେ ସର୍ବୋଚ୍ଚ ସ୍ଥାନ ଅଧିକାର କରିବ । ଏହି ମୋର ପିଢି'ର ମୂଲ୍ୟବୋଧ ଟଙ୍କା, ରୋମାଞ୍ଚ ଓ ରକ୍ ଏନ୍ ରୋଲ୍ ପରି ଉତ୍ତେଜକ ନାଚ ଉପରେ ପ୍ରତିଷ୍ଠିତ, ଏବଂ ସେହି ମୂଲ୍ୟବୋଧକୁ ସେ ସମାଜର ସବୁ ସ୍ତରକୁ ପ୍ରସାରିତ କରିବ ତାହାର ରାଜନୈତିକ,

ବ୍ୟବସାୟିକ ଓ ଶାସକୀୟ ଶକ୍ତି ଓ ପ୍ରଭାବ ଦ୍ୱାରା ଏହାର ଅର୍ଥ ହେଲା ରାଜନୀତିରେ ଯାହାକୁ କୁହାଯାଏ କ୍ଷମତା ଗୋଷ୍ଠୀ ବୋଲି ସେ ସେହି ଗୋଷ୍ଠୀର ଅନ୍ତର୍ଭୁକ୍ତ ଏବଂ ଆମର ବର୍ଗୀକୃତ ବା ସାମାଜିକ ଶ୍ରେଣୀଗତ ସମାଜରେ ତାହାର ମୂଲ୍ୟବୋଧକୁ ସାଧାରଣ ଲୋକେ ଅନୁକରଣ କରିବେ । ସେ ହେବ ଉଭୟ ଶିକ୍ଷକ ଓ ଛାତ୍ର ସମାଜ ପାଇଁ ଅନୁକରଣର ପାତ୍ର ବା ଆଦର୍ଶସ୍ଥାନୀୟ । ସେ ହେବ ଆମ ସାଂସ୍କୃତିକ ଜୀବନର ପ୍ରବକ୍ତା ଓ ପୃଷ୍ଠପୋଷକ ଏବଂ ଶିକ୍ଷାନୀତିର ପ୍ରଣୟନ କର୍ତ୍ତା "ସଃ ଯତ୍ ପ୍ରମାଣ କୁରୁତେ ଲୋକସ୍ତଦନୁବର୍ତ୍ତତେ" । ଏପରି ଅନୁକରଣ ସମ୍ଭବପର ହୋଇ ପାରି ନଥାନ୍ତା ଯଦି ଆମର ଶିକ୍ଷା ବ୍ୟବସ୍ଥାରେ ଆମ ସମାଲୋଚନା ଓ ବିବେଚନାକୁ ଏବଂ ଆମର ସଂସ୍କୃତିର ଦୃଷ୍ଟିକୋଣକୁ ଯଥେଷ୍ଟ ଗୁରୁତ୍ୱ ଦେଇଥାନ୍ତୁ ଏବଂ ଆମର ଉଚ୍ଚ ଶିକ୍ଷାକୁ ବିଶେଷ କରି ଦେଶର ବିଭିନ୍ନ ଜୀବନର ଆବଶ୍ୟକତା ଏବଂ ଆକାଂକ୍ଷା ଅନୁଯାୟୀ ସଂଗଠିତ କରିଥାନ୍ତୁ । ଏଥିପାଇଁ ବିଭିନ୍ନ ଅଞ୍ଚଳକୁ ଆଖି ଆଗରେ ରଖି ପାଠ୍ୟକ୍ରମ ପ୍ରବର୍ତ୍ତନ କରାଯାଇ ପାରିଥାନ୍ତା । ସେପରି ଉଦ୍ଦେଶ୍ୟ କାର୍ଯ୍ୟକାରୀ କରା ନଯାଇ ଆଦିବାସୀ ଅଧ୍ୟୁଷିତ ଅଞ୍ଚଳଠାରୁ ଆରମ୍ଭ କରି ଆମର ପଞ୍ଚତାରକା ସଂସ୍କୃତି ବିଶିଷ୍ଟ ମହାନଗରୀରେ ଗୋଟିଏ ପାଠ୍ୟକ୍ରମ ପ୍ରସ୍ତୁତ ଓ ପ୍ରଚଳନ କରିବା ଦ୍ୱାରା ଗଣତାନ୍ତ୍ରିକ ଶିକ୍ଷାରେ ଯେଉଁ ସମାନତା ବା ସମୀକରଣ ପାଇଁ ବ୍ୟବସ୍ଥା ରହିବା ଉଚିତ୍ ତାହା ହୋଇନାହିଁ ଏବଂ ସାଧାରଣ ଛାତ୍ର ଯେଉଁ ଭବିଷ୍ୟତ ଧକ୍କାର ବଶବର୍ତ୍ତୀ ହେଉଛି ତାହା ସମାଜ ପକ୍ଷରେ କ୍ଷତିକାରକ । କାରଣ ସେହିପରି ଛାତ୍ର ଯେଉଁମାନଙ୍କର ସଂଖ୍ୟା ଅଧିକ ସେମାନେ ନିଜ ସଂସ୍କୃତିରୁ ବିଚ୍ଛିନ୍ନ ହୋଇ ଯେଉଁ ମାନସିକ ଓ ନୈତିକ ଅଧଃପତନର ଶିକାର ହେଉଛନ୍ତି ତାହା ଦ୍ୱାରା ଶିକ୍ଷିତ ମାନବ ଶକ୍ତିର ଅପଚୟ ଘଟୁଛି ଏବଂ ସମାଜର ଅବକ୍ଷୟ ହେଉଛି ।

ଯଥାର୍ଥ ଉଚ୍ଚଶିକ୍ଷା ସାଧାରଣ ଉଚ୍ଚସ୍ତରର ମାନବ ସମ୍ବଳ ବିକାଶର ମାଧ୍ୟମ ରୂପେ କାର୍ଯ୍ୟ କରେ । ଏହି ସକ୍ଷମ ମାନବ ଶକ୍ତି ଯଦି ଆବଶ୍ୟକତା ଉପରେ ପର୍ଯ୍ୟବସିତ ନ ହୁଏ ତାହାଲେ ସେହି ଶିକ୍ଷିତ ବ୍ୟକ୍ତି ମନରେ ନୈରାଶ୍ୟ ଓ କ୍ରୋଧ ଜାତ ହେବା ସ୍ୱାଭାବିକ । ଆମ ଦେଶରେ, ଓ ବିଶେଷ କରି ଆମ ରାଜ୍ୟରେ, ଏହି ଶିକ୍ଷାର ଯେପରି ଚିନ୍ତାଶୂନ୍ୟ ବିସ୍ତାର ହେଉଛି ତାହା ଆମ ରାଜ୍ୟର ଭବିଷ୍ୟତ ପାଇଁ ଶୁଭସୂଚକ ନୁହେଁ । ଏହିପରି ଶିକ୍ଷାପ୍ରାପ୍ତ ଯୁବକ ଯୁବତୀମାନେ ନୈରାଶ୍ୟରେ ଜର୍ଜରିତ ହୋଇ ଦିଗଭ୍ରଷ୍ଟ ହେବା ସ୍ୱାଭାବିକ । ଶିକ୍ଷିତ ଯୁବକ ଯୁବତୀମାନେ ସମାଜ ବିରୋଧୀ ହୁଅନ୍ତି ଯେତେବେଳେ ଶିକ୍ଷା ସେମାନଙ୍କର କୌଣସି ଉପକାର କରେ ନାହିଁ ।

ଉଚ୍ଚ ଶିକ୍ଷାର ସାଧାରଣ ଚାରୋଟି ମୁଖ୍ୟ ଉଦ୍ଦେଶ୍ୟ ନିର୍ଣ୍ଣିତ ହୋଇଛି, ଯଥା : (୧)

ଜ୍ଞାନର ଅଭିବୃଦ୍ଧି ଓ ସଂପ୍ରସାରଣ । ଏହି ଉଦ୍ଦେଶ୍ୟକୁ ସାଧନ କରିବାକୁ ହେଲେ ପ୍ରତ୍ୟେକ ଶିକ୍ଷାନୁଷ୍ଠାନର ଭିତ୍ତିଭୂମି ସୁଦୃଢ଼ ହେବା ଅପରିହାର୍ଯ୍ୟ । ଏଥିପାଇଁ କୋଠାବାଡ଼ି, ପାଠାଗାର, ବିଜ୍ଞାନାଗାର ଉଚ୍ଚକୋଟୀର ହେବା ଆବଶ୍ୟକ । ଆମ ଦେଶର ୨୦୦ ବିଶ୍ୱବିଦ୍ୟାଳୟ ଓ ୮୫୦୦କଲେଜରେ ନିମ୍ନତମ ସୁବିଧା ସୁଯୋଗ ନ ଥିବାରୁ ଏହି ଲକ୍ଷ୍ୟ ପୂରଣ ହୋଇପାରୁନାହିଁ ଏବଂ ଆମର ଉଚ୍ଚଶିକ୍ଷାର ମାନ ଉନ୍ନତ ଦେଶମାନଙ୍କ ସହିତ ତୁଳନୀୟ ହୋଇପାରୁନାହିଁ । ଯଦିଚ ସଂଖ୍ୟା ଦୃଷ୍ଟିରୁ ଆମର ନଥିଭୁକ୍ତ ଛାତ୍ରଙ୍କ ସଂଖ୍ୟା ମୋଟେ ୪.୫ ପ୍ରତିଶତ ।

(୨) ବ୍ୟକ୍ତିଗତ ଜ୍ଞାନ ବା ଜ୍ଞାନର ଆହରଣ । ଏହି ଜ୍ଞାନ ଏପରି ଧରଣର ହେବା ଉଚିତ୍ ଯେ କନଫୁସିୟସଙ୍କ ଭାଷାରେ ସେହି ଜ୍ଞାନକୁ ସେ ବ୍ୟକ୍ତିଗତ ବିକାଶ ସହିତ ସାମାଜିକ ବିକାଶ ପାଇଁ ମଧ୍ୟ ପ୍ରୟୋଗ କରିପାରିବ । "ତମସୋ ମାଂ ଜ୍ୟୋତିର୍ଗମୟ'ର ଯେଉଁ ଅର୍ଥ, ଟେନିସନ୍‌ଙ୍କର 'ଆଲୋକ ପାଇଁ କ୍ରନ୍ଦନ' ବାକ୍ୟର ମଧ୍ୟ ସେହି ଅର୍ଥ । ଏହି ଜ୍ଞାନ ଅନନ୍ତ ଏବଂ ମଣିଷର ସୀମିତ ଜୀବନରେ ଏହି ଜ୍ଞାନକୁ ଆହରଣ କରିବା ଅସମ୍ଭବ । ସେଥିପାଇଁ ଆଜି ବିଶେଷଜ୍ଞ ବା ନିର୍ଦ୍ଦିଷ୍ଟ ଜ୍ଞାନର ଯୁଗ ଆସିଛି । ଏହି ବିଶେଷଜ୍ଞ ଜ୍ଞାନ ଯେତେ ସୂକ୍ଷ୍ମ ହେବ ମଣିଷର ଆଦାନପ୍ରଦାନ ବା ସଂଚାରିତ ହୋଇ ପାରିବାର ଶକ୍ତି ସେତିକି କମିବ । ଏହି ସମସ୍ୟାକୁ ତର୍ଜମା କରିଛନ୍ତି ହାବରମାସ ତାଙ୍କର ଆଦାନପ୍ରଦାନ ତଥ୍ୟରେ । ଏହି ଜ୍ଞାନ କେବଳ ବୌଦ୍ଧିକ ସ୍ତରରେ ସୀମିତ ନୁହେଁ । ଅନ୍ୟ ଦୁଇଟି ଦିଗ, ଯଥା ଶାରୀରିକ ଓ ଆବେଗିକ ମଧ୍ୟ ଏହି ବ୍ୟକ୍ତିଗତ ଜ୍ଞାନର ଅନ୍ତର୍ଭୁକ୍ତ ।

(୩) ଜାତୀୟ ଐତିହ୍ୟକୁ ସମୃଦ୍ଧ କରି ତାହାକୁ ସଂପ୍ରସାରିତ କରିବା ଏବଂ ଏଥିପାଇଁ ପ୍ରତ୍ୟେକ ଶିକ୍ଷିତ ବ୍ୟକ୍ତିର ବିଜ୍ଞାନ ଓ କଳା ଏଇ ଦୁଇ ଜ୍ଞାନର ସଂଘର୍ଷ ଯୋଗୁ ଯେଉଁ ଦ୍ୱୈତ ସଂସ୍କୃତି ଉତ୍ପନ୍ନ ହେଉଛି, ଏବଂ ଯାହା ଗଣମାଧ୍ୟମ ଦ୍ୱାରା ସଂପ୍ରସାରିତ ହେଉଛି, ତାହାର ପରିଣାମ ବୁଝିବାକୁ କ୍ଷମତା ଅର୍ଜନ କରିବା । ମିରାଣ୍ଡାଙ୍କର ଶିକ୍ଷିତ ଯୁବକ ଏହି ସଂକଟର ସମ୍ମୁଖୀନ । ତାହାର ସମସ୍ୟା ବିଷୟରେ ପୂର୍ବରୁ ଅଲୋଚନା କରାଯାଇଛି । ତାହାର ସମସ୍ୟା ଉପଯୁକ୍ତ ଶିକ୍ଷାର ଅଭାବରୁ ହିଁ ଉତ୍ପନ୍ନ । ତାହା ମନରେ କୌଣସି ନିଶ୍ଚିତତା ନ ଥିବାରୁ ସେ ନିଜ ବିଷୟରେ ସନ୍ଦିଗ୍ଧ, କିନ୍ତୁ ତାହା ସେ ସ୍ୱୀକାର କରିବାକୁ ଚାହିଁବ ନାହିଁ । ଏପରି ବ୍ୟକ୍ତି ସଂସ୍କୃତିକୁ ପ୍ରଦର୍ଶନୀର ସମାଜ ସହିତ ସମାନ କରି ଦେଖେ । ଏଥିପାଇଁ ଦୁର୍ଗାପୂଜାରେ ସେ ଦୁର୍ଗାଙ୍କର ବିଭିନ୍ନ ଅଙ୍ଗ ପାଇଁ ଟଙ୍କା ଦେବା ଲୋକ ଖୋଜିବୁଲେ ।

ଏହି ବିପର୍ଯ୍ୟୟର ଆଉ ଗୋଟିଏ ନିର୍ଦ୍ଦଶନ ହେଉଛି ଆମ ଲୋକ ସଂସ୍କୃତିର କ୍ରମାଗତ ଅବକ୍ଷୟ ଏବଂ ତାହାର ବ୍ୟବସାୟୀକରଣ । ଏହି ବ୍ୟବସାୟିକ ସଭ୍ୟତା କିପରି ଭାବରେ

ଆମର ସଂସ୍କୃତିକୁ କଳୁଷିତ କରୁଛି ଏବଂ ରୁଚିକୁ ନଷ୍ଟ କରୁଛି ତାହାର ଉଦାହରଣ ହେଉଛି ଲକ୍ଷ ଲକ୍ଷ ସଂଖ୍ୟାରେ ବିକ୍ରି ହେଉଥିବା ଫିଲ୍ମିଗୀତ "ତୁ ଚିଜ୍ ବଡ଼ି ହେ ମସ୍ତ ମସ୍ତ ।" ଏହି ବାକ୍ୟକୁ ବିଭଙ୍ଗ କଲେ ଯେଉଁ ଅପସଂସ୍କୃତି ଓ ପ୍ରତିସଂସ୍କୃତିର ସଂକେତ ଆସେ ତାହା ହେଲା ନାରୀର ପ୍ରତିବିମ୍ବ ବା ଚିତ୍ର । ଏହି ନାରୀକୁ ଐତିହ୍ୟ ଓ ସଂସ୍କୃତିରେ ମହାଶକ୍ତି, ଜନନୀ, ଭଗିନୀ ଓ ଜାୟା ଭାବରେ ଗ୍ରହଣ କରି ସର୍ବୋଚ୍ଚ ଶ୍ରଦ୍ଧାର ପାତ୍ରୀ ଭାବରେ ଗ୍ରହଣ କରାଯାଇଛି । ତାକୁ ଆଣି ଗୋଟିଏ 'ଚିଜ୍' ବା ନିର୍ଜୀବ ବସ୍ତୁରେ ପରିଣତ କରିବାର ମନୋବୃତ୍ତି ପ୍ରଚ୍ଛନ୍ନ ଭାବରେ ଆସିଛି ପୁଞ୍ଜିବାଦ ଅର୍ଥନୀତିର ଅବକ୍ଷୟ ଅବସ୍ଥାରୁ, ଯାହାକୁ ମାର୍କ୍ସ, ବସ୍ତୁକରଣ' ବୋଲି କହିଛନ୍ତି । ସେଥିରେ ପ୍ରତ୍ୟେକ ମନୁଷ୍ୟ ତାର ମାନବିକତାକୁ ହରାଇ ବସ୍ତୁ ବା ସଂଖ୍ୟାତାତ୍ତ୍ୱିକ ସଂଖ୍ୟାରେ ପରିଣତ ହୁଏ ଏବଂ ଯେଉଁ ଭାଷାରେ ସେ ସମ୍ବୋଧିତ ହୁଏ ତାହା ଇତର ଶ୍ରେଣୀର ଭାଷା । ଏହି ଭାଷାର ଅଧୋଗତି କିପରି ଦ୍ରୁତ ଭାବରେ ବଢିଚାଲିଛି ତାହାର ଉଦାହରଣ ଆମେ ପ୍ରତ୍ୟେକ ଦିନ ଦେଖିବାକୁ ପାଉଁ ଆମର କଥାବାର୍ତ୍ତା ରୀତିରେ, ବିଶେଷତଃ ବୟସ୍କ ବା ମାନନୀୟ ବ୍ୟକ୍ତିଙ୍କ ସମ୍ବନ୍ଧରେ । ଏହି ଅସମ୍ମାନ ଆସିଛି ଯନ୍ତ୍ରଶିଳ୍ପ ସମାଜରେ ଯେଉଁଠି ମଣିଷକୁ ଗୋଟିଏ ଯନ୍ତ୍ରାଂଶ ସହିତ ସମକକ୍ଷ କରାଯାଇଛି । ସେଥିରେ ନାରୀ, ପୁରୁଷ, ବୃଦ୍ଧ ବା ବାଳକ ସମସ୍ତେ ସମାନ, ଯାହାକୁ କୁହାଯାଏ ସମାନୀକରଣ ପ୍ରକ୍ରିୟା । ନାରୀକୁ ଏକ ଚିଜ ଭାବରେ ଦେଖିଲେ ଯୌତୁକଜନିତ ନିର୍ମମ ହତ୍ୟା କାହିଁକି ବଢିଚାଲିଛି ତାହା ବୁଝିହେବ । ଏହି ନିଜସ୍ୱ କରିବାକୁ ଟନି ଦେଖାଇଛନ୍ତି ପ୍ରୋଟେଷ୍ଟାଣ୍ଟର ନୀତିର ଲକ୍ଷଣ ରୂପରେ । କିନ୍ତୁ ଆଜିର ଗ୍ରାମ ପୃଥିବୀରେ ସେ ନୀତି ସାର୍ବଜନୀନ- ତେଣୁ ଜଣେ ସ୍ତ୍ରୀ ଓ ଗୋଟିଏ ରେଫ୍ରିଜରେଟର ଭିତରେ କୌଣସି ପାର୍ଥକ୍ୟ ନାହିଁ । ଏହି ମାନସିକତାର ଚରମ ନିଦର୍ଶନ ହେଉଛି ସେହି ଗୀତର ସ୍ୱରରେ ପରିବେଶିତ ଭକ୍ତିଗୀତ ବା ଜଣାଣର । ସେଠି ଗାୟକ ବା ନିର୍ଦ୍ଦେଶକ ଜାଣିପାରନ୍ତି ନାହିଁ ଯେ ସେ ଜଣାଣ ବୋଲାଯିବା ବେଳେ ମାନସିକ ସ୍ତରରେ ପ୍ରଭାବ କିପରି ଶ୍ରୋତା ଉପରେ ପଡ଼ିବ ଏବଂ ଭକ୍ତି ସ୍ଥାନରେ ତାହାର କେଉଁ ଭାବ ଜାଗ୍ରତ ହେବ । ଏହାକୁ ସାଂସ୍କୃତିକ ରୁଚି କୁହାଯାଏ ଏବଂ ତାହାର ଉତ୍ସ ହେଉଛି ପରିବାର ଓ ଶିକ୍ଷାୟତନ ।

ଉଚ୍ଚ ଶିକ୍ଷାରୁ ଯଦି ସୁରୁଚି ଉତ୍ପନ୍ନ ନ ହୁଏ ତେବେ ସେହି ବ୍ୟକ୍ତିକୁ ମ୍ୟାଥ୍ୟୁ ଆର୍ଣ୍ଣଲ୍ଡ଼ଙ୍କ ଭାଷାରେ ହୁଏତ ବର୍ବର ଓ ଅଶିକ୍ଷିତ ଆଖ୍ୟା ଦିଆଯାଇପାରିବ । ମିରାଣ୍ଡାଙ୍କ ଦ୍ୱାରା ଚିତ୍ରିତ ଯୁବକ କେଉଁ ଶ୍ରେଣୀର ? ସମସ୍ତ ବିଶ୍ୱାସ ହରାଇ ସେ ସଂପୂର୍ଣ୍ଣ ଧ୍ୱଂସ ଅନୁଗାମୀ ।

(୪) ଉଚ୍ଚ ଶିକ୍ଷାର ଆଉ ଗୋଟିଏ ଲକ୍ଷ୍ୟ ହେଲା ମାନବ ସମ୍ବଳର ବିକାଶ ସାମାଜିକ ଓ ଅର୍ଥନୈତିକ ପ୍ରଗତି ଓ ପରିବର୍ତ୍ତନ ପାଇଁ । ଏହି ତଥ୍ୟ ବିଶେଷ ଭାବରେ ପ୍ରଭାବ ବିସ୍ତାର

କରିଛି ପଞ୍ଚମ ଦଶକରୁ, ଯେତେବେଳେ ସ୍କୁଲଜ, ହର୍ବିସନ ଓ ମାୟରସ ପ୍ରଭୃତି ଅର୍ଥନୀତିଜ୍ଞମାନେ ସେମାନଙ୍କର ଶିକ୍ଷା-ଅର୍ଥନୀତି ତତ୍ତ୍ୱ ପ୍ରବର୍ତ୍ତନ କଲେ ଏବଂ ଗବେଷଣା ଦ୍ୱାରା ଦେଖାଇଲେ ଯେ ଉପଯୁକ୍ତ ଶିକ୍ଷାଦ୍ୱାରା ଅର୍ଥନୈତିକ ପ୍ରଗତି ପ୍ରତ୍ୟେକ ସ୍ତରରେ ତ୍ୱରାନ୍ୱିତ ହୁଏ । ଉଚ୍ଚଶିକ୍ଷା କ୍ଷେତ୍ରରେ ଏହାକୁ ବିଶ୍ଳେଷିତ ମାନବ ସମ୍ବଳ କୁହାଯାଏ, ଅର୍ଥାତ୍ ଏହି ଶିକ୍ଷା ଅର୍ଥନୈତିକ ବିକାଶ ପାଇଁ ଆବଶ୍ୟକ ହେଉଥିବା ଉଚ୍ଚ ସ୍ତରର କର୍ମକର୍ତ୍ତା ଯୋଗାଇ ଥାଏ ଯଥା, ଇଞ୍ଜିନିୟର, ଡାକ୍ତର, କୃଷି ବିଶେଷଜ୍ଞ, ପ୍ରଶାସକ ଇତ୍ୟାଦି । ସେଥିପାଇଁ ମାନବ ଶକ୍ତି ଯୋଜନାର ଏକାନ୍ତ ପ୍ରୟୋଜନ । ଏହା ବିନା ଉଚ୍ଚଶିକ୍ଷାରୁ ବିଶେଷ ଉପକାର ମିଳେ ନାହିଁ ଏବଂ ମାନବିକ ପୁଞ୍ଜି ଗଠିତ ହୋଇପାରେ ନାହିଁ । ଏଥିପାଇଁ ଅର୍ଥନୈତିକ ଯୋଜନା ଓ ଶିକ୍ଷା ଯୋଜନା ମଧ୍ୟରେ ଘନିଷ୍ଠ ସମ୍ବନ୍ଧର ପ୍ରୟୋଜନ ।

ଏହି ବିଷୟରେ ବର୍ତ୍ତମାନ ନାନା ପ୍ରକାର ଆଲୋଚନା ଓ ତର୍କ ଚାଲୁ ରହିଛି । ଯେଉଁ ଉଦାର ଶିକ୍ଷା ବିଷୟରେ ଆମେ ଅଭ୍ୟସ୍ତ ତାହାର ଉପଯୋଗିତା ବର୍ତ୍ତମାନ ପ୍ରଶ୍ନବାଚୀ ଏବଂ ଅନେକ ବରିଷ୍ଠ ଶିକ୍ଷାବିତଙ୍କ ମତରେ ଏହାର ଉପକାରିତା ଏହି ଯନ୍ତ୍ରସଭ୍ୟତାର ଯୁଗରେ ଅତ୍ୟନ୍ତ ସୀମିତ । ଏହାକୁ ଗୋଟିଏ ପୁରୁଣା ଘସରା ଆଦର୍ଶ ବୋଲି ଚାର୍ଲସ ଫ୍ରାଙ୍କେଲ ଅଭିହିତ କରିଛନ୍ତି । ସେ ଯାହା ହେଉନା କାହିଁକି ଏକବିଂଶ ଶତାବ୍ଦୀର ଯେଉଁ ଆହ୍ୱାନରେ ବିକଶିତ ଓ ବିକାଶଶୀଳ ଦେଶମାନଙ୍କୁ ସମ୍ମୁଖୀନ ହେବାକୁ ପଡ଼ିବ ତାହାର ବିସ୍ତୃତ ଆଲୋଚନା କରିଛନ୍ତି ପଲ କେନେଡ଼ି ତାଙ୍କର ବିଖ୍ୟାତ ପୁସ୍ତକ Preparing for the 21st Century ରେ । ଏହି ପୁସ୍ତକରେ ସେ ଆମ ଦେଶ ବିଷୟରେ ମଧ୍ୟ ଲେଖିଛନ୍ତି । ଏହି ଶତାବ୍ଦୀର ପ୍ରଥମ ଚତୁର୍ଥାଂଶରେ ଯେଉଁ ମାନବ ସମ୍ବଳର ଆବଶ୍ୟକତା ହେବ ତାହାର କ୍ଷେତ୍ର ହେଲା, ଜନସଂଖ୍ୟା, ଶକ୍ତି, ପର୍ଯ୍ୟାବରଣ, ସଞ୍ଚାର, ପରାମର୍ଶସେବା ଓ ଜୈବିକ ଟେକ୍ନୋଲୋଜି । ଆମ ରାଜ୍ୟର ଶିକ୍ଷାୟତନ ଆମେ ଏ ଦିଗରୁ କେତେ ସଚେତନ ତାହା କହିବା କଠିନ । କିନ୍ତୁ ଯେଉଁ ବିଷୟମାନ ଆମର ପାଠ୍ୟକ୍ରମରେ ସ୍ଥାନ ପାଉଛି ସେମାନଙ୍କର କେନେଡ଼ିଙ୍କ ସୂଚନା ସହିତ କୌଣସି ସଂପର୍କ ନାହିଁ ।

ଶିକ୍ଷାର ଏହି ଦିଗକୁ ଦୃଷ୍ଟି ଦେଲେ ପ୍ରତୀୟମାନ ହେବ ଯେ ଆଜି ଆବଶ୍ୟକ ହେଉଛି ଏପରି ଏକ ଶିକ୍ଷା ପ୍ରଣାଳୀ ଯାହା ମିରାଣ୍ଡାଙ୍କ ଅବ୍ୟବସ୍ଥିତ ଚରିତ୍ର ସ୍ଥାନରେ ସୃଷ୍ଟି କରିବ ସ୍ୱୟଂସଂପନ୍ନ ଚରିତ୍ର, ଯିଏ ଆଧୁନିକତାର ପ୍ରଗତିକୁ ଦୂରଦୃଷ୍ଟିରୁ ବିଚାର କରି ସେଥି ମଧ୍ୟରୁ କ'ଣ ଆମ ପାଇଁ ଉପଯୁକ୍ତ ତାକୁ ଗ୍ରହଣ କରିବ । ଏଥିପାଇଁ ଆବଶ୍ୟକ ପରଂପରା ଓ ଆଧୁନିକତା ବିଷୟରେ ସମ୍ୟକ ଜ୍ଞାନ । ଏହି ଜ୍ଞାନ ନ ରହିଲେ ନୂତନତା ପାଇଁ ଆମର

ପ୍ରବଣତା ବଢ଼ି ଚାଲିବ ଏବଂ ଆମେ ହାସ୍ୟାସ୍ପଦ ହେବା । ଆଜି ସମସ୍ତେ ଉଚ୍ଚତମ ଯନ୍ତ୍ରର କଥା କହୁଛନ୍ତି ଯେତେବେଳେ ଅଂସଖ୍ୟ ଗ୍ରାମରେ ପିଇବା ପାଣି ପାଇଁ ଲଗାଯାଇଥିବା ଟ୍ୟୁବୱେଲ ଅଚଳ ଅବସ୍ଥାରେ ପଡ଼ିଛି । ଆମର ପ୍ରଥମ ଦରକାର ଅଳ୍ପ ଯାନ୍ତ୍ରିକ ପରିବେଶ, ତାହାପରେ ଆସିବ ଉଚ୍ଚତର ଯନ୍ତ୍ରର ସଭ୍ୟତା ।

ଏହାର ଅର୍ଥ ନୁହେଁ ଯେ ପରଂପରାରେ ଯାହା ରହିଛି ସେ ସମସ୍ତ ଜିନିଷକୁ ବା ଧାରଣାକୁ ଆମେ ଧରି ରଖିବା । ଉଦାହରଣ ସ୍ୱରୂପ ଆମର ଜାତିପ୍ରଥା । ଏହା ଯେଉଁ ସମୟରେ ଏବଂ ଯେଉଁ ଲକ୍ଷ୍ୟ ସାଧନ କରିବା ପାଇଁ ପ୍ରଚଳିତ ହୋଇଥିଲା ତାହାର ଲୋପ ହୋଇଯାଇଛି । ନୃତତ୍ତ୍ୱ, ଜୀବତତ୍ତ୍ୱ, ସମାଜତତ୍ତ୍ୱ ଏବଂ ଅର୍ଥନୀତିର ଦୃଷ୍ଟିକୋଣରୁ ଆଜି ଏହାର କୌଣସି ତାତ୍ପର୍ଯ୍ୟ ନାହିଁ । ଅଥଚ ଏହାକୁ ରାଜନୀତିରେ ପ୍ରୟୋଗ କରାଯାଇ ଅବାଞ୍ଛିତ ପରିସ୍ଥିତି ସୃଷ୍ଟି କରାଯାଇଛି । ସେହିପରି ଆମ ସମାଜରେ ନାରୀର ସ୍ଥାନ ଓ ତା'ର ଅଧିକାର ବିଷୟରେ ଯେଉଁ ଆଲୋଚନା ଓ ଆନ୍ଦୋଳନ ଚାଲିଛି ତାହା ଆମ ପରଂପରାର ପରିପନ୍ଥୀ । ସ୍ତ୍ରୀମାନେ ବେଦ ପଢ଼ିପାରିବେ ନାହିଁ ବୋଲି ଯେଉଁ ବିତର୍କର ସୂତ୍ରପାତ ହୋଇଥିଲା ସେତେବେଳେ ଗୋଟିଏ ଛୋଟ କଥା ମନରେ ରଖାଗଲା ନାହିଁ । ତାହା ହେଉଛି ଶ୍ରୁତିର ପରଂପରା, ଯେ ଗୁରୁ ଶିଷ୍ୟକୁ ମୌଖିକ ଭାବରେ ପ୍ରଦାନ କରୁଥିଲେ । ସେ ଯୁଗରେ କନ୍ୟାମାନଙ୍କର ଗୁରୁ ଗୃହରେ ଯାଇ ରହିବାର ଅବକାଶ ନ ଥିଲା । ସେମାନଙ୍କର ବିଦ୍ୟାଲାଭ ହେଉଥିଲା ପିତାଙ୍କ ଠାରୁ । ଆଜି ବେଦ ଛପା ହୋଇ ସବୁଠାରେ ବିକ୍ରୀ ହେଉଛି । ସ୍ତ୍ରୀଲୋକମାନେ ତାକୁ ପଢ଼ିବାରେ କୌଣସି ପ୍ରତିବନ୍ଧକ ନାହିଁ ।

ଏ ଦୃଷ୍ଟିରୁ ଆମର ଜୀବନ ଧାରାକୁ ସୁଚାରୁ ରୂପରେ ପରିଚାଳିତ କରିବାକୁ ହେଲେ ଆମର ଶିକ୍ଷା ପ୍ରଣାଳୀରେ ଆମୂଳଚୂଳ ପରିବର୍ତ୍ତନ ଆବଶ୍ୟକ ଏବଂ ସେ ପରିବର୍ତ୍ତନ ସମ୍ଭବ ହେବ ଯେତେବେଳେ ଆଗରୁ କୁହାଯାଇଥିବା ଚାରୋଟି ମୁଖ୍ୟ ଲକ୍ଷ୍ୟ ମଧ୍ୟରେ ସମନ୍ୱୟ ଆଣି ଶିକ୍ଷା ମାଧ୍ୟମରେ ଗୋଟିଏ ଗୋଟିଏ ନୂଆ ଜାତି ଗଢ଼ା ଯାଇପାରିବ । ଏହି ଯୁବ ସଂପ୍ରଦାୟ ଭିତରେ ଉଦ୍ରେକ କରିବାକୁ ପଡ଼ିବ ଆଗାମୀ ଯୁଗର ଆହ୍ୱାନର ମୁକାବିଲା କରିବା ପାଇଁ ଅଦମ୍ୟ ଶକ୍ତି, ଅସରନ୍ତି ଉତ୍ସାହ ।

ଏହିପରି ମାନବ ସମ୍ବଳ ବିକଶିତ କରିବାକୁ ହେଲେ ପ୍ରଥମ ଆବଶ୍ୟକତା ହେଉଛି ଶିକ୍ଷାର ଆଦର୍ଶକୁ ସଠିକ୍ ଭାବରେ ହୃଦୟଙ୍ଗମ କରିବା । ତାହା ହେଉଛି ସତ୍ୟର ଅନୁସନ୍ଧାନ । ସକ୍ରେଟିସ ତାଙ୍କର ଜୀବନ ଉତ୍ସର୍ଗ କରିଥିଲେ ଏହି ସତ୍ୟର ଅନୁସନ୍ଧାନ କରି । ମାନବ-ସମ୍ବଳ ବିକାଶ କରିବା ପାଇଁ ୟୁରୋପରେ ଯେତେବେଳେ ନବଜାଗରଣ ବା ନବଜନ୍ମ ଯୁଗ

ଆସିଲା ସେତେବେଳେ ଅନ୍ୱେଷଣ କରାଗଲା ସାର୍ବଜନୀନ ମନୁଷ୍ୟର ବିକାଶ ପାଇଁ । ଆଜି ଆମର ମୁଖ୍ୟ ଆବଶ୍ୟକତା ହେଉଛି ସଂପୂର୍ଣ୍ଣ ମାନବର ସୃଷ୍ଟି । ଏହିପରି ମାନବର ସ୍ୱପ୍ନ ଦେଖିଛନ୍ତି ରବୀନ୍ଦ୍ରନାଥ, ଅରବିନ୍ଦ, କ୍ରୀଷ୍ଣମୂର୍ତ୍ତି ଏବଂ ସର୍ବୋପରି ସ୍ୱାମୀ ବିବେକାନନ୍ଦ । ଏମାନେ ଶିକ୍ଷା ମାଧ୍ୟମରେ ଯେଉଁ ପ୍ରକାର ମଣିଷର କଳ୍ପନା କରିଛନ୍ତି ସେ ମଣିଷ ସମନ୍ୱିତ ମଣିଷ, ଯାହାର ଦୈହିକ, ଆବେଗିକ, ବୌଦ୍ଧିକ ଏବଂ ଆଧ୍ୟାତ୍ମିକ ବିକାଶ ସମାନ ଗୁରୁତ୍ୱ ସହିତ ସାଧିତ ହେବ । କ୍ଲିଫୋର୍ଡ ଗିଅର୍ଜ ତାଙ୍କର The impact of the concept of Culture on the concept of man ପ୍ରବନ୍ଧରେ ଯଥାର୍ଥରେ କହିଛନ୍ତି, "ଆମେ ଯଦି ମଣିଷକୁ ଚିହ୍ନିବାକୁ ଚାହିଁବା ତା ହେଲେ ତାହାର ପ୍ରକୃତିକୁ ପ୍ରଥମେ ବୁଝିବା ଆମର ଦରକାର । ମଣିଷର ଭିନ୍ନତା ଅଛି । ସେହି ଭିନ୍ନତାର ପରିମାଣ, ତାହାର ତଥ୍ୟ, ଏବଂ ତାହାର ସାରବତ୍ତା ଆମକୁ ବୁଝିବାକୁ ପଡ଼ିବ ।" ଅର୍ଥାତ୍ ଏହି ଏକବିଂଶ ଶତାବ୍ଦୀରେ ମଣିଷ, ବିଶେଷତଃ ସାଧାରଣ ମଣିଷର ଯେଉଁ ସମସ୍ୟା ଉପୁଜିବ ତାହାକୁ ଉତ୍ତମ ରୂପେ ଅନୁଧ୍ୟାନ କରି ମାନବ ସମ୍ବଳକୁ ରୁଟିନରୁ ବାହାର କରି ଯୁବକ ଯୁବତୀମାନଙ୍କ ମଧ୍ୟରେ ମୂଲ୍ୟବୋଧଭିତ୍ତିକ ଶିକ୍ଷା ପ୍ରଚଳିତ କରିବାକୁ ହେବ । ଏହି ଶିକ୍ଷା କେବଳ 'ସମ୍ବଳ' ସହିତ ସଂପୃକ୍ତ ନୁହେଁ । ଏଥିରେ ମଣିଷର ହ୍ରାସ ପାଉଥିବା ମାନବିକତାକୁ ଗୁରୁତ୍ୱ ଦେବାକୁ ହେବ ।

ଆମ ରାଜ୍ୟରେ ଅନେକ ପ୍ରାକୃତିକ ସଂପଦ ରହିଛି କିନ୍ତୁ ଶିକ୍ଷା ସହିତ ତାହାର କୌଣସି ସଂପର୍କ ନାହିଁ କହିଲେ ଅତ୍ୟୁକ୍ତି ହେବ ନାହିଁ, କିମ୍ବା ଆଭିମୁଖ୍ୟରେ ସେଥିପାଇଁ କି ପରିବର୍ତ୍ତନ ପ୍ରୟୋଜନ ସେ ବିଷୟରେ ଚିନ୍ତା କରାଯାଇ ନ ଥିବ ବୋଲି ମନେ ହୁଏ । ଏହା ଆମର ବିଶ୍ୱବିଦ୍ୟାଳୟମାନଙ୍କର ପାଠ୍ୟକ୍ରମ ଓ ପାଠ୍ୟ ପ୍ରଣାଳୀରୁ ବେଶ୍ ଉପଲବ୍ଧି କରିହେବ । ଏହା କ୍ଷୋଭର ବିଷୟ ଯେ ଯେଉଁ ପାଶ୍ଚାତ୍ୟ ଆଦର୍ଶକୁ ଆମେ ଅନୁକରଣ କରି ଆସିଛୁ ସେହି ଆଦର୍ଶରେ ସୁଦୂର ପ୍ରସାରୀ ପରିବର୍ତ୍ତନ ଆସିଛି ଗଲା ୫-୭ ବର୍ଷ ଭିତରେ । ରକ୍ଷଣଶୀଳ ବ୍ରିଟିଶ୍ ବିଶ୍ୱବିଦ୍ୟାଳୟମାନଙ୍କରେ ଯେଉଁ ସବୁ ନୂତନ ବିଷୟ ସ୍ଥାନ ପାଇଛି ତାହା ୨୫ବର୍ଷ ପୂର୍ବେ ଅଚିନ୍ତନୀୟ ଥିଲା । ଉଦାହରଣ ସ୍ୱରୂପ କଭେଣ୍ଟ୍ରି ବିଶ୍ୱବିଦ୍ୟାଳୟରେ ଶିଳ୍ପ ସହିତ ସଂପର୍କକୁ, କିମ୍ବା ଟେମସ୍ ଭାଲି ବିଶ୍ୱବିଦ୍ୟାଳୟରେ ସେହି ଅଞ୍ଚଳର ଅର୍ଥନୈତିକ, ସାଂସ୍କୃତିକ ଏବଂ ଶିକ୍ଷା ଜୀବନ ସହିତ ସଂପର୍କରୁ ପ୍ରସ୍ତୁତ କରାଯାଇଥିବା ପାଠ୍ୟକ୍ରମ ।

ଆମର ବିଶ୍ୱବିଦ୍ୟାଳୟ ଓ ମହାବିଦ୍ୟାଳୟ ଗୁଡ଼ିକରେ ଏହିପରି ପ୍ରାସଙ୍ଗିକ ପରିବର୍ତ୍ତନ ଅଣାଯାଇ ପାରିଲେ ଏବଂ ଶିକ୍ଷାକୁ ଯୁଗୋପଯୋଗୀ ଓ ଜୀବନ ଉପଯୋଗୀ କରାଯାଇ ପାରିଲେ ଆମର ଯୁବ ସମ୍ପ୍ରଦାୟ ଗୋଟିଏ ନୂଆ ଆତ୍ମ ବିଶ୍ୱାସ ଲାଭ କରିପାରିବେ ଏବଂ ତାହାଦ୍ୱାରା

ବଳୀୟାନ ହୋଇ ସେମାନେ ଜାତୀୟ ଓ ଆନ୍ତର୍ଜାତୀୟ ସ୍ତରରେ ସର୍ବୋଚ୍ଚ ସ୍ଥାନକୁ ଯିବା ପାଇଁ ଅନୁପ୍ରେରିତ ହେବେ । ଯେଉଁମାନେ ଏହି ରାଜ୍ୟରେ ରହିବେ ସେମାନେ ଆମର ସାମୂହିକ ଅଗ୍ରଗତି ଯାତ୍ରାରେ ସହାୟତା କରିପାରିବେ । ଏହା ହେବ ଉପଯୁକ୍ତ ମାନବ ସମ୍ବଳ ବିକାଶ । ଏପରି ବିକାଶ ସାଧିତ ହୋଇ ପାରିଲେ ଶିକ୍ଷାର ସଂକ୍ରାମକ ସଂକଟ ଯଥାର୍ଥ ଭାବରେ ଅପସାରିତ ହୋଇ ପାରିବ । ଜାପାନର ମୈଇଜି ବଂଶ ଦ୍ୱାରା ପ୍ରବର୍ତ୍ତିତ ଶିକ୍ଷାରେ ପରିବର୍ତ୍ତନ ଏବଂ ତାହାର ପ୍ରଭାବ ଯୋଗୁ ଜାପାନର ଅଭୂତପୂର୍ବ ପ୍ରଗତି ସମ୍ଭବ ହୋଇଛି । ରିସ୍‌ମ୍ୟାନଙ୍କ ଭାଷାରେ ଉଚ୍ଚ ଶିକ୍ଷା ହେଉଛି ଚିରନ୍ତନ ସ୍ୱପ୍ନ । ଓଡ଼ିଶାର ଶିକ୍ଷକ ସମାଜ ଓ ଛାତ୍ର ସମାଜକୁ ଏହି ସ୍ୱପ୍ନ ଦେଖିବାକୁ ପଡ଼ିବ ଓ ସାକାର କରିବାକୁ ପଡ଼ିବ, ଓଡ଼ିଆ ଜାତିର ସ୍ୱାଭିମାନ ରକ୍ଷା କରିବା ପାଇଁ । ଟୟନବିଙ୍କ ଭାଷାରେ ଏହି ଗୋଷ୍ଠୀ ହେଉଛନ୍ତି ପ୍ରଭାବୀ ସଂଖ୍ୟାଲଘୁ ଗୋଷ୍ଠୀ ଏବଂ ଇତିହାସ ଓ ସଭ୍ୟତାର ସମ୍ମୁଖୀନ ହେବା ପାଇଁ ଦାୟିତ୍ୱ ଏହି ଗୋଷ୍ଠୀର । ସେଥିପାଇଁ ସେମାନେ ଏହି ପବିତ୍ର ଦିବସରେ ତତ୍ପର ହେବେ ବୋଲି ମୋର ଆଶା । ■

(ଅପ୍ରେଲ୍ ୧, ଉତ୍କଳ ଦିବସ, ୧୯୯୫ରେ, ପ୍ରଦତ୍ତ ଅଭିଭାଷଣ)

# ଶିକ୍ଷାର ଆଭିମୁଖ୍ୟ, ଶିକ୍ଷକ ଓ ଶିକ୍ଷକ ସଂଗଠନ

ଅଧ୍ୟାପକ ଶତ୍ରୁଘ୍ନ ନାଥ

ଏବେବି ଶିକ୍ଷାର ଆଭିମୁଖ୍ୟ କଥା ଶୁଣିଲେ ଅନେକ ନାକ ଟେକନ୍ତି ଓ କହନ୍ତି "ରଖ, ରଖ, ଏସବୁ ଟ୍ରେନିଂ କଲେଜରେ କହିବ" । ଆଉ ଯେତେଜଣ କାନ ଡେରନ୍ତି, ସେମାନଙ୍କୁ ଆଇମା' କାହାଣୀ ପରୀରାଇଜ କଥାପରି ଲାଗେ ଓ ସେମାନେ ଶୁଣୁଶୁଣୁ ଶୋଇ ପଡ଼ନ୍ତି । ବାସ୍ତବରେ ଶିକ୍ଷାର ଆଭିମୁଖ୍ୟ ସମ୍ବନ୍ଧୀୟ ବର୍ଣ୍ଣନା ଆଡ଼ମ୍ବରପୂର୍ଣ୍ଣ । ସେସବୁ ଆମ କମିଟି ଓ କମିସନଙ୍କ ନଥିପତ୍ରରେ ଶୋଭା ପାଉଛି । ସେଥିରେ ବିଦ୍‌ବତ୍ତା ଏପରି ପୂରି ଯାଇଛି ଯେ ସେଥିରୁ କିଛିକିଛି ରପ୍ତାନି କରିବାର ବେଳ ଆସିଛି । ସେଥିରେ ଟ୍ରେନିଂ ସ୍କୁଲ ଓ କଲେଜରେ ବଢିଆ ପ୍ରଶ୍ନ କରାଯାଏ । ତେଣୁ ଗୁରୁଛାତ୍ରମାନେ ସେଗୁଡ଼ିକୁ ଅକ୍ଷରେ ଅକ୍ଷରେ ଘୋଷିଦେଇ ପରୀକ୍ଷାରେ ବାନ୍ତି କରି ଦିଅନ୍ତି । କାର୍ଯ୍ୟତଃ କିଛି ରହେ ।

ଶିକ୍ଷାରେ ପରୀକ୍ଷାର ପ୍ରଭୁତ୍ୱ, ଜୀବନରେ ପରମୁଖାପେକ୍ଷିତା, ସମାଜ ପ୍ରତି ବିମୁଖତା ଓ ଅଧ୍ୟୟନର ଜଗତ ତଥା ଜୀବନ -ଜୀବିକା ଜଗତ ମଧ୍ୟରେ ବିଛିନ୍ନତା ସବୁକୁ ସତ୍ୟାନାଶ କରିଛି । ଶିକ୍ଷାର ଆଭିମୁଖ୍ୟ ମୂଳରେ କୁଠାରାଘାତ କରିଛି । ଉଦ୍ଦେଶ୍ୟବିହୀନ ହୋଇ ପାଠ୍ୟତାଲିକା କେବଳ କେତେକ ବିଷୟସୂଚୀରେ ପରିଣତ ହୋଇଛି । ଏତକ ବି ଯଦି ସବୁ ଶିକ୍ଷାୟତନରେ ଶିକ୍ଷାର୍ଥୀ, ଶିକ୍ଷାଭିଭାବକ, ଶିକ୍ଷକ ଆଦି ସଂପୃକ୍ତ ସମସ୍ତଙ୍କ ପାଇଁ ମିଳି ଯାଆନ୍ତା, ତେବେ ବିଭିନ୍ନ ବିଷୟର ପରିସର ଓ ଆନୁପାତିକ ଗୁରୁତ୍ୱ ଜଣାପଡ଼ନ୍ତା । ଗୋଟିଏ ବିଷୟାନ୍ତର୍ଗତ ଓ ବିଭିନ୍ନ ବିଷୟର ସଂପୃକ୍ତ ପାଠ୍ୟ ଏକକ ମଧ୍ୟରେ ସଂପର୍କ ଜାଣିହୁଅନ୍ତା । ଏହାହିଁ ବସ୍ତୁତଃ ହୁଅନ୍ତା Courses of Studies, କାରଣ ଏହା Course ଅର୍ଥାତ ଗତିପଥ ନିର୍ଦ୍ଦେଶ କରନ୍ତା । ଅବଶ୍ୟ ଏଥିରେ ଗତି କେଉଁଠାକୁ ଏହା ନାହିଁ । ତେଣୁ ଏହା ପାଠ୍ୟକ୍ରମ (Curriculum) ନୁହେଁ, କାରଣ ଏହା ସଂଗଠିତ, ସଂହତ ଓ ସୁପରିକଳ୍ପିତ ଶିକ୍ଷକ ଅଭିଜ୍ଞତା ନୁହେଁ । ସେଥିରେ ଶିକ୍ଷାର ଉଦ୍ଦେଶ୍ୟ ନଥାଏ । ଆମେ ଏମିତି ଘାଣ୍ଟି ହେଉଛୁ ଓ ଏସବୁକୁ ଛାଡ଼ି ପାଠ୍ୟ ପୁସ୍ତକକୁ ଜାବୁଡ଼ି ଧରିଛୁ । ଆମେ ଶିକ୍ଷାର୍ଥୀଙ୍କ ଶିକ୍ଷକ ନୋହୁଁ । ଆମେ ହେଉଛୁଁ ପାଠ୍ୟ ପୁସ୍ତକର ଶିକ୍ଷକ । "ପଳାଇ ପଶିଲି ମାଉସି ଘରେ, ମାଉସୀ ମାଇଲେ

ଦିପ୍ରହରେ" ପରି ପାଠ୍ୟ ପୁସ୍ତକ ମଧ୍ୟ ଉଦ୍ଦେଶ୍ୟ ସିଦ୍ଧିର ଉପଯୁକ୍ତ ଓ ପର୍ଯ୍ୟାପ୍ତ ସାଧନ ନୁହେଁ, କାରଣ ଏହା ଉଦ୍ଦେଶ୍ୟ -ପ୍ରଧାନ ନୁହେଁ । ଏହାର ପ୍ରସ୍ତୁତି ପରୀକ୍ଷିତ ନୁହେଁ । ଏହା ଅନେକାଂଶରେ କେବଳ ପ୍ରତିଷ୍ଠିତ ବୟସ୍କ ଲୋକଙ୍କର ପ୍ରତିଷ୍ଠାର ପ୍ରତିଫଳନ । ଉଦ୍ଦେଶ୍ୟ ଆଧାରିତ ବ୍ୟବହାର ପାଇଁ ପରାମର୍ଶ ପୁସ୍ତକ ସହିତ ହେଉ ବା ସ୍ୱତନ୍ତ୍ର ହେଉ ଦିଆଯାଇ ନଥାଏ । ଶିକ୍ଷାର ସ୍ତର ଅନୁସାରେ ଓ ପ୍ରତ୍ୟେକ ସ୍ତରର ବିଭିନ୍ନ ବିଷୟ ଅନୁସାରେ ଉଦ୍ଦେଶ୍ୟ ସୂଚିତ ହୋଇନଥାଏ । ଉଭୟ ପ୍ରକାର ଉଦ୍ଦେଶ୍ୟର ବିଶ୍ଳେଷଣ କରାଯାଇ ପାଠ୍ୟପୁସ୍ତକର ରଚନା କରାଯାଏ ନାହିଁ । ଫଳରେ ଏହାର ପ୍ରୟୋଗ ବଳଦିଆ ହୋଇଯାଏ । ଶେଷରେ ପରୀକ୍ଷା ପାଖେଇ ଆସିଲେ ଏହାର ଭରସା ଛାଡ଼ି ପତିତପାବନ ହୋଇପଡ଼େ "ପ୍ରଶ୍ନୋତ୍ତର" । ସାର ହୁଏ "ସହଜ ସାଫଲ୍ୟର ସାରଣୀ" । ଛାତ୍ର, ଶିକ୍ଷକ, ଅଭିଭାବକ, ପ୍ରଭୃତି ସମସ୍ତଙ୍କ ଆଖିରେ ଏହାହିଁ ହୁଏ "ଚତୁର୍ଦ୍ଧା ମୂର୍ତ୍ତି" । ବେଶ୍ ଶସ୍ତା, ସହଜ, ସୁନ୍ଦର ଓ ମଜ୍‌ବୁତ୍ ।

ତେବେ ଶିକ୍ଷାର କାହିଁକି କାହିଁ ? ଶିକ୍ଷାର ଆଭିମୁଖ୍ୟକୁ କିଏ ରଖିଛି ? ଶିକ୍ଷକ, ଶିକ୍ଷାର୍ଥୀ, ଅଭିଭାବକ, ପ୍ରଶାସକ, ନୀତିନିର୍ଦ୍ଧାରକ ଆଦି ସମସ୍ତଙ୍କୁ ଏହି ପ୍ରଶ୍ନ ଗୋଟି ଗୋଟି କରି ପଚାରିଲେ ପରସ୍ପର ଠରାଠରି ହୁଅନ୍ତି । ଜଣେ ହୁଏତ ଅନ୍ୟଜଣଙ୍କୁ ବତାଇ ଦିଅନ୍ତି । କିଛିଟା ଅସ୍ପଷ୍ଟ ଉତ୍ତର ମିଳେ । ଯଦି କେହି ଜିଦ୍‌ଖୋରିଆ ଲୋକ କାହିଁକିର କାହିଁ ପାଇବାକୁ ଲାଗିପଡ଼ନ୍ତି, ତେବେ ଅତୀତରେ ଯାହା ଘଟିଥିଲା ଏବେ ତାହା ଘଟିପାରେ- ଶିକ୍ଷାର ଆଭିମୁଖ୍ୟ ଫାଇଲରେ ବନ୍ଧାହୋଇ ପଡ଼ିଥିବ । ଅବୋଧ ଫାଇଲ ରକ୍ଷକର ଏ ବିଷୟରେ ଚିନ୍ତା ଓ ଚେତନା ନଥିବ, ଏହାତ ସ୍ୱାଭାବିକ କଥା । ସବୁଠାରୁ ବେଶୀ ଅସ୍ୱାଭାବିକ ଓ ଅସମ୍ଭବ କଥା ହେଉଛି, ଆମ ସମସ୍ତଙ୍କର ଚେତା ନାହିଁ । ଆମ ଗାଢ଼ ନିଦ ଭାଙ୍ଗିଯାଉଛି ଯେତେବେଳେ ଆସୁଛି : ସଙ୍କଟ; ଗୁଣର, ପରିମାଣର, ଚରିତ୍ରର, ଆସୁଛି ବିଭ୍ରାଟ । ଆମେ ଯେତେବେଳେ ଉଠିପଡ଼ି, ପ୍ରଶ୍ନକରୁଛ, ଶିକ୍ଷା କାହିଁକି ? ପୁଣି ଖୋଜାଗ୍ଲଛି ସେ ଫାଇଲ ରକ୍ଷକକୁ, ସେ କିନ୍ତୁ ଧରାପଡୁ ନାହାଁନ୍ତି । ଆଲୋଚନା ହେଉଛି, ଶିକ୍ଷାର ଫଳ କଣ ? ଫଳ ହେଉଛି ଆଭିମୁଖ୍ୟର ଆଚରଣଗତ ପରିବର୍ତ୍ତନ । ବ୍ୟକ୍ତିର ପରିବର୍ତ୍ତନ ଓ ସମାଜର ପରିବର୍ତ୍ତନ, ବ୍ୟକ୍ତି ସମାଜକୁ ଓ ସମାଜ ବ୍ୟକ୍ତିକୁ ପରିବର୍ତ୍ତିତ କରୁଛି । ଶିକ୍ଷା ଫଳରେ ଓ ଶିକ୍ଷା ସମଗ୍ର ବିକାଶର ସାଧ୍ୟ ଓ ସାଧନ ହେବା ଫଳରେ ଏହା ହେଉଛି ।

ବର୍ତ୍ତମାନ ପ୍ରଶ୍ନ ହେଉଛି ଏହି କାହିଁକିର କାହିଁକି ? ଆଭିମୁଖ୍ୟର ଆବଶ୍ୟକତା କ'ଣ ? ଏ ବିଷୟରେ ପୂର୍ବରୁ ପରୋକ୍ଷ ଆଲୋଚନା କରାଯାଇଛି । ପ୍ରତ୍ୟେକ୍ଷ ଭାବରେ କହିବାକୁ ଗଲେ ଶିକ୍ଷା ଓ ସାମାଜିକ ପ୍ରଗତି ଅଙ୍ଗାଙ୍ଗୀ ଜଡ଼ିତ ଓ ଦୁହେଁ ଉଦ୍ଦେଶ୍ୟ ପ୍ରଧାନ । ଉଦ୍ଦେଶ୍ୟକୁ ବିଶ୍ଳେଷଣ କରି ଛାତ୍ରମାନଙ୍କ ଆଚରଣରେ କେଉଁ ପ୍ରକାର ପରିବର୍ତ୍ତନ ଆଶାକରିବାର କଥା

ଏହା ସ୍ଥିର କରାଯାଇ ଅନୁରୂପ ଶିକ୍ଷଣ ଅଭିଜ୍ଞତା ପ୍ରସ୍ତୁତ କରାଯାଏ । ଏହା ପାଠ୍ୟକ୍ରମ ନାମରେ ଅଭିହିତ । ଶିକ୍ଷାର ଅନ୍ୟ ଏକ ଗୁରୁତ୍ୱପୂର୍ଣ୍ଣ ଦିଗ ହେଉଛି ମୂଲ୍ୟାୟନ । ଉଦ୍ଦେଶ୍ୟାନୁକୂଳ ମୂଲ୍ୟାୟନ ପଦ୍ଧତି ସୂଚିତ ହୁଏ । ବହୁ ଶିକ୍ଷା ଶାସ୍ତ୍ରୀ ଏପରି ମତ ପ୍ରଦାନ କରିଛନ୍ତି । ସେମାନଙ୍କ ମଧ୍ୟରେ B.S.Bloom ତାଙ୍କ ପ୍ରଣୀତ "The Taxonomy of Educational objectives "ଶୀର୍ଷକ ପୁସ୍ତକରେ ଶିକ୍ଷାର ଉଦ୍ଦେଶ୍ୟକୁ (1) Cognitive. (2) Affective ଓ (3) Psy chomotor Domain ରେ ବିଭକ୍ତ କରିଛନ୍ତି । ଉଦ୍ଦେଶ୍ୟ, ଶିକ୍ଷଣ ଅଭିଜ୍ଞତା ଓ ମୂଲ୍ୟାୟନକୁ ଗୋଟିଏ ସମବାହୁ ତ୍ରିଭୁଜର ଗୋଟିଏ ଗୋଟିଏ ଶୀର୍ଷବିନ୍ଦୁରେ ଅବସ୍ଥାପିତ କରି ଏମାନଙ୍କ ମଧ୍ୟରେ ସଂପର୍କ ସୂଚିତ କରାଯାଇଛି । ଏହା ଅବଶ୍ୟ ସର୍ବସ୍ୱୀକୃତ ଯେ ଶିକ୍ଷାର ଆଭିମୁଖ୍ୟ ଶିକ୍ଷକଙ୍କ ପକ୍ଷରେ ଧ୍ରୁବତାରା ସଦୃଶ ଦିଗନିୟାମକ ।




ଶିକ୍ଷା ବିଷୟରେ ଲୋକମାନେ କେଉଁ ଆଶାପୋଷଣ କରନ୍ତି ଏହା ସେଥିରୁ ସୂଚିତ ହୁଏ । ଶିକ୍ଷକ ତଥା ଶିକ୍ଷାୟତନର କାର୍ଯ୍ୟ କେଉଁ ଦିଗରୁ ମୂଲ୍ୟାୟନ କରାଯିବ ଏହା ମଧ୍ୟ ଜଣାପଡ଼େ । ଶିକ୍ଷାର୍ଥୀମାନଙ୍କ କାର୍ଯ୍ୟ ଓ କୃତିର ମୂଲ୍ୟାୟନ ମଧ୍ୟ ସେଥିରୁ କରାଯାଇ ପାରିବ । ପୁନଶ୍ଚ ଆଭିମୁଖ୍ୟ, ଅଭିଜ୍ଞତା ଓ ମୂଲ୍ୟାୟନ ପରସ୍ପର ସଂପର୍କୀକୃତ ।

ଶିକ୍ଷାର ଉଦ୍ଦେଶ୍ୟାବଳିକୁ ଶିକ୍ଷକ ଶିକ୍ଷାର୍ଥୀ ଓ ଅଭିଭାବକ ମଧ୍ୟ ଜାଣିବାର କଥା । ସେ ସବୁ ନବୁଝିଲେ ଆବଶ୍ୟକ ପ୍ରେରଣା ଆସିବ ନାହିଁ ଜଣେ ଶିକ୍ଷାବିତ୍‌ଙ୍କ ମତରେ "ଉତ୍ତମ ଶିକ୍ଷକ ହେଉଛନ୍ତି ସେ ଯେ ପିଲାମାନଙ୍କୁ ସର୍ବାଧିକ କୁଶଳତା ଓ ଶିକ୍ଷଣର ସ୍ଥାୟିତ୍ୱ ସହକାରେ ଶିକ୍ଷାର ଆଭିମୁଖ୍ୟ ସାଧନ କରିପାରନ୍ତି" । ଏହା ଫଳରେ ତାଙ୍କ ବ୍ୟକ୍ତିଗତ ଆତ୍ମସନ୍ତୋଷ ସଙ୍ଗେ ସଙ୍ଗେ ସାମାଜିକ ନିପୁଣତା ବଢିବ । ଶିକ୍ଷାଗତ ସମସ୍ତ ସୁପରାମର୍ଶ ଓ ସୁପାରିଶ୍ ପଛରେ ଆଦର୍ଶ ଓ ଆଭିମୁଖ୍ୟ ରହିଛି । ଆଦର୍ଶକୁ ଛାଡ଼ିଦେବା ଓ ସମାଜକୁ ନସଜାଡ଼ିବା ଫଳରେ ସୁପାରିଶ୍ କରିବା ଦ୍ୱାରା ଏହା କାର୍ଯ୍ୟତଃ ବଳଦିଆ ହୋଇଯାଉଛି । ଏହି ପ୍ରସଙ୍ଗରେ ଏକ ଜ୍ୱଳନ୍ତ ଉଦାହରଣ ମୌଳିକ ଶିକ୍ଷା । ଏହାର ବିପର୍ଯ୍ୟୟ କାହାକୁ ଅଜଣା ନୁହେଁ । ମୂଲ୍ୟାୟନ, ମାର୍ଗଦର୍ଶନ, ବିଦ୍ୟାଳୟ - ସଙ୍ଗମ ଆଦି ଯୋଜନା ତ୍ରୁଟିମୁକ୍ତ ନୁହେଁ । ଆହୁରି ମଧ୍ୟ କୁହାଯାଇପାରେ ଯେ ଦଶ, ଯୁକ୍ତ ଦୁଇ, ଯୁକ୍ତ ତିନି (10+ 2+3) ଶିକ୍ଷାଯୋଜନା କେବେହେଁ ଗଣିତର ବିଷୟ ନୁହେଁ । ଏହା ପଛରେ ବୈପ୍ଳବିକ ଆଭିମୁଖ୍ୟ ରହିଛି ଓ ଆଭିମୁଖ୍ୟକୁ

ଛାଡ଼ିଦେଲେ ବିପ୍ଲବ ବିଫଳ ହେବାର ଆଶଙ୍କା ଜଳଜଳ ଦିଶୁଛି ।

ଶିକ୍ଷକ କାୟମନବାକ୍ୟରେ ଶିକ୍ଷାର ଉଦ୍ଦେଶ୍ୟ ଦ୍ୱାରା ଅନୁପ୍ରାଣିତ ହେବା ଉଚିତ । ସେଥିପାଇଁ ଶିକ୍ଷକ ଓ ଶିକ୍ଷାୟତନ ଏ ଦିଗରେ ଯଥେଷ୍ଟ ପ୍ରେରଣା, ପ୍ରଣାଳୀ ଓ କୌଶଳ ଯୋଗାଇଦେବା ଦରକାର । ସେବାକାଳୀନ ଶିକ୍ଷା ଓ ପ୍ରାକ୍‌ସେବାକାଳୀନ ଶିକ୍ଷା ଏହି ଆଭିମୁଖ୍ୟରେ ରଞ୍ଜିତ ହେବା ଆବଶ୍ୟକ । କିନ୍ତୁ ଶିକ୍ଷକ ଶିକ୍ଷାୟତନଗୁଡ଼ିକରେ ଶିକ୍ଷାର ଆଭିମୁଖ୍ୟ ସଂପର୍କରେ ଯେତେ ତତ୍ତ୍ୱ ବିନିମୟ ଓ ଶାସ୍ତ୍ର ଉଦ୍ଧାର କରାଯାଏ କାର୍ଯ୍ୟରେ ତାହା ହୁଏ ନାହିଁ । ପାଠ ଟିକାଗୁଡ଼ିକର ନିଶ୍ଚିତ ଅଙ୍ଗ ହେଉଛି ସାଧାରଣ ଓ ନିର୍ଦ୍ଦିଷ୍ଟ ଉଦ୍ଦେଶ୍ୟର କଥନ । ଏହି ଅନୁସାରେ ଶିକ୍ଷଣ ଅଭିଜ୍ଞତା, ଶିକ୍ଷାପ୍ରଣାଳୀ, ଓ ମୂଲ୍ୟାୟନ କିପରି ସୁସଂହତ ହୋଇ ରହିବ ଏଥିପାଇଁ ମୁହୂର୍ତ୍ତକର ଚିନ୍ତା ପ୍ରକାଶ କରାଯାଏ ନାହିଁ କହିଲେ ଚଳେ । ଏହି ବ୍ୟତିକ୍ରମ ଅନେକଙ୍କୁ ବିଚଳିତ କରେ । ଶାସ୍ତ୍ରନିଷ୍ଠ ଅଳ୍ପ କେତେଜଣ ଗୁରୁଛାତ୍ର ଶିକ୍ଷକ-ନିଯୁକ୍ତି ପରେ ଛାତ୍ରଙ୍କୁ ପୁସ୍ତକ -କୀଟ କରି ଗଠନ କରିବାର ସହଜ, ସରଳ ଓ ସିଧା ଆଦର୍ଶର ଲୋଭ ଛାଡ଼ି କିପରି ସମସ୍ତ ଶିକ୍ଷାର ପାଠକୁ "ଯତ୍ ପଠିତଂ ତତ୍ ଶିକ୍ଷକ- ଶିକ୍ଷାୟତନ ଗୁରବେ ନିବେଦିତଂ" କରି ରହି ଯାଆନ୍ତି । ଏହି ଦୁରବସ୍ଥା, ବିପର୍ଯ୍ୟୟ ଓ ଅପଚୟକୁ ସୁଧାରିନେବା ପାଇଁ ଶିକ୍ଷା ପ୍ରଶାସନରେ ସମୟ ଶକ୍ତି, ସ୍ୱତନ୍ତ୍ର ଟ୍ରେନିଂ ବା ଦୃଷ୍ଟି କୋଣ ନଥାଏ ।

ଏପରି ସ୍ଥଳରେ ଶିକ୍ଷକ -ସଂଗଠନ କରିବେ ବା କ'ଣ ? ସେମାନେ ତ ଅପାଂକ୍ତେୟ । ଏହି ଅର୍ଥରେ ଏହା କୁହାଯାଇଛି ଯେ ଶିକ୍ଷା ସମ୍ବନ୍ଧୀୟ ନୀତି ନିର୍ଦ୍ଧାରଣ, ଆଇନ୍ ପ୍ରଣୟନ, ଯୋଜନାପ୍ରସ୍ତୁତି, ମୂଲ୍ୟାୟନ, ନବପ୍ରବର୍ତ୍ତନ ଆଦି ବିଷୟରେ ସେମାନେ କେବେ ନିମନ୍ତ୍ରିତ ହେବା ଆମଦେଶର ଶିକ୍ଷା ଇତିହାସରେ ବିରଳ । ସେମାନେ ଅଖୋଜା ଓ ଅଲୋଡ଼ା ଯଦିଓ ଶିକ୍ଷକ ଶିକ୍ଷାର ମୂଳ ସମ୍ବଳ ହୋଇଥିବାରୁ ସେହି ସମ୍ଭାବନା ଭରପୂର ହୋଇଛି ଶିକ୍ଷକ ସଂଗଠନର । ଯଦି କେହି ଶିକ୍ଷକ- ସଙ୍ଗଠନରେ ଜନ୍ମଜାତକ ଦେଖନ୍ତି ତେବେ ଗ୍ରହାଧିପତି ନୀଚସ୍ଥ ହୋଇଥିବାରୁ ଦୁଇଟି ଭୁଲ ବୁଝାବଣା ସେମାନଙ୍କ ଜାତକରେ ସୁସ୍ପଷ୍ଟ । ଏହା କେତେକାଳ ରହିବ ପୁଣି ଜାତକ ଦେଖିଲେ ଜଣାପଡ଼ିବ । ଯାହାହେଉ ସେ ଦୁଇ ଭୁଲ୍‌ବୁଝାମଣା ମଧ୍ୟରୁ ଗୋଟିଏ ହେଉଛି ବିରୋଧ କରିବା ଏମାନଙ୍କର କାମ । ଲଢ଼ିବା ହେଉଛି ଏମାନଙ୍କର ଧର୍ମ । ଅବୁଝା ହେବା ମର୍ମ । ଦ୍ୱିତୀୟଟି ହେଉଛି ଦାୟିତ୍ୱ ନସମ୍ଭାଳି ଦାବୀ ଉପସ୍ଥାପନ କରିବା ଏମାନଙ୍କର ନିତିଦିନିଆ କାରବାର ।

ଶିକ୍ଷା ତ ସମସ୍ତଙ୍କ ହାଣ୍ଡିଶାଳର କଥା । ପୋଖତ ରାନ୍ଧୁଣିଆ ଯେଉଁ ବା ଯେତେ ମନ୍ତବ୍ୟ ଦିଅନ୍ତି ହାଣ୍ଡିଶାଳକୁ ବିଲ୍‌କୁଲ ପଶିନଥିବା ଲୋକ ବି ସେହି ବା ସେତେ ମନ୍ତବ୍ୟ ଦିଅନ୍ତି । ଶିକ୍ଷା ସମସ୍ତଙ୍କ ଚରାଭୂଇଁ । ସେପରି ସ୍ଥଳରେ ଶିକ୍ଷକ- ସଙ୍ଗଠନକୁ ଶିକ୍ଷାର ଏକ

ବଳିଷ୍ଠ ସଙ୍ଗଠନ କରିବାକୁ ହେବ । ଶିକ୍ଷା ଗବେଷଣା ଉପରେ ଶିକ୍ଷକଙ୍କ ଦାବିକୁ ଆଧାରିତ କରାଯିବ ।

ଯାହାହେଉ, ଆଲୋଚ୍ୟ ପ୍ରସଂଗରେ ଶିକ୍ଷାର ସଂସ୍କାର କରି ସମସ୍ତ ଶିକ୍ଷାର କ୍ରମକୁ ଉଦ୍ଦେଶ୍ୟ ଆଧାରିତ କରିବା ପାଇଁ କେତେକ ସୂଚନା ଦିଆଯାଇପାରେ । ଗୋଟିଏ ସୂଚନା ହେଉଛି (୧) ଶିକ୍ଷକ -ସଂଗଠନ ସହିତ କାର୍ଯ୍ୟକରିବାର ଷ୍ଟ୍ରାଟେଜି ବାହାର କରିବାକୁ ହେବ । ସଂଗଠନ ଶିକ୍ଷକ ସଂସ୍କାର ସଦୁପଯୋଗ କରାଯିବା ଉଚିତ । ଶିକ୍ଷା ଏକ ବ୍ୟପକ ଓ ଜଟିଳ ପ୍ରକ୍ରିୟା, ତେଣୁ ଏହାର ସଫଳତା ପାଇଁ ସମସ୍ତଙ୍କ ସହଯୋଗ ଏକାନ୍ତ ଆବଶ୍ୟକ । ଜଣେ ପ୍ରଶାସକଙ୍କ କର୍ତ୍ତୃତ୍ୱ ଜାହିର ଅପେକ୍ଷା ଶତଗୁଣ ଫଳପ୍ରଦ ଓ ପ୍ରେରଣାଦାୟକ ହେଉଛି ସମୂହ ଆଦର୍ଶ । ରାଜ୍ୟ ଶିକ୍ଷାପ୍ରତିଷ୍ଠାନର ପ୍ରତିଷ୍ଠା କାଳରେ ପ୍ରତିଟି ବ୍ଲକ୍‌ର ଶିକ୍ଷକ ସଂଗଠନର ସହଯୋଗରେ ଅନେକ ସୁବିଗ୍ୱର ଓ ଶିକ୍ଷାର ଗୁଣାତ୍ମକ ବିକାଶ ଦୃଷ୍ଟିରୁ କାର୍ଯ୍ୟକ୍ରମ ସହଜରେ ହୋଇ ପାରିଥିଲା । ଗ୍ରୁପ୍ ଡାଇନାମିକ୍‌ସ (Group Dynamics) ସଂକ୍ରାନ୍ତରେ ଅନେକ ଗବେଷଣା ଲବ୍ଧ ସିଦ୍ଧାନ୍ତ ରହିଛି । ଶିକ୍ଷକ ସଙ୍ଗଠନର ସଂଗ୍ରାମୀ ଭୂମିକା ସହିତ ବର୍ତ୍ତମାନ ପରିସ୍ଥିତିରେ ସହଯୋଗର ସେତୁ ମଧ୍ୟ ଉଦ୍‌ଭାବନ କରାଯିବା ଉଚିତ୍ । ଶିକ୍ଷକଙ୍କ ସଂଖ୍ୟା ବଢିଛି ଓ ବଢିବ । ପରିବର୍ତ୍ତନର ପ୍ରବାହ ବେଶ ପ୍ରବଳ ହୋଇଛି ଓ ପ୍ରବଳତର ହେବ । ପ୍ରତି ଶିକ୍ଷକଙ୍କୁ ହାତଧରି ବୁଝାଇ ଦେବାର ସମ୍ଭାବନା ଓ ସମ୍ବଳ କମିଯାଇଛି ଓ କମିବ । ସଙ୍ଗଠନର ଶକ୍ତିମଧ୍ୟ ସୁଦୃଢ ହେଉଛି ଓ ହେବ । ଏପରି ସ୍ଥଳରେ ଶିକ୍ଷକ -ସଂଗଠନକୁ ସାଥିକରି ପାରିଲେ ଶିକ୍ଷାର ଆମୂଳଚୂଳ ପରିବର୍ତ୍ତନ ସହଜରେ କରାଯାଇ ପାରନ୍ତା ।

(୨) ଶିକ୍ଷକ ଓ ଶିକ୍ଷକ-ସଙ୍ଗଠନ ଉଦ୍ଦେଶ୍ୟର ଫର୍ମୁଲେସନ ଓ ବିକାଶରେ ଭାଗନେବା ଉଚିତ୍ । ଉଦ୍ଦେଶ୍ୟଗୁଡ଼ିକର ରୂପାୟନ ଓ ଛାତ୍ର ଜୀବନର ଆଚରଣଗତ ପରିବର୍ତ୍ତବ ଶୀର୍ଷକ ବିଶ୍ଳେଷଣରେ ସେମାନେ ଅଂଶଗ୍ରହଣ କରିବେ । ଏହା ଏକ ସମ୍ମିଳିତ ପ୍ରକ୍ରିୟା ହେବ ଓ ଏଥିରେ ଉଦ୍ଦେଶ୍ୟାବଳି ସ୍ଥିରୀକରଣର ବିଶାରଦ, ଶିକ୍ଷା-ଶାସ୍ତ୍ରୀ ସମ୍ବିଧାନ-ଶାସ୍ତ୍ରଜ୍ଞ, ରାଜନୈତିକ ମନସ୍ୱୀ, ଶିକ୍ଷକ ଓ ଶିକ୍ଷା-ସଂଗଠନ ସହଯୋଗ କରିବେ ।

(୩) ଉଦ୍ଦେଶ୍ୟ ଆଧାରିତ ବିଭିନ୍ନ ପ୍ରକଳ୍ପ କାର୍ଯ୍ୟକାରୀ କରାଯିବ । ସେସବୁ ହେଉଛି ଜାତୀୟ ସଂହତି , ଜାତୀୟଚରିତ୍ର, ଗଣତନ୍ତ୍ର, ଅବୈତନିକ ବାଧ୍ୟତାମୂଳକ ଶିକ୍ଷା, ପ୍ରୌଢଶିକ୍ଷା, ସମାଜବାଦୀ ଶିକ୍ଷା ଓ ସମାଜ ଇତ୍ୟାଦି । ଜାତୀୟ ସ୍ତରରେ ସ୍ଥିରୀକୃତ ଲକ୍ଷ୍ୟଗୁଡ଼ିକର ପରିସୀମା ମଧ୍ୟରେ ପ୍ରତ୍ୟେକ ଶିକ୍ଷାୟତନ ନିଜର ଶକ୍ତି ଓ ସମ୍ବଳ ଅନୁସାରେ କାର୍ଯ୍ୟକାରୀ କରିବେ । ଏହାର ପ୍ରତ୍ୟନୁଭବ ଯୋଗୁଁ ସାଧ୍ୟ ତଥ୍ୟ ସହଜ ସାଧ୍ୟ ଲକ୍ଷ୍ୟଗୁଡ଼ିକୁ ଚିହ୍ନଟ କରାଯାଇ ପାରିବ । ଲକ୍ଷ୍ୟର ପୁନଃ ସ୍ଥିରୀକରଣରେ ମଧ୍ୟ ସାହାଯ୍ୟ ମିଳିବ ।

(୪) ସ୍କୁଲ ସ୍ତରରେ ଶିକ୍ଷକମାନେ ସ୍ୱାଧୀନ ହୋଇ ବ୍ୟକ୍ତିଗତ ଦାୟିତ୍ୱ ଓ ଅଭିକ୍ରମ ପ୍ରକାଶ କରିବାର ସୁଯୋଗ ପାଇବେ । ଆମର ସମୂହ ନିଷ୍ପତ୍ତି ଓ ସହଯୋଗ ସୂତ୍ରରେ ଯୋଜନା କରାଯିବ । କିନ୍ତୁ ସ୍କୁଲ୍ ସ୍ତରରେ ଶିକ୍ଷକମାନେ ନିଜ ନିଜ ଶକ୍ତି ଅନୁସାରେ କାର୍ଯ୍ୟକରିବେ । ପ୍ରଣାଳୀ, ପାଠ୍ୟକ୍ରମ, ପାଠ୍ୟପୁସ୍ତକ ଆଦି ଉଦ୍ଦେଶ୍ୟ ସାଧନ ସହାୟକ ଉପାଦାନଗୁଡ଼ିକର ବିକଳ୍ପ ସେଟ୍‌ଗୁଡ଼ିକୁ ନେଇ ଶିକ୍ଷାୟତନର ପରିବେଶ ଓ ଶିକ୍ଷାର୍ଥୀମାନଙ୍କ ପୃଷ୍ଠଭୂମିର ବିଭିନ୍ନତା ଦୃଷ୍ଟିରୁ ପ୍ରୟୋଗ କରାଯିବ । ଏ ସବୁଥିର ଅନମନୀୟତା (Rigidity ) ହେତୁ ଉଦ୍ଦେଶ୍ୟ ସାଧିତ ହୋଇପାରୁ ନାହିଁ । ଶିକ୍ଷାୟତନ, ଶିକ୍ଷକ ଓ ଶିକ୍ଷାର୍ଥୀଙ୍କ ସୃଜନାତ୍ମକ ବିକାଶ କରାଯାଇ ପାରୁନାହିଁ କେଉଁଝର ଠାରୁ କୋରାପୁଟ ଯାଏଁ ଆଜି ସର୍ବତ୍ର ସମାନ ।

(୫) ଉଲ୍ଲିଖିତ ଶିକ୍ଷାଉଦ୍ଦେଶ୍ୟ ସହାୟକ ବିକଳ୍ପ ଉପାଦାନଗୁଡ଼ିକର ପ୍ରୟୋଗ ବିଭିନ୍ନ ଶିକ୍ଷାୟତନରେ ଶିକ୍ଷକ ଓ ଶିକ୍ଷକ -ସଂଗଠନ ଦ୍ୱାରା କରାଯାଇ ପାରିଲେ ରାଜ୍ୟ ଓ ରାଜ୍ୟାନ୍ତର ମଧ୍ୟରେ ସେସବୁର ଆଦାନ ପ୍ରଦାନ କରାଯାଇ ପାରିବ । ଶିକ୍ଷା ବିଭାଗ ନିଜର ସୀମିତ ସମ୍ବଳ ହେତୁ ଏହି ବିରାଟ କାର୍ଯ୍ୟ ସମ୍ଭାଳି ପାରିବେ ନାହିଁ । ବରଂ ଶିକ୍ଷକ ଓ ଶିକ୍ଷକ-ସଂଗଠନ ଉଦ୍ଦେଶ୍ୟ ଦ୍ୱାରା ସମୃଦ୍ଧ ହେବେ । ଏହା ଫଳରେ ଶିକ୍ଷକ ଓ ଶିକ୍ଷକ ସଂଗଠନ କେବଳ ଦାବୀପତ୍ର ଉପସ୍ଥାପନର ଅନୁଷ୍ଠାନ ନ ହୋଇ ଶିକ୍ଷାର ଗୁଣାତ୍ମକ ବିକାଶର ସୁଦୃଢ଼ ସ୍ତମ୍ଭ ହୋଇ ପାରିବେ । ରାଜ୍ୟ ଓ ରାଜ୍ୟାନ୍ତରରେ ଏ ପ୍ରକାର ଆଦାନ ପ୍ରଦାନ ଦ୍ୱାରା ସଂହତି ଓ ସଂପର୍କ ବୃଦ୍ଧି ପାଇବ ଓ ଶିକ୍ଷାର ମାନ ଉନ୍ନତ ହେବ । ଏହାହିଁ ହେଉଛି ନୂତନ ଶିକ୍ଷା ପଦ୍ଧତିର ଉଦ୍ଦେଶ୍ୟ ।

(୬) ଶିକ୍ଷାର ଉଦ୍ଦେଶ୍ୟକୁ, ଯେପରି ଗୋଟିଏ ଭଜନରେ କୁହାଯାଇଛି "ବାନା ଉପରେ ଅବନା" କରି ଛାଡ଼ିଦେଲେ ଚଳିବ ନାହିଁ । କିମ୍ବା ଏହାକୁ ସେହି ଫାଇଲ ରକ୍ଷକଙ୍କ ଫାଇଲର ନାଲିଫିତାରେ ବାନ୍ଧି ଦିଆଯିବ ନାହିଁ । ଶିକ୍ଷାର୍ଥୀ ଓ ଅଭିଭାବକଙ୍କ ହାତ ପାହାନ୍ତିରେ ଏହା ରହିବ । ସେ ଦୃଷ୍ଟିରୁ ସଚେତନ ଶିକ୍ଷକ ଓ ଶିକ୍ଷକ ସଂଗଠନ ବଳିଷ୍ଠ ଭୂମିକା ଗ୍ରହଣ କରିପାରିବେ । ଜାତୀୟ ଓ ସାମ୍ବିଧାନିକ ଲକ୍ଷ୍ୟଗୁଡ଼ିକ ଶିକ୍ଷାୟତନ ସ୍ତରରେ ବାସ୍ତବ ରୂପ ଦିଆଯିବ । ଏପରିକି ଅଭିଭାବକ ଶିକ୍ଷକ ଓ ଶିକ୍ଷାର୍ଥୀ ବିଶେଷ କରି ଶିକ୍ଷକ ଓ ଶିକ୍ଷାର୍ଥୀଙ୍କ ସହଯୋଗରେ ଲକ୍ଷ୍ୟସ୍ଥିରୀକରଣର ଅଭ୍ୟୁଦୟ କରାଯାଇ ପାରିବ । ଶିକ୍ଷକ ଅଭିଭାବକ ସମିତି ମଧ୍ୟ କାର୍ଯ୍ୟ କରିବ । ■

'ଜୀବନଶିକ୍ଷା' , ମୟୂର ପବ୍ଲିକେଶନ୍‌ସ

୧ମ ସଂସ୍କରଣ -୧୯୮୫ - ପୁସ୍ତକରୁ ଗୃହୀତ

# ଓଡ଼ିଆ ଭାଷାର ପ୍ରାଚୀନତା ଓ ଶାସ୍ତ୍ରୀୟତା

ଡକ୍ଟର ଦେବୀପ୍ରସନ୍ନ ପଟ୍ଟନାୟକ

ରବୀନ୍ଦ୍ରନାଥଙ୍କୁ ଥରେ ଜଣେ ପଚାରିଲେ, ସଂସ୍କୃତ ସମସ୍ତ ଭାରତୀୟ ଭାଷାମାନଙ୍କର ଜନନୀ, ଏ ବିଷୟରେ ଆପଣଙ୍କ ମତ କ'ଣ ? ରବୀନ୍ଦ୍ରନାଥ ଉତ୍ତରରେ କହିଥିଲେ, ମାଟି ଯେପରି ପୋକ, ଜୋକ, କେଞ୍ଚୁଆମାନଙ୍କର ଜନନୀ, ସଂସ୍କୃତ ସେହିପରି ଭାରତୀୟ ଭାଷାମାନଙ୍କର ଜନନୀ । ଏହି କଥାଟି ଆମ ଶିକ୍ଷିତ ଲୋକେ ଜାଣନ୍ତି ନାହିଁ କିମ୍ବା ଭୁଲି ଗଲେଣି । କଥା ହେଉଛି ଭାଷା ପରିବାର ନିର୍ବିଶେଷରେ ଭାରତର ସମସ୍ତ ଭାଷା ସଂସ୍କୃତ ଦ୍ୱାରା ପୁଷ୍ଟ ହୋଇଛନ୍ତି । ଯଦି ଏହା ଶାସ୍ତ୍ରୀୟତାର ପ୍ରମାଣ ହୁଏ, ତେବେ ଭାରତର ସବୁଭାଷା ଶାସ୍ତ୍ରୀୟ ଭାଷା ।

ଯଦି ଆଧୁନିକ କଥିତ ଆର୍ଯ୍ୟ ଭାଷାଗୁଡ଼ିକୁ ଧରି ଭାଷାର ପୁନର୍ଗଠନ କରାଯାଏ, ତେବେ ଦେଖାଯିବ ଯେ ଏହାର ଜନନୀ ସଂସ୍କୃତ ନୁହେଁ, ସଂସ୍କୃତର ଭଉଣୀ ଏକ କଥିତ ଭାଷା । ବହୁଦିନ ଯାଏ ୟୁରୋପୀୟ ପଣ୍ଡିତମାନେ ବିଶ୍ୱାସ କରୁଥିଲେ ଯେ ଲାଟିନ୍ ଆଧୁନିକ ୟୁରୋପୀୟ ଭାଷାମାନଙ୍କର ଜନନୀ, କିନ୍ତୁ ଐତିହାସିକ ପୁନର୍ଗଠନ ଫଳରେ ଜଣାଗଲା ଯେ, ଲାଟିନ୍ ନୁହେଁ, ଲାଟିନ୍‌ର ଭଉଣୀ ଏକ କଥିତ ଭାଷାରୁ ଏଗୁଡ଼ିକ ଉଦ୍‌ଭୂତ ହୋଇଛନ୍ତି । ସବୁ ୟୁରୋପୀୟ ଭାଷା ଲାଟିନ୍ ଦ୍ୱାରା ପୁଷ୍ଟ ହୋଇଛନ୍ତି ।

ଯଦି ପ୍ରାଚୀନତା ଶାସ୍ତ୍ରୀୟତାର ପ୍ରମାଣ ହୁଏ, ତେବେ ଓଡ଼ିଆ ଗୋଟିଏ ଶାସ୍ତ୍ରୀୟ ଭାଷା । ଖ୍ରୀଷ୍ଟପୂର୍ବ ଚତୁର୍ଥ ଶତକରେ ଭରତମୁନି ତାଙ୍କ ନାଟ୍ୟଶାସ୍ତ୍ରରେ ଔଡ୍ର ମାଗଧି ପ୍ରବୃତ୍ତି ଓ ଉଡ୍ର ବିଭାଷାର ଉଲ୍ଲେଖ କରିଛନ୍ତି । ପ୍ରବୃତ୍ତିର ବାଖ୍ୟା କରି କୁହାଯାଇଛି, "ପୃଥିବ୍ୟାଂ ନାନା ଦେଶ ଦେଶ ଭାଷାଚାର ଖ୍ୟାପୟତିତି ପ୍ରବୃତ୍ତି ।" ସେତେବେଳେ ଉଡ୍ର ଦେଶରେ ଯେଉଁ ଭାଷା ବ୍ୟବହାର କରାଯାଉଥିଲା ତାହା ସଂସ୍କୃତ ଠାରୁ ଭିନ୍ନ ପ୍ରାକୃତ । ତେଣୁ ତାକୁ ବିଭାଷା କୁହାଯିବାରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ସଂସ୍କୃତକୁ ଦେବଭାଷା ମାନିନେଲା ପରେ ପ୍ରାକୃତକୁ ବିଭାଷା କହିବା ସ୍ୱାଭାବିକ ଥିଲା ।

ଖ୍ରୀ.ପୂ. ତୃତୀୟ ଶତାବ୍ଦୀରେ ଓଡ଼ିଶାରେ ଲେଖାଯାଇଥିବା ଅଶୋକ ଅନୁଶାସନ ଗୁଡ଼ିକର ଆଞ୍ଚଳିକ ସ୍ୱାତନ୍ତ୍ୟ ଦେଖିଲେ ଓଡ଼ିଆ ଭାଷାର ଆଞ୍ଚଳିକ ସ୍ୱତନ୍ତତା ବିଷୟରେ ଧାରଣା କରିହେବ । ଖ୍ରୀଷ୍ଟପୂର୍ବ ୧ମ ଶତକର ହାତୀଗୁମ୍ଫା ଶିଳାଲେଖାରେ ବାଟ, ପନ୍ଦର ପରି ନିରୁତା ଓଡ଼ିଆ ଶବ୍ଦ ଦେଖିଲେ ସଂସ୍କୃତ ଓ ପ୍ରାକୃତରୁ ଫିଟି ଓଡ଼ିଆ ଭାଷାର ଅଗ୍ରଗତିର ଧାରଣା କରିହେବ ।

୭ମ ଓ ୯ମ ଶତକର ସଂସ୍କୃତ ଅଭିଲେଖରେ ଓଡ଼ିଆ ବାକ୍ୟ ଅତ୍ୟନ୍ତ ସୂଚନାପୂର୍ଣ୍ଣ । ୮ମରୁ ୧୨ଶତକ ମଧ୍ୟରେ ଲେଖା ବୌଦ୍ଧଗାନ ଦୋହା ଓଡ଼ିଆ, ବଙ୍ଗଳା, ଆସାମୀ ଭାଷା ଅଲଗା ହେବା ସମୟର ଭାଷା । ବଙ୍ଗଳା ଓ ଆସାମୀ ଭାଷାରେ ବିଭିନ୍ନ ଭାଷାଗତ ପରିବର୍ତ୍ତନ ହେତୁ ଏଗୁଡ଼ିକ ଓଡ଼ିଆଠାରୁ ଭିନ୍ନ ହୋଇଯିବା ଫଳରେ ରକ୍ଷଣଶୀଳ ଓଡ଼ିଆ ଭାଷା ସହିତ ବୌଦ୍ଧଗାନ ଓ ଦୋହାର ଘନିଷ୍ଠତର ସଂପର୍କ ରହିବା ସ୍ୱାଭାବିକ । ୧୧ଶ ଶତକର ଏକ ଶିଳାମୂର୍ତ୍ତିରେ "ଦେବଙ୍କୁ ହିଁ ଭଗତି କରୁଣ ଅଛନ୍ତି ଭୋ କୁମାର ସେଣ"ରୁ ଓଡ଼ିଆର ଅଗ୍ରଗତି ସ୍ପଷ୍ଟ ହୋଇଯାଏ । ୧୦୫୧ରେ ପ୍ରଥମ ଓଡ଼ିଆ ଶିଳାଲେଖ ଉରଜାମ ଶିଳାଲେଖାରୁ ପ୍ରତୀତ ହୁଏ ଯେ ସେତେବେଳକୁ ବିକଶିତ ଓଡ଼ିଆ ପ୍ରତିଷ୍ଠିତ ହୋଇଯାଇଥିଲା ।

ଗୋଟିଏ ସମୟରେ ଲାଟିନ୍ ୟୁରୋପୀୟ ଭାଷାମାନଙ୍କର ଆଦର୍ଶ ଥିଲା, ୟୁରୋପୀୟ ଭାଷାମାନଙ୍କର ବ୍ୟାକରଣ ଲାଟିନ୍ ଆଦର୍ଶରେ ଲେଖାଯାଉଥିଲା । ଭାରତୀୟ ଭାଷାମାନଙ୍କ ବ୍ୟାକରଣ ଆଦର୍ଶ ଏବେ ମଧ୍ୟ ସଂସ୍କୃତ । ତାମିଲ ସଂସ୍କୃତର ପ୍ରତିସ୍ପର୍ଦ୍ଧାରେ ଆପଣାକୁ ଗଢ଼ି ଦ୍ରାବିଡ଼ ଭାଷାମାନଙ୍କର ଆଦର୍ଶ ହୋଇଗଲା । ସେଥିପାଇଁ ଏହା ଶାସ୍ତ୍ରୀୟତାର ସ୍ୱୀକୃତି ପାଇଲା ପରେ ରାଜନୈତିକ କାରଣରୁ ତେଲୁଗୁ ଓ କନ୍ନଡ଼ ଏହି ସ୍ୱୀକୃତି ପାଇଲା । ଏବେ ମାଲୟାଲମ ଧାଡ଼ିରେ ଛିଡ଼ା ହୋଇଛି । (ଏହା ମଧ୍ୟରେ ମାଲୟାଲାମ ଓ ଓଡ଼ିଆ ଶାସ୍ତ୍ରୀୟ ମାନ୍ୟତା ପ୍ରାପ୍ତ, ସଂପାଦକ) ।

ଭାରତୀୟ ଆର୍ଯ୍ୟ ଭାଷାମାନଙ୍କ ମଧ୍ୟରେ ଓଡ଼ିଆ ଏକ ପ୍ରାଚୀନତମ ଭାଷା । କଳିଙ୍ଗ, ଉତ୍କଳ, ଓଡ୍ର, ଓଡ଼ରିଶ, ଓଡ଼ିଶା ଆଦି ବିଭିନ୍ନ ନାମରେ ନାମିତ ହୋଇଥିଲେ ମଧ୍ୟ ଏବଂ ବିଭିନ୍ନ ସମୟରେ ଗଙ୍ଗାରୁ ଗୋଦାବରୀ ଯାଏ ବ୍ୟାପୀଥିବା ଅଞ୍ଚଳରୁ ଆରମ୍ଭ କରି ଆଜିକାଲିର ସୀମିତ ଅଞ୍ଚଳରେ ଆବଦ୍ଧ ଥିଲେ ମଧ୍ୟ ଏହାର ଉଜ୍ଜ୍ୱଳ ଅତୀତ ଐତିହାସିକମାନଙ୍କୁ ଚମତ୍କୃତ କରେ । ଓଡ଼ିଶାର ପ୍ରତ୍ନତତ୍ତ୍ୱ ଅଧ୍ୟୟନ କଲେ ପ୍ରାଚୀନ ପ୍ରସ୍ତର ଯୁଗରୁ ଆରମ୍ଭ କରି ଆଜିଯାଏ ପ୍ରଲମ୍ବିତ ଇତିହାସ ଧାରା ଦେଖିବାକୁ ମିଳିଥାଏ । କଳିଙ୍ଗ ହେଉଛି ଭାରତରେ ଏବଂ ସମ୍ଭବତଃ ପୃଥିବୀରେ ଏକମାତ୍ର ରାଜ୍ୟ ଯେଉଁଠି ରାଜାବିହୀନ ଜନପଦର ଲୋକେ ଏକ ସାମ୍ରାଜ୍ୟବାଦୀ

ସମ୍ରାଟଙ୍କ ସହ ଯୁଦ୍ଧ କରିଥିଲେ । ଏକଲକ୍ଷ ମୃତ, ଲକ୍ଷାଧିକ ବନ୍ଦୀ ଏବଂ ଏକଲକ୍ଷ ନିର୍ବାସିତ ହୋଇଥିବା ଯୁଦ୍ଧ ଇତିହାସରେ ବିରଳ ଏବଂ ସ୍ୱର୍ଣ୍ଣାକ୍ଷରରେ ଲେଖା ହୋଇଛି ।"କଳିଙ୍ଗାଃ ସାହସିକାଃ" ଯୁଦ୍ଧରେ ଯେପରି ଶାନ୍ତିରେ ମଧ୍ୟ ସେହିପରି କଳିଙ୍ଗ ସାହସର ପରିଚୟ ଦେଇଛି । ଚଣ୍ଡାଶୋକରୁ ଧର୍ମାଶୋକରେ ପରିବର୍ତ୍ତିତ ହୋଇଥିବା ଅଶୋକ କେବଳ ଯେ ବୌଦ୍ଧଧର୍ମ ଗ୍ରହଣ କରିଥିଲେ ନୁହେଁ, ବୌଦ୍ଧଧର୍ମର ପ୍ରଚାର ପ୍ରସାର ପାଇଁ କଳିଙ୍ଗକୁହିଁ ସେ ପୀଠରୂପେ ଗ୍ରହଣ କରିଥିଲେ । ବୁଦ୍ଧଙ୍କର ଦୁଇ ପ୍ରଥମ ଶିଷ୍ୟ ସାର୍ଥବାହ ତପୁସ ଓ ଭଲ୍ଲିକ ଥିଲେ । ଏହି ବୀର ସାହାସିକ କଳିଙ୍ଗମାନେ ପୁଣି ଉତ୍କୃଷ୍ଟ କଳାର ସ୍ରଷ୍ଟା ଭାବରେ ଉତ୍କଳ ନାମରେ ପରିଚିତ ହୋଇଥିଲେ । ଏବେ ବି ଭୁବନେଶ୍ୱର ପୁରୀ କୋଣାର୍କ ସ୍ୱର୍ଣ୍ଣ ତ୍ରିଭୁଜ ରୂପେ ପରିଚିତ । ଓଡ଼ିଶାର ଦୁଇଶହ ପାଖାପାଖି ଗୁମ୍ଫାଚିତ୍ର ଏବଂ ୬ଷ୍ଠରୁ ୧୩ଶ ଶତକ ପର୍ଯ୍ୟନ୍ତ ମନ୍ଦିର ଛିଡ଼ା ହୋଇଥିବା ମନ୍ଦିରମାଳିନୀ ଭୁବନେଶ୍ୱର ଏବେ ମଧ୍ୟ ଓଡ଼ିଶାର ପ୍ରାଚୀନ କୀର୍ତ୍ତିର ସୂଚନା ଓ ନମୁନା ।

ଭାଷା, ସଂସ୍କୃତି ଓ ରାଜ୍ୟ ପରସ୍ପର ସହ ଘନିଷ୍ଠ ଭାବରେ ସଂପୃକ୍ତ । ଉତ୍ର ରାଜ୍ୟ ଓଡ଼ିଶା ହୋଇଛି ।

ସଂସ୍କୃତରୁ ମାଗଧି ପ୍ରାକୃତ ଯାଏ ଏବଂ ମାଗଧି ପ୍ରାକୃତରୁ ଓଡ଼ିଆଯାଏ ବିକାଶ ଧାରାରେ ଓଡ଼ିଆ ବିଭିନ୍ନ ପ୍ରାକୃତ ଦ୍ୱାରା ସମୃଦ୍ଧ ହୋଇଛି । ପୁଣି ମୋଗଲ, ପଠାଣ, ମରହଟ୍ଟା, ଫରାସୀ, ପର୍ତ୍ତୁଗୀଜ ଓ ଇଂରେଜଙ୍କ ଶାସନ କାଳରେ ଓଡ଼ିଆ ସେମାନଙ୍କ ଭାଷା ଦ୍ୱାରା ସମୃଦ୍ଧ ହୋଇଛି । ପୁଣି ତାମିଲ ଗଜପତି ଏବଂ କର୍ଣ୍ଣାଟକ ସିନ୍ଧେଗୌରୀ ଦଣ୍ଡୀମହାଦେବୀ ଓ ତ୍ରିଭୁବନ ମହାଦେବୀଙ୍କ ଶାସନ କାଳରେ ଭାଷା ଓ ସଂସ୍କୃତିର ଅପୂର୍ବ ମେଳଣ ଘଟିଛି ।

ଭୌଗୋଳିକ ଦୃଷ୍ଟିରୁ ବିନ୍ଧ୍ୟପର୍ବତର ଅବସ୍ଥିତି ହେତୁ ଓଡ଼ିଶା ଉତ୍ତର ଓ ଦକ୍ଷିଣ ଭାରତୀୟ ସଂସ୍କୃତିର ମିଳନସ୍ଥଳ । ଏହା ଏକମାତ୍ର ପ୍ରବେଶଦ୍ୱାର । ଉତ୍ତର ଓ ଦକ୍ଷିଣ ଉଭୟ ଆଡୁ ଚାପରୁ ଆକ୍ରାନ୍ତ ଆଦିବାସୀମାନଙ୍କର ବାସସ୍ଥାନ ହେଲା ଓଡ଼ିଶା । ଓଡ଼ିଶାର ଲୋକସଂଖ୍ୟାର ୨୩ ପ୍ରତିଶତ ଯେ ଆଦିବାସୀ ଏଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ । ଏହା ଭାରତର ସବୁଠାରୁ ଅଧିକ ଆଦିବାସୀ ଅଧ୍ୟୁଷିତ ରାଜ୍ୟ । ତିବତୀମାନେ ଓଡ଼ିଶା ଆସିଲା ପରେ ଏହା ଭାରତରେ ଚାରି ପ୍ରମୁଖ ଭାଷା ପରିବାର ଥିବା ରାଜ୍ୟ ହୋଇଯାଇଛି । ଓଡ଼ିଶାରେ ୬୨ଟି ଆଦିବାସୀ ଗୋଷ୍ଠୀ ଅଛନ୍ତି । ଏମାନଙ୍କ ଭିତରେ ଆର୍ଯ୍ୟ, ଦ୍ରାବିଡ଼ ଓ ମୁଣ୍ଡା ଭାଷା ପରିବାରର ଲୋକ ଅଛନ୍ତି । ତିବତୀମାନେ ଆସିଲା ପରେ ଭୋଟି ଲୋକେ ଏମାନଙ୍କ ସାଙ୍ଗେ ଯୋଗ ହେଲେ । ଭାଷା ଓ ସଂସ୍କୃତିର ମେଳନ ଫଳରେ ବହୁଭାଷିତ ଓ ବହୁ ସାଂସ୍କୃତିକ ଭାରତ ଗୋଟିଏ ଭାଷା ଅଞ୍ଚଳ ହୋଇଗଲା । ଓଡ଼ିଆ ତାହାର ବ୍ୟତିକ୍ରମ ନୁହେଁ ।

ଓଡ଼ିଆ ଯେ ଏକ ସ୍ୱତନ୍ତ୍ର ଭାଷା, ଆଜି ଏଥିପାଇଁ ନା ବିମ୍ସ୍ ନା ଗ୍ରୀୟରସନ୍‌ଙ୍କ ସାର୍ଟିଫିକେଟ୍ ଆବଶ୍ୟକତା ଅଛି । ଏହା ଭାଷାତାତ୍ତ୍ୱିକ ତୁଳନା ଏବଂ ଭାଷା ବୈଜ୍ଞାନିକ ପୁନର୍ଗଠନ ଦ୍ୱାରା ଭାରତୀୟ ଆର୍ଯ୍ୟ ଭାଷାମାନଙ୍କ ମଧ୍ୟରେ ଆପଣା ମହତ୍ୱପୂର୍ଣ୍ଣ ସ୍ଥାନ ଅଧିକାର କରିଛି । ଆହରଣ ଦ୍ୱାରା ଏହାର ଶବ୍ଦ ଭଣ୍ଡାର ସମୃଦ୍ଧ । ଏହାର ବାକ୍ୟ ଗଠଣ ମଧ୍ୟ ସୁପ୍ରତିଷ୍ଠିତ । ଏହିସବୁ ଆଗତ ବିଭାବ ଓଡ଼ିଆ ଭାଷାର ଅଙ୍ଗ ହୋଇଯାଇଇଛି । ପ୍ରହରାଜଙ୍କ ଭାଷାକୋଷରେ ପ୍ରାୟ ଏକଲକ୍ଷ ଚାଳିଶ ହଜାର ଶବ୍ଦ ଅଛି । ଏହା ପରେ କେତେ ଶବ୍ଦ ଓଡ଼ିଆ ଭାଷାକୁ ଆସିଛି, ତାହାର ହିସାବ କରାଯାଇନାହିଁ । ଏହା ଯେକୌଣସି ଭାରତୀୟ ଭାଷାରୁ କମ୍ ନୁହେଁ, ଏହା ନିଃସନ୍ଦେହରେ କୁହାଯାଇପାରିବ ।

କେହି କେହି ବ୍ୟାକରଣକୁ ଶାସ୍ତ୍ରୀୟତାର ପ୍ରମାଣ ବୋଲି କହିଥାନ୍ତି । କିନ୍ତୁ ଏପରି ଭାବିବାର କାରଣ ନାହିଁ । ପ୍ରଥମତଃ ଭାଷା ବିନା ବ୍ୟାକରଣ ନାହିଁ କିମ୍ବା ବ୍ୟାକରଣ ବିନା ଭାଷା ନାହିଁ । ଦ୍ୱିତୀୟତଃ ବ୍ୟାକରଣ ହେଉଛି ଭାଷାର ଅନୁସାରୀ । ସଂସ୍କୃତରେ କୁହାଯାଇଛି 'ପ୍ରୟୋଗ ସରଣାଃ ବୟାକରଣାଃ ।" ସଂସ୍କୃତିରେ ପାଣିନିଙ୍କ ପୂର୍ବରୁ ଏବଂ ପରେ ବହୁ ବ୍ୟାକରଣ ଲେଖା ହୋଇଥିଲା । କିନ୍ତୁ ଆଜି ମଧ୍ୟ ପୃଥିବୀର ସବୁ ଭାଷା ବିଜ୍ଞାନୀ ପାଣିନିଙ୍କ ପାଖରେ ନତମସ୍ତକ । ପାଣିନିଙ୍କ ସମସ୍ତ ସଂସ୍କୃତ ବ୍ୟାକରଣକୁ ଆଠଟି ଅଧ୍ୟାୟରେ ଏପରି ସୂତ୍ରରେ ବାନ୍ଧିଦେଲେ ଯେ ପୃଥିବୀର କୌଣସି ବ୍ୟାକରଣକାର ତାକୁ ବଳିବା ତ ଦୂରର କଥା ତା'ର ସମକକ୍ଷ ମଧ୍ୟ ହୋଇପାରି ନାହାଁନ୍ତି । ଯଦି କେହି କହେ ଯେ ପାଣିନି ସଂସ୍କୃତର ଶାସ୍ତ୍ରୀୟତାର କାରଣ, ତେବେ ସେ ଭୁଲ୍ ନ କହିଲେ ଠିକ୍ ମଧ୍ୟ ନୁହଁନ୍ତି । ସଂସ୍କୃତର ଶାସ୍ତ୍ରୀୟତାର ଆରମ୍ଭ ବେଦ ଓ ଉପନିଷଦ ରଚନାକାଳରୁ । ବୈଦିକ ବ୍ୟାକରଣ ରଚନା ବେଦ ସୃଷ୍ଟିର ପରବର୍ତ୍ତୀ କଥା ।

ଭାରତୀୟ ଭାଷା ଓ ସାହିତ୍ୟ ସୃଷ୍ଟି ସମକାଳୀନ କିମ୍ବା ସମାନ୍ତର ସଂସ୍କୃତରୁ ଫିଟି ଆପଣା ସ୍ୱାତନ୍ତ୍ର୍ୟ ପ୍ରକଟ କରିବା କିମ୍ବା ସଂସ୍କୃତ ପ୍ରତିମୂର୍ତ୍ତିରେ ଆପଣାକୁ ପ୍ରତିଷ୍ଠିତ କରିବା ହେଉଛି ଭାଷାର ପ୍ରାରମ୍ଭ କାଳର କଥା । ତାମିଲମାନେ ତାମିଲ୍ ବେଦ କୁହାଯାଇଥିବା ଥିରୁକ୍କୁରଳ ରଚନା କରିଥିଲେ, ସଂସ୍କୃତ ସହ ସମଧର୍ମିତା ପ୍ରତିଷ୍ଠା କରିବା ପାଇଁ କହିଥିଲେ ହେ ଶିବ, "ଆରିଆନ କଣ୍ଡେ, ତାମିଲନ କଣ୍ଡେ" । ତୁମେ ହେଉଛ ଆର୍ଯ୍ୟ, ତୁମେ ହେଉଛ ତାମିଲ୍ (ଦ୍ରାବିଡ଼) ସଂସ୍କୃତ ସୁମଧୁର । ଏହାର ଉତ୍ତର ଦେଇ କନ୍ନଡ଼ କବି "ସୁଲିଦ ବାଳେୟ" ଶ୍ଳୋକରେ ପଚାରିଛନ୍ତି, କନ୍ନଡ଼ ଚୋପାଛଡ଼ା ମିଠା କଦଳୀ ପରି, ଏଥିରେ କଣ ନାହିଁ ଯେ ତୁମେ ସଂସ୍କୃତ ଆଡ଼କୁ ଯାଉଛ ? ଓଡ଼ିଆ ପଛରେ ପଡ଼ିନାହିଁ । ଓଡ଼ିଆ କବି କହିଛନ୍ତି, "ସଂସ୍କୃତ ପରାକୃତ ଯେ ବେନି ସମସରି । କେବଳ ଗୋବିନ୍ଦ ରସ ଅମୀୟ ମାଧୁରୀ" ।

ଭାରତରେ ସବୁ ଭାଷାର ଆଦିକାଳରେ ମହାଭାରତ, ରାମାୟଣ ଓ ପୁରାଣ ଲେଖାଯାଇଥିଲା । ଓଡ଼ିଆରେ ସାରଳା ମହାଭାରତ, ଚଣ୍ଡୀପୁରାଣ, ଦାଣ୍ଡି ରାମାୟଣ ଆଉ ନବାକ୍ଷରୀ ଭାଗବତ ଭାରତୀୟ ସାହିତ୍ୟମାନଙ୍କର ରଚିତ ସେହି ସେହି ଗ୍ରନ୍ଥମାନଙ୍କର ଶୀର୍ଷ ଦେଶରେ ପ୍ରତିଷ୍ଠିତ ହୋଇଛନ୍ତି । କିନ୍ତୁ ଓଡ଼ିଆ ସାହିତ୍ୟରେ ଅନ୍ୟ ଏକ ଧାରା ଭାରତୀୟ ସାହିତ୍ୟ ଭିତରୁ ଭିନ୍ନ । ତାହା ହେଉଛି ଭାରତୀୟ ସାହିତ୍ୟରେ ଉପେନ୍ଦ୍ରଭଞ୍ଜ ଯୁଗ । ସିଏ କେବଳ ଦାବି କଲେ ନାହିଁ ଯେ ସଂସ୍କୃତରେ ଯେପରି ସାହିତ୍ୟ ସୃଷ୍ଟି ସମ୍ଭବ, ପ୍ରାକୃତରେ ମଧ୍ୟ ତାହା ସମ୍ଭବ, ସେ ଆପଣା ରଚନା ଦ୍ୱାରା ଏକ ନୂଆ ଯୁଗର ସୃଷ୍ଟି କଲେ ଏବଂ ପରବର୍ତ୍ତୀ ସାହିତ୍ୟକାରମାନଙ୍କ ପାଇଁ ଆଦର୍ଶ ହୋଇ ରହିଲେ । ତାଙ୍କ ରଚନା କେବଳ ସଂସ୍କୃତନିଷ୍ଠ ହେଲା ନାହିଁ, ତାହା ଲୋକାଭିମୁଖୀ ମଧ୍ୟ ହେଲା । ତାଙ୍କ ରଚନାର କଳନା କରି ପରବର୍ତ୍ତୀ ଲେଖକ ଲେଖିଲେ ," ଗାଏ ତୁମ୍ଭ ଗୀତ ସଭାରେ ପଣ୍ଡିତ ପଥେ ପାନ୍ଥ ଦୁଷ୍ଟମନା । ବିଲେ ବୋଲେ ଚଷା ଅନ୍ତଃପୁରେ ଯୋଷା ନୃତ୍ୟରଙ୍ଗେ ବାରାଙ୍ଗନା ।" '

ଭାଷାର ପ୍ରାଚୀନତା ହେଉ, ସାହିତ୍ୟ ସୃଷ୍ଟିର ବିସ୍ତୃତି, ଗାମ୍ଭୀର୍ଯ୍ୟ କିମ୍ବା ଗଭୀରତା ହେଉ ଯେକୌଣସି ଦିଗରୁ ବିଚାର କଲେ ଓଡ଼ିଆର ଶାସ୍ତ୍ରୀୟତା ବିଷୟରେ କାହାରି ସନ୍ଦେହ ନାହିଁ । କିନ୍ତୁ ସାଂପ୍ରତିକ କାଳକୁ ଦେଖିଲେ ହତାଶ ଲାଗେ । ଓଡ଼ିଆରେ ବିଭିନ୍ନ ବିଭାଗରେ ନୂଆ ବହି ଏବଂ ଗୁଣାତ୍ମକ ବହିର ଅଭାବ ପ୍ରଥମେ ଆଖିରେ ପଡ଼େ । ଦାର୍ଶନିକ ଓ ବୈଜ୍ଞାନିକ ବହିର ଅଭାବ ଦେଖିଲେ ଆଖିରେ ଲୁହ ଆସେ । ଏପରିକି ଇତିହାସ, ଭୂଗୋଳ, ସାମାଜିକ ବିଜ୍ଞାନ କିମ୍ବା ଭାଷା ବିଜ୍ଞାନ ବିଷୟରେ ଗୁଣାତ୍ମକ ରଚନା ନାହିଁ କହିଲେ ଚଳେ । ଓଡ଼ିଆରେ ବୈଜ୍ଞାନିକ ପଦ୍ଧତିରେ ଲିଖିତ ଗୋଟିଏ ହେଲେ ବ୍ୟାକରଣ କିମ୍ବା ଅଭିଧାନ ପ୍ରସ୍ତୁତ ହେଉନାହିଁ । କବିତା ଓ କ୍ଷୁଦ୍ରଗଳ୍ପ ତୁଳନାରେ ଉପନ୍ୟାସ ଓ ନାଟକ ରଚନା ମଳିନ ପଡ଼ିଯିବା ଦେଖାଯାଏ । ଓଡ଼ିଆ ଶିକ୍ଷା ଶାସନ ଓ ସମ୍ପାରର ଭାଷା ରୂପେ ପ୍ରତିଷ୍ଠା ପାଇଲା ନାହିଁ । ଇଂରାଜୀ ଶିକ୍ଷିତ ଓଡ଼ିଆଙ୍କର ଓଡ଼ିଆ ବିରୋଧୀ ମନୋଭାବ ଏବଂ ମାତୃଭାଷାର ଅନାଦର ଦେଖିଲେ ଆଖିରୁ ଲୁହ ଜାଗାରେ ରକ୍ତ ଝରେ । ଇଂରାଜୀରେ ପାଳିତ ଏବଂ ଇଂରାଜୀରେ ଲେଖିଥିବା କେହି ହେଲେ ମାତୃଭୂମି, ମାତୃଭାଷା, ସାଂସ୍କୃତିକ ଅସ୍ମିତା ପ୍ରତିଷ୍ଠା ପାଇଁ ଲେଖୁନାହାଁନ୍ତି । ତେଣୁ ବେଳେବେଳେ ମନେହୁଏ ଯେପରି ସଂସ୍କୃତ ଶାସ୍ତ୍ରୀୟତା ଉପାଧି ପାଇଲେ ମଧ୍ୟ ଲୋକ ବ୍ୟବହାରରୁ କ୍ରମେ ବାଦ ପଡ଼ିଗଲା, ଓଡ଼ିଆ ସେହିପରି ଶାସ୍ତ୍ରୀୟତା ଦାବି ହାସଲ କରିବାରେ ସଫଳ ହେଲେ ସୁଦ୍ଧା ସମକାଳୀନ ପ୍ରାୟୋଗିକ ଭାଷା ତାଲିକାରୁ ବାଦ ପଡ଼ିଯିବ । ■

ଆଗାମୀ ଓଡ଼ିଆ (ଭାଷା ସଚେତନତା ବିଶେଷାଙ୍କ, ୨୦୧୧ ସଂକଳନରୁ ସଂଗୃହୀତ)

# ସଙ୍କଟ କାଳରେ ଓଡ଼ିଆ ଭାଷା: ଭିନ୍ନ ଦୃଷ୍ଟି

ପ୍ରଫେସର ଗଗନେନ୍ଦ୍ରନାଥ ଦାଶ

୧୯୯୪ ଏପ୍ରିଲ୍ ମାସରେ ଦିଲ୍ଲୀରେ ଆୟୋଜିତ ଏକ ଆଲୋଚନା ଚକ୍ରରେ ମୁଁ ଓଡ଼ିଆ ଭାଷା ଏକ ସଂକଟ -କାଳ ମଧ୍ୟରେ ଗତି କରୁଛି ବୋଲି ସୂଚାଇ ତା'ର ସମ୍ଭାବିତ ଅକାଳ ମୃତ୍ୟୁ ସଂପର୍କରେ ଆଶଙ୍କା ବ୍ୟକ୍ତ କରିଥିଲି । ସେଠାରେ ଉପସ୍ଥିତ ଅନେକ ବ୍ୟକ୍ତି- ସେମାନଙ୍କ ଭିତରେ ଥିଲେ ମଧ୍ୟ କେତେଜଣ ସାଂସଦ -ମୋର ସେଇ ବକ୍ତବ୍ୟକୁ ଆଦୌ ଗୁରୁତ୍ୱ ନଦେଇ ମୋର ଏପରି ଆଶଙ୍କିତ ହେବାର କୌଣସି କାରଣ ନାହିଁ ବୋଲି ମତ ଦେଇଥିଲେ । ଏଇ କେତେବର୍ଷ ମଧ୍ୟରେ ପରିସ୍ଥିତି ବଦଳିଯାଇଛି ଓ ବର୍ତ୍ତମାନ ବହୁ ବ୍ୟକ୍ତି ଏ ସଂପର୍କରେ ସଚେତନ ହେଲେଣି । ତାହା ଓଡ଼ିଆ ଭାଷା ପକ୍ଷରେ ଏକ ଶୁଭ ସୂଚନା । (ଅବଶ୍ୟ 'ଭାଷାର ମୃତ୍ୟୁ' ଅଭିବ୍ୟକ୍ତିକୁ ଏଠାରେ କେବଳ ସଂପୂର୍ଣ୍ଣ ଭାବରେ ଲୋପ ପାଇଯିବା ଅର୍ଥରେ ନୁହେଁ, ଏକ ମର୍ଯ୍ୟାଦାବନ୍ତ ଭାଷା ଭାବରେ ବ୍ୟବହୃତ ନହୋଇ ଅତ୍ୟନ୍ତ ସଙ୍କୁଚିତ ଓ ଅନୌପଚାରିକ ଘରୋଇ ପରିବେଶରେ ବ୍ୟବହୃତ ହେବା ଅର୍ଥରେ ମଧ୍ୟ ପ୍ରୟୋଗ କରାଯାଉଛି । )

ଏ ମୃତ୍ୟୁ ସଂକଟର କାରଣ ତଥା ନିରାକରଣର ଉପାୟ ମଧ୍ୟ ଖୋଜାଯାଇଛି । ଏ ସଂପର୍କରେ ବହୁ ବିଦ୍ୱାନ ଆଗ୍ରହ ପ୍ରକାଶ କରିଛନ୍ତି । ଖବରକାଗଜ, ପତ୍ରପତ୍ରିକା ତଥା ପୁସ୍ତକରେ ଏ ବିଷୟକ ବହୁ ଆଲୋଚନା ପ୍ରକାଶ ପାଇଛି । ତେବେ ଏସବୁ ଆଲୋଚନା ମଧ୍ୟରୁ ଅଧିକାଂଶରେ ରହିଛି ଭାବପ୍ରବଣତାର ପ୍ରାବଲ୍ୟ । ପୁଣି ସମାଧାନର ପଥ ଅନ୍ୱେଷଣ ପ୍ରସଙ୍ଗରେ ଅଧିକାଂଶ ଆଲୋଚକ ଦିଗହରା ହୋଇପଡ଼ିଛନ୍ତି ବୋଲି ମନେ ହୁଏ । ତେବେ ଏମାନଙ୍କ ମଧ୍ୟରେ ଅଛନ୍ତି ଦୁଇଜଣ ତାଲିମପ୍ରାପ୍ତ ଭାଷାବିଜ୍ଞାନୀ; ବିଜୟ ପ୍ରସାଦ ମହାପାତ୍ର ଓ ପଞ୍ଚାନନ ମହାନ୍ତି । ସେମାନଙ୍କ ଆଲୋଚନାରେ ଓଡ଼ିଆ ଭାଷାର ମୃତ୍ୟୁ ସଙ୍କଟର କାରଣ ଓ ତା'ର ନିରାକରଣର ଉପାୟ ଆବିଷ୍କାର ପାଇଁ ନିଷ୍ଠାପର ଉଦ୍ୟମ କରାଯାଇ ସେଥିରେ ଗଭୀର ସ୍ପର୍ଶ ଦିଆଯାଇଛି । ଏ ମଧ୍ୟରୁ ବିଜୟ ପ୍ରସାଦ ମହାପାତ୍ରଙ୍କ ଆଲୋଚନା (ଦ୍ରଃ ବିଜୟ ପ୍ରସାଦ ମହାପାତ୍ରଙ୍କ 'ଓଡ଼ିଆ ଭାଷାବିଭବ', ୧୯୯୩, ପ୍ରାକ୍‌କଥନ ଓ ପୃ. ୩୨୬-୪୬ ତଥା ୩୭୭-

୯୮) ସାଂପ୍ରତିକ କ୍ଷେତ୍ରୀୟ ବାସ୍ତବତା ଭିତ୍ତିକ, ଅନ୍ତର୍ଦୃଷ୍ଟିସଂପନ୍ନ ଓ ସେ କାରଣରୁ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ସେ ସମସ୍ୟାଟିକୁ ଭଲ ଭାବରେ ବୁଝିଛନ୍ତି ଓ ତା' ସମାଧାନର ଉପାୟ ମଧ୍ୟ ଆବିଷ୍କାର କରିପାରିଛନ୍ତି ବୋଲି କୁହାଯାଇପାରେ । ତା' ସତ୍ତ୍ୱେ ସମସ୍ୟା ସମାଧାନର ଉପାୟ ସଂପର୍କିତ ତାଙ୍କ ବକ୍ତବ୍ୟ ଅତ୍ୟନ୍ତ ସଂକ୍ଷିପ୍ତ ଓ ସୂଚନାତ୍ମକ ହୋଇଥିବାରୁ ତଥା ଯେପରି ସ୍ପଷ୍ଟ ହେବା ଉଚିତ୍ ଥିଲା ତା' ହୋଇନଥିବାରୁ (ତତ୍ରୈବ, ପ୍ରାକ୍ -କଥନ ଓ ପୃ.୩୯୦-୯୧) ତା' ଯେତିକି ଦୃଷ୍ଟି ଆକର୍ଷଣ କରିପାରିବା କଥା କରିପାରିନାହିଁ । ଏ ପ୍ରସଙ୍ଗରେ ବିସ୍ମୟର କଥା ହେଉଛି, ପଞ୍ଚାନନ ମହାନ୍ତି (ଦ୍ର:ପଞ୍ଚାନନ ମହାନ୍ତିଙ୍କ 'ବୃତ୍ତି ଏ ମୋ ପୋଷେ କୁଟୁମ୍ବ', ୨୦୦୮, ପୃ.୪୯-୮୯) କେବଳ ମହାପାତ୍ରଙ୍କ ପରେ ଆଲୋଚନାରେ ପ୍ରବୃତ୍ତ ହୋଇନାହାନ୍ତି, ମହାପାତ୍ରଙ୍କ ଆଲୋଚନାକୁ ଅନୁଧ୍ୟାନ କରି ନିଜ ଆଲୋଚନା ପାଇଁ ତା' ଉପରେ ବେଶ୍ କିଛି ପରିମାଣରେ ନିର୍ଭର ମଧ୍ୟ କରିଛନ୍ତି ଓ ଏପରିକି ମହାପାତ୍ରଙ୍କ ପୁସ୍ତକର ପ୍ରାକ୍ କଥନରୁ ସେପରି ସୂଚନା ସମ୍ବଳିତ କିଛି ଅଂଶ ଉଦ୍ଧାର ବି କରିଛନ୍ତି (ତତ୍ରୈବ, ପୃ.୫୦) । ତା' ସତ୍ତ୍ୱେ ମହାପାତ୍ରଙ୍କ ଦ୍ୱାରା ଉପସ୍ଥାପିତ ସମସ୍ୟା ସମାଧାନ ବିଷୟକ ସୂଚନା ତାଙ୍କ ଦୃଷ୍ଟି ଆକର୍ଷଣ କରିପାରି ନାହିଁ । ପୁଣି ଯେତେବେଳେ ମହାପାତ୍ରଙ୍କ ସୂଚନା ମହାନ୍ତିଙ୍କ ଦୃଷ୍ଟି ଏଡ଼ାଇ ଯାଇଛି ସେତେବେଳେ ଅନ୍ୟମାନଙ୍କ କଥା ଉଠାଇବାର ଆବଶ୍ୟକତା ନାହିଁ ।

ମହାନ୍ତିଙ୍କ ଆଲୋଚନା ସାଂପ୍ରତିକ କ୍ଷେତ୍ରୀୟ ବାସ୍ତବତା ପ୍ରସଙ୍ଗରେ ମହାପାତ୍ରଙ୍କ ଆଲୋଚନା ଉପରେ ନିର୍ଭରଶୀଳ । ତା' ସତ୍ତ୍ୱେ ତାହା ବହୁ ପରିମାଣରେ "ଶାସ୍ତ୍ରୀୟ' ହୋଇପଡ଼ିଛି । ଶାସ୍ତ୍ରୀୟତାର ଗଣ୍ଡି ମଧ୍ୟରୁ ସେ ବାହାରି ପାରିନାହାଁନ୍ତି ଓ କେବଳ ଜଣେ ଭାଷା ବିଜ୍ଞାନୀର ଦୃଷ୍ଟିକୋଣରୁ ହିଁ ବିଷୟଟିକୁ ଦେଖିଛନ୍ତି ତଥା ସମସ୍ୟା ସମାଧାନରେ ଭାଷା ବିଜ୍ଞାନ ଭୂମିକାକୁ ଆବଶ୍ୟକତା ଅପେକ୍ଷା ଅଧିକ ଗୁରୁତ୍ୱ ଦେଇଛନ୍ତି । ସେଇ କାରଣରୁ ହିଁ ତାଙ୍କ ଆଲୋଚନାରେ ମହାପାତ୍ରଙ୍କ ସୂଚନାକୁ ଉପେକ୍ଷା କରାଯାଇଛି ବୋଲି ଧାରଣା ହୁଏ । ଭାଷାର ମୃତ୍ୟୁ ସଂପର୍କରେ ବାହ୍ୟିକ ପରିବେଶର ଭୂମିକା ସଂପର୍କରେ ମହାନ୍ତି କହନ୍ତି, 'ସାଧାରଣତଃ ଭାଷାବିଜ୍ଞାନୀମାନେ ଭାଷା -ମୃତ୍ୟୁ ବିଷୟକ ଆଲୋଚନାରେ ଏସବୁ କାରଣ ଉପରେ ବିଶେଷ ଗୁରୁତ୍ୱ ଆରୋପ କରନ୍ତି ନାହିଁ । ସଂସ୍କୃତି, ସମାଜ, ଇତିହାସ ଓ ଅର୍ଥନୀତି ପ୍ରଭୃତିର ଆଲୋଚକମାନଙ୍କ ଲେଖାରେ ହିଁ ଏସବୁ ସ୍ଥାନ ପାଇଥାଏ" (ତତ୍ରୈବ, ପୃ.୫୭) । ଏହା ଅତ୍ୟନ୍ତ ତାତ୍ପର୍ଯ୍ୟପୂର୍ଣ୍ଣ ଓ ମହାନ୍ତିଙ୍କ ଆଲୋଚନାରେ ଏକ ସମନ୍ୱିତ ଦୃଷ୍ଟିଭଙ୍ଗୀର ଅଭାବ ତଥା ଏକଦେଶଦର୍ଶିତାର ସ୍ପର୍ଶ ରହିଛି ବୋଲି ସୂଚନା ଦିଏ । ବୋଧହୁଏ ସେଇ କାରଣରୁ ଓଡ଼ିଆ ଭାଷାର ମୃତ୍ୟୁ ସଙ୍କଟ ସଂପର୍କିତ ଆଲୋଚନାରେ ବାହ୍ୟିକ ପ୍ରତିକୂଳ ପରିବେଶ ଓ ତା'ର ପ୍ରତିରୋଧର ଉପାୟ ଆଦି ବିଷୟ

ଉପରେ ସେ କୌଣସି ଗୁରୁତ୍ୱ ଦେଇନାହାଁନ୍ତି । କିନ୍ତୁ ଆଜିର ଏ ଜଗତୀକରଣ ଯୁଗରେ, ବଜାର ଅର୍ଥନୀତିର କାଳରେ ବିଚ୍ଛିନ୍ନ ଭାବରେ ନୁହେଁ, ଏକ ସମନ୍ୱିତ ଦୃଷ୍ଟିକୋଣରୁ ହିଁ ସମସ୍ୟା ସମାଧାନର ଉଦ୍ୟମ ହେବା ଉଚିତ । ଜଗତ୍‌କରଣ ଇଣ୍ଟରନେଟ୍ ଓ ବଜାର ଅର୍ଥନୀତି ଯୁଗରେ ସେଇ ପୁରୁଣା 'ଶାସ୍ତ୍ର' ସଂପୂର୍ଣ୍ଣ ଅଚଳ ନହେଲେ ବି ତାହାର ପରିମାର୍ଜନ ଓ ପରିବର୍ଦ୍ଧନ କରିବାର ବା ସେଥିରେ ନୂତନ ଅଧ୍ୟାୟ ସଂପୃକ୍ତ କରିବାର ଆବଶ୍ୟକତା ମଧ୍ୟ ରହିଛି । ମହାନ୍ତି ତାହା କିନ୍ତୁ ବିଚାରକୁ ନେଇ ନଥିବାରୁ ତାଙ୍କ ଆଲୋଚନା, ସେଥିରେ ଥିବା ପାଣ୍ଡିତ୍ୟର ପରିପ୍ରକାଶ ସତ୍ତ୍ୱେ, ଅପୂର୍ଣ୍ଣ ରହିଛି ଓ ଏପରିକି କିଛି ପରିମାଣରେ ଦିଗହରା ହୋଇପଡ଼ିଛି ବୋଲି ଧାରଣା ହୁଏ ।

ବିଜୟ ପ୍ରସାଦ ମହାପାତ୍ରଙ୍କ ବକ୍ତବ୍ୟ ବ୍ୟତୀତ ଏ ପର୍ଯ୍ୟନ୍ତ ଓଡ଼ିଆ ଭାଷାର ମୃତ୍ୟୁସଙ୍କଟ ନିରାକରଣାର୍ଥେ ଆଲୋଚକମାନେ ଯେଉଁସବୁ ଆବଶ୍ୟକ କାର୍ଯ୍ୟକ୍ରମର ପ୍ରସ୍ତାବ ଦେଇଛନ୍ତି ସେ ମଧ୍ୟରେ ପ୍ରଧାନ ହେଲା: ଓଡ଼ିଶାର ନାମଫଳକ, ଗାଡ଼ିର ନମ୍ବର ଫଳକ ଓ ନିମନ୍ତ୍ରଣ ପତ୍ର ଆଦି ଓଡ଼ିଆ ଲିପି ଓ ଭାଷାରେ ଲେଖାଯାଉ; ଭାଷାବିଜ୍ଞାନୀମାନଙ୍କ ସହାୟତାରେ ବ୍ୟାକରଣ, ଅଭିଧାନ ଓ ବିଭିନ୍ନ ବିଷୟକ ଶବ୍ଦକୋଷ ଆଦି ପ୍ରସ୍ତୁତ କରାଯାଉ ତଥା ଓଡ଼ିଆ ଲିପିର ସଂସ୍କାର ତଥା କମ୍ପ୍ୟୁଟରୀକରଣ ଓ ବନାନର ମାନକୀକରଣ କରାଯାଉ; ବିଦ୍ୟାଳୟ ମହାବିଦ୍ୟାଳୟରେ ବିଶେଷ ଭାବରେ ଇଂରାଜୀ ମିଡିୟମ ସ୍କୁଲ ଓ ମହାବିଦ୍ୟାଳୟର ବୃତ୍ତିଭିତ୍ତିକ ପାଠ୍ୟକ୍ରମ ଓ ଏପରିକି ବୃତ୍ତିଭିତ୍ତିକ ମହାବିଦ୍ୟାଳୟରେ ମଧ୍ୟ ବାଧ୍ୟତାମୂଳକ ଭାବରେ ଓଡ଼ିଆ ଭାଷା ଶିକ୍ଷା ହେବାର ପ୍ରଚେଷ୍ଟା କରାଯାଉ; ପୁଣି ବିଦ୍ୟାଳୟ ଓ ମହାବିଦ୍ୟାଳୟରେ ଓଡ଼ିଆ ଶିକ୍ଷାଦାନକୁ ଭାଷାବିଜ୍ଞାନ ସହାୟତାରେ ଅଧିକ ଉନ୍ନତ କରାଯାଉ; ସରକାରୀ ଅଫିସରେ ବାଧ୍ୟତାମୂଳକ ଭାବରେ ଓଡ଼ିଆ ଭାଷାର ବ୍ୟବହାର କରାଯାଉ ; ସଭାସମିତି, ଆଲୋଚନାଚକ୍ର ଓ ଆନ୍ଦୋଳନ ଆଦି ମାଧ୍ୟମରେ ଏ ସଂପର୍କୀୟ ସଚେତନତା ସୃଷ୍ଟି ପାଇଁ ତଥା ଓଡ଼ିଆ ଭାଷାଭାଷୀଙ୍କ ହୀନମନ୍ୟତା ଦୂରୀକରଣ ପାଇଁ ଉଦ୍ୟମ କରାଯାଉ ଇତ୍ୟାଦି । ଏଇ ପ୍ରସ୍ତାବିତ କାର୍ଯ୍ୟକ୍ରମଗୁଡ଼ିକ ଯେତେ ଗୁରୁତ୍ୱପୂର୍ଣ୍ଣ ବୋଲି ଧାରଣା ଦିଆଯାଉଛି ତା' ଠିକ୍ ପ୍ରକୃତରେ ସେତେ ଗୁରୁତ୍ୱପୂର୍ଣ୍ଣ ନୁହେଁ । ତା' ଉପରେ ଆବଶ୍ୟକତା ଅପେକ୍ଷା ଅଧିକ ଗୁରୁତ୍ୱ ଆରୋପ କରି ଆମେ ସମସ୍ୟାର ପ୍ରକୃତ ଅବରୋଧକୁ ଦୂରେଇ ଯାଉଛୁ । ଏ ସମସ୍ୟା ସମାଧାନର ଅନ୍ୟ ଏକ ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ ଦିଗ ସଂପର୍କରେ ସଚେତନ ହେବା ସର୍ବାଦୌ ଆବଶ୍ୟକ ।

ପ୍ରକୃତରେ ଏହା କେବଳ ଓଡ଼ିଆ ଭାଷାର ସମସ୍ୟା ନୁହେଁ, ଊଣା ଅଧିକେ ବର୍ତ୍ତମାନ ପ୍ରାୟ ସବୁ ଭାରତୀୟ ଭାଷାଗୁଡ଼ିକର ସମସ୍ୟା । ଅବଶ୍ୟ ସଂଖ୍ୟା ଦୃଷ୍ଟିରୁ ଅତ୍ୟନ୍ତ ଶକ୍ତିଶାଳୀ

ଭାଷା 'ହିନ୍ଦୀ' ପାଇଁ ଏ ସମସ୍ୟା ହୁଏତ ଗୁରୁତର ନୁହେଁ । କିନ୍ତୁ ହିନ୍ଦୀ ଭାଷାଭାଷୀ ଅଞ୍ଚଳରେ, ଏପରିକି ଗ୍ରାମାଞ୍ଚଳରେ ଏବେ ଇଂରାଜୀ ଶିଖିବାର ଆଗ୍ରହ ଦ୍ରୁତଗତିରେ ବୃଦ୍ଧି ପାଇଛି ଓ ପାଉଛି । ସେଠାରେ ମଧ୍ୟ ଇଂରାଜୀ ମିଡିୟମ ବିଦ୍ୟାଳୟରେ ପିଲାଙ୍କୁ ପଢାଇବା ପାଇଁ ଭିଡ଼ ବଢି ଚାଲିଛି (ବୋଲି ମତେ ଉତ୍ତର ଭାରତର ହିନ୍ଦୀ ଭାଷା ଓ ସାହିତ୍ୟର ଜଣେ ପ୍ରଫେସର କହିଛନ୍ତି) । ବଙ୍ଗଳା ଭାଷା ପକ୍ଷରେ ମଧ୍ୟ ଅନୁରୂପ ଉକ୍ତି ସତ୍ୟ । ମନେରଖିବା ପାଇଁ ହେବ ଯେ ବଙ୍ଗଳା ପଛରେ କେବଳ ଭାରତର ଗୋଟିଏ ଜନବହୁଳ ରାଜ୍ୟ ପଶ୍ଚିମବଙ୍ଗ ନାହିଁ, ଗୋଟିଏ ସ୍ୱତନ୍ତ୍ର ଓ ସାର୍ବଭୌମ ରାଷ୍ଟ୍ର ବାଂଲାଦେଶ ମଧ୍ୟ ରହିଛି । ତା'ସତ୍ତ୍ୱେ ସେସବୁ ଭାଷାଭାଷୀ ଅଞ୍ଚଳରେ ଇଂରାଜୀ ଶିଖିବାର ଅତ୍ୟଧିକ ଆଗ୍ରହ ପଛରେ କି ମନୋବୃତ୍ତି କାମକରୁଛି ତା'ମଧ୍ୟ ବୁଝି ରଖିବା ଦରକାର । କିନ୍ତୁ ହିନ୍ଦୀ ଓ ବଙ୍ଗଳା ଭାଷା ଏତେ ସବଳ ଯେ ସେ ସଂପର୍କରେ ବିଶେଷ ଆତଙ୍କିତ ହେବାର କାରଣ ଅପେକ୍ଷାକୃତ କମ୍ । ତେବେ ଅନ୍ୟ ଭାରତୀୟ ଭାଷାଗୁଡ଼ିକ କ୍ଷେତ୍ରରେ ଏ ସମସ୍ୟା ଅପେକ୍ଷାକୃତ ତୀବ୍ର । ଉଦାହରଣ ସ୍ୱରୂପ, କର୍ଣ୍ଣାଟକରେ କନ୍ନଡ଼- ପ୍ରେମୀମାନେ ମଧ୍ୟ ଅନୁରୂପ ପରିସ୍ଥିତିରେ ଆଶଙ୍କିତ । ବାଙ୍ଗାଲୋର ପରି ନଗରୀରେ କନ୍ନଡ଼ ଭାଷା ଆଦୌ ନ ଜାଣି ବର୍ଷ ବର୍ଷ ଧରି ବସବାସ କରୁଥିବା ବହୁ ବ୍ୟକ୍ତି ଅଛନ୍ତି । ପୁଣି National University for Education planning and Administration (NUEPA) ସଂଗୃହୀତ ତଥ୍ୟ ଅନୁଯାୟୀ ୨୦୦୩-୦୪ରେ ଭାରତରେ ପ୍ରାଥମିକ ବିଦ୍ୟାଳୟରେ ଯୋଗ ଦେଇଥିବା ଛାତ୍ରଛାତ୍ରୀଙ୍କ ସଂଖ୍ୟା ୧୩କୋଟି ଥିବାବେଳେ ୨୦୦୫-୦୬ ରେ ତାହା ବୃଦ୍ଧି ପାଇ ୧୫କୋଟିରେ ପହଞ୍ଚିଛି । ତେଣୁ ଏମାନଙ୍କ ମଧ୍ୟରେ ଅନ୍ୟ ଭାଷାଭାଷୀଙ୍କ ସହ ପ୍ରାଥମିକ ବିଦ୍ୟାଳୟରେ ଯୋଗ ଦେଇଥିବା କନ୍ନଡ଼ -ଭାଷାଭାଷୀ ଛାତ୍ରଛାତ୍ରୀଙ୍କ ସଂଖ୍ୟା ମଧ୍ୟ ନିଶ୍ଚିତ ଭାବରେ ବୃଦ୍ଧି ପାଇଥିବ । କିନ୍ତୁ ୨୦୦୩-୦୪ ରେ ୬୪ଲକ୍ଷ ଛାତ୍ରଛାତ୍ରୀ କନ୍ନଡ଼ - ମିଡିଅମ ପ୍ରାଥମିକ ବିଦ୍ୟାଳୟରେ ଯୋଗ ଦେଇଥିବା ସମୟରେ ୨୦୦୫-୦୬ ରେ ତାହା ଅତି ଦ୍ରୁତ ଗତିରେ ହ୍ରାସ ପାଇଁ ମାତ୍ର ୫୮ ଲକ୍ଷରେ ପହଞ୍ଚିଛି । ଅର୍ଥାତ୍ ବହୁ କନ୍ନଡ଼ ଭାଷାଭାଷୀ ତାଙ୍କ ପିଲାଙ୍କୁ କନ୍ନଡ଼ ନୁହେଁ ଇଂରାଜୀ ମିଡିଅମ୍ ବିଦ୍ୟାଳୟରେ ପଢାଇବା ପାଇଁ ପସନ୍ଦ କରୁଛନ୍ତି । (କର୍ଣ୍ଣାଟକର ସରକାର ଏବେ ସେ ରାଜ୍ୟର ସବୁ ଛାତ୍ରଛାତ୍ରୀଙ୍କୁ ବାଧ୍ୟ କରି କନ୍ନଡ ପଢାଇବାର ପ୍ରଚେଷ୍ଟା କରୁଛନ୍ତି ଓ ତା' ବିରୁଦ୍ଧରେ ତୀବ୍ର ପ୍ରତିକ୍ରିୟା ବି ପ୍ରକାଶ ପାଉଛି । ) ଓଡ଼ିଆ ଭାଷା ପକ୍ଷରେ ଏ ସମସ୍ୟାର ତୀବ୍ରତା ତ ବହୁ ଗୁଣରେ ଅଧିକ, କାରଣ ବିଭିନ୍ନ କାରଣରୁ ଓଡ଼ିଆ ଗୋଟିଏ ଅତି ଦୁର୍ବଳ ଭାଷା । ତେବେ ପ୍ରଥମେ ଏପରି ସମସ୍ୟା ପଛରେ ଥିବା କାରଣକୁ ବା ତା' ସହ ସଂପର୍କାନ୍ୱିତ ଲୋକଙ୍କ ମାନସିକତାକୁ ଚିହ୍ନି ରଖିବା ଦରକାର ।

ଔପନିବେଶିକ କାଳରେ, ପ୍ରାୟ ଦୁଇ ଶହ ବର୍ଷ କାଳ ଧରି ଇଂରାଜୀ ଭାଷାରେ ଦକ୍ଷତା ସମସ୍ତ ବ୍ୟକ୍ତିଗତ ବିଶେଷତଃ ବୃତ୍ତିଗତ, ଉନ୍ନତିର ମୂଳରେ ବୋଲି ଲୋକମାନଙ୍କର ଯେଉଁ ଅଭିଜ୍ଞତା ଓ ଅନୁଭୂତି ସୃଷ୍ଟି ହୋଇଥିଲା ସ୍ୱାଧୀନତାର ପରବର୍ତ୍ତୀ କାଳରେ ତା'ର ଅବସାନ ହେବ (ବା ଅନ୍ତତଃ ହ୍ରାସ ପାଇବ) ବୋଲି କେତେକ ଆଶା ବାନ୍ଧି ବସିଥିଲେ ମଧ୍ୟ ସେ ଆଶା ଅଚିରେ ତିରୋହିତ ହୋଇଗଲା । ଓଡ଼ିଶାରେ ମଧ୍ୟବିତ୍ତ ଶ୍ରେଣୀର ବହୁ ବ୍ୟକ୍ତି ସ୍ୱାଧୀନତାର ପରବର୍ତ୍ତୀ କାଳରେ ତାଙ୍କ ପିଲାଙ୍କୁ ଇଂରାଜୀ ମିଡିୟମ ସ୍କୁଲରେ ପଢାଇବାର ସୁଯୋଗ ନଥିବାରୁ, ବାଧ୍ୟ ହୋଇ ଓଡ଼ିଆ ମିଡିୟମ ସ୍କୁଲ୍‌ରେ ପଢାଉଥିଲେ ମଧ୍ୟ ଇଂରାଜୀ ଭାଷାରେ ଦକ୍ଷତା ହାସଲ କରିବା ପାଇଁ ଉତ୍ସାହିତ କରିଥିଲେ (ଅବଶ୍ୟ ନିମ୍ନବିତ୍ତ ଶ୍ରେଣୀରେ ସେ ସୁଯୋଗ ମଧ୍ୟ ନଥିଲା) । ଯେଉଁମାନେ ଓଡ଼ିଆ-ମିଡିୟମ୍ ସ୍କୁଲରେ ପଢି ମଧ୍ୟ ଇଂରାଜୀ ଭାଷାରେ ଦକ୍ଷତା ହାସଲ କରିଥିଲେ ସେଇମାନେ ହିଁ ପରବର୍ତ୍ତୀ କାଳରେ ବୃତ୍ତିଗତ ଉନ୍ନତି କରିବାରେ ଅତ୍ୟନ୍ତ ସଫଳ ହୋଇଥିଲେ । (ଏଇମାନେ କେତେଦୂର ସର୍ଜନଶୀଳ ହୋଇଥିଲେ କି ନାହିଁ ସେ ପ୍ରଶ୍ନ ଏଠାରେ ଅବାନ୍ତର କାରଣ ସାଧାରଣ ଲୋକେ ତା' ବିଚାରକୁ ନେବାକୁ ମଧ୍ୟ ପ୍ରସ୍ତୁତ ନଥିଲେ ଓ ଏବେ ବି ନୁହଁନ୍ତି ) । ସେ କାରଣରୁ ଇଂରାଜୀ ଭାଷାରେ ଦକ୍ଷତା ସମସ୍ତ ବ୍ୟକ୍ତିଗତ ଓ ବୃତ୍ତିଗତ ଉନ୍ନତିର ମୂଳରେ ବୋଲି ପୂର୍ବ ଅଭିଜ୍ଞତା ଓ ଅନୁଭୂତି ପ୍ରସୂତ ଧାରଣା ଓ ବିଶ୍ୱାସ ଦୃଢୀଭୂତ ହିଁ ହେଲା । ଓଡ଼ିଶା ଓ ଓଡ଼ିଆ ପକ୍ଷରେ ଯାହା ହୋଇଥିଲା ତାହା ଊଣା ଅଧିକେ ଅନ୍ୟାନ୍ୟ ଭାରତୀୟ ରାଜ୍ୟ ଓ ଭାଷା କ୍ଷେତ୍ରରେ ବି ହୋଇଥିଲା(ଏପରି କି ଗୁଜୁରାଟ ଓ ପଶ୍ଚିମବଙ୍ଗରେ ବିପରୀତ ପରୀକ୍ଷା-ନିରୀକ୍ଷା ମଧ୍ୟ ବିଫଳ ହୋଇଥିଲା ) । ଏପରି ଧାରଣା ଓ ବିଶ୍ୱାସ ଜନିତ ମାନସିକତା ହେତୁ ତାଙ୍କ ପିଲା ଇଂରାଜୀ ଭାଷାରେ ଦକ୍ଷ ହେଉ ବୋଲି ପ୍ରତ୍ୟେକ ବାପା ମାଆ ଚାହୁଁଛନ୍ତି ଓ ଯେଉଁଠାରେ ସମ୍ଭବ ଇଂରାଜୀ ମିଡିୟମ ସ୍କୁଲ୍‌ରେ ପିଲାଙ୍କୁ ପଢାଉଛନ୍ତି ।ସେଇ (NUEPA) ସଂଗୃହୀତ ତଥ୍ୟ ଅନୁଯାୟୀ ୨୦୦୩ - ୦୪ରେ ଭାରତରେ ଇଂରାଜୀ- ମିଡିୟମ୍ ପ୍ରାଥମିକ ବିଦ୍ୟାଳୟମାନଙ୍କରେ ଯେଉଁ ୪୫ଲକ୍ଷ ଛାତ୍ରଛାତ୍ରୀ ଯୋଗ ଦେଇଥିବା ସମୟରେ ୨୦୦୫-୦୬ ରେ ତାହା ବୃଦ୍ଧି ପାଇ ୯୫ ଲକ୍ଷରେ ପହଞ୍ଚିଛି । ଇଂରାଜୀ ଶିକ୍ଷା ପ୍ରତି ଆଗ୍ରହ କେତେ ଦ୍ରୁତଗତିରେ ବୃଦ୍ଧି ଲାଭ କରୁଛି ତାହା ଏଥିରୁ ଜଣାଯାଏ ।

ପୁଣି ଇଂରାଜୀ ଭାଷାରେ ଦକ୍ଷତା ହେଲେ ବ୍ୟକ୍ତିଗତ ବା ବୃତ୍ତିଗତ ଉନ୍ନତି ହେବାର ସମ୍ଭାବନା ବହୁ ଗୁଣରେ ବୃଦ୍ଧି ପାଇବ, ଏହା କେବଳ ଗୋଟିଏ ସୀମିତ ଅଭିଜ୍ଞତାପ୍ରସୂତ ଧାରଣା ନୁହେଁ । ଏହାର କାରଣ ମଧ୍ୟ ଅଛି । ତାହା ହେଉଛି ସମସ୍ତ ପ୍ରକାର ବୌଦ୍ଧିକ

କୌତୂହଳ ଓ ଜିଜ୍ଞାସାକୁ ପରିତୃପ୍ତ କରିବାରେ ସମର୍ଥ । ଇଂରାଜୀ ଭାଷାରେ ଥିବା ପୃଥିବୀର ବୃହତ୍ତମ ଜ୍ଞାନର ଭଣ୍ଡାର ବା ଇଂରାଜୀ ଭାଷାରେ ଉପଲବ୍ଧ ବିଭିନ୍ନ ବିଷୟକ ତଥ୍ୟ ଓ ଉଚ୍ଚ ଚିନ୍ତାସମ୍ବଳିତ, ଜ୍ଞାନଗର୍ଭକ, ପ୍ରଜ୍ଞାଦୀପ୍ତ ଓ ଗବେଷଣାତ୍ମକ ବହୁ ପୁସ୍ତକ ଓ ପତ୍ରପତ୍ରିକା । ଆଉ ଆମ ଉତ୍ତରପୁରୁଷମାନେ ଠିକ୍ ସେହିପରି ପୁସ୍ତକ ଓ ପତ୍ରପତ୍ରିକା ଖୋଜୁଛନ୍ତି । ସେମାନେ ଜାଣିଛନ୍ତି ଯେ ସେମାନଙ୍କର ଜୀବିକାର୍ଜନ ତଥା ବୌଦ୍ଧିକ ବିକାଶ ପାଇଁ ଏପରି ପୁସ୍ତକ ତଥା ପତ୍ରପତ୍ରିକାର ଅଧ୍ୟୟନ ଏକାନ୍ତ ଆବଶ୍ୟକ । ପକ୍ଷାନ୍ତରରେ ପ୍ରତ୍ୟେକ ଭାରତୀୟ ଭାଷାରେ ଥିବା ଜ୍ଞାନର ଭଣ୍ଡାର ଇଂରାଜୀ ଭାଷାରେ ଥିବା ଜ୍ଞାନର ଭଣ୍ଡାର ତୁଳନାରେ ଅତ୍ୟନ୍ତ କ୍ଷୁଦ୍ର । ଇଂରାଜୀ ଭାଷାରେ ଦକ୍ଷତା ଏକ ବିରାଟ ଜ୍ଞାନ ଭଣ୍ଡାରର ଦ୍ୱାର ଉନ୍ମୋଚନ କରିପାରୁଥିବାରୁ ତାହା ବ୍ୟକ୍ତିଗତ ବା ବୃତ୍ତିଗତ ଉନ୍ନତିରେ ସହାୟକ ହେବାରେ ବିସ୍ମିତ ହେବାର କିଛି ନାହିଁ କାରଣ ଜ୍ଞାନ ହିଁ ଶକ୍ତି । ସେ କାରଣରୁ ଇଂରାଜୀ ନ ଜାଣିବା ବ୍ୟକ୍ତିର ଦୃଷ୍ଟିକୋଣ ଅପେକ୍ଷାକୃତ ସଂକୀର୍ଣ୍ଣ ହେବା ମଧ୍ୟ ଅତ୍ୟନ୍ତ ସ୍ୱାଭାବିକ । ତେଣୁ ଯେଉଁମାନଙ୍କର ବ୍ୟକ୍ତିଗତ ବା ବୃତ୍ତିଗତ ଉନ୍ନତିର ଅଭୀପ୍ସା ତଥା କିଛି ସୁଯୋଗ ରହିଛି ସେମାନେ ସୁବିଧା ପାଇଲେ ଏକ ବିରାଟ ଜ୍ଞାନ ଭଣ୍ଡାରର ସହାୟତା ନେବାକୁ ତଥା ନିଜର ଦୃଷ୍ଟିକୋଣକୁ ପ୍ରସାରିତ କରିବାକୁ ଇଂରାଜୀ ଶିଖିବା ପାଇଁ ଅଧିକ ଆଗ୍ରହ ପ୍ରକାଶ କରୁଛନ୍ତି । ତାହା ମଧ୍ୟ ଆଦୌ ବିସ୍ମୟଜନକ ନୁହେଁ । ତା' ବ୍ୟତୀତ ଏପରି ଉନ୍ନତି ପାଇଁ ଗୋଟିଏ ଭାଷାଭାଷୀ ଅଞ୍ଚଳ ବା ରାଜ୍ୟର ସଂକୀର୍ଣ୍ଣ ଗଣ୍ଡି ପାର ହେବା ମଧ୍ୟ ଆବଶ୍ୟକ । ଏଣୁ ଇଂରାଜୀ ଭାଷା ହୋଇପଡିଛି ସେଇ ସଂକୀର୍ଣ୍ଣ ଗଣ୍ଡିରୁ ମୁକ୍ତି ଲାଭ କରିବାର ବାଟ; ହୋଇପଡ଼ିଛି ବାହାର ଜଗତ ସହ ଯୋଗାଯୋଗ ସ୍ଥାପନ କରିବାର ଏକ ନିର୍ଭରଶୀଳ ସେତୁ । ଏହା ସହ ବର୍ତ୍ତମାନ ଯୋଡ଼ି ହୋଇଯାଇଛି ଜଗତ୍‌କରଣ । ବିରାଟ ବିଶ୍ୱ ସହ ଯୋଗାଯୋଗ ସ୍ଥାପନ ଓ ଭାବଗତ ତଥା ଅନ୍ୟାନ୍ୟ ବୈଷୟିକ ଆଦାନ ପ୍ରଦାନ ପାଇଁ ଇଂରାଜୀ ଭାଷା ଆଜି ଏକାନ୍ତ ଆବଶ୍ୟକତାରେ ପରିଣତ ହୋଇଛି । ଫଳରେ ଇଂରାଜୀ କେବଳ ବିଶ୍ୱକୁ ଗବାକ୍ଷ ନୁହେଁ, ବିରାଟ ବିଶ୍ୱସହ ଯୋଗାଯୋଗ ସ୍ଥାପନ କରିବାରେ ସେତୁର ଭୂମିକା ମଧ୍ୟ ନିର୍ବାହ କରିଛି । ଏ ପରିସ୍ଥିତିରେ ପିଲାଙ୍କ ଭବିଷ୍ୟତ ବ୍ୟକ୍ତିଗତ ଓ ବୃତ୍ତିଗତ ଉନ୍ନତି ପାଇଁ ଇଂରାଜୀ ଶିଖିବା ଏକାନ୍ତ ଆବଶ୍ୟକ ବୋଲି ବାପା ମାଆଙ୍କର ଯେଉଁ ଧାରଣା, ବିଶ୍ୱାସ ଓ ମାନସିକତା ଥିଲା ତା'ର ତୀବ୍ରତା ମଧ୍ୟ ବହୁ ପରିମାଣରେ ବୃଦ୍ଧି ଲାଭ କରିଛି ।

ବହୁ ଭାରତୀୟ ଭାଷା ଅପେକ୍ଷା ଓଡ଼ିଆ ପକ୍ଷରେ ଏହା ଅଧିକ ସତ୍ୟ, କାରଣ ଜନସଂଖ୍ୟା ଓ ଶିକ୍ଷିତ ସଂଖ୍ୟା ଦୃଷ୍ଟିରୁ ଓଡ଼ିଆ ଏକ ଅତି ଦୁର୍ବଳ ଭାଷା । କେବଳ ଇଂରାଜୀ ନୁହେଁ, ଓଡ଼ିଆର ପଡ଼ୋଶୀ ହିନ୍ଦୀ, ବଙ୍ଗଳା ଓ ତେଲୁଗୁ – ଏ ତିନିଗୋଟି ଭାଷା ପଛରେ ଥିବା

ରାଜ୍ୟଗୁଡ଼ିକ ଅପେକ୍ଷା ଓଡ଼ିଆ ଭାଷା ପଛରେ ଥିବା ଓଡ଼ିଶା ଏକ ଦରିଦ୍ର(ବୋ ଦୁର୍ବଳ) ରାଜ୍ୟ; ରାଜନୀତିକ ଦୃଷ୍ଟିରୁ ମଧ୍ୟ ପଡ଼ୋଶୀ ତିନି ଭାଷାଭାଷୀଙ୍କ ଅପେକ୍ଷା ଓଡ଼ିଆ ଭାଷାଭାଷୀ ସାଂସଦମାନଙ୍କ ସଂଖ୍ୟା କମ୍ ଓ ପରିଶେଷରେ ଓଡ଼ିଆ ଭାଷାରେ ଥିବା ଜ୍ଞାନର ଭଣ୍ଡାର ମଧ୍ୟ ପଡ଼ୋଶୀ ହିନ୍ଦୀ, ବଙ୍ଗଳା ଓ ତେଲୁଗୁ ତୁଳନାରେ କ୍ଷୁଦ୍ର । ସେ କାରଣରୁ ମଧ୍ୟ ପଡ଼ୋଶୀ ଶକ୍ତିଶାଳୀ ଭାଷାଗୁଡ଼ିକର ଚାପ ଓଡ଼ିଆ ଉପରେ ପଡୁଛି । ତେଣୁ ବହୁ ଦିଗରୁ ଅତ୍ୟନ୍ତ ଦୁର୍ବଳ ଓଡ଼ିଆ ଭାଷାକୁ କେବଳ ଜାଣିଥିଲେ ଓ କେବଳ ସେଥିରେ ଥିବା ଅପେକ୍ଷାକୃତ କ୍ଷୁଦ୍ର ଜ୍ଞାନ ଭଣ୍ଡାରର ସହାୟତା ନେଲେ ବ୍ୟକ୍ତିଗତ ଓ ବୃତ୍ତିଗତ ଉନ୍ନତି ସୁଦୂରପରାହତ ହୋଇପଡ଼ିବ ନାହିଁ କି ? ଓଡ଼ିଆ ଭାଷାଭାଷୀଙ୍କ ସଂଖ୍ୟା କ୍ରମାଗତ ଭାବରେ ବୃଦ୍ଧିଲାଭ କରୁଥିଲେ ହେଁ ଓଡ଼ିଆ ମିଡିୟମ ସ୍କୁଲରେ ଯୋଗ ଦେଉଥିବା ଛାତ୍ରଛାତ୍ରୀଙ୍କ ସଂଖ୍ୟା କିନ୍ତୁ ହ୍ରାସ ପାଇବାରେ ଲାଗିଛି । ସେଇ ସଂଗୃହୀତ ତଥ୍ୟ ଅନୁଯାୟୀ ୨୦୦୩-୦୪ ରେ ୫୬ ଲକ୍ଷରେ ପହଞ୍ଚିଛି । ଏଥିରୁ ଗତି କୁଆଡ଼େ ତାହା ସହଜରେ ଜଣି ହେବ । ଏପରି ଚାପରେ ଓଡ଼ିଆ ଶ୍ୱାସରୁଦ୍ଧ ହୋଇ ତା' କ୍ରମେ ମୃତ୍ୟୁବରଣ କରିବା; ଅଥବା କେବଳ (୧) ସ୍ୱଳ୍ପ ଶିକ୍ଷିତ ଓ (୨) ଶିକ୍ଷାରୁ ବଞ୍ଚିତ ଲୋକଙ୍କ ଭାଷା ଭାବରେ ବଞ୍ଚି ରହିବା ମଧ୍ୟ ଅସମ୍ଭବ ନୁହେଁ ।

ଓଡ଼ିଆ ଭାଷାଭାଷୀଙ୍କ ସଂଖ୍ୟା ବୃଦ୍ଧି କରାଇବା ସହଜ ନୁହେଁ ବା ତା' ଶୀଘ୍ର ହୋଇପାରିବ ନାହିଁ । ସେହିପରି ଓଡ଼ିଶାକୁ ଏକ ଧନୀ ବା ବିତ୍ତଶାଳୀ ରାଜ୍ୟରେ ପରିଣତ କରାଇବା ବା ଓଡ଼ିଆମାନଙ୍କୁ ଧନୀ କରାଇବା ମଧ୍ୟ ସହଜ ନୁହେଁ । ତେବେ ଶିକ୍ଷିତ ଓଡ଼ିଆମାନଙ୍କ ସଂଖ୍ୟା ବୃଦ୍ଧି ଓ ଓଡ଼ିଆ ଭାଷାରେ ଜ୍ଞାନର ଭଣ୍ଡାରକୁ ବୃଦ୍ଧି, ଋଦ୍ଧିମନ୍ତ କରାଇବା ଅପେକ୍ଷାକୃତ ବାସ୍ତବ କାର୍ଯ୍ୟକ୍ରମ । ବର୍ତ୍ତମାନ ଏହି କାର୍ଯ୍ୟକ୍ରମ ଉପରେ ଗୁରୁତ୍ୱ ଦେବା ଏକାନ୍ତ ଆବଶ୍ୟକ । ଓଡ଼ିଆ ଭାଷାର ପ୍ରତ୍ୟେକ ଉନ୍ନତିକାମୀ ବର୍ତ୍ତମାନ ସେ ଦିଗରେ କେବଳ ଯତ୍ନବାନ ନୁହେଁ, ତତ୍ପର ହେବା ଏକାନ୍ତ କାମ୍ୟ । ଆମେ ସମସ୍ୟାଟିକୁ ଠିକ୍ ଭାବରେ ବୁଝିନଥିବାରୁ ତଥା ତା'ର ସମାଧାନରେ ଅପେକ୍ଷାକୃତ ଗୁରୁତ୍ୱହୀନ ବିଷୟ ଉପରେ ଅଯଥା ଅଧିକ ଗୁରୁତ୍ୱ ଦେଇଥିବାରୁ ବହୁ ବିଳମ୍ବ ହୋଇଗଲାଣି । ତେଣୁ ଯୁଦ୍ଧକାଳୀନ ଭିତ୍ତିରେ ହିଁ ସେ କାମ କରିବା ପାଇଁ ହେବ । କବିଙ୍କ ଭାଷାରେ କହିଲେ, 'ବେଳ ନାହିଁ ବେଳ ନାହିଁ କଙ୍କାଳ ଟେକ ଚଞ୍ଚଳ ମଥା' ।

ଅବଶ୍ୟ ଓଡ଼ିଆ ଭାଷାରେ ଜ୍ଞାନର ଭଣ୍ଡାରକୁ ଯେତେ ବୃଦ୍ଧି କଲେ ମଧ୍ୟ ଇଂରାଜୀ ଭାଷା ଉପରେ ଆମକୁ ନିର୍ଭର କରିବା ପାଇଁ ହେବ । କାରଣ ଇଂରାଜୀ ଭାଷାରେ ଥିବା ଜ୍ଞାନ ଭଣ୍ଡାର ତୁଲ୍ୟ ଜ୍ଞାନର ଭଣ୍ଡାର ଗଢ଼ିତୋଳିବା ସହଜ ବା ଏପରିକି ହୁଏତ ସମ୍ଭବ ମଧ୍ୟ

ନୁହେଁ । ପୁଣି ଇଂରାଜୀ ଭାଷାର ଜ୍ଞାନର ଭଣ୍ଡାର ମଧ୍ୟ ଅତି ଦ୍ରୁତ ଗତିରେ ବୃଦ୍ଧିଲାଭ କରିବାରେ ଲାଗିଛି । ତା' ସହ ତାଳ ମିଳାଇବା ମଧ୍ୟ ସହଜ ଓ ସମ୍ଭବ ନୁହେଁ । ତା' ବ୍ୟତୀତ ଇଂରାଜୀ ଭାଷା ହୋଇରହିବ ଆମର ବିଶ୍ୱକୁ ଗବାକ୍ଷ; ହୋଇରହିବ ବାହାର ଜଗତ-ସହ ଓଡ଼ିଆ ଭାଷାଭାଷୀ ଅଞ୍ଚଳର ବାହାରେ ଥିବା, ବିଶେଷ ଭାବରେ ଭାରତ ବାହାରେ ଥିବା ଜଗତ ସହ ଭାବଗତ ତଥା ଜ୍ଞାନବିଜ୍ଞାନଗତ ଆଦାନପ୍ରଦାନ, ଯୋଗାଯୋଗ ଓ ସଂପର୍କରେ ସେତୁ । ତେଣୁ ଆମର ଉତ୍ତରପୁରୁଷମାନେ ନିଶ୍ଚୟ ଇଂରାଜୀ ଭାଷା ଉପରେ ନିର୍ଭରଶୀଳ ହୋଇରହିବେ,ଅଦୂର ବା ଦୂର ଭବିଷ୍ୟତରେ ମଧ୍ୟ । ସେମାନେ ସୁବିଧା ସୁଯୋଗ ପାଇଲେ ଇଂରାଜୀ ଭାଷା ଶିଖିବେ ଓ ତାଙ୍କ ପିତା ମାତାମାନେ ମଧ୍ୟ ସେମାନଙ୍କୁ ସେ ଦିଗରେ ଉତ୍ସାହିତ କରିବେ ଓ ତାହା ପ୍ରତ୍ୟାଶିତ ତଥା କାମ୍ୟ । କିନ୍ତୁ ଓଡ଼ିଆ ଭାଷାରେ ଗୋଟିଏ ବଡ଼ ଜ୍ଞାନର ଭଣ୍ଡାର ଗଢାହୋଇ ପାରିଲେ ଇଂରାଜୀ ଭାଷା ଉପରେ ନିର୍ଭରଶୀଳତା ବେଶ୍ କିଛି ପରିମାଣରେ ହ୍ରାସ ପାଇବ; ଏପରିକି କେତେକଙ୍କ ପକ୍ଷରେ ବହୁ ପରିମାଣରେ । ଆଉ ଏପରି ଏକ ଜ୍ଞାନର ଭଣ୍ଡାର ଗଢା ହୋଇପାରିଲେ ବହୁ ବ୍ୟକ୍ତି ତା'ର ଉପଯୋଗ କରିବେ ଓ ତା' ଫଳରେ ଅନ୍ତତଃ କିଛି ପରିମାଣରେ ସେମାନଙ୍କର ଦୃଷ୍ଟିକୋଣ ପ୍ରସାରିତ ଓ ଆତ୍ମପ୍ରତ୍ୟୟ ବୃଦ୍ଧି ପାଇ ହୀନମନ୍ୟତା ମଧ୍ୟ ହ୍ରାସ ପାଇବ ।

ଉପରୋକ୍ତ ଆଲୋଚନା ପରିପ୍ରେକ୍ଷୀରେ ବର୍ତ୍ତମାନ ଏ ପର୍ଯ୍ୟନ୍ତ ପ୍ରସ୍ତାବିତ କାର୍ଯ୍ୟକ୍ରମଗୁଡ଼ିକ ସଂପର୍କରେ କିଛି ଆଲୋଚନା କରାଯାଉ । ପ୍ରଥମେ ବାଧ୍ୟବାଧକତାର କଥା । ଜୋରଜବରଦସ୍ତିରେ ଓଡ଼ିଆ ପଢାଇଲେ ବା ବିଦ୍ୟାଳୟ ଓ ମହାବିଦ୍ୟାଳୟ ସ୍ତରରେ ଓଡ଼ିଆ ଭାଷାର ଅଧ୍ୟାପନାକୁ ବାଧ୍ୟତାମୂଳକ କଲେ ମଧ୍ୟ ଓଡ଼ିଆ ଭାଷାକୁ ତା'ର ମୃତ୍ୟୁ ସଙ୍କଟରୁ ରକ୍ଷା କରିବା ସମ୍ଭବ ହୋଇ ନପାରେ । କାରଣ ଘୋଡ଼ାକୁ ଜୋର କରି ପାଣି ପାଖକୁ ନିଆଯାଇପାରେ, କିନ୍ତୁ ତାକୁ ପାଣି ପେଇବା ସମ୍ଭବ ହେବ କି ? (ମହାବିଦ୍ୟାଳୟ ସ୍ତରରେ ଓଡ଼ିଆ ଭାଷା ଓ ସାହିତ୍ୟ ଅଧ୍ୟାପନାକୁ ବାଧ୍ୟତାମୂଳକ କଲେ ଓଡ଼ିଆ ଅଧ୍ୟାପକଙ୍କ ସଂଖ୍ୟା ବୃଦ୍ଧି ହେବ ଓ ତା' ଫଳରେ ଓଡ଼ିଆ ଭାଷା ତା'ର ମୃତ୍ୟୁ ସଙ୍କଟରୁ ରକ୍ଷା ପାଇବ ବୋଲି କେତେକ ବିଶ୍ୱାସ କରନ୍ତି । ପଚାଶ ବର୍ଷ ପୂର୍ବେ ସ୍ନାତକୋତ୍ତର ଓଡ଼ିଆ ଅଧ୍ୟାପନା ମାତ୍ର ଦୁଇଗୋଟି ସ୍ଥାନରେ କରାଯାଇଥିଲା । ରେଭେନ୍ସା କଲେଜ ଓ ଶାନ୍ତିନିକେତନସ୍ଥ ବିଶ୍ୱଭାରତୀ ବିଶ୍ୱବିଦ୍ୟାଳୟ । ସେତେବେଳେ ଓଡ଼ିଆ ଅଧ୍ୟାପକଙ୍କ ସଂଖ୍ୟା ମଧ୍ୟ ବହୁତ କମ୍ ଥିଲା ତଥା ସେମାନଙ୍କର ଦରମା ହାର ମଧ୍ୟ କମ୍ ଥିଲା । ଏପରିକି ବିଶ୍ୱଭାରତୀର ଅଧ୍ୟାପକଙ୍କ ଦରମା ହାର ଓଡ଼ିଶା ସରକାରଙ୍କ ଅଧୀନରେ କାର୍ଯ୍ୟରତ ଅଧ୍ୟାପକଙ୍କ ଦରମା ହାର ଅପେକ୍ଷା

କମ୍ ଥିଲା । ୨୦୦୦ବେଳକୁ ଓଡ଼ିଆ ଅଧ୍ୟାପକଙ୍କ ସଂଖ୍ୟାବୃଦ୍ଧିର ଓତଃପ୍ରୋତ ବା ନିଶ୍ଚିତ ସଂପର୍କ ନାହିଁ, ଯାହା ପ୍ରଚାର ଓ ବିଶ୍ୱାସ କରାଯାଏ । ୟୁଜିସି ନିର୍ଦ୍ଧାରିତ ହାରରେ ଦରମା ପାଉଥିବା କେତେକ ଓଡ଼ିଆ ଅଧ୍ୟାପକ ଅତ୍ୟନ୍ତ ନିମ୍ନମାନର ଗବେଷଣା ନିବନ୍ଧ ଲେଖି ବା ଲେଖାଇ ଓ ସମାଲୋଚନାତ୍ମକ ପ୍ରବନ୍ଧ ପ୍ରକାଶ କରି ସମାଲୋଚନା/ଗବେଷଣା କ୍ଷେତ୍ରରେ ଆବର୍ଜନା ସୃଷ୍ଟି କରିଛନ୍ତି ମାତ୍ର । ସେମାନଙ୍କ ମଧ୍ୟରୁ କେତେକ ଯେପରି ଓଡ଼ିଆ ପୁସ୍ତକ/ ପତ୍ରିକା କିଣନ୍ତି ବା ପଢନ୍ତି ନାହିଁ ସେହିପରି ଆଉ କେତେକ କ୍ଷମତାସୀନ ବା ପ୍ରଭାବଶାଳୀ ସର୍ଜନାତ୍ମକ ସାହିତ୍ୟିକଙ୍କ ଅବଦାନର କେବଳ ଉଚ୍ଛ୍ୱସିତ ପ୍ରଶଂସାମୂଳକ ସମାଲୋଚନା ଲେଖି ସମାଲୋଚନା ରାଜ୍ୟରେ ଏକ ଅସୁନ୍ଦର ଓ ଅସ୍ୱାଦ୍ୟ ପରମ୍ପରା ସୃଷ୍ଟି କରିବାରେ ଲାଗିଛନ୍ତି, ହୁଏତ କଟକ/ଭୁବନେଶ୍ୱରର ଅବସ୍ଥାପିତ ହେବା ବା ବୃତ୍ତିଗତ ଉନ୍ନତି ବା ସାହିତ୍ୟ କ୍ଷେତ୍ରରେ ଆନୁଷ୍ଠାନିକ ସ୍ୱୀକୃତି ଅର୍ଜନ ଉଦ୍ଦେଶ୍ୟରେ । ଏହାଦ୍ୱାରା ଓଡ଼ିଆ ଭାଷାର କି ଉନ୍ନତି ବା ହୋଇଛି ଅଥବା ହେବ ? ଆମେ ଆମ ଉତ୍ତରପୁରୁଷମାନଙ୍କର ଓଡ଼ିଆ ଭାଷା ପ୍ରତି ଅନାଗ୍ରହର କାରଣ କ'ଣ ପ୍ରଥମେ ଅନୁସନ୍ଧାନ କରିବା ଦରକାର । ତା' ନକରି କେବଳ ବାଧ୍ୟତାମୂଳକ ଭାବରେ ତାଙ୍କୁ ଓଡ଼ିଆ ଶିକ୍ଷା ଦେଲେ ତା' ଶେଷରେ ଓଡ଼ିଆ ପ୍ରତି ସେମାନଙ୍କ ବିରାଗ ତଥା ବିତୃଷ୍ଣାରେ ପରିଣତ ହେବ ଓ ପରବର୍ତ୍ତୀ ସମୟରେ ସେମାନେ ତାହାକୁ ଉପେକ୍ଷା ହିଁ କରିବେ । ତେଣୁ ପ୍ରଥମେ ଏପରି ଅନାଗ୍ରହର କାରଣ ଖୋଜି ବାହାର କଲେ ହିଁ ପରେ ତାହା ନିରାକରଣର ଉପାୟ ବାହାର କରିବା ତଥା ଓଡ଼ିଆ ଭାଷା ପ୍ରତି ସେମାନଙ୍କର ଆଗ୍ରହ ବୃଦ୍ଧି କରାଇବା ଅପେକ୍ଷାକୃତ ଅଧିକ ସହଜ ହୋଇଯିବ । ବହୁବର୍ଷ ପୂର୍ବେ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ 'ଆଧୁନିକ ଓଡ଼ିଆ ସାହିତ୍ୟର ବାଣିଜ୍ୟ ମୂଲ୍ୟ' ବିଷୟକ ପ୍ରଶ୍ନ ଉଠାଇଥିଲେ । ଏବେ ସେହିପରି ଓଡ଼ିଆ ଭାଷାର 'ବାଣିଜ୍ୟ ମୂଲ୍ୟ' ବିଷୟକ ପ୍ରଶ୍ନ ଉଠାଇଥିଲେ । ଏବେ ସେହିପରି ଓଡ଼ିଆ ଭାଷାର 'ବାଣିଜ୍ୟ ମୂଲ୍ୟ' ସଂପର୍କୀୟ ଆଲୋଚନାର ଆବଶ୍ୟକତା ଅଛି । ଓଡ଼ିଆ ଭାଷାର ବାଣିଜ୍ୟ ମୂଲ୍ୟ ବୃଦ୍ଧି କରାଇ ନପାରିଲେ ତାହାକୁ ରକ୍ଷା କରିବା ସହଜ ବା ଏପରିକି ସମ୍ଭବ ହୋଇପାରିବ ନାହିଁ । ଏକବିଂଶ ଶତାବ୍ଦୀର ଏ ଜଗତ୍‌କରଣ ଯୁଗରେ ଓ ବଜାର ଅର୍ଥନୀତି ଉପରେ ନିର୍ଭରଶୀଳ ସମାଜରେ ପୃଥିବୀର ସବୁ ଭାଷା ତା' ମଧ୍ୟରେ ଓଡ଼ିଆ ଭାଷା ମଧ୍ୟ ଅନ୍ତର୍ଗତ -କ୍ରୟ ବିକ୍ରୟର ସାମଗ୍ରୀ ବା ପଣ୍ୟଦ୍ରବ୍ୟ /ବସ୍ତୁ ହୋଇଯାଇଛି ଓ ତାହାକୁ ଏକ ପଣ୍ୟଦ୍ରବ୍ୟ ରୂପେ ହିଁ ଦେଖିବା ପାଇଁ ହେବ । ଆଜିକୁ ଚାଳିଶ ବର୍ଷ ପୂର୍ବେ ମୁଁ ଆମେରିକୀୟମାନଙ୍କୁ ଓଡ଼ିଆ ପଢାଇବା ସମୟରେ ମତେ ଉପଦେଶ ଦିଆଯାଇଥିଲା, 'ତୁମକୁ ଭାଷା ତଥା ଶିକ୍ଷା ପଦ୍ଧତିକୁ ତୁମ ଛାତ୍ରମାନଙ୍କୁ ବିକ୍ରି କରିବା ପାଇଁ ହେବ' । "you will have to sell it to your

students' ନଚେତ୍ ଶିକ୍ଷକ ଭାବରେ ତୁମେ ଅସଫଳ ବୋଲି ପ୍ରମାଣିତ ହେବ) । ଆମକୁ ଓଡ଼ିଆ ଭାଷାକୁ ବିକ୍ରି କରିବା ପାଇଁ ହେବ, ଏପରିକି ଆମର ଉତ୍ତରପୁରୁଷମାନଙ୍କୁ ମଧ୍ୟ । ସେଥିପାଇଁ ଓଡ଼ିଆ ଭାଷାର ଉପଯୋଗିତା କିପରି ବୃଦ୍ଧି ପାଇବ ସେ ଦିଗରେ ଆମକୁ ଉଦ୍ୟମ କରିବା ପାଇଁ ହେବ । ତା' କରି ନପାରିଲେ ପରିଶେଷରେ 'ମୁଁ ହାଟବାହୁଡ଼ା'ର କବିଙ୍କ ପରି ଆମକୁ ବିଳାପ କରିବା ପାଇଁ ହିଁ ପଡ଼ିବ । "ଓଡ଼ିଆ ଶିଶୁ କଥା କହିବା ଆରମ୍ଭ କଲାବେଳେ ତା'ର ଦରୋଟି ତୁଣ୍ଡରେ ପ୍ରଥମେ 'ମା' ବୋଲି ଡାକେ, ଆଦି ବକ୍ତବ୍ୟ ମାଧ୍ୟମରେ ଭାବପ୍ରବଣତାର ବନ୍ଧ ବାନ୍ଧି ବା ଜୋରଜବରଦସ୍ତିର ଆନିକଟ ନିର୍ମାଣ କରି ବଜାର ଅର୍ଥନୀତିର ବନ୍ୟାକୁ ରୋଧ କରାଯାଇପାରିବ ନାହିଁ; ବଜାର ଅର୍ଥନୀତିର ପ୍ରଳୟ ପ୍ଲାବନରୁ ଓଡ଼ିଆ ଭାଷାକୁ ରକ୍ଷା କରାଯାଇପାରିବ ନାହିଁ । ଏହା ଅତି ନିଷ୍ଠୁର ସତ୍ୟ, ଯାହାକୁ ଓଡ଼ିଶାରେ କେହି ବୁଝନ୍ତି ନାହିଁ ।

ଉତ୍ତରପୁରୁଷମାନଙ୍କ ଓଡ଼ିଆ ଭାଷା ପ୍ରତି ଅନାଗ୍ରହର ଗୋଟିଏ ବଡ଼ କାରଣ ହେଉଛି, ଓଡ଼ିଆରେ ଥିବା ଜ୍ଞାନର ଭଣ୍ଡାର ଅତ୍ୟନ୍ତ କ୍ଷୁଦ୍ର ଓ ଓଡ଼ିଆରେ ବିଭିନ୍ନ ବିଷୟକ ତଥ୍ୟ ସମ୍ବଳିତ ତଥା ଉଚ୍ଚ ଚିନ୍ତା ସମ୍ବଳିତ ଉଚ୍ଚମାନର ପୁସ୍ତକ ଓ ପତ୍ରପତ୍ରିକାର ଘୋର ଅଭାବ । ବିଜୟ ପ୍ରସାଦ ମହାପାତ୍ରଙ୍କ ଓଡ଼ିଆ ବର୍ଣ୍ଣନାତ୍ମକ ଓ ଚିନ୍ତାତ୍ମକ ସାହିତ୍ୟର ଯେଉଁ ତୁଳନାତ୍ମକ ପରିସଂଖ୍ୟାନ ଦେଇଛନ୍ତି (ଦ୍ର:ବିଜୟ ପ୍ରସାଦ ମହାପାତ୍ରଙ୍କ 'ଓଡ଼ିଆ ଭାଷାବିଭବ', ୧୯୯୩, ପୃ.୩୪୪) ତା ଏ ପ୍ରସଙ୍ଗରେ ବିଭିନ୍ନ କାରଣରୁ ଗ୍ରହଣୀୟ ନୁହେଁ । ଯେକୌଣସି କାରଣରୁ ହେଉ ନା କାହିଁକି ଆମେ ବହୁ ବର୍ଷଧରି କେବଳ କବିତା, ଗଳ୍ପ, ଉପନ୍ୟାସ, ନାଟକ ଆଦି ତଥାକଥିତ ସର୍ଜନାତ୍ମକ ସାହିତ୍ୟର ରଚନା, ପ୍ରକାଶନ, ପ୍ରସାର ତଥା ସ୍ୱୀକାର ପ୍ରଦାନରେ ବିଶେଷ ଆଗ୍ରହ ଓ ପ୍ରବଣତା ପ୍ରକାଶ କରୁଛୁ । କିନ୍ତୁ ବିଭିନ୍ନ ବିଷୟକ ତଥ୍ୟ ଓ ଉଚ୍ଚ ଚିନ୍ତାସମ୍ବଳିତ, ଜ୍ଞାନଗର୍ଭକ, ପ୍ରଜ୍ଞାଦୀପ୍ତ ଓ ଗବେଷଣାତ୍ମକ ପୁସ୍ତକର ରଚନା, ପ୍ରସାର ତଥା ସ୍ୱୀକୃତି ପ୍ରଦାନରେ ତା'ର ଜାଣିଚାଏ ଆଗ୍ରହ ମଧ୍ୟ ପ୍ରକାଶ କରୁନାହୁଁ । ଆମ ଉତ୍ତରପୁରୁଷମାନେ କିନ୍ତୁ ସେମାନଙ୍କ ବୌଦ୍ଧିକ କୌତୂହଳ ଓ ଜିଜ୍ଞାସାର ପରିତୃପ୍ତି ପାଇଁ ସେହିପରି ପୁସ୍ତକ ଓ ପତ୍ରପତ୍ରିକା ଖୋଜୁଛନ୍ତି । ସେମାନେ ଜାଣିଛନ୍ତି ଯେ ସେମାନଙ୍କର ଜୀବିକାର୍ଜନ ତଥା ବୌଦ୍ଧିକ ବିକାଶ ପାଇଁ ଏପରି ପୁସ୍ତକ ତଥା ପତ୍ରପତ୍ରିକାର ଅଧ୍ୟୟନ ଏକାନ୍ତ ଆବଶ୍ୟକ । ଆମେ କିନ୍ତୁ ସେ କଥା ନବୁଝି ସେମାନଙ୍କ ନିକଟରେ କେବଳ ସର୍ଜନାତ୍ମକ ସାହିତ୍ୟ ଗଦାଇବାରେ (ବିଶେଷ ଭାବରେ ସେମାନଙ୍କ ମୁଣ୍ଡରେ କବିତାର ବୋଝ ଲଦିବାରେ ) ଆମର ସମସ୍ତ ଶକ୍ତି ଓ ଶ୍ରମ ବିନିଯୋଗ କରୁଛୁ, ଯାହାକୁ ସେମାନେ ଆଡ଼ ଆଖିରେ ମଧ୍ୟ ଚାହୁଁନାହାନ୍ତି ଓ ବାଧ୍ୟ ହେଉଛନ୍ତି

ଅନ୍ୟ ଭାଷାର, ବିଶେଷ ଭାବରେ ଇଂରାଜୀର ସାହାଯ୍ୟ ନେବାପାଇଁ । ସେମାନେ ଯାହା ଖୋଜୁଛନ୍ତି ତାହା ଆମେ ଯୋଗାଇବା ପାଇଁ ହୁଏତ ଅସମର୍ଥ ଅଥବା ସେଥିପାଇଁ ତିଳେମାତ୍ର ଆଗ୍ରହ ପ୍ରକାଶ କରୁନାହୁଁ । ଏପରି ମନୋବୃତ୍ତିର ପରିବର୍ତ୍ତନ ହେବା ଉଚିତ୍ । (ଆମ ଉତ୍ତରପୁରୁଷମାନେ ଯେତେବେଳେ ଓଡ଼ିଆ ପ୍ରୀତିସଂପନ୍ନ ନୁହଁନ୍ତି, ଓଡ଼ିଶାପ୍ରବାସୀ ଅଣଓଡ଼ିଆମାନଙ୍କ ଠାରୁ ତା' ଆଶା କରିବା ବୃଥା ) ।

ଭାଷା ବ୍ୟବହାରର ବହୁବିଧ କ୍ଷେତ୍ର ରହିଛି । ସର୍ଜନାତ୍ମକ ସାହିତ୍ୟ ସେ ମଧ୍ୟରୁ ମାତ୍ର ଗୋଟିଏ କ୍ଷେତ୍ର । କିନ୍ତୁ ଯେକୌଣସି କାରଣରୁ ହୁଏତ ବା ଆମର ଅଜ୍ଞାତସାରରେ ସର୍ଜନାତ୍ମକ ସାହିତ୍ୟ ଭାଷା ବ୍ୟବହାରର ଏକମାତ୍ର କ୍ଷେତ୍ର ବୋଲି ଆମ ମନରେ ଏକ ବଦ୍ଧମୂଳ, କିନ୍ତୁ ଭ୍ରମାତ୍ମକ ଧାରଣା ସୃଷ୍ଟି ହୋଇଛି । ଭାଷାକୁ କେବଳ ସର୍ଜନାତ୍ମକ ସାହିତ୍ୟ ସହ ସମାନ କରିଦେଇ ଆମେ ଭାଷାର ବ୍ୟବହାରକୁ ସଙ୍କୁଚିତ କରୁଛୁ, ତଥା ଅପୋଷ କ୍ଷତିସାଧନ ହିଁ କରୁଛୁ । ସେଇଥିପାଇଁ ତ ଆମେ ବିଦ୍ୟାଳୟରେ, ବିଶେଷଭାବରେ ତଳଶ୍ରେଣୀରେ ଭାଷା ଶିକ୍ଷା ନଦେଇ ଭାଷାଶିକ୍ଷା ନାମରେ ସାହିତ୍ୟ ଶିକ୍ଷା ହେବାର ପ୍ରଚେଷ୍ଟା କରୁ । ସେଇ ଛାତ୍ରମାନେ ପରବର୍ତ୍ତୀ କାଳରେ ଓଡ଼ିଆ ଲେଖିବାରେ ବହୁ ଭୁଲ୍ କରିବାର ତାହା ହିଁ କାରଣ । ସର୍ଜନାତ୍ମକ ସାହିତ୍ୟର କୌଣସି ଆବଶ୍ୟକତା ନାହିଁ ବା ତାହାକୁ ସଂପୂର୍ଣ୍ଣ ଭାବେ ଉପେକ୍ଷା କରାଯାଉ ବୋଲି ମୁଁ ଅବଶ୍ୟ କହୁନାହିଁ । ତେବେ ତା' ଉପରେ ଆମେ ଅଯଥା ଅତ୍ୟଧିକ ଗୁରୁତ୍ୱ ଦେଉଛୁ । ବଜାର ଅର୍ଥନୀତିରେ ଭାଷାରେ ପ୍ରସ୍ତୁତ ହେଉଥିବା ପଦାର୍ଥଗୁଡ଼ିକ ମଧ୍ୟରେ ସର୍ଜନାତ୍ମକ ସାହିତ୍ୟର ଗରାଖଙ୍କ ସଂଖ୍ୟା ଯେ ଅପେକ୍ଷାକୃତ କମ୍ ତା' ଆମେ ଭୁଲିଯିବା ଉଚିତ୍ ନୁହେଁ । ଜୀବିକାର୍ଜନ ବା ଅନ୍ୟ କାରଣରୁ ପ୍ରତିଯୋଗିତା, ପ୍ରତିଦ୍ୱନ୍ଦ୍ୱିତାମୂଳକ ସାଂପ୍ରତିକ କାଳରେ ଭାଷାର ଉଚ୍ଚମାନର ବିଭିନ୍ନ ବିଷୟକ ତଥ୍ୟ ଓ ଉଚ୍ଚ ଚିନ୍ତା ସମ୍ବଳିତ ପୁସ୍ତକ ଓ ପ୍ରବନ୍ଧର ରଚନା ଓ ପ୍ରସାର ନହେଲେ ଭାଷାର ବ୍ୟବହାର କ୍ରମେ ସଙ୍କୁଚିତ ହୋଇ ତା' ମୃତ୍ୟୁବରଣ କରିବାର ସମ୍ଭାବନା ଯେ ବୃଦ୍ଧି ପାଇବ, ଏ ସତ୍ୟ ଆମେ ହୃଦୟଙ୍ଗମ କରିବା ଉଚିତ୍ । ଉନ୍ନବିଂଶ ଶତକରେ ଓଡ଼ିଆ ଭାଷା ମଧ୍ୟ ଏକ ସଙ୍କଟ କାଳ ମଧ୍ୟ ଦେଇ ଗତି କରିଥିଲା । ସେତେବେଳେ ଓଡ଼ିଶାର ବିଦ୍ୟାଳୟରେ ଓଡ଼ିଆ ଭାଷା ପରିବର୍ତ୍ତେ ବଙ୍ଗ ଭାଷା ପ୍ରଚଳନର ଅପଚେଷ୍ଟା କରାଯାଇଥିଲା । ସର୍ଜନାତ୍ମକ ଓଡ଼ିଆ ସାହିତ୍ୟର ଅନ୍ୟୂନ ଚାରିଶହ ବର୍ଷର ଉଜ୍ଜ୍ୱଳ ପରଂପରା ଥିବା ସତ୍ତ୍ୱେ ସେତେବେଳେ ବିଦ୍ୟାଳୟ ଉପଯୋଗୀ ପାଠ୍ୟପୁସ୍ତକର ଅଭାବ ଥିଲା; ଥିଲା ମଧ୍ୟ ବଙ୍ଗଭାଷା ତୁଳନାରେ ଓଡ଼ିଆ ଭାଷାରେ ଥିବା ଜ୍ଞାନର ଭଣ୍ଡାର ଅନେକ କ୍ଷୁଦ୍ର । ସେହେତୁ ହିଁ ଏପରି ପରିସ୍ଥିତି ଉପୁଜିଥିଲା ଓ ଓଡ଼ିଆ ଭାଷା ଏପରି ଏକ

ସଙ୍କଟକାଳ ଭିତରେ ଦେଇ ଗତି କରିଥିଲା । ଓଡ଼ିଶାର ବିଦ୍ୟାଳୟରେ ଓଡ଼ିଆ ପରିବର୍ତ୍ତେ ବଙ୍ଗ ଭାଷା ପ୍ରଚଳନର ହୀନ ଉଦ୍ୟମରେ ପାଠ୍ୟ ପୁସ୍ତକର ସେହି ଅଭାବ, ସେହି ଜ୍ଞାନଭଣ୍ଡାରର କ୍ଷୁଦ୍ରତା ହିଁ ଥିଲା ରାଜେନ୍ଦ୍ର ଲାଲ୍ ମିତ୍ରଙ୍କ ପ୍ରଧାନ ଯୁକ୍ତି(ବିସ୍ତାରିତ ଆଲୋଚନା ପାଇଁ ଦ୍ର: ଏହି ଲେଖକଙ୍କର 'ଓଡ଼ିଆ ଭାଷା ସୁରକ୍ଷା ଆନ୍ଦୋଳନ' ୧୯୯୩) । ସେ ଦିନରୁ ୧୪୦ବର୍ଷ ପରେ ଆଜି ସେ ପରିସ୍ଥିତିର ପ୍ରାୟ ପୁନରାବୃତ୍ତି ହୋଇଛି ଓ ଓଡ଼ିଆ ଭାଷା ପୁଣି ଥରେ ଏକ ସଙ୍କଟକାଳ ଭିତରେ ଗତି କରୁଛି । ଓଡ଼ିଶାର ବିଦ୍ୟାଳୟରେ ବଙ୍ଗଳା-ମିଡିଅମ ପ୍ରଚଳନ ପାଇଁ ହୀନ ଉଦ୍ୟମ ଅବଶ୍ୟ ହେଉ ନାହିଁ କି ସେପରି ହୀନ ଉଦ୍ୟମର ନାୟକ ରାଜେନ୍ଦ୍ର ଲାଲ୍ ଆଜି ନାହାନ୍ତି । କିନ୍ତୁ ଇଂରାଜୀ ମିଡିଅମ ବିଦ୍ୟାଳୟର ସଂଖ୍ୟା ଦ୍ରୁତ ଗତିରେ ବୃଦ୍ଧି ଲାଭ କରିଛି ଓ ଓଡ଼ିଆ ଭାଷାଭାଷୀମାନେ ହିଁ ସ୍ୱତଃ ପ୍ରବୃତ୍ତ ହୋଇ ଅତି ଆଗ୍ରହରେ ନିଜର ପିଲାମାନଙ୍କୁ ସେଇ ଇଂରାଜୀ ମିଡିଅମ ବିଦ୍ୟାଳୟକୁ ପଠାଉଛନ୍ତି । କାରଣ ସେ ଦିନର ପରିସ୍ଥିତି ଊଣା ଅଧିକେ ଆଜି ବି ଅଛି; ଓଡ଼ିଆରେ ଉଚ୍ଚ ଓ ବୈଷୟିକ ଶିକ୍ଷା ପାଇଁ ପାଠ୍ୟ ପୁସ୍ତକ ପ୍ରାୟ ନାହିଁ ଓ ଜ୍ଞାନଭଣ୍ଡାର ଅତି କ୍ଷୁଦ୍ର । ସେହେତୁ ହିଁ ଓଡ଼ିଆ ଭାଷା ପୁଣି ଥରେ ସଙ୍କଟ କାଳ ମଧ୍ୟରେ ଗତି କରୁଛି । ତେଣୁ କେବଳ ସର୍ଜନାତ୍ମକ ସାହିତ୍ୟର ବିକାଶ ଓ ଅଭିବୃଦ୍ଧି ମାଧ୍ୟମରେ ଭାଷାର ମୃତ୍ୟୁ ସଙ୍କଟକୁ ଏଡ଼ାଇ ଦେବା ସମ୍ଭବ ନୁହେଁ ବୋଲି ମଧ୍ୟ ଆମେ ବୁଝିବା ଉଚିତ୍ । ବିଭିନ୍ନ ଭାଷାର ଭାରତୀୟ ସାହିତ୍ୟ ମଧ୍ୟରେ କନ୍ନଡ଼ ଭାଷାରେ ରଚିତ ସର୍ଜନାତ୍ମକ ସାହିତ୍ୟକୁ ସବୁଠାରୁ ଅଧିକ (ସାତଗୋଟି) ଜ୍ଞାନପୀଠ ପୁରସ୍କାର ଦିଆଯାଇଛି । ତା' ସତ୍ତ୍ୱେ କନ୍ନଡ଼ ଭାଷାଭାଷୀମାନେ ସେମାନଙ୍କର ପିଲାମାନଙ୍କୁ କନ୍ନଡ଼ ନୁହେଁ, ଇଂରାଜୀ-ମିଡିଅମ ସ୍କୁଲରେ ପଢାଇବା ପାଇଁ କିପରି ଅଧିକରୁ ଅଧିକ ଆଗ୍ରହ ପ୍ରକାଶ କରୁଛନ୍ତି ତା' ପୂର୍ବେ ଦର୍ଶାଯାଇଛି । ଅତି ଉଚ୍ଚମାନର ସର୍ଜନାତ୍ମକ ସାହିତ୍ୟ ଥିବା ସତ୍ତ୍ୱେ କନ୍ନଡ଼ ଭାଷାର ଭବିଷ୍ୟତ ନେଇ ଆଜି କନ୍ନଡ଼ପ୍ରେମୀମାନେ ଚିନ୍ତାଗ୍ରସ୍ତ । ଏଇଥିରୁ ପ୍ରମାଣିତ ହୁଏ ଯେ ଭାଷାରେ କେବଳ ସର୍ଜନାତ୍ମକ ସାହିତ୍ୟର ଉନ୍ନତି ହେଲେ ହିଁ ଭାଷା ଆପେ ଆପେ ତା'ର ମୃତ୍ୟୁ ସଙ୍କଟରୁ ରକ୍ଷା ପାଇନପାରେ । ଜର୍ମାନ୍ ଓ ଫରାସୀ ଭାଷାରେ ଅତି ଉନ୍ନତ ମାନର ସର୍ଜନାତ୍ମକ ସାହିତ୍ୟର ଉଜ୍ଜ୍ୱଳ ପରଂପରା ଥିବା ସତ୍ତ୍ୱେ ଓ ତାହା ଇଂରାଜୀ ଭାଷାରେ ରଚିତ ସର୍ଜନାତ୍ମକ ସାହିତ୍ୟ ତୁଳନାରେ କୌଣସି ଗୁଣରେ ନ୍ୟୁନ ନଥିବା ସତ୍ତ୍ୱେ ଏବେ ଜର୍ମାନ୍ ଓ ଫାରାସୀମାନେ ଇଂରାଜୀ ଭାଷା ଶିକ୍ଷାରେ ଅଧିକରୁ ଅଧିକ ଆଗ୍ରହ ପ୍ରକାଶ କରୁଛନ୍ତି (ଏପରିକି ଫରାସୀମାନଙ୍କର ଇଂରାଜୀ ଶିକ୍ଷା ପ୍ରତି ଏପରି ଆଗ୍ରହ ହେତୁ କ୍ଷୋଭ ତଥା ଆଶଙ୍କା ପ୍ରକାଶ କରି ଫ୍ରାନ୍ସର ପୂର୍ବତନ ରାଷ୍ଟ୍ରପତି Francois Mitterrand ଥରେ କହିଥିଲେ, French

today is threatened by English. Can a country that can build Ariane rocket afford to lose its language ?) ତା'ର କାରଣ ଇଂରାଜୀ ଭାଷାରେ ରଚିତ ସର୍ଜନାତ୍ମକ ସାହିତ୍ୟ ହେତୁ ନୁହେଁ, ତା'ର କାରଣ ଜର୍ମାନ୍ ଓ ଫରାସୀ ଭାଷାରେ ଥିବା ଜ୍ଞାନର ଭଣ୍ଡାର ବିଶାଳ ହୋଇଥିଲେ ହେଁ ଇଂରାଜୀ ଭାଷାରେ ଥିବା ଜ୍ଞାନର ଭଣ୍ଡାର ତୁଳନାରେ ତାହା କ୍ଷୁଦ୍ର । ସେଇ କାରଣରୁ ଇଂରାଜୀ ଭାଷାର ବ୍ୟାବହାରିକ ଉପଯୋଗିତା ଓ ତା'ର ବାଣିଜ୍ୟମୂଲ୍ୟ ମଧ୍ୟ ବୃଦ୍ଧି ପାଇଛି ।

ପ୍ରଥମେ ଆମ ଓଡ଼ିଆ ଭାଷାରେ ଜ୍ଞାନର ଭଣ୍ଡାରକୁ ବୃଦ୍ଧି କରିବାର ଉଦ୍ୟମ କରାଯାଉ ଓ ଆମ ଉତ୍ତରପୁରୁଷମାନେ ଯାହା ଚାହୁଁଛନ୍ତି ତଥା ଯାହା ସେମାନଙ୍କର ବ୍ୟକ୍ତିଗତ ଓ ବୃତ୍ତିଗତ ବା ବୈଷୟିକ ଉନ୍ନତି ପାଇଁ ଏକାନ୍ତ ଆବଶ୍ୟକ ତା' ତାଙ୍କୁ ଯୋଗାଇଦେବାର ପ୍ରଚେଷ୍ଟା କରାଯାଉ । ପୁଣି ସେଇ ଜ୍ଞାନର ଭଣ୍ଡାର ଉଭୟ ମୁଦ୍ରିତ ପୁସ୍ତକ/ ପତ୍ରପତ୍ରିକାରେ ତଥା ୱେବସାଇଟ୍‌ରେ ଉପଲବ୍ଧ ହେବାର ବନ୍ଦୋବସ୍ତ ମଧ୍ୟ କରାଯାଉ । ତା'ହେଲେ ହିଁ ଓଡ଼ିଆକୁ ବାଧ୍ୟତାମୂଳକ ଭାବରେ ବିଦ୍ୟାଳୟ ଓ ମହାବିଦ୍ୟାଳୟ ସ୍ତରରେ ପଢାଇଲେ ତା'ର ସୁଫଳ ମିଳିବ । ତା' ଫଳରେ ହିଁ ସେମାନେ ଶିଖିଥିବା ଓଡ଼ିଆର ଉପଯୋଗ କରିବାର ସୁଯୋଗ ପାଇବେ ଓ କରିବେ । (ବର୍ତ୍ତମାନ ସେମାନେ ନିଜର ଆବଶ୍ୟକତା ପୂରଣ ପାଇଁ ତଥା ବୌଦ୍ଧିକ କୋତୂହଳ ଓ ଜିଜ୍ଞାସାର ପରିତୃପ୍ତି ପାଇଁ ଇଂରାଜୀ ଭାଷା ଅଧିକରୁ ଅଧିକ ବ୍ୟବହାର କରୁଛନ୍ତି । ଫଳରେ ସେମାନେ ଇଂରାଜୀ ଭାଷା ବ୍ୟବହାରରେ ଅଧିକ ଅଭ୍ୟସ୍ତ ହୋଇ ସମୟ ଓ ସୁଯୋଗ ମିଳିଲେ ଇଂରାଜୀ ଭାଷାରେ ଉପଲବ୍ଧ ସର୍ଜନାତ୍ମକ ସାହିତ୍ୟ ପ୍ରତି ମଧ୍ୟ ଆକର୍ଷିତ ହେଉଛନ୍ତି ଓ ତା' ପଢୁଛନ୍ତି । ସ୍ୱାଧୀନତା ପାଇବାର ବହୁ ବର୍ଷ ପରେ ମଧ୍ୟ ଏବେ ଅଧିକରୁ ଅଧିକ ଭାରତୀୟ ଲେଖକ ନିଜ ନିଜ ମାତୃଭାଷାରରେ ନୁହେଁ ଇଂରାଜୀ ଭାଷାରେ ସର୍ଜନାତ୍ମକ ସାହିତ୍ୟ ସୃଷ୍ଟିରେ ଆଗ୍ରହ ପ୍ରକାଶ କରିବାର ତାହାହିଁ ଅନ୍ୟତମ କାରଣ ) । ତେଣୁ ଓଡ଼ିଆ ଭାଷାରେ ସେମାନେ ଖୋଜୁଥିବା ଆବଶ୍ୟକ କରୁଥିବା ବହି ଓ ପତ୍ରପତ୍ରିକା ସେମାନଙ୍କୁ ସହଜରେ ଯୋଗାଇଦେଲେ ସେମାନେ ନିଜର ଆବଶ୍ୟକତା ପୂରଣ ପାଇଁ ତଥା ବୌଦ୍ଧିକ କୌତୂହଳ ଓ ଜିଜ୍ଞାସାର ପରିତୃପ୍ତି ପାଇଁ ଓଡ଼ିଆ ଭାଷା ଅଧିକରୁ ଅଧିକ ବ୍ୟବହାର କରିବେ । ଏହିପରି ଓଡ଼ିଆ ଭାଷା ବ୍ୟବହାରରେ ଅଧିକ ଅଭ୍ୟସ୍ତ ହୋଇସାରିଲେ ହିଁ ସେମାନେ ସମୟ ଓ ସୁଯୋଗ ମିଳିଲେ ସର୍ଜନାତ୍ମକ ଓଡ଼ିଆ ସାହିତ୍ୟ ପ୍ରତି ଅଧିକ ଆକର୍ଷିତ ହେବେ ଓ ତାହା ପଢିବେ । ଏହା ଫଳରେ ହିଁ ସର୍ଜନାତ୍ମକ ସାହିତ୍ୟର ଭବିଷ୍ୟତ ଉନ୍ନତି ହୋଇପାରିବ । ନଚେତ୍ ଦିନ ଆସିବ ଯେତେବେଳେ ଉଚ୍ଚଶିକ୍ଷିତ ତଥା ବ୍ୟକ୍ତିଗତ ଓ ବୃତ୍ତିଗତ ସାଫଲ୍ୟ ଲାଭ

କରିଥିବା ଅଧିକାଂଶ ଓଡ଼ିଆ ସର୍ଜନାତ୍ମକ ଓଡ଼ିଆ ସାହିତ୍ୟ ସଂପର୍କରେ ସଂପୂର୍ଣ୍ଣ ଭାବରେ ଉଦାସୀନ ହେବେ ଓ ତା' ସହ ସଂପର୍କଚ୍ୟୁତ ହୋଇପଡ଼ିବେ । (ବ୍ୟକ୍ତିଗତ ଓ ବୃତ୍ତିଗତ ସାଫଲ୍ୟ ଲାଭ କରିଥିବା ଯେଉଁ ବୟସ୍କ ଓଡ଼ିଆମାନେ ସର୍ଜନାତ୍ମକ ଓଡ଼ିଆ ସାହିତ୍ୟ ସୃଷ୍ଟି ଓ ପଠନରେ ଆଗ୍ରହ ଅବ୍ୟାହତ ରଖିଛନ୍ତି ସେମାନେ ସମସ୍ତେ ଇଂରାଜୀ ଭାଷାରେ ଦକ୍ଷତା ହାସଲ କରିଥିଲେ ମଧ୍ୟ ପ୍ରାୟ ଓଡ଼ିଆ ମିଡିୟମ ବିଦ୍ୟାଳୟରେ ଅଧ୍ୟୟନ କରିଥିଲେ । ପକ୍ଷାନ୍ତରରେ ଏବେ ଅଧିକାଂଶ ଅଗ୍ରଗଣ୍ୟ ଓଡ଼ିଆ ସର୍ଜନାତ୍ମକ ସାହିତ୍ୟିକଙ୍କ ଉଚ୍ଚଶିକ୍ଷିତ ତଥା ବ୍ୟକ୍ତିଗତ ଓ ବୃତ୍ତିଗତ ସାଫଲ୍ୟ ଲାଭ କରିଥିବା ପିଲାମାନେ, ଆଉ ଅନ୍ୟମାନଙ୍କ ସାହିତ୍ୟ କୃତି ଦୂରେ ଥାଉ, ତାଙ୍କ ପିତାମାତା ସାହିତ୍ୟ କୃତି ସହ ଭଲ ଭାବରେ ପରିଚିତ କି ନାହିଁ ସନ୍ଦେହ ହୁଏ । ଏ ସନ୍ଦେହ ସତ୍ୟ ହୋଇଥିଲେ କ'ଣ ପ୍ରମାଣିତ ହୁଏ ) ?

ପରିଶେଷରେ କେବଳ ଅର୍ଦ୍ଧଶିକ୍ଷିତ ଓ ବୈଷୟିକ ସାଫଲ୍ୟ ଲାଭ କରିପାରି ନଥିବା ତଥା ଅପେକ୍ଷାକୃତ କମ୍ ବୁଦ୍ଧିବୃତ୍ତିସଂପନ୍ନ ଓଡ଼ିଆମାନେ ହିଁ ସର୍ଜନାତ୍ମକ ଓଡ଼ିଆ ସାହିତ୍ୟ ପ୍ରତି ଆକର୍ଷିତ ହେବେ । କେବଳ ସେଇମାନେ ହିଁ ଓଡ଼ିଆରେ ସର୍ଜନାତ୍ମକ ସାହିତ୍ୟ ସୃଷ୍ଟିରେ ଆଗ୍ରହ ପ୍ରକାଶ କରିବେ ଓ କେବଳ ସେଇମାନେ ହିଁ ହେବେ ତା'ର ପାଠକ । ପକ୍ଷାନ୍ତରରେ ତୁଳନାତ୍ମକ ଭାବରେ ଉଚ୍ଚ ଶିକ୍ଷିତ ଓ ବୃତ୍ତିଗତ ସାଫଲ୍ୟ ଲାଭ କରିଥିବା ତଥା ଅପେକ୍ଷାକୃତ ଅଧିକ ବୁଦ୍ଧିବୃତ୍ତିସଂପନ୍ନ ଓଡ଼ିଆମାନେ ଇଂରାଜୀ ଭାଷାରେ ସର୍ଜନାତ୍ମକ ସାହିତ୍ୟ ସୃଷ୍ଟିରେ ଓ ଇଂରାଜୀ ଭାଷାରେ ରଚିତ ସର୍ଜନାତ୍ମକ ସାହିତ୍ୟ ପାଠ କରିବାରେ ଅଧିକରୁ ଅଧିକ ଆଗ୍ରହୀ ହେବ । ସେଥିରେ କ'ଣ ସର୍ଜନାତ୍ମକ ଓଡ଼ିଆ ସାହିତ୍ୟର ଉନ୍ନତି ହୋଇପାରିବ ?

ମୌଳିକ ପୁସ୍ତକ ଓ ପ୍ରବନ୍ଧ ରଚନା ତଥା ଅନୁବାଦ ମାଧ୍ୟମରେ ଆମର ସେ ଅଭାବ କିଛି ପରିମାଣରେ ପୂରଣ କରାଯାଇପାରେ ବା ଓଡ଼ିଆ ଭାଷାରେ ଜ୍ଞାନର ଭଣ୍ଡାରକୁ ବୃଦ୍ଧି କରାଯାଇପାରେ । ଆଉ ସେ ଦିଗରେ ଆନ୍ତରିକ, ଆନୁଷ୍ଠାନିକ ଓ ବିଶେଷ ଉଦ୍ୟମ ଆବଶ୍ୟକ । କାରଣ ହଠାତ୍ ତା' ହୋଇପାରିବ ନାହିଁ, ତା' ଧୀରେ ଧୀରେ ହିଁ ହେବ । ତା' ଏକ ଧାରାବାହିକ ଓ ଅସରନ୍ତି ଉଦ୍ୟମ ବୋଲି ମନେ ରଖିବା ପାଇଁ ହେବ ଓ ଅସୀମ ଧୈର୍ଯ୍ୟର ସହ କାମ ଚଳାଇ ରଖିବା ପାଇଁ ହେବ । ତା' ପୁଣି ବିଶେଷଜ୍ଞମାନଙ୍କ ପରାମର୍ଶକ୍ରମେ ଯୋଜନାବଦ୍ଧ ଭାବରେ ହିଁ ହେବା ଉଚିତ୍ । ଯେଉଁମାନେ ଓଡ଼ିଆ ଭାଷାରେ ଜ୍ଞାନ ଭଣ୍ଡାର ଗଢି ତୋଳିବାର ପ୍ରଚେଷ୍ଟା କରିବେ ସେମାନଙ୍କୁ ପାରିଶ୍ରମିକ ତ ଦିଆଯିବ, ତା' ବ୍ୟତୀତ ସେମାନଙ୍କୁ ଉତ୍ସାହିତ ଓ ଅନୁପ୍ରେରିତ କରିବା ପାଇଁ ପୁରସ୍କାର, ସମ୍ମାନ ଓ ସ୍ୱୀକୃତିର ବ୍ୟବସ୍ଥା ହେବା ଉଚିତ୍, ତା' ସରକାରୀ ସ୍ତରରେ ହେଉ ବା ବେସରକାରୀ ସ୍ତରରେ ହେଉ ।

ଆଉ ଏପରି ମୌଳିକ ପୁସ୍ତକ ଓ ପ୍ରବନ୍ଧର ରଚନା ତଥା ଅନ୍ୟ ଭାଷାରୁ ଅନୁବାଦ ମଧ୍ୟ ଅତି ଉଚ୍ଚମାନର ହେବା ଆବଶ୍ୟକ । ପୁଣି ସେ ମୌଳିକ ପୁସ୍ତକ/ପ୍ରବନ୍ଧ ହେଉ ବା ଅନୁବାଦ ହେଉ ତା'ର ବକ୍ତବ୍ୟ ସ୍ପଷ୍ଟ ହେବା ଉଚିତ୍ ଓ ସେଥିରେ କୌଣସି ପ୍ରକାର ସନ୍ଦିଗ୍ଧତା ରହିବା ଉଚିତ୍ ନୁହେଁ । ତେଣୁ ଯେଉଁମାନେ ଏଥିରେ ହାତ ଦେବେ ସେମାନେ ଭଲ ଭାବରେ ଓଡ଼ିଆ ଭାଷା ଶିଖିଥିବା ବା ଜାଣିଥିବା ଆବଶ୍ୟକ । ଓଡ଼ିଆ ଭାଷା ଉପରେ ସେମାନଙ୍କର ଦଖଲ ନଥିଲେ ସେପରି ପୁସ୍ତକ, ପ୍ରବନ୍ଧର ରଚନା ଓ ଅନୁବାଦ ଉଚ୍ଚମାନର ହୋଇପାରିବ ନାହିଁ: ତା'ର ବକ୍ତବ୍ୟ ସ୍ପଷ୍ଟ ହେବ ନାହିଁ ଓ ତା' ପାଠକକୁ ଆକର୍ଷଣ କରିପାରିବ ନାହିଁ । ଆଉ ଓଡ଼ିଆ ଭାଷାକୁ ଉତ୍ତମ ରୂପେ ଶିକ୍ଷା କରିବା ବା ଦେବା କ୍ଷେତ୍ରରେ ଭାଷାବିଜ୍ଞାନର ଅତି ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । ସେଥିପାଇଁ ପ୍ରାଥମିକ ବିଦ୍ୟାଳୟରୁ ଆରମ୍ଭ କରି ସ୍ନାତକୋତ୍ତର ଶ୍ରେଣୀରେ ଓଡ଼ିଆ ଶିକ୍ଷାର ମାନକୁ ଉନ୍ନତ କରିବାରେ ଭାଷାବିଜ୍ଞାନର ସହାୟତା ନେବାକୁ ହେବ । ସେହିପରି ରଚନା ଓ ଅନୁବାଦ ପ୍ରକ୍ରିୟାକୁ ସୁଗମ, ସଫଳ ଓ ନିର୍ଭୁଲ କରିବା ଉଦ୍ଦେଶ୍ୟରେ ବିଭିନ୍ନ ବିଷୟକ ତଥା ବିଭିନ୍ନ ଉଦ୍ଦେଶ୍ୟରେ ବ୍ୟବହୃତ ହେବା ପାଇଁ ଅଭିଧାନ (dictionary ଓ thesaurus ), ଶବ୍ଦକୋଷ (glossary) ଓ ବ୍ୟାକରଣ ଆଦିର ପ୍ରସ୍ତୁତି ଓ ଲିପିର କମ୍ପ୍ୟୁଟରୀକରଣ (ହୁଏତ ବା ଲିପିସଂସ୍କାର) ଦରକାର ଆଉ ସେ କ୍ଷେତ୍ରରେ ମଧ୍ୟ ଭାଷାବିଜ୍ଞାନୀମାନଙ୍କ ସହାୟତା ଅପରିହାର୍ଯ୍ୟ । ପୁଣି ଲିଖିତ ଓ ଅନୂଦିତ ପୁସ୍ତକ ଓ ପ୍ରବନ୍ଧଗୁଡ଼ିକର ପ୍ରକାଶନ ପୂର୍ବରୁ ତା'ର ଭାଷା ସଂପାଦନା (Copy- editing) ରେ ମଧ୍ୟ ଭାଷାବିଜ୍ଞାନୀମାନଙ୍କ ସହାୟତା ନିଆଯିବା ଉଚିତ୍ ହେବ । (ଏ ମଧ୍ୟରେ ଅନ୍ୟାନ୍ୟ ଭାଷାରୁ ଓଡ଼ିଆକୁ ଅନୂଦିତ କେତେକ ପୁସ୍ତକ ପଢିବାର ସୁଯୋଗ ମୁଁ ପାଇଛି । ସେ ମଧ୍ୟରୁ ଓଡ଼ିଶାର କେତେକ ବିଶିଷ୍ଟ ପ୍ରକାଶନ ସଂସ୍ଥା ଓ କେତେକ କେନ୍ଦ୍ର ସାହିତ୍ୟ ଏକାଡେମୀ ଦ୍ୱାରା ପ୍ରକାଶିତ । ସେ ମଧ୍ୟରୁ ଅନେକ ଅନୂଦିତ ପୁସ୍ତକର ଭାଷା ଅତ୍ୟନ୍ତ ତ୍ରୁଟିପୂର୍ଣ୍ଣ ଓ ଅପାଠ୍ୟ ) ।

ଏ ଗତ କେତେ ବର୍ଷ ମଧ୍ୟରେ ଓଡ଼ିଆ ଖବର କାଗଜଗୁଡ଼ିକର ସଂଖ୍ୟା କେବଳ ବୃଦ୍ଧି ପାଇନାହିଁ, ଖବରକାଗଜର ପାଠକମାନଙ୍କର ସଂଖ୍ୟା ମଧ୍ୟ ବୃଦ୍ଧି ପାଇଛି ଓ ପାଉଛି ବୋଲି ଧାରଣା ହୁଏ । ଆଉ ଭାଷାରେ ଜ୍ଞାନର ଭଣ୍ଡାର ଗଢିବାରେ ଖବରକାଗଜର ଏକ ପରୋକ୍ଷ କିନ୍ତୁ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । ସେହିପରି ପୂର୍ବରୁ ଓଡ଼ିଶାରେ ଟେଲିଭିଜନରେ କେବଳ ହିନ୍ଦୀ କାର୍ଯ୍ୟକ୍ରମ ହିଁ ଉପଲବ୍ଧ ଥିଲା ଓ ତାହା ଅତ୍ୟନ୍ତ ଲୋକପ୍ରିୟ ଥିଲା କିନ୍ତୁ ଏ ଗତ କେତେବର୍ଷ ମଧ୍ୟରେ ଟେଲିଭିଜନର ବିଭିନ୍ନ ଓଡ଼ିଆ କାର୍ଯ୍ୟକ୍ରମ ତା' ମଧ୍ୟରେ ସମ୍ବାଦ ତଥା ବିଭିନ୍ନ ଧାରାବାହିକ କାର୍ଯ୍ୟକ୍ରମ ଅନ୍ତର୍ଗତ ଅତ୍ୟନ୍ତ ଲୋକପ୍ରିୟ ହୋଇଛି ଓ ହେଉଛି । (ଅବଶ୍ୟ ସେଇ କାର୍ଯ୍ୟକ୍ରମର ମାନ ମଧ୍ୟ ବହୁ କାରଣରୁ ଓ ବିଶେଷ ଭାବରେ ସେଥିରେ ବ୍ୟବହୃତ

ଭାଷା ହେତୁ ଆଦୌ ସନ୍ତୋଷଜନକ ନୁହେଁ ।କିନ୍ତୁ ପରେ ସେଇ କାର୍ଯ୍ୟକ୍ରମଗୁଡ଼ିକର ମାନକୁ ଉନ୍ନତ କରାଯିବ ବୋଲି ଆଶା କରାଯାଇପାରେ ) । ଏସବୁ ଓଡ଼ିଆ ଭାଷାର ଭବିଷ୍ୟତ ପକ୍ଷରେ ଶୁଭ ସୂଚନା ଓ ଆଶ୍ୱାସନାର କଥା ।

ମୋଟ୍ ଉପରେ ଓଡ଼ିଆ ଭାଷାରେ ଏକ ବିଶାଳ ଜ୍ଞାନ ଭଣ୍ଡାର ଗଢିବା ଆମର ମୂଳ ଲକ୍ଷ୍ୟ ହେବା ଆବଶ୍ୟକ । ସେଇ ମୂଳ ଲକ୍ଷ୍ୟରେ ପହଞ୍ଚିବା ପାଇଁ ଅର୍ଥାତ୍ ସେଇ ଜ୍ଞାନଭଣ୍ଡାରରୁ ଗଢିବା ପାଇଁ ଭାଷା ବିଜ୍ଞାନର ସହାୟତା ଅପରିହାର୍ଯ୍ୟ । ପୁଣି ଆମ ଉତ୍ତରପୁରୁଷମାନେ ସେଇ ଜ୍ଞାନଭଣ୍ଡାରକୁ କିପରି ଉପଯୋଗ କରିବେ ସେ ଦିଗରେ ସେମାନଙ୍କୁ ପ୍ରବର୍ତ୍ତାଇବାର ତଥା କିଛି ପରିମାଣରେ ବାଧ୍ୟବାଧକତା ମାଧ୍ୟମରେ ସେମାନଙ୍କୁ ସେଇ ଜ୍ଞାନଭଣ୍ଡାର ନିକଟରେ ପହଞ୍ଚାଇବାର ଆବଶ୍ୟକତା ମଧ୍ୟ ଅଛି । ହୁଏତ ବା ସଭାସମିତି, ଆନ୍ଦୋଳନ ବା ଆଇନଗତ ବ୍ୟବସ୍ଥା ମଧ୍ୟ ସେଥିପାଇଁ ଆବଶ୍ୟକ ହୋଇପାରେ । କିନ୍ତୁ ଗୋଟିଏ ବିରାଟ ଜ୍ଞାନଭଣ୍ଡାର ଗଢିବା ହିଁ ଆମର ମୂଳ ଲକ୍ଷ୍ୟ ହେବା ଉଚିତ୍

ଏ ପର୍ଯ୍ୟନ୍ତ ଓଡ଼ିଆରେ ବିଭିନ୍ନ ବିଷୟକ ତଥ୍ୟ ସମ୍ବଳିତ ପୁସ୍ତକ ରଚନା ଦିଗରେ ରାଜ୍ୟ ପାଠ୍ୟପୁସ୍ତକ ପ୍ରଣୟନ ଓ ପ୍ରକାଶନ ସଂସ୍ଥା ସାମାନ୍ୟ ହେଲେ ବି କିଛି ଉଦ୍ୟମ କରିଛନ୍ତି । ସୀମିତ ଶକ୍ତି ଓ ସମ୍ବଳ ସତ୍ତ୍ୱେ 'ବିଜ୍ଞାନ ପ୍ରଚାର ସମିତି', 'ସୃଜନିକା' ଓ 'ଶିକ୍ଷାସନ୍ଧାନ' ପରି ଅନୁଷ୍ଠାନ ଏ ଦିଗରେ କିଛି କିଛି ଉଦ୍ୟମ କରିଛନ୍ତି, ଯାହା ପ୍ରଶଂସନୀୟ । ଏ କ୍ଷେତ୍ରରେ ଓଡ଼ିଶା ସାହିତ୍ୟ ଏକାଡେମୀର ଭୂମିକା ତୁଳନାତ୍ମକ ଭାବରେ ଅନେକ କମ୍ । ଆଉ ଏବେ ସ୍ଥାପିତ ଓଡ଼ିଆ ଭାଷା ପ୍ରତିଷ୍ଠାନ ଦିଗହରା ହୋଇପଡ଼ିଛି ତଥା ଭିନ୍ନ ଦିଗରେ ଗତି କରୁଛି ବୋଲି ତା'ର ଗଢଣ ଓ କାର୍ଯ୍ୟକ୍ରମରୁ ମନେ ହୁଏ ଓ ତା' ଅବଶେଷରେ ଓଡ଼ିଆ ସାହିତ୍ୟ ଏକାଡେମୀର ଏକ ପରିପୂରକ ଅନୁଷ୍ଠାନ ଭାବରେ କାମ କରିବ (ଓ ସେଇ ତଥାକଥିତ ସର୍ଜନାତ୍ମକ ସାହିତ୍ୟର ପ୍ରସାରକୁ ଅଗ୍ରାଧିକାର ଦେବ) ବୋଲି ଆଶଙ୍କା ମଧ୍ୟ ହୁଏ । ସରକାରୀ ସ୍ତର ବ୍ୟତୀତ ବେସରକାରୀ ସ୍ତରରେ ଯାହା ହେଉଛି ତା' ମଧ୍ୟ ବିଶେଷ କିଛି ନୁହେଁ । ପୁଣି ଏ ଦିଗରେ କାମ କରୁଥିବା ଲେଖକମାନଙ୍କୁ ଉତ୍ସାହିତ କରିବାର, ସମ୍ମାନ, ସ୍ୱୀକୃତି, ପୁରସ୍କାର ଦେବାର ଆଦୌକୌଣସି ବ୍ୟବସ୍ଥା ନାହିଁ, ନାଁ ସରକାରୀ ସ୍ତରରେ ନାଁ ବେସରକାରୀ ସ୍ତରରେ । ଅନ୍ୟ ପକ୍ଷରେ ପଡୋଶୀ ବଙ୍ଗଳା ଭାଷାର କ'ଣ ହେଉଛି ତା' ଦେଖାଯାଉ । ଭବତୋଷ ଦତ୍ତ, ଅମ୍ଳାନ ଦତ୍ତ, ଅଶୋକ ମିତ୍ର, ଅଶୋକ ରୁଦ୍ର, ଅମର୍ତ୍ତ୍ୟ ସେନ ଏମାନେ ସମସ୍ତେ ଅର୍ଥନୀତିବିଦ୍ ଭାବରେ ଭାରତରେ ଏପରି କି ଭାରତ ବାହାରେ ଖ୍ୟାତି ଅର୍ଜିଛନ୍ତି । ଆଉ ସେମାନେ ସମସ୍ତେ ବଙ୍ଗଳା ଭାଷାରେ ଅର୍ଥନୀତି ବିଷୟକ-ବିଦ୍ୟାଳୟ/ମହାବିଦ୍ୟାଳୟ/ବିଶ୍ୱବିଦ୍ୟାଳୟ ପାଠ୍ୟପୁସ୍ତକ ନୁହେଁ ମୌଳିକ ପୁସ୍ତକ ରଚନା କରିଛନ୍ତି । ପୁଣି ଭବତୋଷ ଦତ୍ତଙ୍କୁ ତାଙ୍କ ଗବେଷଣା ଓ

ଅବଦାନ ପାଇଁ ବଙ୍ଗ ସାହିତ୍ୟର ସର୍ବୋଚ୍ଚ ରବୀନ୍ଦ୍ର ପୁରସ୍କାର ଦିଆଯାଇଛି; ଦିଆଯାଇଛି ମଧ୍ୟ ବିଶ୍ୱଭାରତୀର ସର୍ବୋଚ୍ଚ ଉପାଧି "ଦେଶୀକୋତ୍ତମ" । ଏ କାରଣରୁ ବଙ୍ଗ ଭାଷାର ଜ୍ଞାନଭଣ୍ଡାର ଓଡ଼ିଆ ଅପେକ୍ଷା ବୃହତ୍ତର ଓ ବଙ୍ଗ ଭାଷା ଓଡ଼ିଆ ତୁଳନାରେ ସବଳ ହୋଇଥିବାର ଏହା ମଧ୍ୟ ଏକ କାରଣ । ଓଡ଼ିଶାରେ କିନ୍ତୁ ବିଭିନ୍ନ ବିଷୟକ ଗବେଷଣା ମାଧ୍ୟମରେ ଜ୍ଞାନର ଦିଗନ୍ତକୁ ପ୍ରସାରିତ କରି ତାହାକୁ ଓଡ଼ିଆ ଭାଷାରେ ପ୍ରକାଶ କରୁଥିବା ବ୍ୟକ୍ତିମାନଙ୍କୁ ସ୍ୱୀକୃତି ବା ସମ୍ମାନ ଦେବା ନିୟମ ନୁହେଁ, ବ୍ୟକ୍ତିକ୍ରମ ମାତ୍ର ଓ ଦୈବାତ ତା' କେବେ କିପରି ହେଲେ ଅନେକ ବ୍ୟକ୍ତି, ବିଶେଷ ଭାବରେ ସର୍ଜନାତ୍ମକ ସାହିତ୍ୟିକ ଓ ତାଙ୍କ ମଧ୍ୟରେ କବିମାନେ ତୀବ୍ର ପ୍ରତିକୂଳ ପ୍ରତିକ୍ରିୟା ପ୍ରକାଶ କରନ୍ତି । କାରଣ ସମସ୍ତ ସମ୍ମାନ ଓ ସ୍ୱୀକୃତି କୁଆଡ଼େ କେବଳ ସେଇମାନଙ୍କର ହିଁ ପ୍ରାପ୍ୟ । ଦୁର୍ଭାଗ୍ୟ ! ତା'ର ଗୋଟିଏ ବଡ଼ କାରଣ ହେଉଛି, ସାଂପ୍ରତିକ କାଳରେ ଅନ୍ୟ ରାଜ୍ୟ ତୁଳନାରେ ଓଡ଼ିଶାରେ ପ୍ରଶାସନର ବହୁ କ୍ଷମତାସୀନ ବ୍ୟକ୍ତି ସର୍ଜନାତ୍ମକ ସାହିତ୍ୟ ସୃଷ୍ଟିରେ ହାତ ଦେଇଛନ୍ତି ଓ ଦେଉଛନ୍ତି । ସେଇ ସର୍ଜନାତ୍ମକ ଓଡ଼ିଆ ସାହିତ୍ୟିକମାନେ ହୁଏତ ଏଇ ଅଳ୍ପ ଦିନ ତଳ ପର୍ଯ୍ୟନ୍ତ ଅଥବା ଏବେ ବି କ୍ଷମତାସୀନ ତଥା ସେ କାରଣରୁ ଅତ୍ୟନ୍ତ ପ୍ରଭାବଶାଳୀ ଥିବାରୁ ଓଡ଼ିଶାରେ ସଂସ୍କୃତି, ସାହିତ୍ୟ ଓ ଶିକ୍ଷା କ୍ଷେତ୍ରକୁ ପ୍ରାୟ ସଂପୂର୍ଣ୍ଣ ଭାବରେ ନିୟନ୍ତ୍ରଣ କରନ୍ତି ତଥା ବୌଦ୍ଧିକ ଜଗତକୁ ଆଚ୍ଛାଦିତ ଓ ଆଚ୍ଛନ୍ନ କରି ରଖିଛନ୍ତି । କିନ୍ତୁ ଅନେକ କ୍ଷେତ୍ରରେ ସେମାନଙ୍କ ଦୂରଦୃଷ୍ଟି ନାହିଁ । ଦୃଷ୍ଟିକୋଣ ସଂକୀର୍ଣ୍ଣ ବା ଅଗଭୀର ତଥା ଆତ୍ମକୈନ୍ଦ୍ରିକ, ବା ସ୍ୱାର୍ଥପ୍ରଣୋଦିତ । ସେମାନଙ୍କ ପ୍ରଚଣ୍ଡ ପ୍ରଭାବରେ ଓଡ଼ିଶାରେ ଏପରି ଏକ ସାଂସ୍କୃତିକ ବାୟୁମଣ୍ଡଳ ସୃଷ୍ଟି ହୋଇଛି ଯେ ସ୍ୱାଧୀନ ଭାବରେ ଚିନ୍ତା କରିବା ଓ ତାହାକୁ ପ୍ରକାଶ କରିବା ମଧ୍ୟ କଷ୍ଟକର ହୋଇପଡ଼ିଛି । ଓଡ଼ିଶାର ବୌଦ୍ଧିକ ଜଗତ ଅବକ୍ଷୟ, ବ୍ୟାଧି ପ୍ରପୀଡିତ ଓ ବୌଦ୍ଧିକ ବାୟୁମଣ୍ଡଳ ଦୂଷିତ ହୋଇପଡ଼ିଥିବାର ତାହା ଅନ୍ୟତମ କାରଣ । ଏପରି ଦୂରଦୃଷ୍ଟିହୀନତା ତଥା ସଂକୀର୍ଣ୍ଣ ଦୃଷ୍ଟିକୋଣ ଓ ମନୋବୃତ୍ତି ହିଁ ଓଡ଼ିଆ ଭାଷାକୁ ତା'ର ମୃତ୍ୟୁ ଆଡ଼କୁ ଠେଲିଦେଉଛି । ଏହା ଅପ୍ରିୟ, ଅତ୍ୟନ୍ତ ଅପ୍ରିୟ କଥା, କିନ୍ତୁ ସତ୍ୟ । ତାହା ଅବଶ୍ୟ ଅନେକ ବୁଝନ୍ତି ନାହିଁ ଓ ଏପରିକି ବୁଝିବା ପାଇଁ ଚାହାନ୍ତି ନାହିଁ ।

କିନ୍ତୁ ଓଡ଼ିଆ ଭାଷାର ଭବିଷ୍ୟତ ଅନ୍ଧକାରାଚ୍ଛନ୍ନ ହେଲେ କ'ଣ ସର୍ଜନାତ୍ମକ ଓଡ଼ିଆ ସାହିତ୍ୟର ଭବିଷ୍ୟତ ଉଜ୍ଜ୍ୱଳ ହୋଇପାରିବ ? ସମସ୍ତ ପ୍ରକାରର ଶସ୍ତା ଭାବପ୍ରବଣତା ଓ ବ୍ୟକ୍ତିଗତ ସ୍ୱାର୍ଥ ଏବଂ ସ୍ୱୀକୃତି ଆକାଂକ୍ଷାର ଉର୍ଦ୍ଧ୍ୱକୁ ଯାଇ ଓଡ଼ିଆ ବୁଦ୍ଧିଜୀବୀମାନେ ଏ ବିଷୟରେ ଗଭୀର ଭାବରେ ଚିନ୍ତା କରିବେ କି ? ■

୩୨୪, ଶ୍ରୀରାମନଗର, ଭୁବନେଶ୍ୱର

ସୌଜନ୍ୟ- ସମ୍ବାଦ, ରଜତ ଜୟନ୍ତୀ ବିଶେଷାଙ୍କ, ୨୦୦୮

# ମାତୃଭାଷା ଓଡ଼ିଆ

ଡକ୍ଟର ବିଜୟ ପ୍ରସାଦ ମହାପାତ୍ର

ଏବେ ଓଡ଼ିଶାରେ କିଛି କିଛି ଲୋକ ବିଶ୍ୱାସ କଲେଣି ଯେ ସତେ ସତେ ଆଗାମୀ କେଇ ବର୍ଷ ଭିତରେ ଓଡ଼ିଆ ଭାଷାଟା ମରିଯାଇପାରେ । ଯେଉଁମାନେ ଏ ଦୁର୍ବିପାକରେ ବିଶ୍ୱାସ ରଖନ୍ତି ଓ ଭୟ କରନ୍ତି, ସେମାନଙ୍କ ଭିତରେ କେତେକ ନେତୃସ୍ଥାନୀୟ ବ୍ୟକ୍ତି ଓ ବେସରକାରୀ ଅନୁଷ୍ଠାନ ବି ଏବେ ଅନ୍ତର୍ଭୁକ୍ତ । ଏହା ଓଡ଼ିଆ ଜାତି ପକ୍ଷରେ ସୁଖର କଥା, କାରଣ ଏଇମାନେ ହିଁ ଜନମତକୁ ଏ ବିଷୟ ପ୍ରତି ସଂଗଠିତ କରିବେ ଓ ପରିଚାଳିତ କରିବେ । କହିବେ ବଡ଼ ପାଟିରେ - ଲେଖି ଛାପି, ସଭା ସମିତିରେ ଡାକବାଜି ଲଗାଇ, ପୋଡ଼ାଜଳା କରି, ଭାଷାବର୍ଷ ପାଳନ କରି ଯେ ଆହେ ଓଡ଼ିଆଏ ! ତୁମ ମା' ମରିଯାଉଛି, ଆଉ ତୁମେ 'ଶୃଙ୍ଗାର ଶତକ'ରେ ମାତିଛ କ'ଣ ?

ଓଡ଼ିଆ ଭାଷା ଭାରତର ବର୍ତ୍ତମାନ ପରିସ୍ଥିତିରେ ବିପନ୍ନ । ଭାଷାବିଜ୍ଞାନର ସୂଚନା ମଧ୍ୟ ସେୟା । ଗୋଟିଏ ମରଣାପନ୍ନ ରୋଗୀର ନାଡ଼ି ଟିପିଲେ ଜଣେ ଡାକ୍ତର ଯେପରି ଜାଣିପାରେ ଯେ ମୃତ୍ୟୁ ଆସନ୍ନ, ଗୋଟିଏ ଭାଷାର ସେଇ ଦୁଃସମୟ ଆସିଛି କି ନାହିଁ, ଜାଣିବା ଆଜିର ବିଜ୍ଞାନ ପକ୍ଷରେ ଅସମ୍ଭ ନୁହେଁ । ସାରା ବିଶ୍ୱରେ ତଦ୍‌ବିଦମାନଙ୍କ ଦ୍ୱାରା ଏହାର ଅନୁସନ୍ଧାନ ଚାଲିଛି । ଆଣବିକ ଶକ୍ତିର ଯେମିତି ଗୋଟିଏ ଭଲ ଦିଗ ଅଛି, ଖରାପ ଦିଗଟିଏ ବି ଅଛି । ସବୁ ବିଜ୍ଞାନର ଦୁଇଟି ରାସ୍ତା -ଗୋଟିଏ ଦିଗରେ ଏହା ରୋଗୀକୁ ଯେପରି ନିରାମୟ କରିପାରେ, ସେହିପରି ତାକୁ ଖତମ୍ ବି କରିପାରେ । ଭାଷାବିଜ୍ଞାନର ଏହି ମଣିଷମାରୁ ଦିଗଟିକୁ ପ୍ରୟୋଗ କରି ଭାରତବର୍ଷର ଅନେକଗୁଡ଼ିଏ ଭାଷାକୁ ମାରିଦେବାର ଚେଷ୍ଟା ପ୍ରବଳ ହୋଇ ଉଠିଛି, ତେବେ, ଏ ବିଷର ବଟିକା ଗୁଡ଼ରେ ପାଗ କରାହୋଇଛି । ମୃତ୍ୟୁ ଆସିବ ନିଦରେ-ନିଠେଇ ନିଠେଇ, ମଠେଇ ମଠେଇ । ଆଗ ଆପଣଙ୍କର ହାତଟାଏ ଯିବ, ତା'ପରେ ଗୋଡ଼ଟାଏ । ତା'ପରେ ନାକଟା କି କାନ ଦୁଇଟା । ଶେଷକୁ ଯେତେବେଳେ ଆତତାୟୀ ଭୁକେଇ ଦେବ ତା'ର ମାରଣାସ୍ତ୍ର ଆପଣଙ୍କ ବୁକୁରେ, ସୁଖର ବିଷୟ ଆପଣ କିଛି ଜାଣିପାରିବେ

ନାହିଁ, ଆପଣ ତା' ପୂର୍ବରୁ ମରିସାରିଥିବେ । ଭାରତର ବିହାର ପ୍ରଦେଶରେ ମୈଥିଳ ବୋଲି ଗୋଟିଏ ଜାତି ଅଛନ୍ତି- ରାମାୟଣର ସେଇ ପ୍ରାଚୀନ ମୈଥିଳା, ସୀତା ଯେଉଁଠି ଜନ୍ମ ନେବାକୁ ବାଛିଥିଲେ । ତାଙ୍କରି ସନ୍ତାନ ଏମାନେ । ସେଠାରେ ଲୋକେ ମୈଥିଳୀ ବୋଲି ଗୋଟିଏ ଭାଷା କହିଥାନ୍ତି, ଅନେକଟା ଆମ ଓଡ଼ିଆ ଭାଷା ସାଙ୍ଗରେ ମିଳେ । ଆମ 'ଭୁଆସୁଣୀ' କଥାଟା ବୋଧହୁଏ ତାଙ୍କରି 'ବହୁ ଆସିନ୍' ବା 'ପହିଲିପାଳି ଆସିଥିବା ବୋହୂ' କଥାରୁ ଆସିଛି । ତାଙ୍କ ବ୍ରାହ୍ମଣମାନେ ଆମ ଓଡ଼ିଆ ବ୍ରାହ୍ମଣମାନଙ୍କ ପରି ମାଛ ଖାଆନ୍ତି । ବହୁତ ମେଳ ଅଛି ତାଙ୍କ ଆମ ଭିତରେ । ଆମ ଭାଷା ପରି ତାଙ୍କ ଭାଷାର ବି ଗୋଟିଏ ଅକ୍ଷର ଥିଲା । ତାକୁ କରିତ୍କର୍ମା ବଙ୍ଗାଳୀମାନେ ଛଡ଼ାଇନେଇ ମାଡ଼ିବସିଲେ, ଯେମିତି ଆମ ଜଗନ୍ନାଥଙ୍କ ଭୋଗରୁ ରସଗୋଲାକୁ ଆମଠୁ ଛଡ଼ାଇନେଇ ନିଜ ନାଁରେ ଚଳାଇଲେ । ଏବେ ଆମ ରସଗୋଲା 'ବେଙ୍ଗଲୀ ସୁଇଟ୍ସ ହୋଇ ସାରା ପୃଥିବୀ ପରିକ୍ରମା କରୁଛି । ସଂପ୍ରତି ଆମ ଓଡ଼ିଶୀ ନାଚ ଉପରେ ସେମାନଙ୍କ ଆଖି ପଡିଛି । ସେହିପରି ଜରାଗ୍ରସ୍ତ ମୈଥିଳୀ ଅକ୍ଷର ହୋଇଛି ବିଶ୍ୱପ୍ରସିଦ୍ଧ ମହାମହିମ ବଙ୍ଗଳା ଭାଷାର ଅକ୍ଷର । ମୈଥିଳୀର ହାତଟାଏ ଗଲା । ମୈଥିଳୀ ନିଜ ଅକ୍ଷର ହରାଇ ଭେକାନି ହୋଇ ବୁଲୁଛି । ମୈଥିଳୀ ଭାଷାରେ ବି ଉଚ୍ଚଦରର ସାହିତ୍ୟ ଲେଖାହୋଇଥିଲା । ଆମରି ପରି ବେଶୀ ପ୍ରାଚୀନ ନୁହେଁ କି ବେଶୀ ନୂଆ ନୁହେଁ । ଆମ ସାରଳା ଦାସ, ବଳରାମ ଦାସଙ୍କ ସମୟରେ ଯେପରି ପ୍ରବଳ ସାହିତ୍ୟ ଲେଖା ଆରମ୍ଭ ହୁଏ, ଏ ଭାଷାରେ ବି ସେମିତି ସାହିତ୍ୟ ସୃଷ୍ଟି ହୋଇଥିଲା । ଆଉ ଲେଖା ହେଉନି କିଛି ସେ ଭାଷାରେ । ଯଦିବା ହେଉଛି, ସେ କେବଳ ସାହିତ୍ୟ ଏକାଡେମୀର ମୁହଁମତକୁ । ତାକୁ ସ୍ୱାଧୀନ, ଜୀବନ୍ତ ସାହିତ୍ୟ କୁହାଯିବ ନାହିଁ, ଗୋଡ଼ ଦୁଇଟା ଗଲା । ଏଭାଷା ନିଜର ସ୍ୱତନ୍ତ୍ର ନାଆଁ ବି ହୋଇଛି । ହୋଇଛି ହିନ୍ଦୀର ଏକ ପ୍ରକାରଭେଦ, ଅର୍ଥାତ୍ ନିଜର ସ୍ୱତନ୍ତ୍ରତା ହରାଇଛି । ନାକଟା ଗଲା । ଏଇ ଭାଷା ପାଇଁ ବ୍ୟାକରଣ ନାହିଁ- ମୈଥିଳୀ ପିଲାଏ ହିନ୍ଦୀ ବ୍ୟାକରଣ ପଢୁଛନ୍ତି, ଓଡ଼ିଆ ପିଲାଏ ସଂସ୍କୃତ ବ୍ୟାକରଣ ପଢିଲା ପରି । ଆଖି ଦୁଇଟା ଗଲା । ଏପରି ନାନା ବ୍ୟବଚ୍ଛେଦ ପରେ ଏବେ ସେମାନଙ୍କ ମର୍ମସ୍ଥଳରେ ତେଞ୍ଚ ଭୁଙ୍କାଇବା ପାଇଁ ଚେଷ୍ଟା ଚାଲିଛି । ଏ ଭାଷାରେ ଯେମିତି ପ୍ରାଥମିକ ଶିକ୍ଷା ଦିଆନଯାଏ । ଅର୍ଥାତ୍ ମୈଥିଳୀ ଶିଶୁଙ୍କୁ ଯେପରି ନିଜ ମାତୃଭାଷାରେ ସାକ୍ଷର ହେବାର ସୁଯୋଗ ନମିଳେ । ଏଥିରୁ ମୈଥିଳୀ ଶିଶୁ ବୁଝିବ ଯେ, ତା'ର ମାତୃଭାଷା ଗୋଟିଏ ଲିଖିତ ଭାଷା ନୁହେଁ; ଏହା ଅଶିକ୍ଷିତ, ଅଣପାଠୁଆମାନଙ୍କର ଭାଷା । ନିଜ ଭାଷା ପ୍ରତି ଏଇ ଧାରଣା ଯେତେବେଳେ ବଦ୍ଧମୂଳ ହେବ, ସେଇ ହେବ ଭାଷାର ମୃତ୍ୟୁ । ମୈଥିଳୀ ଭାଷାର ସେଇ ଆସନ୍ନ ମୁହୂର୍ତ୍ତ ଆସି ଉପସ୍ଥିତ । ଭାଷା ମରିବାର ଅନ୍ୟ ଗୋଟିଏ ଲକ୍ଷଣ ହେଲା, ଭାଷାର ମାଧ୍ୟାକର୍ଷଣ ଲୋପ ।

ସୂର୍ଯ୍ୟର ମାଧ୍ୟାକର୍ଷଣ ନଷ୍ଟ ହେବାର ଉପକ୍ରମ ହେଲେ, ଗ୍ରହ ଉପଗ୍ରହମାନେ ଯେପରି କେନ୍ଦ୍ରଚ୍ୟୁତ ବା କକ୍ଷଚ୍ୟୁତ ହୋଇଥାନ୍ତି, ସେହିପରି ଭାଷାର ମାଧ୍ୟାକର୍ଷଣ ଲୋପ ପାଇଲେ ଭାଷା ଖଣ୍ଡଖଣ୍ଡ ହୋଇଯାଏ । ସେ ଲକ୍ଷଣ ବି ଅଭାବ ନାହିଁ ମୈଥିଳୀ ଭାଷା କ୍ଷେତ୍ରରେ । ମୈଥିଳୀ ଭାଷାଠାରୁ ଅଲଗା ହେବାର ଚେଷ୍ଟାରେ ଏହି ଭାଷାର କେତୋଟି ଉପଭାଷା ନିଜକୁ ସ୍ୱାଧୀନ ଭାଷା କହି ଆନ୍ଦୋଳନ ଆରମ୍ଭ କରି ଦେଇଛନ୍ତି । ସେଥିରୁ ଗୋଟିଏ ଉପଭାଷା ହେଲା ଅଙ୍ଗିକା ଓ ଅନ୍ୟଟି ବଜ୍ଜିକା । ଏମାନେ ଆଉ ନିଜକୁ ମୈଥିଳୀ -ଭାଷା କହିବାକୁ ରାଜି ନୁହନ୍ତି । ଆମ ଓଡ଼ିଆ ଭାଷା କ୍ଷେତ୍ରରେ ବି ଅନୁରୂପ ପରିସ୍ଥିତି ସୃଷ୍ଟି ହୋଇଛି । ସମ୍ବଲପୁରୀ ଉପଭାଷା ନିଜକୁ ଗୋଟିଏ ସ୍ୱାଧୀନ ଭାଷା ବୋଲି ଦାବି କରି ଓଡ଼ିଆ ଭାଷାଠାରୁ ଅଲଗା ହେବା ପାଇଁ ଆନ୍ଦୋଳନ ଆରମ୍ଭ କରିଦେଇଛି । ଅର୍ଥାତ୍ ଗୋଟିଏ ବିରାଟ ଭାଷାଭାଷୀ ଅଞ୍ଚଳ ଉପରେ ଓଡ଼ିଆ ଭାଷାର ଆଉ କର୍ତ୍ତୃତ୍ୱ ନାହିଁ । ଆଜି ଓଡ଼ିଆରୁ ସମ୍ବଲପୁରୀ ବାହାରିଯିବ ତ କାଲି ଯିବ ଆଉ ଗୋଟିଏ ଅଞ୍ଚଳ । ତା' ଆରଦିନ ଆଉ ଗୋଟିଏ । ଆଜି ଯେଉଁ ଅଢେଇ କୋଟିରୁ ଊର୍ଦ୍ଧ୍ୱ ଲୋକ ଓଡ଼ିଆ କହୁଛନ୍ତି ବୋଲି ଆମେ ଦାବି କରୁଛେ, ତାହା ମାତ୍ର କେଇ ଲକ୍ଷ ଲୋକଙ୍କ ଭାଷାରେ ପରିଣତ ହେବ । ଆଜି ମୈଥିଳୀ ଭାଷାର ସେହି ଦୁରବସ୍ଥା । ଏହାର ଆତ୍ମା ଚାଲିଯାଇଛି, ଏହାର ସାହିତ୍ୟ ଶୁଖିଯାଇଛି । ଏହାର କର୍ତ୍ତୃତ୍ୱ ଲୋପ ପାଇଛି । ଅନେକ ଲୋକଙ୍କର ଏହା ମାତୃଭାଷା ହୋଇଥିବା ସତ୍ତ୍ୱେ, ଏ ଭାଷାରେ ପ୍ରାଥମିକ ଶିକ୍ଷା ଦିଆ ହେଉନାହିଁ । ଗୋଟିଏ ଉନ୍ନତ ଭାଷାରୁ ଏହା ପରିଣତ ହୋଇଛି ଗୋଟିଏ ଉପଭାଷାରେ । ବର୍ତ୍ତମାନ ମୈଥିଳୀମାନେ ତାଙ୍କ ପୂର୍ବଭାଷାର ଜୀବନକୁ ଫେରାଇ ଆଣିବା ପାଇଁ ପାଟି କରିବା ଆରମ୍ଭ କରିଛନ୍ତି, କିନ୍ତୁ ଅଜଗରର ପେଟରୁ ହଜମ ହୋଇସାରିଥିବା ଜୀବଟିକୁ ଉଦ୍ଧାର କରିବା ଯେପରି ଅସମ୍ଭବ, ସେହିପରି ହିନ୍ଦୀ ଗର୍ଭରୁ ମୈଥିଳୀକୁ ଉଦ୍ଧାର କରିବା ଅସମ୍ଭବ । ଆମେ ବି ସେହିପରି ଅଜଗରର ପେଟରେ ପଶିବାର ଅବସ୍ଥାରେ ପହଞ୍ଚିଛୁ । ନାହିରେ ତେଲ ପକାଇ ଶୋଇଛୁ – ଖାଦକ ଆମର ବାସ୍ନା ପାଇସାରିଲାଣି । ସେ ଆଡ଼କୁ ଆମର ଖିଆଲ ନାହିଁ ।

ଗୋଟିଏ ଭାଷାର ପ୍ରକୃତ ସ୍ୱାସ୍ଥ୍ୟ ଜାଣିବା ପାଇଁ ଅନେକଗୁଡ଼ିଏ ପ୍ରଶ୍ନ ପଚାରା ଯାଇପାରେ, ଯେଉଁ ଉତ୍ତରରୁ ଜଣେ ଅଭିଜ୍ଞ ବ୍ୟକ୍ତି ପାଖରେ ତା'ର ଅବସ୍ଥା ବାରିହୋଇ ପଡ଼େ । କାଶରେ ଯଦି ରକ୍ତ ପଡୁଥାଏ, ଜର ହେଉଥାଏ, ଓଜନ କମିଯାଉଥାଏ, ସେପରି ନିର୍ଦ୍ଦିଷ୍ଟ ରୋଗର ଲକ୍ଷଣ ହୋଇପାରେ, ଓଡ଼ିଆ ଭାଷାର ଶରୀରରେ ସେହିପରି ଦେଖାଦେଇଛି ବିପଜ୍ଜନକ ଲକ୍ଷଣ । ସେଥିପାଇଁ ସମୟରୁ ବ୍ୟବସ୍ଥା ନକଲେ ନେଡ଼ି ଗୁଡ଼ କହୁଣୀକୁ ବୋହିଯିବ । ଏ ଜାତିର ଭାଷାକୁ ବଞ୍ଚାଇ ରଖିବା ପାଇଁ ଏ ଜାତିକୁ ସତର୍କ ରହିବାକୁ ପଡ଼ିବ । ଲଢିବାକୁ ପଡ଼ିବ ।

ପଇସା ଖର୍ଚ୍ଚ କରିବାକୁ ପଡ଼ିବ । ଭାଷା ଗୋଟିଏ ଜାତିର ଜୀବନ ନାଡ଼ିକା । ସେ ନାଡ଼ି ଯେତେ ଦିନ ଚାଲିଥିବ, ଏ ଜାତି ବଞ୍ଚିଥିବ । ଯେଉଁଦିନ ସେ ନାଡ଼ି ବନ୍ଦ ହୋଇଯିବ, ତାହା ହେବ ସେ ଜାତିର ଶେଷ । ଓଡ଼ିଆ ଭାଷାର ନାଡ଼ି ବନ୍ଦ ହୋଇଯିବାର ଯେଉଁ ଲକ୍ଷଣମାନ ଦେଖାଦେଇଛି, ସେ କଥା ଭାଷାବିଜ୍ଞାନ ବହୁ ଦିନରୁ ସୂଚାଇ ସାରିଲାଣି । ବର୍ତ୍ତମାନ ଏ ଜାତିର ଲୋକେ ଚେଷ୍ଟା କରିବେ କି ନାହିଁ, ତାହା ସେମାନଙ୍କ ଉପରେ ନିର୍ଭର କରେ । ସେଥିପାଇଁ ଅନ୍ୟ ଲୋକେ ଆମକୁ ସାହାଯ୍ୟ କରିବାକୁ ଆସିବେ ନାହିଁ । ଆମ ନିଜକୁ ହିଁ ଲଢ଼ିବାକୁ ପଡ଼ିବ । ଯେଉଁମାନେ ଏ ଭାଷାର ଦୂରବସ୍ଥାକୁ ବୁଝିବା ପାଇଁ ନାରାଜ ଓ ନାନା ପ୍ରକାର ତୁଚ୍ଛା ଆଶ୍ୱାସନା ଦେଇ ଏ ଜାତିକୁ ଭଣ୍ଡୁଛନ୍ତି, ସେହିମାନେ ହିଁ ଏ ଜାତିର, ଏ ଭାଷାର ପ୍ରଧାନ ଶତ୍ରୁ । ସେମାନଙ୍କର ଅଦୂରଦର୍ଶିତା ଓ ଅନଭିଜ୍ଞତା ଏଥିପାଇଁ ଦାୟୀ ।

ଭାରତରେ ଛୋଟ ବଡ଼ ହୋଇ ବର୍ତ୍ତମାନ ଦୁଇ ଶହରୁ ବେଶୀ ଭାଷା ଚଳେ । ସେଥିରୁ ପ୍ରାୟ ଦୁଇ ତୃତୀୟାଂଶ ମରଣମୁଖୀ । ଓଡ଼ିଆ ଭାଷା ବି ଏହି ବିପଦର ବଳୟ ଭିତରେ ରହିଛି । ଆମେ ଯେତେବେଳେ ଏହାର ସୂଚାନା ଦେଲୁ, କିଛି ଉତ୍ତେଜିତ ହୋଇପଡ଼ିଲେ ଏବଂ ଯୁକ୍ତି ବାଢ଼ିଲେ ଯେ ଓଡ଼ିଆ ଭାଷା କେବେ ମରିବ ନାହିଁ । ଓଡ଼ିଆ ଭାଷା ପ୍ରତି କୌଣସି ବିପଦ ନାହିଁ । ତା'ର କାରଣ ହିସାବରେ ସେମାନେ କହିଲେ ଯେ, ଓଡ଼ିଆ ଭାଷା ଗାଁ, ଗଣ୍ଡା ବଣ ଜଙ୍ଗଲରେ ଲକ୍ଷ ଲକ୍ଷ ଲୋକଙ୍କ ଦ୍ୱାରା କଥିତ ହୋଇଥାଏ । ପୃଥିବୀରେ ଏପରି କୌଣସି ଶକ୍ତି ନାହିଁ, ଯେଉଁ ଶକ୍ତି ଏଇ ଅସଂଖ୍ୟ ଲୋକଙ୍କ ତୁଣ୍ଡରୁ ତାଙ୍କର ମାତୃଭାଷାକୁ କାଢ଼ିନେଇ ପାରିବ । ଆଉ ଏଇ ଲୋକେ ହିଁ ଓଡ଼ିଆ ଭାଷାକୁ ବଞ୍ଚାଇ ରଖିବେ । ଆମେ ଏକଥାକୁ ଅସ୍ୱୀକାର କରୁନାହୁଁ, ବସ୍ତୁତଃ ଆମର ଭୟ ହିଁ ସେୟା, ଅର୍ଥାତ୍ ଆଉ କିଛି ବର୍ଷ ପରେ ଓଡ଼ିଆ ଭାଷା ସେହି ଗାଁ ଗଣ୍ଡାର ମଫସଲି ଲୋକ ଓ ବଣ ଜଙ୍ଗଲର ଆଦିବାସୀ ଲୋକଙ୍କ ଭାଷା ହୋଇ ରହିଯିବ । ତା'ଛଡ଼ା ଆମକୁ ଦୁଃଖର ସହିତ କହିବାକୁ ପଡୁଛି ଯେ, ଏହି ଅନଭିଜ୍ଞ ତଥା ଭାବପ୍ରବଣ ବ୍ୟକ୍ତିମାନେ ଆଧୁନିକ ପୃଥିବୀରେ ଭାଷା ମରିବା କ'ଣ, ତାହା ଠିକ୍ ଜାଣନ୍ତି ନାହିଁ । ଆଧୁନିକ ଯୁଗରେ ଭାଷା ମଲେ ଲୋକମାନଙ୍କ ତୁଣ୍ଡରୁ ଏହା ଲୋପ ପାଇଯାଏ ନାହିଁ । ଏହା ଜାତିର ବିଭିନ୍ନ ସାମାଜିକ ପରିସରରୁ ଲୋପ ପାଇଯାଏ । ଭାଷା କୁହାଯାଉ ନଥିବା ଏକ ପ୍ରକାରର ମୃତ୍ୟୁ । ଭାଷାକୁ କୁହାଇ ନଦେବା ଆଉ ଏକ ପ୍ରକାର ମୃତ୍ୟୁ । ଦ୍ୱିତୀୟ ପ୍ରକାରଟି ଖାଲି ମୃତ୍ୟୁ ନୁହେଁ, ହତ୍ୟା । ଅର୍ଥାତ୍ ଭାଷାର ସାମାଜିକ ପରିସରଗୁଡ଼ିକୁ ଏପରି ଭାବେ ରୁନ୍ଧି ଦେବାକୁ ହେବ, ଯେପରି ସେ ଭାଷା ନିଜ ସମାଜଠାରୁ ବିଚ୍ଛିନ୍ନ ହୋଇପଡ଼ିବ । ଏହା ଶ୍ୱାସରୁଦ୍ଧ ଜନିତ ମୃତ୍ୟୁ-ଜୀବନ ମୃତ୍ୟୁ ସଙ୍ଗେ ସମାନ । ଏପରି ଘଟିଲେ ବୁଝିବାକୁ ହେବ ଯେ, ଭାଷା

କୋମା ଅବସ୍ଥାରେ । ଏହି ଅବସ୍ଥାରେ ମରିବା ବଞ୍ଚିବା ସମାନ । ବାନ୍ଧି ମାରିଲେ ଯାହା, ଧରି ମାରିଲେ ସେୟା । ପରିଣତି ମୃତ୍ୟୁ ।

ପ୍ରଥମେ ସ୍ୱାଭାବିକ ଧରଣର ମୃତ୍ୟୁ ବିଷୟରେ ଦେଖାଯାଉ । ଆଣ୍ଡାମାନ ଦ୍ୱୀପପୁଞ୍ଜରେ ଓଙ୍ଗେ ନାମକ ଏକ ଛୋଟ ଆଦିବାସୀ ଗୋଷ୍ଠୀ ବସବାସ କରନ୍ତି । ସେମାନଙ୍କ ସଂଖ୍ୟା ବର୍ତ୍ତମାନ ମାତ୍ର ଶହେରୁ କିଛି ବେଶୀ । ଏହି ଶହେଟି ଲୋକ ଓଙ୍ଗେ ଭାଷା କହିଥାନ୍ତି । ପ୍ରାକୃତିକ କାରଣରୁ ଏହି ଗୋଷ୍ଠୀର ସନ୍ତାନ ଜନ୍ମ ହେବା ବିରଳ । ଫଳରେ ସେମାନଙ୍କ ସଂଖ୍ୟା ବଢିବା ଅପେକ୍ଷା ଆସ୍ତେଆସ୍ତେ ଛିଡୁଛି । ଏପରି ସମୟ ଆସିବ, ଯେତେବେଳେ ଏଇ ଗୋଷ୍ଠୀ ଆହୁରି ହ୍ରାସ ପାଇବାକୁ ଲାଗିବ, କାରଣ ସେମାନେ ସନ୍ତାନ ଜନ୍ମ କରିବାକୁ ଅକ୍ଷମ ହୋଇ ପଡ଼ିବେ । ଫଳରେ, ଗୋଷ୍ଠୀରେ ରହିବେ କିଛି ବୁଢାବୁଢୀ ଯେଉଁମାନେ ଆସ୍ତେ ଆସ୍ତେ ମରିବାକୁ ଆରମ୍ଭ କରିବେ । ଶେଷ ବୁଢା କି ବୁଢୀଟି ଯେଉଁଦିନ ମରିଯିବ ତାଙ୍କ ଭାଷା ବି ସେଇଦିନ ମରିଯିବ । ଏହା ହେଲା, ଗୋଟିଏ ଜାତି ଲୋପ ପାଇଯିବା ପରେ ସେଇ ଜାତିର ଭାଷାକୁ କହିବା ପାଇଁ ଆଉ କେହି ରହିବେ ନାହିଁ ଓ ଭାଷାର ମୃତ୍ୟୁ ଘଟିବ । ଏହି ସୂତ୍ରରେ ଆମେରିକାର ସହସ୍ରାଧିକ ଆଦିବାସୀ ଗୋଷ୍ଠୀଙ୍କର ଭାଷା ଲୋପ ପାଇଯାଇଛି । ଅଷ୍ଟ୍ରେଲିଆ, ନ୍ୟୁଜିଲାଣ୍ଡ, କାନାଡ଼ା, ଦକ୍ଷିଣ ଆମେରିକା, ଭାରତ ମହାସାଗରର ଦ୍ୱୀପପୁଞ୍ଜରେ ମଧ୍ୟ ଠିକ୍ ସେଇ ଅବସ୍ଥା । ଏସବୁ ସ୍ଥାନରେ ବହୁ ଆଦିମ ଜାତି ଲୋପ ପାଇଯିବା ଯୋଗୁ ସେମାନଙ୍କର ଭାଷାବି ଚିରଦିନ ପାଇଁ ଧରାପୃଷ୍ଠରୁ ଲୋପ ପାଇଯାଉଛି । ସେହି ଏକ କାରଣରୁ ଆମ ଓଡ଼ିଶାରେ ବି କିଛି ଆଦିବାସୀ ଭାଷା ଲୋପ ପାଇଯିବାର ଯଥେଷ୍ଟ ସମ୍ଭାବନା ରହିଛି । କୋରାପୁଟର ଡିଡେଇ, ପାରେଙ୍ଗା, ଗଦବା; କେନ୍ଦୁଝରର ଜୁଆଙ୍ଗ, ସୁନ୍ଦରଗଡ଼ର କିଷାନ ମଧ୍ୟ ଆସି ଜନସାଂଖ୍ୟିକ ସୀମାରେଖାର ସଙ୍କଟ ବିନ୍ଦୁରେ ପହଞ୍ଚିଛନ୍ତି । ମାତ୍ର କେଇ ହଜାର ଲୋକଙ୍କର ଏଇ ଗୋଷ୍ଠୀଗୁଡ଼ିକ ଯେତିକି ଯେତିକି ଛିଡ଼ିବେ, ସେମାନଙ୍କ ଭାଷା ମଧ୍ୟ ସେତିକି ସେତିକି ଲୋପ ପାଇଚାଲିବ ଅନ୍ତିମ ମୁହୂର୍ତ୍ତ ପର୍ଯ୍ୟନ୍ତ । ସେ ଭାଷାଗୁଡ଼ିକ ଚିରଦିନ ପାଇଁ ମାନବ ଜାତିର ମାନସପଟରୁ ଲିଭିଯିବେ । ଭାଷାକୁ ନେଇ ଯେପରି ଜାତି, ଜାତିକୁ ନେଇ ସେହିପରି ଭାଷା । ଜାତି ଲୋପ୍ ପାଇଗଲେ ଭାଷା ଲୋପ ପାଇଯିବା ଅବଶ୍ୟମ୍ଭାବୀ । ଏବେ ଓଡ଼ିଶାର ସଂସ୍କୃତ ପ୍ରେମୀମାନେ ଲୋକଭାଷା ନାମରେ ଏକ ମୃତ ଭାଷା ପାଇଁ ଜାତିଟିଏ ଗଢିବାରେ ଲାଗି ପଡିଛନ୍ତି । ସ୍କୁଲ୍, କଲେଜ, ଥାନା, କଚେରି, ସବୁଠି ଏବେ ଏ ପଣ୍ଡିତମାନେ ସଂସ୍କୃତ ଭାଷାରେ କଥା କହିବାକୁ, ବକ୍ତୃତା ଦେବାକୁ ପିଲାମାନଙ୍କୁ ଅଭ୍ୟାସ କରାଉଛନ୍ତି । ସେମାନଙ୍କର ବିଶ୍ୱାସ ଏ ପିଲାମାନେ ଦିନେ ବଡ଼ ହେବେ, ଘର କରିବେ, ଆଉ ନିଜର

ପରିଚୟ ଦେବାକୁ ଯାଇ କହିବେ -ଓଡ୍ରହଂ । ଗୋଟିଏ ନୂଆ ଜାତି ତିଆରି ହେବ, ଯାହାର ମାତୃଭାଷା ହେବ ସଂସ୍କୃତ । ସଂସ୍କୃତ ଯୁଗରେ ମଧ୍ୟ ଏହା ସମ୍ଭବ ହୋଇ ନଥିଲା । କାରଣ ଉଚ୍ଚବର୍ଣ୍ଣର ପୁରୁଷମାନେ ଯେତେବେଳେ ସଂସ୍କୃତରେ କହୁଥିଲେ, ନାରୀମାନେ ସ୍ୱଚ୍ଛନ୍ଦରେ ପ୍ରାକୃତ ବ୍ୟବହାର କରୁଥିଲେ । ତେଣୁ ସଂସ୍କୃତ ମାତୃଭାଷା ହୋଇ ରହିପାରିଲା ନାହିଁ ଏବଂ ତାହା ହିଁ ହେଲା ଏହାର ମୃତ୍ୟୁର କାରଣ । ଗୋଟିଏ ଭାଷା ଲୋକଭାଷା ହେବାକୁ ହେଲେ-ମା'ର ଭାଷା ହେବା ଆବଶ୍ୟକୀୟ । ସଦ୍ୟଜାତ-ସନ୍ତାନ ପାଇଁ ମା'ର କ୍ଷୀରଠାରୁ ବଳି ଯେପରି ଉପାଦେୟ କିଛି ନାହିଁ, ଗୋଟିଏ ଜାତିପାଇଁ ମା'ର ଭାଷାଠାରୁ ବଳି ଭାଷା ନାହିଁ । ଏହି ଭାଷା ଦ୍ୱାରା ହିଁ ଶିଶୁର ବୌଦ୍ଧିକ ଓ ମାନସିକତାର ମୂଳଦୁଆ ପଡ଼ିଥାଏ । ମାତୃଭାଷାର ମୃତ୍ୟୁ ଘଟିଲେ ଗୋଟିଏ ଜାତିର ମୃତ୍ୟୁ ଘଟେ ।

ଅନ୍ୟ ପ୍ରକାରର ମୃତ୍ୟୁ ହେଲା ଶ୍ୱାସରୁଦ୍ଧଜନିତ । ଗୋଟିଏ ଭାଷା ଉକ୍ତ ସମାଜର ବିଭିନ୍ନ ସାମାଜିକ ପରିସରରେ ବ୍ୟବହୃତ ହୋଇଥାଏ । ଯେତିକି ବିଭିନ୍ନ ସାମାଜିକ ପରିସରରେ ଗୋଟିଏ ଭାଷା ବ୍ୟବହୃତ ହେବ, ସେତିକି ଜୀବନୀଶକ୍ତି ତା'ର ବଢ଼ିବ । ସାମାଜିକ ପରିସରଗୁଡ଼ିକରୁ ଏହା ଯେତିକି ଯେତିକି ହଟିଯିବ, ସେତିକି ସେତିକି ଏହାର ଦମ୍ ବନ୍ଦ ହୋଇଯିବ । ଏହା ଘରର ଦୁଆର ଝରକାଗୁଡ଼ିକୁ ଗୋଟିକ ପରେ ଗୋଟିଏ ବନ୍ଦ କରିବା ପରି । ଯେତେବେଳେ ସବୁ ଜଳା ବନ୍ଦ ହୋଇଯିବ, ଘର ଭିତରେ ଥିବା ଲୋକଙ୍କର ଶ୍ୱାସରୁଦ୍ଧ ହେବ । ଗୋଟିଏ ବନ୍ଦ କୋଠରି ଭିତରେ ଆପଣ ଚିଲାଉଥିବେ, କେହି ଶୁଣି ପାରୁନଥିବେ ଆପଣଙ୍କ କଥା, ଶୁଣିଲେ ବି କେହି ମୂଲ୍ୟ ଦେବେନି ଆପଣଙ୍କ ଅବୋଧ୍ୟ କଥାର । କାରଣ ସେ ସବୁ କ୍ଷେତ୍ରରେ ଓଡ଼ିଆ ଭାଷାରେ କହିବା ଅସମ୍ମାନଜନକ, ଅପାରଗତା, ଅବାଞ୍ଛିତ ବା ଆଇନତଃ ନିଷିଦ୍ଧ । ବର୍ତ୍ତମାନ ଆମ ଓଡ଼ିଆ ସାମାଜିକ ପରିସରଗୁଡ଼ିକୁ ନେଇ ଦେଖାଯାଉ, ଗୋଟିଏ ସାମାନ୍ୟ ଉଦାହରଣ ଦେଇ । ଆଜିର ସଭ୍ୟତାରେ ଟେଲିଭିଜନ ଏକ ଅପରିହାର୍ଯ୍ୟ ବସ୍ତୁ । ଯେତିକି ବେଶୀ ସଭ୍ୟଦେଶକୁ ଯିବ, ସେତିକି ବେଶୀ ଦେଖିବ ଏ ତଥାକଥିତ 'ଇଡ଼ିଅଟ ବକ୍ସ' ବା 'କଳମୂକୁର'ର କାରସାଦି । ଉନ୍ନତ ଦେଶମାନଙ୍କରେ ଶହ ଶହ ଚ୍ୟାନେଲ୍‌ରେ ଅହୋରାତ୍ର ଟେଲିଭିଜନ ଚାଲିଛି । ଏଆରପୋର୍ଟଠାରୁ ଆରମ୍ଭ କରି ହସ୍ପିଟାଲ ପର୍ଯ୍ୟନ୍ତ ଧାଡ଼ି ଧାଡ଼ି ଚେୟାର କଡ଼ରେ ଟେଲିଭିଜନ ଖଞ୍ଜା ହୋଇଛି । ଏ ଟେଲିଭିଜନରେ ଆପଣ ଖାଲି ଛବି ଦେଖୁନାହାଁନ୍ତି, କଥା ବି ଶୁଣୁଛନ୍ତି । ବିଭିନ୍ନ ପ୍ରକାର କଥା ଶୁଣୁଛନ୍ତି ବିଭିନ୍ନ ବିଷୟରେ । ବକ୍ତୃତା, ତର୍କ, ଆଇନ୍, ଆଲୋଚନା, କବିତା, ସମୀକ୍ଷା, ନାଟକ, ଗାନ, ଗାଳି ରୂପକଥା, କମିକ୍, କଳା, ଦର୍ଶନ, ବ୍ୟଙ୍ଗ, ଉପଦେଶ, ଧର୍ମ, ରଣନୀତି, କୂଟନୀତି, ରାଜନୀତି, ବ୍ୟବସାୟ,

କୃଷି, ଚିକିତ୍ସା, ସ୍ୱାସ୍ଥ୍ୟରକ୍ଷା, ରାନ୍ଧଣା, ରୂପସଜ୍ଜା, ଫେଶନ୍, ଖେଳ, ସମ୍ବାଦ, ଭ୍ରମଣ, ପ୍ରୋପାଗାଣ୍ଡା, ପ୍ରଚାର, ବିଜ୍ଞାପନ, ବାଣିଜ୍ୟ, ପ୍ରକୃତି, ପରିବେଶ, ଜନ୍ମ ମରଣ, ରୋଗ, ଜରା, ବିଳାସ, ବ୍ୟାୟାମ, ବିଶ୍ରାମ ପରି ଅଗଣିତ ବିଷୟରେ ଭାଷା ଅଜାଡ଼ି ହୋଇପଡୁଛି । ଭାଷା ଚାରିଆଡ଼କୁ ଓଟାରି ହେଉଛି । କୋଟି କୋଟି ନୂଆ ପୁରୁଣା ଶବ୍ଦ, ବାକ୍ୟ, ବିଶେଷଣ, ଅବ୍ୟୟ, ଉପମା, ଅଳଙ୍କାର, ଶ୍ଳେଷ, ଅନୁପ୍ରାସ, ଗ୍ରାହ୍ୟ, ରଢ଼ି, ବିଜ୍ଞ, ବିଦଗ୍ଧ କଥା ଭାଷା ମାଧ୍ୟମରେ ଶ୍ରୋତାକୁ ହତଚକିତ କରିଦେଉଛନ୍ତି । ଟେଲିଭିଜନ ପରିସରରେ ଭାଷା ଆପଣଙ୍କର ଓ ଜାତିର ସେବାରେ ନିବିଷ୍ଟ । ଆପଣଙ୍କୁ ଜ୍ଞାନ ଦେଉଛି, ଆପଣଙ୍କ ମନୋରଞ୍ଜନ କରୁଛି, ଉଚ୍ଚାଟ କରୁଛି, ହସାଉଛି କନ୍ଦାଉଛି । ପରୋକ୍ଷ ଭାବେ ହେଲେ ବି ସମାଜର ସମସ୍ତ ପରିସର ସହିତ ସେ ବ୍ୟକ୍ତିକୁ ଛଡ଼ାଇ କରି ରଖିଛି । ଆଧୁନିକ ସଭ୍ୟତାରେ ଭାଷାର ପ୍ରସାର ଓ ଜୀବନୀଶକ୍ତି ପାଇଁ ଟେଲିଭିଜନ ଅପରିହାର୍ଯ୍ୟ । ଶହ ଶହ ଚ୍ୟାନେଲ୍‌ରେ ଚବିଶ ଘଣ୍ଟା ଭାଷା ମୂଷଳଧାରାରେ ବର୍ଷୁଛି । ଏପରି ଭାଷାଟିଏ ଯଦି ଆପଣଙ୍କର ହୋଇଥାଏ, ଗର୍ବ କରିବାର ଯଥେଷ୍ଟ କାରଣ ଅଛି । କିନ୍ତୁ ଆପଣଙ୍କ ଭାଷା ଯଦି ଟେଲିଭିଜନ୍‌ରୁ ଶୁଣାଯାଉନଥାଏ ? ଯାଆନ୍ତୁ ଆଉ ଆପଣଙ୍କ ଟେଲିଭିଜନ ଖୋଲନ୍ତୁ । ଓଡ଼ିଆମାନେ କେଉଁ ଭାଷାରେ, କେତେ ଘଣ୍ଟା, କେତେଟା ଚ୍ୟାନେଲ୍‌ରେ ଓଡ଼ିଆ ଶୁଣିପାରୁଛନ୍ତି କି କହିପାରୁଛନ୍ତି ? ଆଶ୍ଚର୍ଯ୍ୟ ହେଉଛନ୍ତି କି । ଆପଣ ଧୋକ୍କା ଦେଉଛନ୍ତି ଆପଣଙ୍କ ଭାଷାକୁ- ଟେଲିଭିଜନ ଦେଇ ଓଡ଼ିଆ ଭାଷା ଯାତାୟାତ କରିପାରୁନାହିଁ । ସେ ଦ୍ୱାରଟି ତା' ପାଇଁ ପ୍ରାୟ ବନ୍ଦ । ବରଂ ଟେଲିଭିଜନ୍ ଓଡ଼ିଆ ଭାଷା ପାଇଁ ସହାୟକ ହେବା ପରିବର୍ତ୍ତେ ଏକ ଶତ୍ରୁ ହୋଇ ଠିଆ ହୋଇଛି । ଆମ ଲୋକଙ୍କ ପାଖରେ ଆମ ଭାଷାକୁ ପହଞ୍ଚାଇବା ପରିବର୍ତ୍ତେ, ଏହା ଆମ ଭାଷାଠାରୁ ଆମକୁ ଦୂରେଇ ନେଇ, ତା' ଜାଗାରେ ଅନ୍ୟ ଭାଷାକୁ ପୂରାଉଛି । ଆମେ ସିନା ସେ କଥା ବୁଝୁନାହୁଁ, କିନ୍ତୁ ବଙ୍ଗାଳୀ ବା ତାମିଲ୍ ଜାତି ସେ କଥା ଠିକ୍ ବୁଝିଛି । ତାଙ୍କ ପର୍ଦ୍ଦାରେ- ସେ ରାମ ହେଉ ବା ରାବଣ, ଅର୍ଜୁନ ବା ଦୁର୍ଯ୍ୟୋଧନ, କୃଷ୍ଣ, ହେବା ବା ଯଶୋଦା, ସେ ତାମିଲ୍‌ମାନଙ୍କ ପାଇଁ ତାଙ୍କ ଭାଷାରେ କହିବା ପାଇଁ ବାଧ୍ୟ । ଅଥଚ ଆମ ପାଇଁ ରାମ, କୃଷ୍ଣ, ସୀତା, ଦ୍ରୌପଦୀ ସମସ୍ତେ ହିନ୍ଦୀଭାଷୀ । ସେମାନଙ୍କୁ ପ୍ରାର୍ଥନା କରିବାକୁ ହେଲେ ଆମକୁ ହିନ୍ଦୀ ଭାଷାରେ ପ୍ରାର୍ଥନା କରିବାକୁ ପଡ଼ିବ, ଆଗେ ଯେମିତି ଆମକୁ କରିବାକୁ ପଡୁଥିଲା ସଂସ୍କୃତରେ । ବଙ୍ଗାଳୀମାନଙ୍କ ପକ୍ଷରେ ହିନ୍ଦୀ ବୁଝିବା ଯେ କଠିନ ତା' ନୁହେଁ, କିନ୍ତୁ ସେମାନେ ନିଜ ଭାଷାର ଜୀବନୀଶକ୍ତିକୁ ବନ୍ଧା ପକାଇବାକୁ ଚାହାନ୍ତି ନାହିଁ । ନିଜ ଭାଷା ବିଷୟରେ ଫ୍ରେଞ୍ଚମାନଙ୍କର ସ୍ୱାଭିମାନ ଆପଣ ଦେଖିଲେ ଆଶ୍ଚର୍ଯ୍ୟ ହେବେ । ଜଣେ ଫ୍ରେଞ୍ଚ ଲୋକକୁ ଇଂରାଜୀ ଭାଷାରେ ପ୍ରଶ୍ନ ପଚାରି ଦେଖିପାରନ୍ତି । ଇଂରାଜୀ ଜାଣିଥିଲେ

ବି ସେ ଆପଣଙ୍କୁ ଫ୍ରେଞ୍ଚ ଭାଷାରେ ଉତ୍ତର ଦେବ । ଏହା ହେଉଛି ଭାଷା ଅସ୍ମିତା । ଗୋଟିଏ ଜାତିର ଭାଷା -ଅସ୍ମିତା ଲୋପ ପାଇଗଲେ ଭାଷା ମରେ ।

ଆପଣ କ୍ରିକେଟ୍-ଫ୍ୟାନ ହୋଇଥାଆନ୍ତୁ ପଛେ ତେନ୍ଦୁଲକରଙ୍କୁ ଟେଲିଭିଜନ ପର୍ଦ୍ଦାରେ ନିଷ୍ଚୟ ଭେଟିଥିବେ । ତେବେ ଯେତେଥର ଆପଣ ଦେଖିଛନ୍ତି ତାଙ୍କୁ, ଖାଲି ଖେଳୁଥିବା ବେଳେ ନୁହେଁ, ଅନ୍ୟ ସଂକ୍ରାନ୍ତରେ ମଧ୍ୟ, ଯଥା- ସାକ୍ଷାତକାର, ସମ୍ବାଦ, ବିଜ୍ଞାପନ, ଇତ୍ୟାଦିରେ, କେଉଁଠି ହେଲେ ତେନ୍ଦୁଲକରଙ୍କୁ ଓଡ଼ିଆ କହୁଥିବାର ଆପଣ ଶୁଣିନାହାଁନ୍ତି । ଆପଣ ଭଲ କରି ବୁଝିଛନ୍ତି ଯେ ସେ ଓଡ଼ିଆ ନୁହଁନ୍ତି । ତାଙ୍କଠାରୁ ଓଡ଼ିଆ ଭାଷା ଆଶା କରିବା ବୃଥା । କିନ୍ତୁ ଆପଣ ଯେଉଁ ଦିଅଁ ଦେବତାଙ୍କୁ ପୂଜା କରନ୍ତି ସେମାନେ ସବୁ କି ଓଡ଼ିଆ କଥା ଜାଣନ୍ତି ନାହିଁ ? ଓଡ଼ିଆମାନଙ୍କର ଯେତେ ଦିଅଁ ସମସ୍ତେ କି ଅଣଓଡ଼ିଆ ? ତେବେ ଟେଲିଭିଜନରେ ରାମ, କୃଷ୍ଣ, ହନୁମାନ, ଶିବ, ଯେତେବେଳେ ଆସନ୍ତି, କେହି କାହିଁକି ଓଡ଼ିଆରେ କଥାବାର୍ତ୍ତା ହୁଅନ୍ତି ନାହିଁ ? ସେହି ଦିଅଁମାନେ ଯେତେବେଳେ ଟେଲିଭିଜନରେ ତାମିଲନାଡୁ ଯାଉଛନ୍ତି ସେଠି ସେଠା ଭାଷାରେ କହୁଛନ୍ତି, ଯେତେବେଳେ କଲିକତା ଯାଉଛନ୍ତି ସେଠା ଭାଷାରେ କହୁଛନ୍ତି । କିନ୍ତୁ ଯେତେବେଳେ ଓଡ଼ିଶାକୁ ଆସୁଛନ୍ତି ସେତେବେଳେ ଆମ ଏଠା ଭାଷାରେ କହୁନାହାନ୍ତି କାହିଁକି ? ଏ କଥାର ଆପଣ ଉତ୍ତର ଦେବେ ଯେ ଛବିଟି ଓଡ଼ିଆରେ ଡବିଂ ହୋଇନାହିଁ । ବେଶ୍ କିନ୍ତୁ ଓଡ଼ିଆରେ ଡବିଂ ହୋଇନାହିଁ କାହିଁକି ? ତାମିଲ୍ ,ବଙ୍ଗଳାରେ ଯଦି ହୋଇପାରୁଛି ଓଡ଼ିଆରେ ହେଉନାହିଁ କାହିଁକି ? ଏହାଦ୍ୱାରା ଓଡ଼ିଆମାନଙ୍କ ସ୍ୱାଭିମାନରେ ଆଞ୍ଚ ନ ଲାଗିଲେ ନଲାଗୁ ପଛେ, କିନ୍ତୁ ଏଇ ମିଠା ବିଷବଟିକା ଓଡ଼ିଆ ସମାଜର ମାନସିକତାକୁ କି ଭାବେ ଉପଦ୍ରୁତ କରୁଛି, ତା'ର ତୁଳନା ନାହିଁ । ଭାବନ୍ତୁ ଗାଁ ଗହଳରେ ଦେଖୁଥିବା ସାତ ଆଠ ବର୍ଷର ଓଡ଼ିଆ ପିଲା ଯେ ଦିନ ପରେ ଦିନ ଦେଖୁଛି, ଯେତେ ଦିଅଁ ଦେବତା ବାହାରୁଛନ୍ତି ଟେଲିଭିଜନରେ ଜଣେ ବି ସେଥିରୁ ଓଡ଼ିଆରେ କଥା କୁହନ୍ତି ନାହିଁ । ତା'ର ଧାରଣା ବଦ୍ଧମୂଳ ହେଉଛି ଯେ ଦିଅଁମାନେ ଓଡ଼ିଆ କହନ୍ତି ନାହିଁ । ସବୁ ଦେବତାଙ୍କ ଭାଷା ହିନ୍ଦୀ । ଯେମିତି ଆମେ ଭାବୁଥିଲେ, ସାହେବ ମାତ୍ରେ, ଗୋରା ହୁଅନ୍ତୁ କି କଳା, ସେମାନେ ସମସ୍ତେ ଇଂରାଜୀରେ କଥା କୁହନ୍ତି । ସେଥିପାଇଁ ଇଂରାଜୀ ଭାଷା ଭାରତରେ ହୋଇଥିଲା ସର୍ବଶ୍ରେଷ୍ଠ ସମ୍ମାନପ୍ରଦ ଭାଷା, ଏବେ ବି ଅଛି । ଇଂରାଜୀ ପ୍ରତି ଏ ହୀନମନ୍ୟତା ଭାରତୀୟମାନଙ୍କ ରକ୍ତରେ ମିଶିଯାଇଛି । ବର୍ତ୍ତମାନ ଚେଷ୍ଟା, ଶାବଳ ଲାଗିଛି ଏ ଭାଷାକୁ ଭାରତରୁ ତଡ଼ିବା ପାଇଁ । ଭାରତରେ ନୂଆ ଶାସକ ଗୋଷ୍ଠୀ ତିଆରି ହୋଇଛନ୍ତି । ନୂଆ ଭାଷା ଆସିଛି । ସାହେବମାନଙ୍କ ଜାଗାରେ ଆସିଛନ୍ତି ବେକରେ ଚାଦର ପକା ଖଦଡ଼ି ନେତା । କିନ୍ତୁ ଓଡ଼ିଆ ଭାଷା ଯେଉଁଠିକି ସେଇଠି ।

ଏଇ ସଂକ୍ରାନ୍ତରେ ଗୋଟିଏ ଗପ ମନେ ପଡୁଛି । ଜାଣିଥିବେ, ଆମେରିକାରେ ଗୋରାମାନେ ଉପନିବେଶ ପ୍ରତିଷ୍ଠା କରିବା ପୂର୍ବରୁ ଆଦିବାସୀ ଲୋହିତ ଭାରତୀୟମାନେ ସେଠାରେ ବାସ କରୁଥିଲେ । ଗୋରାମାନଙ୍କର ଆମେରିକାରେ ବସତି ସ୍ଥାପନ ଯେତିକି ବଢ଼ିଲା, ସ୍ଥାନୀୟ ଆଦିବାସୀମାନଙ୍କ ସହିତ ସେମାନଙ୍କର ସଂଘର୍ଷ ସେତକି ବଢ଼ିଲା । ଆଦିବାସୀମାନଙ୍କ ସହିତ ଏହି କନ୍ଦଳ ଏତେ ସାଧାରଣ ହୋଇଗଲା ଯେ, ସେ ସବୁ ବିଷୟକୁ ନେଇ ବହୁ ଚଳଚିତ୍ର ତିଆରି ହେଲା । ହଲିଉଡ୍‌ର ଏହି କାଉ-ବୟ ଛବି ଆପଣ ଦେଖିଥିବେ । ଏସବୁ ଛବିର ମୁଖ୍ୟ ବିଷୟବସ୍ତୁ ଥିଲା ଗୋରାମାନଙ୍କ ସହିତ ଲୋହିତ ଭାରତୀୟମାନଙ୍କ ଯୁଦ୍ଧ ଓ ଶେଷରେ ଲୋହିତ ଭାରତୀୟମାନଙ୍କର ପରାସ୍ତ । ଗୋରାମାନେ, ବିଶେଷକରି ତାଙ୍କ ପିଲାମାନେ ଏ ଛବିସବୁ ଦେଖି ଖୁବ୍ ଆନନ୍ଦ ପାଉଥିଲେ ଓ ଗର୍ବ କରୁଥିଲେ । ଲୋହିତ ଭାରତୀୟ ପିଲାଏବି ଏ ଛବି ଦେଖୁଥିଲେ । ଥରେ ଗୋଟିଏ ଲୋହିତ ଭାରତୀୟ ପିଲା ଏ ଛବି ଦେଖି ତା' ବାପାକୁ ପଚାରିଲା -ବାପା ମୁଁ ସବୁ ଛବିରେ ଦେଖୁଛି ଗୋରାମାନେ ହିଁ ଯୁଦ୍ଧରେ ଜିତୁଛନ୍ତି । ଆମେମାନେ କ'ଣ ଥରେ ହେଲେ ବି ଏଯୁଦ୍ଧରେ ଜିତି ନଥିଲୁ ? ସେଇ ଏକ ହୀନମନ୍ୟତା ସୃଷ୍ଟି ହେଉଥିବ ଆମ ଓଡ଼ିଆ ପିଲାଙ୍କ ଭିତରେ ତାଙ୍କ ନିଜ ଭାଷା ବିଷୟରେ । ସେମାନେ ଧରି ନେଇଛନ୍ତି ଯେ ତାଙ୍କ ଭାଷାରେ କେହି କଥା କୁହନ୍ତି ନାହିଁ । ଯେତେ ବଡ଼ ବଡ଼ ନେତା, ମନ୍ତ୍ରୀ, ପଦାଧିକାରୀ, କବି, ଲେଖକ, ଖେଳାଳି, ଡାକ୍ତର, ଅଭିନେତା, ବ୍ୟବସାୟୀ, ଓକିଲ, ଅଧ୍ୟାପକ, ଏପରିକି ଦିଅଁ ଦେବତାଙ୍କୁ ସେ ଦେଖୁଛି ଦୂରଦର୍ଶନରେ ବା ସିନେମାରେ, କେହି ଜଣେ ବି ଓଡ଼ିଆରେ କଥା କହୁନାହାଁନ୍ତି । ଏ ଅବସ୍ଥା ଆମ ପିଲାଙ୍କର ଆତ୍ମବିଶ୍ୱାସକୁ ଭାଙ୍ଗି ଦେଇଛି । ତା' ମନରେ ଧାରଣା ସୃଷ୍ଟି କରୁଛି ଯେ, ତା'ନିଜ ମାତୃଭାଷା ବଳରେ ସେ ମଣିଷ ହୋଇପାରିବ ନାହିଁ । ତାକୁ ଅନ୍ୟ ଲୋକଙ୍କ ଭାଷା ଶିଖିବାକୁ ପଡ଼ିବ- ସେ ଭାଷା ଇଂରାଜୀ ହେଉ ବା ହିନ୍ଦୀ । ଏହି ହୀନମନ୍ୟତା କାରଣରୁହିଁ ଓଡ଼ିଆମାନେ ଆଗତୁରା ଅନ୍ୟ ଲୋକଙ୍କ ଭାଷାରେ ପାଣ୍ଡିତ୍ୟ ଦେଖାଇବାକୁ ଚେଷ୍ଟା କରନ୍ତି, ନିଜ ଭାଷାରେ ନୁହେଁ । ଭୁଲ୍‌ଭାଲ କରି ପଛେ ହେଉ ପୁରୀ ପଣ୍ଡାମାନଙ୍କ ପରି ସେମାନେ ବଙ୍ଗାଳୀଙ୍କ ସାଙ୍ଗରେ ବଙ୍ଗଳାରେ ହିନ୍ଦୁସ୍ଥାନୀଙ୍କ ସାଙ୍ଗରେ ହିନ୍ଦୀରେ, ତେଲୁଗୁଙ୍କ ସାଙ୍ଗରେ ତେଲୁଗୁରେ ନିଜ ପଟରୁ ହିଁ ଆରମ୍ଭ କରିଦେବେ । ଯେଉଁ ମୁଷ୍ଟିମେୟ ଓଡ଼ିଆ କିଛି ଖ୍ୟାତି ଅର୍ଜନ କରିଛନ୍ତି, ସେମାନେ ବି ନିଜ ଭାଷାରେ କଥା କହିବାକୁ କୁଣ୍ଠାବୋଧ କରନ୍ତି -କାଳେ ଓଡ଼ିଆ ବୋଲି ଧରାପଡ଼ିଯିବେ । ଏହି ଘଡ଼ିସନ୍ଧିରେ ଆଜି ଭାଷା ପ୍ରସାରର ସବୁ ମାଧ୍ୟମଗୁଡ଼ିକ ଅନ୍ୟ ଭାଷା ଦ୍ୱାରା କରାୟତ । ଦୂରଦର୍ଶନ, ଆକାଶବାଣୀ, ସିନେମା, କ୍ୟାସେଟ୍ ମାଧ୍ୟମରେ ଅନ୍ୟ ଭାଷାମାନେ ଆମ ଭାଷାର କଣ୍ଠରୋଧ କରି ଦେଉଛନ୍ତି ।

ଓଡ଼ିଆ ଭାଷା ଓଡ଼ିଆ ସମାଜରେ ପହଞ୍ଚିବାର ବାଟ ନାହିଁ । ଆପଣ ଅବଶ୍ୟ କହିପାରନ୍ତି - ଦୂରଦର୍ଶନ, ଆକାଶବାଣୀର କାମ ନୁହେଁ ଭାଷା ପ୍ରଚାର କରିବା । ସତ, ଏ ସାଧନା ଗୁଡ଼ିକ ଅନ୍ୟାନ୍ୟ ଗୁରୁତ୍ୱପୂର୍ଣ୍ଣ କାମରେ ନିୟୋଜିତ । ତେଣୁ ଯେଉଁ ଭାଷାରେ ହେଉ ପଛେ ସେମାନେ ଲୋକଙ୍କ ପାଖରେ ପହଞ୍ଚିଲେ ହେଲା ଆଉ ଯେହେତୁ ଓଡ଼ିଆମାନଙ୍କର ପୃଥିବୀର ସବୁ ଭାଷା ପ୍ରତି ହାର୍ଦ୍ଦିକତା ଅଛି ଓ ସେମାନେ ଏକ ଉଦାର ଜାତି, ତେଣୁ ସବୁ ଭାଷା ତାଙ୍କ ପାଇଁ ସମାନ । ଆମର ଧର୍ମକର୍ମ ସଂସ୍କୃତରେ, ଯଦିଓ ଆମର ପୂର୍ବସୂରୀମାନେ ବହୁ କଷ୍ଟ ସ୍ୱୀକାର କରି ଏ ଜାତି ପାଇଁ ଓଡ଼ିଆରେ ରାମାୟଣ ମହାଭାରତ ଲେଖିଯାଇଥିଲେ । ଏବେ ଆମ ଲୋକେ ଦାଣ୍ଡି ରାମାୟଣକୁ ନାକ ଟେକୁଛନ୍ତି । ଗାଁ, ଗାଁ'ରେ ଏବେ ରାମଚରିତ ମାନସରେ ପ୍ରବଚନ ଦିଆହେଉଛି । ଆଗେ ସାହି ଦୋସାଲାରେ ରାତି ରାତି ଧରି ରାମଲୀଳା ହେଉଥିଲା, ଏବେ ମାସ ମାସ ଧରି ଆମେ ହିନ୍ଦୀରେ ରାମାୟଣ ଦେଖୁଛୁ । ଆଗେ ଭକ୍ତିସଂଗୀତ କହିଲେ ନିମାଇଁ ହରିଚନ୍ଦନ, ଦୀନକୃଷ୍ଣ, ଗୋପାଳକୃଷ୍ଣ, ବନମାଳୀଙ୍କୁ ବୋଲୁଛନ୍ତି । ଏବେ ଘରେ ଘରେ ପଙ୍କଜ ଉଧାସ୍ କି ଅନୁପ ଜଲୋଟାଙ୍କ କ୍ୟାସେଟ୍ ବାଜୁଛି । ଆମ ଧର୍ମ କର୍ମ, ପୂଜା ଆରାଧନା ସବୁ ଠିକ୍ ଚାଲିଛି ଆଗ ପରି । ଖାଲି ଏ ସବୁ ଓଡ଼ିଆରେ ହେଉନାହିଁ, ତେଣୁ ଓଡ଼ିଆ ଭାଷା ମରିଯାଉଛି । ପ୍ରସାରର ସବୁ ମାଧ୍ୟମଗୁଡ଼ିକ ଯଥା- ଟେଲିଭିଜନ, ରେଡିଓ, ସିନେମା, କ୍ୟାସେଟ୍, ଯାହା ଜରିଆରେ ଓଡ଼ିଆ ଭାଷା କୋଟି କୋଟି ଲୋକଙ୍କ ପାଖରେ ପହଞ୍ଚିପାରନ୍ତା ସେ ସବୁ ଉପାୟଗୁଡ଼ିକୁ ଅନ୍ୟ ଭାଷାରେ ଜାମ୍ ଜରି ଦିଆଯାଇଛି । ଘରୋଇ, ଗାଉଁଲି କଥା ଛଡ଼ା ଲୋକେ ଆଉ ଶୁଣୁନାହାନ୍ତି ଉନ୍ନତ ଓଡ଼ିଆ ଭାଷା । ଯେଉଁ ପରିମାଣରେ , ଯେଉଁ ପ୍ରକାରର ଓଡ଼ିଆ ଭାଷା ଏ ସମାଜରେ କୁହାଯିବାର କଥା, ତାହା କୁହାଯାଇ ପାରୁନାହିଁ । ଆମ ଭାଷାକୁ ଆମଠାରୁ ଛଡ଼ାଇ ନିଆହେଉଛି । ଆମ କଲେଜ, ବିଶ୍ୱବିଦ୍ୟାଳୟରେ ଅଲଗା ଭାଷା, ଆମ ଅଫିସ୍ ଦପ୍ତରରେ ଅଲଗା ଭାଷା, ଆମ ପୂଜା ପ୍ରାର୍ଥନାରେ ଅଲଗା ଭାଷା । ମାତୃଭାଷାର ଏଇ ଅବରୋଧ ତା'ର ମୃତ୍ୟୁର ପଥ ପରିଷ୍କାର କରି ଦେଉଛି । ଓଡ଼ିଆ ଭାଷା ଆଉ ଲୋକଙ୍କ ପାଖରେ ପହଞ୍ଚୁନାହିଁ । ଓଡ଼ିଆ ଭାଷାର ଫାଶ ଫିଟିଯାଇଛି ଓଡ଼ିଆମାନଙ୍କ ଉପରୁ । ଯେଉଁ ଭାଷା ଗତ ଦେଢହଜାର ବର୍ଷଧରି ଆମକୁ ଗୋଟିଏ ସୂତ୍ରରେ ବାନ୍ଧି ରଖିଥିଲା, ସେ ଗଣ୍ଠି ଆମରି ଆଖି ଆଗରେ ଢ଼ୁଗୁଲା ହୋଇଯାଇଛି । ଆମରି ଆଖି ଆଗରେ ମେଦିନୀପୁର ଓଡ଼ିଆଏ ବଙ୍ଗାଳୀ ହୋଇଗଲେ । ଏବେ ପଶ୍ଚିମାଞ୍ଚଳ ଲୋକେ ପାଟି କରୁଛନ୍ତି ତାଙ୍କ ଭାଷା ଓଡ଼ିଆ ନୁହେଁ ବୋଲି, କାଲି ଅନ୍ୟମାନେ ବି ପାଟି କରିବେ । ଏକମାତ୍ର ଭାଷା ହିଁ ଆମକୁ ବାନ୍ଧି ରଖିଥିଲା । ସେ ଭାଷା ହେଉଛି ଓଡ଼ିଆ ଜାତିର ଭାଷା ଓଡ଼ିଆ । ସେ ଭାଷା ଆଜି ତାକତହୀନ

ହୋଇପଡିଛି ଆମ ଲୋକଙ୍କ ଅବହେଳାରୁ ଓ ଅନ୍ୟମାନଙ୍କ ଦୁରଭିସନ୍ଧିରୁ । ଅନ୍ୟ ଭାଷାମାନେ ଆମ ଘରେ ପଶି ଆମ ଭାଷାକୁ ପଙ୍ଗୁକରି ଦେଉଛନ୍ତି । ସ୍ପଷ୍ଟରେ କହିଲେ, ଓଡ଼ିଆ ଭାଷା ପର୍ଯ୍ୟାପ୍ତ ପରିମାଣରେ ଓଡ଼ିଆଙ୍କ ପାଖରେ ପହଞ୍ଚି ପାରୁନାହିଁ । ଏହାର ସବୁ ପ୍ରବେଶ ପଥକୁ ରୁନ୍ଧି ଦିଆ ହୋଇଛି । ଓଡ଼ିଆ ଭାଷା ପଙ୍ଗୁ ହୋଇଯାଇଛି ।

ଭାଷାର ଅନ୍ୟ ଗୋଟିଏ କବାଟ ହେଉଛି ସାହିତ୍ୟ । ସର୍ବସାଧାରଣରେ ବିଶ୍ୱାସ ଯେ ଭାଷା ମାନେ ହିଁ ସାହିତ୍ୟ । ବିଶ୍ୱବିଦ୍ୟାଳୟ ସ୍ତରରେ ବି ଏହି ଧାରଣା । ତା' ନହେଲେ ବିଶୁଦ୍ଧ ଓଡ଼ିଆ ସାହିତ୍ୟ ବିଭାଗକୁ କାହିଁକି କୁହାଯାଆନ୍ତା ଓଡ଼ିଆ ଭାଷା ଓ ସାହିତ୍ୟ ବିଭାଗ ? ଓଡ଼ିଆ ଭାଷା ଉପରେ କି କାମ ହେଉଛି ସେଠି ? ବା ଓଡ଼ିଆ ଭାଷାକୁ କି ଅବଦାନ ଏ ବିଭାଗଗୁଡ଼ିକର ? ସେଠି ଭାଷା ଅଧ୍ୟୟନ କହିଲେ କେଉଁ ଶବ୍ଦଟି କେଉଁ ଶବ୍ଦରୁ ଆସିଛି ତା'ର ଏକ ଅଧାପନ୍ତରିଆ, ଅବୈଜ୍ଞାନିକ, ହାସ୍ୟକର ଚର୍ଚ୍ଚା । କେଉଁ ଶବ୍ଦରୁ କେଉଁ ଓଡ଼ିଆ ଶବ୍ଦ ଆସିଛି ତା'ର କି ସଂପର୍କ ଅଛି ବର୍ତ୍ତମାନ ଭାଷାର ଉନ୍ନତିରେ ? କେହି ଯଦି ଆମକୁ କୁହେ ଓଡ଼ିଆ ଶବ୍ଦ ହାତୀ, ଘୋଡ଼ା ଆସିଛି ସଂସ୍କୃତରୁ; ଟେବୁଲ, ଚେୟାର ଆସିଛି ଇଂରାଜୀରୁ ; ଭୁଆ ବିରାଡ଼ି, ଗୁଣ୍ଡିଚିମୂଷା ଆସିଛି ଆଦିବାସୀ ଶବର ଭାଷାରୁ; ଆରିସା ପିଠା, ଅମାଲୁ ପିଠା ଆସିଛି ତେଲୁଗୁରୁ, ସେ ସବୁ ଶୁଣିବାକୁ ଭାରି ମଜା ଲାଗିପାରେ- ନିଜ ଅଣଅଜା, ପଣଅଜାଙ୍କ ଗୁପ୍ତ ଡାଇରି ପଢିବା ପରି । କିନ୍ତୁ ଏହି ଜ୍ଞାନ ଦ୍ୱାରା ଅଣଅଜା, ପଣଅଜାଙ୍କୁତ ଆଉ ଫେରାଇ ଆଣି ହେବ ନାହିଁ ସ୍ୱର୍ଗରୁ ? ତା' ହେଲେ କାହିଁକି ମାତିଛେ ଆମେ ଏ ବିଳାସରେ ? ଆମ ସରକାର ବି ମାତିଛନ୍ତି ଏଥିରେ । ବରଂ ଯଦି ଷ୍ଟାଣ୍ଡାର୍ଡ ଓଡ଼ିଆ ଭାଷାର ଅଭିଧାନଟିଏ କରାଯାଇ ପାରିଥାନ୍ତା, ଏହା ଖାଲି ଆମ ଭାଷାର ବର୍ତ୍ତମାନକୁ ସମୃଦ୍ଧ କରନ୍ତା ନାହିଁ, ଭବିଷ୍ୟତକୁ ମଧ୍ୟ ବଞ୍ଚାନ୍ତା ଉତ୍ତରପୁରୁଷଙ୍କ ପାଇଁ ଭାଷାଟିଏ ବଞ୍ଚାଇ ରଖନ୍ତା । ଷ୍ଟାଣ୍ଡାର୍ଡ ଡିକ୍ସନାରୀ ମାନେ ଷ୍ଟାଣ୍ଡାର୍ଡ ଓଡ଼ିଆ ଭାଷାର ଅଭିଧାନ ବୋଲି ଶୁଣିବାକୁ ହେବ । ଷ୍ଟାଣ୍ଡାର୍ଡ ଓଡ଼ିଆ କହିଲେ - ଯେଉଁ ଭାଷା କୌଣସି ଆଞ୍ଚଳିକତା ବା ଜାତିଆଣତାରେ ଦୁଷ୍ଟ ନହୋଇ ଶିଷ୍ଟମାନଙ୍କ ଦ୍ୱାରା କଥିତ ବା ଲେଖାଯାଇଥାଏ । ଗୋଟିଏ ଭାଷାକୁ ବଞ୍ଚାଇ ରଖିବାକୁ ହେଲେ ଏକମାତ୍ର ଉପାୟ ହେଉଛି ଭାଷାର ଷ୍ଟାଣ୍ଡାର୍ଡକୁ ବଜାୟ ରଖିବା, ଯେଉଁ ଷ୍ଟାଣ୍ଡାର୍ଡକୁ ସମସ୍ତେ ମାନ୍ୟତା ଦେଉଥିବେ । ତା'ହେଲେ ଏ ଭାଷା ବଞ୍ଚିବ । ଏ ସଂପର୍କରେ ଆମର ପ୍ରିୟ ପଡୋଶୀ ବଙ୍ଗଳା ଭାଷାକୁ ଦେଖାଯାଉ । ଏକଦା ବଙ୍ଗଳା ଭାଷା ଏକ ବିରାଟ ଅଞ୍ଚଳରେ କଥିତ ହେଉଥିଲା, ଗଙ୍ଗାର ସେପଟରୁ ଆରମ୍ଭ କରି ସମଗ୍ର ପୂର୍ବବଙ୍ଗରେ । କିନ୍ତୁ ସେତେବେଳେ ବଙ୍ଗଳା ଭାଷା ବୋଲି କିଛି ନଥିଲା । ବିଭିନ୍ନ ଅଞ୍ଚଳରେ ବିଭିନ୍ନ ପ୍ରକାରର କଥା କୁହାଯାଉଥିଲା- ପୂର୍ବବଙ୍ଗର

ମଇମନ୍‌ସିଂରେ ଗୋଟିଏ ପ୍ରକାର, ଢାକାରେ ଗୋଟିଏ ପ୍ରକାର, ସିଲ୍‌ହଟ୍‌ରେ ଗୋଟିଏ ପ୍ରକାର, ଅଗରତାଲାରେ ଗୋଟିଏ ପ୍ରକାର, କୁଚବିହାର, ବର୍ଦ୍ଧମାନ, ହୁଗୁଳି, ପୁରୁଳିଆରେ ଗୋଟିଏ ଗୋଟିଏ ପ୍ରକାର ଇତ୍ୟାଦି । ଏବେବି ଏ ଡାଇଲେକ୍ଟଗୁଡ଼ିକରେ ଲୋକେ କଥାବାର୍ତ୍ତା ହେଉଛନ୍ତି । ଗୋଟିଏ ଅଞ୍ଚଳର ଲୋକେ ଅନ୍ୟ ଅଞ୍ଚଳର କଥା ବୁଝି ପାରନ୍ତି ନାହିଁ କି କହି ପାରନ୍ତି ନାହିଁ । ଏ ଡାଇଲେକ୍ଟଗୁଡ଼ିକୁ ବି ବଙ୍ଗଳା ଭାଷାର ଉପଭାଷା କହିବାର କୌଣସି କାରଣ ନଥିଲା । କାରଣ ସେ ପର୍ଯ୍ୟନ୍ତ ବଙ୍ଗଳା ଭାଷା ନିଜେ ହିଁ ସୃଷ୍ଟି ହୋଇନଥିଲା । ଶରତକାଳରେ ଆକାଶରେ ଖଣ୍ଡ ଖଣ୍ଡିଆ ମେଘ ଭାସିଲା ପରି ଏ ଡାଇଲେକ୍ଟଗୁଡ଼ିକ ବେମୁରବି ହୋଇ ଅନିର୍ଦ୍ଦିଷ୍ଟ ଭାବେ ଘୂରି ବୁଲୁଥିଲେ ଓ ଯେ ଯେଉଁଭାବେ ପାରିଲା କହୁଥିଲେ । କୌଣସି ଭାଷାର କର୍ତ୍ତୃତ୍ୱ ନଥିଲା ଏ ଡାଇଲେକ୍ଟଗୁଡ଼ିକ ଉପରେ । ଏହା ମାତ୍ର ଦୁଇ ତିନି ଶହ ବର୍ଷ ତଳର ଘଟଣା । ସେତେବେଳକୁ ଓଡ଼ିଆ ଓ ଅସମୀୟା ଭାଷା ସୃଷ୍ଟି ହୋଇସାରିଲାଣି, କିନ୍ତୁ ବଙ୍ଗଳା ଭାଷାର ଆହୁରି ନିଅଁ ଖୋଳା ହୋଇନାହିଁ । ଅର୍ଥାତ୍ ଷ୍ଟାଣ୍ଡାର୍ଡ ବଙ୍ଗଳା ଭାଷା ବୋଲି କିଛି ସୃଷ୍ଟି ହୋଇନାହିଁ । ଦୂରତ୍ୱ ହେତୁ ପଡ଼ୋଶୀ ଓଡ଼ିଆ ଭାଷା ଅସମୀୟା ଭାଷା ଏଇ ଭାସମାନ ଡାଇଲେକ୍ଟଗୁଡ଼ିକ ଉପରେ ନିମନ୍ତ୍ରଣ ରଖିପାରିଲେ ନାହିଁ । ସେ ନିୟନ୍ତ୍ରଣ ରଖିଥିଲେ ଏ ଡାଇଲେକ୍ଟଗୁଡ଼ିକରୁ ଅଧେ ଅସମୀୟା ଭାଷାରେ ମିଶିଯାଇଥାନ୍ତେ ଓ ଆଉ ଅଧକ ଓଡ଼ିଆରେ । ଭଙ୍ଗଳା ଭାଷା ସୃଷ୍ଟି ହିଁ ହୋଇନଥାନ୍ତା । ସୁଖର କଥା ଅଷ୍ଟାଦଶ ଶତାବ୍ଦୀ ବେଳକୁ କଲିକତା ମହାନଗରୀ ଗଢିଉଠେ ଓ ଏହା ବ୍ରିଟିଶ୍ ଉପନିବେଶର ହୁଏ ପୀଠସ୍ଥଳୀ । ଏହି ନଗରୀକୁ କେନ୍ଦ୍ର କରି ଜନ୍ମନିଏ ଏକ ମଧ୍ୟବିତ୍ତ, ଶିକ୍ଷିତ ଗୋଷ୍ଠୀ । ଏହି ଶିକ୍ଷିତ ସହରବାସୀମାନେ ହୁଅନ୍ତି ପ୍ରଥମେ ବଙ୍ଗାଳୀ ଏବଂ ସେମାନଙ୍କ ଭାଷା ହୁଏ ଷ୍ଟାଣ୍ଡାର୍ଡ ବଙ୍ଗଳା ଭାଷା । ଏ ଭାଷାରେ ସାହିତ୍ୟ ସୃଷ୍ଟି ହୁଏ- ଯାହାର ପଟ୍ଟପୁରୋଧା ହୁଅନ୍ତି ଈଶ୍ୱରଚନ୍ଦ୍ର ବିଦ୍ୟାସାଗର, ରବୀନ୍ଦ୍ରନାଥ, ମାଇକେଲ ମଧୁସୂଦନ ଓ ଅନ୍ୟମାନେ । ପ୍ରଥମ ଥର ପାଇଁ ବଙ୍ଗାଳୀ ସମାଜର କେନ୍ଦ୍ର ପ୍ରତିଷ୍ଠିତ ହୁଏ ଓ ଏହି କେନ୍ଦ୍ରକୁ ଆପେ ଆପେ ଆକର୍ଷିତ ହୋଇଆସନ୍ତି ପାର୍ଶ୍ୱବର୍ତ୍ତୀ ବେୱାରିସ ଗୋଷ୍ଠୀଗୁଡ଼ିକ । ଆତ୍ମସମର୍ପଣ କରନ୍ତି । କଲିକତାର ଭାଷା ହୁଏ ଷ୍ଟାଣ୍ଡାର୍ଡ ବଙ୍ଗଳା, ଅର୍ଥାତ୍ ଏହି ଭାଷାରେ ହିଁ କେବଳ ଶିକ୍ଷା ଦିଆଯିବ, ସାହିତ୍ୟ ସୃଷ୍ଟି କରାଯିବ ଓ ଶିଷ୍ଟ ସମାଜ ଦ୍ୱାରା କଥିତ ହେବ । ବଙ୍ଗଳା ଭାଷାର ଷ୍ଟାଣ୍ଡାର୍ଡ ରୂପ ପ୍ରତିଷ୍ଠିତ ହୁଏ ଓ ପୂର୍ବବଙ୍ଗଠାରୁ ଉତ୍ତର, ପଶ୍ଚିମ ସବୁ ଅଞ୍ଚଳର ଲୋକେ ଏହାର କର୍ତ୍ତୃତ୍ୱାଧୀନ ହୁଅନ୍ତି । ଏହି ବୁଝାପଢା ଦ୍ୱାରା ଅନ୍ୟ ସମସ୍ତ ଅଞ୍ଚଳ ଭାଷାର ଏହି ପ୍ରକାରଟିକୁ ବଙ୍ଗଳା ଭାଷାର ସମ୍ମାନିତ ରୂପ ଭାବେ ସ୍ୱୀକାର କରନ୍ତି । ଯେ ଯେଉଁ ଅଞ୍ଚଳର ଭାଷା କହୁଥାନ୍ତୁ ନା କାହିଁକି, ତାକୁ କଲିକତାର

ପ୍ରକାରଟିକୁ ହିଁ ଷ୍ଟାଣ୍ଡାର୍ଡ ଭାଷାର ସମ୍ମାନ ହେବାକୁ ହେବ । ଏହି ସାମାଜିକ ଅଙ୍ଗୀକାରବଦ୍ଧତା ବଙ୍ଗଳାକୁ ଗୋଟିଏ ଭାଷାର ମର୍ଯ୍ୟାଦା ଦିଏ ଏବଂ ଏକ ବିରାଟ ଅଞ୍ଚଳ ଉପରେ ନିଜର ଆଧିପତ୍ୟ ବିସ୍ତାର କରେ । ଏହା ହୋଇ ନଥିଲେ ବଙ୍ଗଳା ଭାଷା ଜନ୍ମହିଁ ହୋଇନଥାନ୍ତା । ଏହି ଅଙ୍ଗୀକାରବଦ୍ଧତା ଯେ କେତେ ସୁଦୃଢ଼ ତାହା ସହଜରେ ଅନୁମେୟ । ଭାରତବର୍ଷର ବିଭାଜନ ଓ ବାଂଲାଦେଶର ସ୍ୱାଧୀନତା ପରେ ଷ୍ଟାଣ୍ଡାଡ୍ ବଙ୍ଗଳାର କର୍ତ୍ତୃତ୍ୱ ଊଣା ହୋଇ ନାହିଁ । ବଂଲାଦେଶ ଏକ ସ୍ୱାଧୀନ ରାଷ୍ଟ୍ର ହୋଇଥିବା ସତ୍ତ୍ୱେ, ଏହା ନିଜ ରାଜ୍ୟର କୌଣସି ଏକ ଡାଇଲେକ୍ଟକୁ ଷ୍ଟାଣ୍ଡାର୍ଡର ଭୂମିକା ଓ ମାନ୍ୟତା ନଦେଇ କଲିକତାର ବଙ୍ଗଳାକୁ ହିଁ ଷ୍ଟାଣ୍ଡାର୍ଡ ରୂପେ ମାନିନେଇଛି । ଏହା ଫଳରେ ବଙ୍ଗଳା ଭାଷା ଆଜି ସୁରକ୍ଷିତ ଓ ଏହା ଏକ ବିରାଟ ଅଞ୍ଚଳକୁ ନିଜର ଛତ୍ରଛାୟା ତଳେ ସଂଯତ କରି ରଖିଛି । ଏହା ଏକ ସାମାଜିକ ବୁଝାମଣା ବା ଚୁକ୍ତି । ଏ ଚୁକ୍ତି ଯଦିଓ କାଳି କଲମରେ ସ୍ୱାକ୍ଷରିତ ହୋଇନାହିଁ, ସମସ୍ତେ ଏହି ଚୁକ୍ତିର ଅଧୀନ ଓ ସମସ୍ତେ ନିଜକୁ ବଙ୍ଗଳାଭାଷୀ କହିବା ପାଇଁ ଅଙ୍ଗୀକାରବଦ୍ଧ । ଆଞ୍ଚଳିକ ଭାଷାଗୁଡ଼ିକ ସ୍ୱାଭାବିକ ସ୍ୱେଚ୍ଛାଚାରରେ ଅଙ୍କୁଶ ଲାଗିଛି । ବର୍ତ୍ତମାନ ସୁଦ୍ଧା ବଙ୍ଗଳାର ବିଭିନ୍ନ ଉପଭାଷାଗୁଡ଼ିକ ଲୋପ ପାଇନାହାଁନ୍ତି ବା ନିକଟରେ ଲୋପ ପାଇବାର ସମ୍ଭାବନା ନାହିଁ । ତା' ସତ୍ତ୍ୱେ ବଙ୍ଗଳା ଭାଷା ସୁରକ୍ଷିତ ଓ ସମଗ୍ର ବଙ୍ଗାଳୀ ଜାତିକୁ ଏକ କରି ରଖିଛି । ଏହା କେବଳ ଷ୍ଟାଣ୍ଡାର୍ଡ ଭାଷାର କରାମତି ଯୋଗୁଁ ହିଁ ସମ୍ଭବ ହୋଇଛି । ଭାଷା ସ୍ୱଭାବତଃ ପରିବର୍ତ୍ତନଶୀଳ ଆଉ ଯଦି ପ୍ରତିଟି ଅଞ୍ଚଳରେ ଏ ପରିବର୍ତ୍ତନ ସ୍ୱଚ୍ଛନ୍ଦରେ ବଢିଚାଲେ, ତା' ହେଲେ ଭାଷାର ଫାଟ ସୃଷ୍ଟି ହେବ, ଅର୍ଥାତ୍ ଗୋଟିଏ ଅଞ୍ଚଳର ଲୋକେ ଅନ୍ୟ ଅଞ୍ଚଳର ଲୋକଙ୍କଠାରୁ ଭିନ୍ନ ବୋଲି ଭାବିବେ ଓ ପରସ୍ପରକୁ ବୁଝି ନ ପାରିବାର ବି ସମ୍ଭାବନା ଅଛି । ତେଣୁ ଭାଷାର କେଉଁଟି ଶିଷ୍ଟ- ପ୍ରୟୋଗ ସେ ବିଷୟରେ ପ୍ରତ୍ୟେକ ଶିକ୍ଷିତ ବ୍ୟକ୍ତି ନିଶ୍ଚିତ ହେବା ଉଚିତ୍ । ଆମେ ଯାଉଛେ ଠିକ୍ ନା ଆମେ ଯାଉଛନ୍ତି ଠିକ୍ ସେ ବିଷୟରେ ଯେପରି ଦ୍ୱିମତ ଦେଖାନଯାଏ । ପ୍ରତ୍ୟେକ ଅଞ୍ଚଳର କଥାରେ ବିଶେଷତ୍ୱ ଓ ପାର୍ଥକ୍ୟ ରହିବା ସ୍ୱାଭାବିକ । ରହୁ ଆମେ ତାହାର ବିରୋଧ କରୁନାହୁଁ । କିନ୍ତୁ ଅଞ୍ଚଳ, ଜାତି, ଗୋଷ୍ଠୀ ନିର୍ବିଶେଷରେ ପ୍ରତ୍ୟେକ ଶିଷ୍ଟ, ଶିକ୍ଷିତ ଓଡ଼ିଆ ଓଡ଼ିଆଭାଷାର ଷ୍ଟାଣ୍ଡାର୍ଡ ରୂପଟିରେ ଅବଗତ ରହିବା ବିଧେୟ । ଷ୍ଟାଣ୍ଡାର୍ଡ ଭାଷାରେ ନିପୁଣତା ଶିକ୍ଷା ଓ ଶିଷ୍ଟତାର ପରିଚାୟକ । ଏହି ବୁଝାମଣା ଯଦି ନହୁଏ ତେବେ ଆଞ୍ଚଳିକ ଉପଭାଷାଗୁଡ଼ିକ ସ୍ୱାଧୀନତା ଘୋଷଣା କରିବେ, ଯେଉଁ ପଥରେ ଏବେ ଆମ ପଶ୍ଚିମାଞ୍ଚଳ ଗତି କରୁଛି । ସେମାନେ ଷ୍ଟାଣ୍ଡାର୍ଡ ଓଡ଼ିଆର ସାର୍ବଭୌମତାକୁ ସ୍ୱୀକାର କରିବାକୁ ଅନିଚ୍ଛୁକ । ନିଜକୁ ଓଡ଼ିଆଭାଷୀ ବୋଲି ପରିଚୟ ଦେବାକୁ କୁଣ୍ଠିତ । ଏହା ଓଡ଼ିଆ ଜାତିର ଏକ

ଦୁର୍ଗତି । ଗଙ୍ଗାଧର ମେହେରଙ୍କ ଠାରୁ ଶ୍ରଦ୍ଧାକାର ସୂପକାରଙ୍କ ପର୍ଯ୍ୟନ୍ତ ବହୁ ଶିକ୍ଷିତ, ପ୍ରତିଷ୍ଠିତ, ପଶ୍ଚିମାଞ୍ଚଳବାସୀଙ୍କ ପାଇଁ ଏ ବିଷୟରେ କେବେ କୌଣସି ଦ୍ୱିଧା ନଥିଲା । ବର୍ତ୍ତମାନ ମୁଷ୍ଟିମେୟ ଲୋକ, ଷ୍ଟାଣ୍ଡାର୍ଡ ଓଡ଼ିଆକୁ 'କଟକୀ ଭାଷା' ନାମ ଦେଇ ଏହାର ବିରୋଧ କରୁଛନ୍ତି । ଷ୍ଟାଣ୍ଡାର୍ଡ ଓଡ଼ିଆ ଭାଷା କଟକୀ ଭାଷା ନୁହେଁ, ନା ପୁରୀ ବା ବାଲେଶ୍ୱରର । କଟକର ସ୍ଥାନୀୟ ଭାଷାରେ କୁଆଡ଼େ ହୁଏ- ଲ' ପଇସାକୁ ଲ'ଟା ଲଡ଼ିଆ, ଲବୁତ ଲେ, ଲଇଲେ ଲାଲାବାବୁ ଲେଇଯିବ । ଷ୍ଟାଣ୍ଡାର୍ଡ ଓଡ଼ିଆ ଏ ଆଞ୍ଚଳିକତାକୁ ବରଦାସ୍ତ କରିବ ନାହିଁ । ଷ୍ଟାଣ୍ଡାର୍ଡ ଓଡ଼ିଆ ଦୀର୍ଘ ପାଞ୍ଚଶହ ବର୍ଷର ବିବର୍ତ୍ତନ ଫଳରେ ଓ ଅସଂଖ୍ୟ ସାହିତ୍ୟ କୃତିରେ ସମୃଦ୍ଧ ହୋଇ ପ୍ରତିଷ୍ଠିତ ହୋଇଛି । ଏହା ଏକ ଐତିହାସିକ ପରିଣତି । ଏହା ଶିକ୍ଷିତ ଶିଷ୍ଟ ଓଡ଼ିଆ ସମାଜର ଭାଷା ଓ ଓଡ଼ିଆ ସାହିତ୍ୟର ଭାଷା । ଏହି ଭାଷାର ପ୍ରତିଷ୍ଠା ପଛରେ ସମଗ୍ର ଓଡ଼ିଆ ଜାତିର ଅବଦାନ ରହିଛି । ଏହି ସାମାଜିକ ଚୁକ୍ତିକୁ ଯଦି ଅସ୍ୱୀକାର କରାଯାଏ, ତା'ହେଲେ ଓଡ଼ିଆ ଜାତି ଖଣ୍ଡଖଣ୍ଡ ହୋଇଯିବା ଅବଶ୍ୟମ୍ଭାବୀ । ବର୍ତ୍ତମାନ ଓଡ଼ିଆ ଭାଷା କ୍ଷେତ୍ରରେ ସେଇ ଅଙ୍ଗୀକାରବଦ୍ଧତାର ଅଭାବ ଦେଖାଦେଇଛି । ଏହା ଜାତି ପକ୍ଷରେ ଏକ ଦୁର୍ଭାଗ୍ୟର ଲକ୍ଷଣ ।

ଆମ ଲୋକଙ୍କର ଏକ ଅନ୍ଧବିଶ୍ୱାସ ଅଛି ଯେ ଓଡ଼ିଆ ଭାଷାକୁ ଓଡ଼ିଆ ସାହିତ୍ୟ ହିଁ ବଞ୍ଚାଇ ରଖିଛି । ସାହିତ୍ୟର ଯଦିଓ ଗୋଟିଏ ବିରାଟ ଭୂମିକା ରହିଛି ଭାଷାର ଉନ୍ନତିରେ, ଏକମାତ୍ର ସାହିତ୍ୟହିଁ ଭାଷାକୁ ବଞ୍ଚାଇ ରଖିଛି ଭାବିବା ଭୁଲ୍ । ପୃଥିବୀର ଏବେବି ଅସଂଖ୍ୟ ଅଲିଖିତ ଭାଷା ଅଛନ୍ତି ଯେଉଁଥିରେ କୌଣସି ଲିଖିତ ସାହିତ୍ୟ ସୃଷ୍ଟି ହୋଇନାହିଁ । ତଥାପି ସେ ଭାଷାଗୁଡ଼ିକ ବଞ୍ଚିଛନ୍ତି ଓ ନିଜ ନିଜର ସାମାଜିକ ଦାୟିତ୍ୱ ବହନ କରିଛନ୍ତି । ଗୋଟିଏ ସମାଜରେ ଭାଷା ଦ୍ୱାରା ନାନାପ୍ରକାର କାର୍ଯ୍ୟ ସଂପନ୍ନ ହୋଇଥାଏ । ସାହିତ୍ୟ ବି ସେହିପରି ଗୋଟିଏ କାର୍ଯ୍ୟ । ଭାଷାକୁ ନେଇ ସାହିତ୍ୟ, ସାହିତ୍ୟକୁ ନେଇ ଭାଷା ନୁହେଁ । ସାହିତ୍ୟ ନଥାଇ ଅନେକ ଭାଷା ଅଛନ୍ତି ଏ ପୃଥିବୀରେ, କିନ୍ତୁ ଭାଷା ନଥାଇ ସାହିତ୍ୟ ନାହିଁ । ତେବେ ଯଦି ଗୋଟିଏ ଭାଷାରେ ଉଚ୍ଚକୋଟୀର ସାହିତ୍ୟ ସୃଷ୍ଟି ହୁଏ, ତାହା ଭାଷାକୁ ଗୌରବମଣ୍ଡିତ କରେ । ଏହା ଭାଷା ସୁନ୍ଦରୀର ଅଳଙ୍କାର । ଉପଯୁକ୍ତ ଭାବେ ନାଇଥିଲେ ଏହା ଭାଷାକୁ ଆହୁରି ଆକର୍ଷଣୀୟ କରି ତୋଳେ । ଏହା ଭାଷାଭାଷୀମାନଙ୍କର ଗର୍ବର ବିଷୟ ହୁଏ ଓ ସେମାନେ ଭାଷା ସହିତ ଆହୁରି ଘନିଷ୍ଠ ଭାବେ ଜଡ଼ିତ ହୋଇପଡ଼ନ୍ତି । କିନ୍ତୁ ପ୍ରତ୍ୟକ୍ଷ ଭାବେ ସାହିତ୍ୟ ଭାଷାର ବିକାଶରେ ସେପରି କିଛି ସାହାଯ୍ୟ କରିନଥାଏ । ଗୋଟିଏ ଭାଷାରେ ଉଚ୍ଚମାନର ସାହିତ୍ୟ ଥିବା ସତ୍ତ୍ୱେ ଭାଷା ମରିଯାଇପାରେ, ଯେପରି ସଂସ୍କୃତ ଭାଷା । ଏ ଭାଷାରେ ବେଦ ପୁରାଣଠାରୁ ଆରମ୍ଭ କରି ବହୁ ଉଚ୍ଚାଙ୍ଗ କାବ୍ୟକବିତା ସୃଷ୍ଟି ହୋଇଥିଲେ

ମଧ୍ୟ ଏ ଭାଷାକୁ ମୃତ୍ୟୁମୁଖରୁ ବଞ୍ଚାଇ ପାରିଲେ ନାହିଁ । ଏ ଭାଷା ମାତୃଭାଷାର ଗୌରବ ହରାଇଲା । ଆଜି ସଂସ୍କୃତ କାହାରି ମାତୃଭାଷା ନୁହେଁ, କି କୌଣସି ନିର୍ଦ୍ଦିଷ୍ଟ ସମାଜର ଭାଷା ନୁହେଁ । ପୃଥିବୀର ଅନ୍ୟାନ୍ୟ ବହୁ ଉନ୍ନତ ସାହିତ୍ୟିକ ଭାଷା ଲୋପ ପାଇଯିବାର ମଧ୍ୟ ନଜିର ଅଛି ।

ସାହିତ୍ୟ କହିଲେ ଆମେ ସାଧାରଣତଃ ବୁଝିଥାଉ- କାବ୍ୟ କବିତା, ଗଳ୍ପ ଉପନ୍ୟାସ ଆଦି । ଏ ସାହିତ୍ୟ ଗୋଟିଏ ଜାତିର କଳ୍ପନା-ଜଗତକୁ ଖୋରାକ ଯୋଗାଇଥାଏ । କୌଣସି ପ୍ରକାର ତଥ୍ୟ ପରିବେଷଣ କରିବା ଏହାର ପ୍ରାଥମିକ ଉଦ୍ଦେଶ୍ୟ ନୁହେଁ । ଫକୀରମୋହନ, ରାଧାନାଥ ଓଡ଼ିଆ ଭାଷାର ଏକ ଘଡ଼ିସନ୍ଧି ମୁହୂର୍ତ୍ତରେ ଉଚ୍ଚାଙ୍ଗ ସାହିତ୍ୟ ସୃଷ୍ଟି କରି ଓଡ଼ିଆ ଭାଷାକୁ ଗୌରବାନ୍ୱିତ କରିଥିଲେ, କିନ୍ତୁ ଓଡ଼ିଆ ଭାଷାର କଳେବରକୁ ସେମାନଙ୍କ ଅବଦାନ ସାମାନ୍ୟ । ଆଜିର ସାହିତ୍ୟ ବି ସେୟା । ଆଜିର ବହୁ ପ୍ରତିଭାଧର ସାହିତ୍ୟିକ ଓଡ଼ିଆ ଭାଷାରେ ଉଚ୍ଚାଙ୍ଗ ସାହିତ୍ୟ ସୃଷ୍ଟି କରିଛନ୍ତି । ନବ୍ୟନୂତନ କଳ୍ପନାର କିମିଆରେ ଏ ଜାତିକୁ ମସଗୁଲ କରିଛନ୍ତି । କିନ୍ତୁ ଏ କବିମାନେ, ଏ ଗାଳ୍ପିକମାନେ କେତୋଟି ନୂତନ ଶବ୍ଦ ଦେଇଛନ୍ତି ଭାଷାକୁ ? କେତୋଟି ନୂଆ ଶବ୍ଦ ଗଠନ ଧାରା ସୃଷ୍ଟି କରିଛନ୍ତି ? ବରଂ ଦେଖିବାକୁ ଗଲେ କବିତାର ବ୍ୟାକରଣ ଏତେ ଶିଥିଳ ଯେ, ଏହା ଅବୋଧ୍ୟ ହେବାର ଯଥେଷ୍ଟ ସମ୍ଭାବନା ଥାଏ । ଆଧୁନିକ କବିତା ଅବୋଧ୍ୟ ହେବାର ଏହା ଏକ ପ୍ରଧାନ କାରଣ, ସାହିତ୍ୟର ବିଶେଷକରି କବିତା ସାହିତ୍ୟର ବ୍ୟାକରଣ ଶିଥିଳ, ଏପରିକି କ୍ଷେତ୍ର ବିଶେଷରେ ଏହାକୁ ଶୂନ୍ୟ ବ୍ୟାକରଣ କୁହାଯାଇପାରେ । ଉନ୍ମାଦ ଓ ନିଶାଗ୍ରସ୍ତ ବ୍ୟକ୍ତି ବି ଅବୋଧ୍ୟ, ଅସ୍ପଷ୍ଟ ହେବାର କାରଣ ସେଇ ବ୍ୟାକରଣ ବିଭ୍ରାଟ ।

ଦ୍ୱିତୀୟରେ, ସାହିତ୍ୟ ଭାଷାର ତଥ୍ୟଜଗତକୁ ଅବଦାନ ମଧ୍ୟ ସୀମିତ । ସାହିତ୍ୟରେ ଗୁଣ୍ଡୁଚିମୂଷା ସମୁଦ୍ରରେ ବନ୍ଧ ବାନ୍ଧିପାରେ, ରାବଣର ଦଶଟା ମୁଣ୍ଡ ଥାଇପାରେ, ବିଷ୍ଣୁ ବଟପତ୍ରରେ ଭାସିପାରନ୍ତି କି ଗରୁଡ଼ାରୁଢ ହୋଇ ବ୍ରହ୍ମାଣ୍ଡ ଭ୍ରମଣ କରିପାରନ୍ତି । ଏସବୁ କଳ୍ପନାର କଥା, ଏସବୁକୁ କେହି ତଥ୍ୟର ଗୁରୁତ୍ୱ ଦେବନାହିଁ । ଆଜିର ସମାଜ କିନ୍ତୁ ଭାଷା ମାଧ୍ୟମରେ ତଥ୍ୟ ଖୋଜୁଛି । ସାହିତ୍ୟ ପଢିବା ଅପେକ୍ଷା ପିଲାଏ ପାଠ୍ୟପୁସ୍ତକ କି ଜ୍ଞାନକୋଷ ପଢୁଛନ୍ତି, ବେଶୀ ଲୋକ ସମ୍ବାଦପତ୍ର ରଖୁଛନ୍ତି, ବେଶୀ ସ୍ତ୍ରୀ ଲୋକ ପତ୍ରପତ୍ରିକାରୁ ରାନ୍ଧଣା, ସ୍ୱେଟରବୁଣା କି ଫେଶନର ପୃଷ୍ଠା ଓଲଟାଉଛନ୍ତି । ଲୋକଙ୍କର ଆଜି ତଥ୍ୟ ଦରକାର, କୌଶଳ ଦରକାର । ଆଜି ପିଲାଙ୍କର ଗପ ଶୁଣିବାର ବେଳନାହିଁ, ଯୁବକ ଯୁବତୀଙ୍କର ପ୍ରେମ କରିବାକୁ ତାର ନାହିଁ । ପ୍ରୌଢଙ୍କର ଭଜନ ଗାଇବାକୁ ଫୁରୁସତ୍ ନାହିଁ । ଜୀବନ ଭୟାନକ ଭାବେ

ପ୍ରତିଯୋଗୀମୂଳକ ହୋଇ ଉଠିଛି । ମନୁଷ୍ୟର ଜୀବନ ପଦ୍ଧତି ଯେତେ ତୀବ୍ର ଗତିରେ ବିସ୍ତାରିତ ହେଉଛି, ତା' ସହିତ ଖାପଖୁଆଇ ଚଳିବା ପାଇଁ ଜ୍ଞାନ ଦରକାର, ତଥ୍ୟ ଦରକାର । କୋଡ଼ିଏ ବର୍ଷ ତଳେ ସ୍କୁଲ ମାଷ୍ଟରଟିଏ ଥିଲା ସେ ଅଞ୍ଚଳର ସବୁଠୁ ବେଶୀ ଜ୍ଞାନୀ ବ୍ୟକ୍ତି, ଆଜି· କିନ୍ତୁ ପ୍ରତ୍ୟେକ କ୍ଷେତ୍ରରେ ଶହ ଶହ ବିଶେଷଜ୍ଞ ଓ ବିରଳ କୌଶଳ ହାସଲ କରିଥିବା ପ୍ରତିଭାଙ୍କର ଭିଡ଼ । ସେମାନଙ୍କୁ ଆଗେଇ ରହିବାକୁ ହିଁ ହେବ । ସେଥିପାଇଁ ଲୋକଙ୍କୁ ଦରକାର ତଥ୍ୟ, ଜ୍ଞାନ ଓ କୌଶଳ । କୋଡ଼ିଏ ବର୍ଷ ତଳେ ଚାରିବର୍ଷ ଲାଗୁଥିଲା ଜଣକୁ ଡାକ୍ତର ହେବାକୁ । ଆଜି ଲାଗୁଛି ଦଶବର୍ଷ । ମୁନ୍‌ସି ଜଣେ ଯଥେଷ୍ଟ ଥିଲା ବ୍ୟବସାୟର ହିସାବକିତାପ ରଖିବାକୁ । ଆଜି ବ୍ୟବସାୟର ହିସାବ ଏକ ଜଟିଳ ଗଣିତ । ଆଗେ ଏମ୍.ଏ. ଅଧ୍ୟାପକ ହେବା ପାଇଁ ଯଥେଷ୍ଟ ଥିଲାବେଳେ, ଆଜି ଏମ୍.ଫିଲ୍., ପିଏଚ୍.ଡି ବି ଯଥେଷ୍ଟ ହେଉନାହିଁ । ଆଜି ବ୍ୟକ୍ତିର ସଫଳତା ନିର୍ଭର କରୁଛି ତଥ୍ୟ ଓ କୌଶଳର ଜ୍ଞାନରେ । ପିଲାଏ ଅନ୍ତାକ୍ଷରୀ ଛାଡ଼ି କୁଇଜ୍ ପ୍ରତିଯୋଗିତା ପାଇଁ ପ୍ରସ୍ତୁତ ହେଉଛନ୍ତି । କିନ୍ତୁ ଏ ଘୋଡ଼ାଦୌଡରେ ଭାଷାର କି ଭୂମିକା ଅଛି ? ଭାଷା ହିଁ ହେଉଛି ଏ ଜ୍ଞାନର ମାଧ୍ୟମ । ଭାଷା ମାଧ୍ୟମରେ ହିଁ ଏ ତଥ୍ୟଭଣ୍ଡାର ଲୋକଙ୍କ ପାଖରେ ପହଞ୍ଚିବ । ଯେଉଁ ଭାଷା ସେଇ ଭଣ୍ଡାରକୁ ଯେତେ ବେଶୀ ଧାରଣ କରିଛି, ଲୋକେ ସେତେ ବେଶୀ ସେଇ ଭାଷା ଆଡ଼କୁ ମୋହିଁବେ । ଏହି ପରିପ୍ରେକ୍ଷୀରେ ଆଜି ଆମକୁ ଭୟ ଲାଗିଲାଣି କହିବାକୁ ଯେ ଆଜିର ପୃଥିବୀରେ ମାତୃଭାଷା ବୋଲି ଆଉ କିଛି ରହିବ ନାଁ ନାହିଁ ? ଖୁବ୍ ବେଶୀ ହେଲେ ମାତୃଭାଷା ହେବ ବ୍ୟକ୍ତିଜୀବନର ଏକ ଦୁର୍ଘଟଣା । ଆଜି ଜାତି, ଦେଶ ନିର୍ବିଶେଷରେ ମଣିଷ ଖୋଜୁଛି ଭାଷା, ଯେଉଁ ଭାଷା ତାକୁ ସର୍ବାଧିକ ଜ୍ଞାନ ଓ ସୁଯୋଗ ଯୋଗାଇ ଦେଇପାରିବ । ସେ ଖୋଜୁଛି କେଉଁ ଭାଷାରେ ସର୍ବାଧିକ ତଥ୍ୟ ଗଚ୍ଛିତ ହେଉଛି ? କେଉଁ ଭାଷାରୁ ସହଜରେ ଏ ତଥ୍ୟକୁ ସେ ଆହରଣ କରିପାରିବ ? ଅନ୍ୟ କଥାରେ କେଉଁ ଭାଷା ତାକୁ ଏ ଘୋଡ଼ା ଦୌଡ଼ରେ ସାମ୍ନାରେ ରଖିପାରିବ । ମୋର ବିଶ୍ୱାସ ଏହି କାରଣରୁ ହିଁ ଆଜି ଜାତି ଦେଶ ଧର୍ମ ନିର୍ବିଶେଷରେ ସମଗ୍ର ଭାରତବର୍ଷରେ ଇଂରାଜୀ ଭାଷା ଶିକ୍ଷା ପାଇଁ ଦେଖାଦେଇଛି ଏ ପ୍ରବଳ ଆକୁଳତା । ଯେଉଁ ପିଲା ଇଂଲିଶ୍ ମିଡିୟମ ସ୍କୁଲ୍‌ରେ ପଢୁଛି, ସେ ପିଲା ହାଇସ୍କୁଲ ପାସ୍ କଲାବେଳକୁ ହଜାର ହଜାର ଶବ୍ଦ, ଶହ ଶହ ବହି ସହିତ ପରିଚିତ ହେଉଥିଲାବେଳେ ଯେଉଁ ପିଲା ଭାରତୀୟ ଭାଷା ମାଧ୍ୟମରେ ପାଠ ପଢୁଛି, ସେ ଓଡ଼ିଆ ହେଉ କି ବଙ୍ଗଳା ହେଉ କି ହେଉ ରାଜଭାଷା, ତଥ୍ୟ ରାଜ୍ୟକୁ ପ୍ରବେଶ ତା'ର ଆପେକ୍ଷିକ ଭାବେ ଯଥେଷ୍ଟ ସୀମିତ ଓ ସଙ୍କୁଚିତ । ମାତୃଭାଷା ତାକୁ ପଙ୍ଗୁ, ଅପାରଗ କରି ଦେଉଛି । ଆମ ନିଜ ଭାଷାକୁ ନିଆଯାଉ ନା, ଗୋଟିଏ ଆଧୁନିକ ସମାଜକୁ ଦେବା ପାଇଁ କ'ଣ ଅଛି ଏ

ଭାଷାରେ ? ସର୍ବମୋଟ ଦଶହଜାରରୁ କମ୍ ବହି ଆଉ ଅତି ବେଶୀ ହେଲେ ଲକ୍ଷେ ଶବ୍ଦ । ଏ ଭାଷାରେ ଅଭିଧାନଟିଏ ନାହିଁ, ଜ୍ଞାନକୋଷଟିଏ ନାହିଁ, ଚିନ୍ତାମୂଳକ ମୌଳିକ ଗଦ୍ୟ ସାହିତ୍ୟର ଘୋର ଅନଟନ । ସମୀକ୍ଷା, ଆଲୋଚନା, ତାତ୍ତ୍ୱିକ, ମୀମାଂସା ପ୍ରାୟ ନାହିଁ କହିଲେ ଚଳେ । ଅଛି କିଛି କାବ୍ୟ କବିତା ଓ ପରୀରାଇଜର ଗପ । ବସ୍ତୁତଃ ଓଡ଼ିଆ ଭାଷା ଏକ କବିତା ଲେଖା ଭାଷାରେ ପରିଣତ ହୋଇଛି । କବିତା ଲେଖା ହେବା ଛଡ଼ା ଏ ଭାଷାରେ ଆଖିଦୃଷ୍ଟିଆ ଆଉ କିଛି ଲେଖା ହେଉନାହିଁ । ମନ୍ତ୍ରୀଠାରୁ ଆରମ୍ଭ କରି ବୈଜ୍ଞାନିକ, ଅଧ୍ୟାପକ, ଅଫିସର, କିରାଣୀ, ଗୃହିଣୀ, ଡାକ୍ତରାଣୀ, ଓକିଲ, ପୋଲିସ୍, ଛାତ୍ରଛାତ୍ରୀ, ଲୁଗାଦୋକାନି, କିରୋସିନିବାଲା ପର୍ଯ୍ୟନ୍ତ ସମସ୍ତେ ମାତିଛନ୍ତି କବିତା ଲେଖାରେ । ଗାଁ' ଗାଁ'ରେ କବିତା ପାଠୋତ୍ସବ ଓ କବି ସମ୍ମିଳନୀ । ଏଇ ନିଶା ଏ ଜାତିକୁ ଏତେ ପରିମାଣରେ ସ୍ତବ୍ଧ କରି ଦେଇଛି ଯେ, ଆମ ଉଦ୍ୟୋଗପତିମାନେ ବି ଏବେ ଏହାର ଶୀକାର ହୋଇଛନ୍ତି । କାବ୍ୟ କବିତା ପାଇଁ ପୁରସ୍କାର, ଉପାୟନରେ କଷ୍ଟୋପାର୍ଜିତ ସମ୍ବଳ ବିନର୍ବ୍ୟୟ କରୁଛନ୍ତି । ଏଇ ପଇସାରେ ତାଙ୍କ ଓଡ଼ିଶା ଶ୍ରମିକ ପିଲାମାନଙ୍କ ପାଇଁ ଆଧୁନିକ ବର୍ଣ୍ଣବୋଧଟିଏ କି ନବସାକ୍ଷର ପାଠ୍ୟବସ୍ତୁ କିଛି ଛପାଇ ପାରନ୍ତେ । କାବ୍ୟ କବିତାର ପୃଷ୍ଠପୋଷକତା କରିବା ପାଇଁ ସାହିତ୍ୟ ଏକାଡେମୀ କ'ଣ ଯଥେଷ୍ଟ ନୁହେଁ ? ଅନ୍ୟ କୌଣସି ଭାଷାରେ ଏପରି ପରିସ୍ଥିତି ସୃଷ୍ଟି ହୋଇନାହିଁ । ଗୋଟିଏ ଜାତିର ସମସ୍ତ ସୃଜନାତ୍ମକ ଶକ୍ତି ନିଛକ କଳ୍ପନା ବିଳାସରେ ଖର୍ଚ୍ଚ ହେଉଛି । ଅଥଚ ଯେଉଁ ଭାଷାରେ ମୌଳିକ, ତଥ୍ୟଭିତ୍ତିକ ନିରାଟ ଗଦ୍ୟ ସାହିତ୍ୟ ସୃଷ୍ଟି ହେଉନାହିଁ, ସେ ଭାଷା ମରଣର ବାଟ ଫିଟାଉଛି । କାରଣ ଏ ଭାଷା ଭାଷାଭାଷୀମାନଙ୍କ ଦ୍ୱାରା ପରିତ୍ୟକ୍ତ ହେବ । ମଣିଷର ସଭ୍ୟତା ଆଗେଇ ଚାଲିଛି ଓ ଚାଲିଥିବ । ସେଇ ସଭ୍ୟତାର ଶିଖରକୁ ସାମ୍ନାରେ ରଖି ସବୁ ଭାଷା ଓଟାରି ହୋଇ ଚାଲିଛନ୍ତି । ଯେଉଁ ଭାଷା ତାକୁ ସେଇ ଶିଖରର ନିକଟତର କରାଇ ପାରିବ, ସେହି ହେବ ତା'ର ଭାଷା । ଯଦି ନିଜ ମାତୃଭାଷା ତାକୁ ସେଠାକୁ ନେଇ ପାରୁନାହିଁ, ସେ ଖୋଜିବ ଅନ୍ୟ ଉନ୍ନତ, ସଂପନ୍ନ ଭାଷା । ସେଥିପାଇଁ ଆଜି ଓଡ଼ିଶାର ଇଂଲିଶ୍ ସ୍କୁଲ୍ ପାଖରେ ଓଡ଼ିଆମାନଙ୍କର ଭିଡ଼ । ବାକି ଯେଉଁମାନେ ରହିଗଲେ, ସେମାନେ ଧାଇଁଲେ ହିନ୍ଦୀ ପଛରେ, ଏଇ ଆଶାରେ ଯେ ହିନ୍ଦୀ ଦିନେ ପ୍ରକୃତରେ ଭାରତର ରାଷ୍ଟ୍ରଭାଷା ହେବ । ଆପଣ ବୁଝିପାରିବେ ଏ କଥା ଓଡ଼ିଶାର ରାଜଧାନୀରେ ଗୋଟିଏ ଛୋଟିଆ ସର୍ଭେ କରି– କେଉଁ ପିଲା ଇଂଲିଶ୍ ମିଡିଅମ୍ ସ୍କୁଲ୍‌କୁ ଯାଉଛନ୍ତି କେଉଁ ପିଲା ହିନ୍ଦୀ ବା ଓଡ଼ିଆ ମିଡିଅମ୍‌କୁ ? ଆମେ ଜାଣୁ ଏ ପ୍ରଶ୍ନର ଉତ୍ତର । ଆପଣ ବି ଜାଣନ୍ତି ।

ଭାଷା ପାଇଁ ସାହିତ୍ୟର ଯେ ଯଥେଷ୍ଟ ଆବଶ୍ୟକତା ଅଛି, ସେକଥା କେହି ଅସ୍ୱୀକାର

କରିବେ ନାହିଁ । କିନ୍ତୁ କି ପ୍ରକାର ସାହିତ୍ୟ ଆଜି ଭାଷା ଲୋଡ଼ୁଛି ? ସାହିତ୍ୟକୁ ଏକ ସଂକୀର୍ଣ୍ଣ ଅର୍ଥରେ ଆମେ ବୁଝିଯାଉ, ଯଥା- କାବ୍ୟ କବିତା ବା ଗଳ୍ପ ଉପନ୍ୟାସ । କିନ୍ତୁ ଭାଷାର ଯେ କୌଣସି ପ୍ରକାଶକୁ ସାହିତ୍ୟ ବୋଲି ଧରାଗଲେ, ସମ୍ବାଦପତ୍ର, ବିଜ୍ଞାପନଠାରୁ ଆରମ୍ଭ କରି ପିଲାଙ୍କ ପାଠ୍ୟପୁସ୍ତକ ପର୍ଯ୍ୟନ୍ତ ସବୁ ଲେଖାକୁ ସାହିତ୍ୟର ମର୍ଯ୍ୟାଦା ଦେବା ଉଚିତ୍ । ବରଂ ଭାଷାର ଉନ୍ନତିରେ କାବ୍ୟ କବିତାଦି ଅପେକ୍ଷା ତଥ୍ୟମୂଳକ ଲେଖାର ଯଥେଷ୍ଟ ବେଶୀ ଅବଦାନ ରହିଛି । ପ୍ରଥମେ ସମ୍ବାଦପତ୍ରକୁ ନିଆଯାଉ । ଆଜିର ଭାଷା ପାଇଁ ସମ୍ବାଦପତ୍ରର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । ସମ୍ବାଦପତ୍ର କଳ୍ପନାରେ ପ୍ରଚାର କରେ ନାହିଁ । ଏହା ଘଟଣା, ସମ୍ବାଦ ବା ତଥ୍ୟକୁ ଭାଷା ଭିତରକୁ ଆଣିଥାଏ । ଆଜିର ଯେକୌଣସି ସମ୍ବାଦପତ୍ରକୁ ଖୋଲିଲେ ସହଜରେ ବୁଝିହେବ ଯେ, ସାରା ପୃଥିବୀଟା ଯାକର ଘଟଣା ଏହାର ବିଷୟବସ୍ତୁ । ସମଗ୍ର ବିଶ୍ୱର ଘଟଣା, ବିଚାରଧାରା, ଉଦ୍ଭାବନ, ଆବିଷ୍କାର, ପ୍ରଗତିକୁ ଏହା ନିତି ଆମ ପାଖରେ ପହଞ୍ଚାଉଛି । ଆଜିର ସମ୍ବାଦପତ୍ର ଏତେ ସର୍ବବ୍ୟାପୀ ହୋଇଯାଇଛି ଯେ ଏହା ଖାଲି ସମ୍ବାଦ ପରିବେଷଣରେ ସୀମିତ ରହୁନାହିଁ । ରାଜନୀତି, କୂଟନୀତି ଠାରୁ ଆରମ୍ଭ କରି ବିଜ୍ଞାନ, ବ୍ୟବସାୟ ବାଣିଜ୍ୟ, ଖେଳ କସରତ, ମନୋରଞ୍ଜନ, ସମୀକ୍ଷା, ଆଲୋଚନା, ତର୍କ, ସବୁ ଆଜି ଏହାର ପୃଷ୍ଠାରେ ସ୍ଥାନିତ ହେଉଛି । ଏହା ଜରିଆରେ ନାନା ପ୍ରକାରର ତଥ୍ୟ ଗୋଟିଏ ଜାତି ପାଖରେ ପହଞ୍ଚୁଛି । ଆଉ ଏହି ବୈଚିତ୍ର୍ୟମୟ ପୃଥିବୀର ଖବର ଜନସମାଜରେ ପହଞ୍ଚାଇବାର ଚେଷ୍ଟାରେ ଏହା ଭାଷାକୁ ବିସ୍ତାରିତ କରୁଛି । ସେଥିପାଇଁ ପ୍ରତିଦିନ ପ୍ରତି ପୃଷ୍ଠାରେ ଏହା ଶହ ଶହ ନୂଆ ଶବ୍ଦ, କଥା, ଭଙ୍ଗୀ ଚିନ୍ତାକୁ ପାରୁପର୍ଯ୍ୟନ୍ତ ଚେଷ୍ଟା କରି ଭାଷା ପୂରାଉଛି । ଏହି ଶବ୍ଦ ସବୁ ଖାଲି ସୃଷ୍ଟି ହେଉନାହାଁନ୍ତି; ଏଗୁଡ଼ିକର ପୁନଃ ପୁନଃ ପ୍ରଚାର ଓ ପ୍ରସାର ଫଳରେ ଶବ୍ଦଗୁଡ଼ିକ ଭାଷାରେ ସ୍ଥାୟୀ ହୋଇଯାଉଛନ୍ତି । ହେଉଛନ୍ତି ଭାଷାର ସଂପତ୍ତି । ଯେକୌଣସି ତଥାକଥିତ ସାହିତ୍ୟ ଅପେକ୍ଷା, ସମ୍ବାଦପତ୍ର ଜରିଆରେ ବେଶୀ କଥା, ଭାବନା, ମତାମତ ଭାଷାକୁ ଆସିଥାନ୍ତି । ଖାଲି ଆସିଥାନ୍ତି ନୁହେଁ ଜନସମାଜର ଏକ ବୃହତ୍ତର ଅଂଶ ନିକଟରେ ସ୍ୱଚ୍ଛନ୍ଦରେ ଏ ଶବ୍ଦଗୁଡ଼ିକ ପହଞ୍ଚିଥାନ୍ତି । ଯେକୌଣସି ସାହିତ୍ୟ ଅପେକ୍ଷା ସମ୍ବାଦପତ୍ର ବେଶୀ ଲୋକଙ୍କ ପାଖରେ ପହଞ୍ଚିଥାଏ, ଗୁରୁତ୍ୱର ସହିତ ପଢ଼ାଯାଇଥାଏ ଓ ଏଥିରୁ ନୂଆ କଥା ଶିଖିବା ପାଇଁ ବାତାବରଣ ତିଆରି କରିଥାଏ । ସୂକ୍ଷ୍ମରେ ସମ୍ବାଦପତ୍ର ଯେକୌଣସି ସାହିତ୍ୟ ଅପେକ୍ଷା ଭାଷା ପାଇଁ ବେଶୀ ମୂଲ୍ୟବାନ । ୟା' ଭିତରେ ଓଡ଼ିଶାରେ ଓଡ଼ିଆ ସମ୍ବାଦପତ୍ରର ଯଥେଷ୍ଟ ଉନ୍ନତି ହୋଇଛି, ଆଜିର ସମ୍ବାଦପତ୍ର ଗୁଡ଼ିକ ଓଲଟାଇଲେ ଦେଖାଯାଏ ଯେ ସମ୍ବାଦପତ୍ର ଖାଲି ସମ୍ବାଦରେ ପର୍ଯ୍ୟାପ୍ତ ନୁହେଁ, ଏହା ଅନ୍ୟାନ୍ୟ ବହୁ ବିଷୟର ବାହକ । ଏହି ପ୍ରଚେଷ୍ଟାରେ ସମ୍ବାଦପତ୍ର ବହୁ ନୂତନ ଶବ୍ଦ ଭାଷାକୁ

ଆଣିଥାଏ । ସେମାନଙ୍କୁ ସ୍ଥାୟିତ୍ୱ ଦେଇଥାଏ ଓ ଲୋକମାନଙ୍କୁ ସେଗୁଡ଼ିକୁ ଶିଖାଇବାରେ ଯତ୍ନ କରିଥାଏ । ସମଗ୍ର ବିଶ୍ୱର ଘଟଣାଜଗତ, ଭାବଜଗତ ଏହାର ପରିସରଭୁକ୍ତ । ସମାଜରେ ତଥ୍ୟ ବିତରଣର ଏହା ଏକ ପ୍ରମୁଖ ଉପାୟ ଏବଂ ସେ ଗୌରବ ସମ୍ବାଦପତ୍ରକୁ ମିଳିବା ଉଚିତ୍ ।

କିନ୍ତୁ ଦୁଃଖର ସହିତ ଆମକୁ କହିବାକୁ ପଡୁଛି ଯେ ଓଡ଼ିଆ ସମ୍ବାଦପତ୍ର ଗୁଡ଼ିକ ତାଙ୍କର ଏହି ଗୁରୁଦାୟିତ୍ୱ ବିଷୟରେ ଏ ପର୍ଯ୍ୟନ୍ତ ଯଥେଷ୍ଟ ସଚେତନ ନୁହଁନ୍ତି । ସାମ୍ବାଦିକତାର ଭାଷା ଯେଉଁ ପରିମାଣରେ ତୀକ୍ଷ୍ଣ ଓ ଏକନିଷ୍ଠ ହେବା ଉଚିତ୍, ହୋଇପାରୁନାହିଁ । ଓଡ଼ିଆ ସମ୍ବାଦପତ୍ରର ଭାଷା ଏବେ ବି ଯଥେଷ୍ଟ ଶିଥିଳ ଓ ଖାମଖିଆଲି । ବହୁ ଭୁଲ୍‌ଭ୍ରାନ୍ତି, ବହୁ ଅଭାବ ଏ ଭାଷାରେ ପରିଦୃଷ୍ଟ ହୁଏ । ଖାଲି ସମ୍ବାଦ ପରିବେଷଣ ଏହାର ଲକ୍ଷ୍ୟ ହେବା ଉଚିତ୍ ନୁହେଁ; ସେ ସମ୍ବାଦକୁ ଉଚିତ୍ ଭାଷାରେ, ଉଚିତ୍ ଶୈଳୀରେ, ଉଚିତ୍ ଢଙ୍ଗରେ ପ୍ରକାଶ କରିବା ମଧ୍ୟ ବାଞ୍ଛନୀୟ । ମନୋରଞ୍ଜନ ଏହାର ଆଦର୍ଶ ହେବା ଉଚିତ୍ ନୁହେଁ, ଏହାର ଲକ୍ଷ୍ୟ ହେବା ଉଚିତ୍ ତଥ୍ୟ ପରିବେଷଣ । ସାମ୍ବାଦିକତା ଉଚିତ୍ ଭାଷାର ଆଶ୍ରୟ ନ ନେଲେ, ଏହା ଲକ୍ଷ୍ୟଭ୍ରଷ୍ଟ ହେବ । ଏପରିକି ଏହାର ପୃଷ୍ଠାରେ ପ୍ରକାଶିତ ହେଉଥିବା ବିଜ୍ଞାପନଗୁଡ଼ିକ ବି ଠିକ୍ ଭାଷାରେ ଛପା ହେଉନାହିଁ । ସମ୍ବାଦଗୁଡ଼ିକ ଠିକ୍ ଭାଷାରେ ପାଠକମାନଙ୍କ ପାଖରେ ପହଞ୍ଚୁ ନାହିଁ । ଠିକ୍ ଶୈଳୀରେ ସଂପାଦିତ ହେଉନାହିଁ । ଗୋଟିଏ ସମ୍ବାଦପତ୍ରର ରାଜନୈତିକ ଓ ସାମାଜିକ ଆଭିମୁଖ୍ୟ ବି ସ୍ପଷ୍ଟ ହେଉନାହିଁ, ଆଉ ଏ ଆଭିମୁଖ୍ୟଗୁଡ଼ିକ ସ୍ପଷ୍ଟ ନ ହେବାଯାଏ ଭାଷା-ପ୍ରସାର ଠିକ୍ ମାର୍ଗରେ ଆଗେଇ ପାରିବ ନାହିଁ ।

ସେହିପରି ଭାଷା-ପ୍ରସାରର ଅନ୍ୟ ଗୋଟିଏ ଅଣସାହିତ୍ୟ ଧାରା ହେଉଛି ପାଠ୍ୟପୁସ୍ତକ । ପ୍ରାଥମିକଠାରୁ ବିଶ୍ୱବିଦ୍ୟାଳୟ ପର୍ଯ୍ୟନ୍ତ ନାନା ପାଠ୍ୟ ବିଷୟକ ଗ୍ରନ୍ଥ ପ୍ରକାଶିତ ହୋଇଥାଏ । ଏଗୁଡ଼ିକୁ ବି ଭାଷା-ସାହିତ୍ୟ ଆଖ୍ୟା ଦେବାକୁ ପଡ଼ିବ । ବହୁ ପାଠ୍ୟ ବିଷୟରେ ଏପର୍ଯ୍ୟନ୍ତ ବି ଓଡ଼ିଆ ଭାଷାରେ ପୁସ୍ତକ ପ୍ରଣୟନ କରାଯାଇ ପାରିନାହିଁ । ଶିକ୍ଷାର ଯେତିକି ଯେତିକି ଉପର ଆଡ଼କୁ ଆମେ ଯିବା, ଦେଖିବା ଓଡ଼ିଆ ଭାଷାର ପ୍ରୟୋଗ ସେତିକି କମିକମି ଯାଉଛି । ତେବେ ଶିକ୍ଷାର ଯେଉଁ ସ୍ତର ପର୍ଯ୍ୟନ୍ତ ପାଠ୍ୟପୁସ୍ତକ ପ୍ରଣୀତ ହୋଇଛି, ଅନ୍ତତଃ ସେଇ ସ୍ତର ପର୍ଯ୍ୟନ୍ତ ଭାଷାକୁ ବିଷୟୋପଯୋଗୀ କରିବାକୁ ପଡ଼ିବ । ପାଠ୍ୟ ବହି ତଥ୍ୟ ପ୍ରସାରର ଅନ୍ୟ ଏକ ବଳିଷ୍ଠ ମାର୍ଗ । ପାଠ୍ୟ ବହିଗୁଡ଼ିକ ଜରିଆରେ ଭାଷାଭାଷୀମାନେ ଓଡ଼ିଆ ଭାଷାର ବୌଦ୍ଧିକ ଦିଗ ସହିତ ପରିଚିତ ହୋଇଥାନ୍ତି । ଏଗୁଡ଼ିକ ମାଧ୍ୟମରେ ବି ହଜାର ହଜାର ନୂତନ ଶବ୍ଦ ଓଡ଼ିଆ ଭାଷାରେ ପ୍ରବେଶ କରିଥାନ୍ତି । ଏବେ କମ୍ପ୍ୟୁଟର ବିଷୟରେ ପ୍ରକାଶିତ ଗୋଟିଏ

ପ୍ରାଥମିକ ପୁସ୍ତକର ଶେଷରେ ପ୍ରାୟ ଦୁଇଶହ ନୂତନ ଓଡ଼ିଆ ଶବ୍ଦର ଏକ ତାଲିକା ସନ୍ନିହିତ ହୋଇଥିବାର ଆମେ ଦେଖିବାକୁ ପାଇଲୁ । ସାହିତ୍ୟର ଶବ୍ଦ ପରି ଏ ଶବ୍ଦଗୁଡ଼ିକ ଶିଥିଳ ନୁହଁନ୍ତି । ପାଠ୍ୟ ବହିରେ ଅଧିକାଂଶ ଶବ୍ଦଙ୍କର ନିର୍ଦ୍ଦିଷ୍ଟ ସଂଜ୍ଞା, ଅର୍ଥ ଓ ସୂତଥ୍ୟତା ଅଛି । ସେ ସବୁ ଶବ୍ଦର ବ୍ୟବହାର ଭାଷାରେ ପ୍ରତିଷ୍ଠିତ ହେଉଛି । ତେଣୁ ଭାଷାର ଉନ୍ନତି ଦୃଷ୍ଟିରୁ ଏ ଦିଗଟି ପ୍ରତି ମଧ୍ୟ ଧ୍ୟାନ ଦେବାକୁ ପଡ଼ିବ । କଥିତ ଭାଷା ପାଇଁ ରେଡ଼ିଓ, ଟେଲିଭିଜନର ଯେପରି ଗୋଟିଏ ବିରାଟ ଭୂମିକା ଅଛି, ସେହିପରି ଲିଖିତ ଭାଷା ପାଇଁ ସମ୍ବାଦପତ୍ର ଓ ପାଠ୍ୟପୁସ୍ତକର ଅନୁରୂପ ଅବଦାନ ଅଛି ।

କିନ୍ତୁ ଓଡ଼ିଆ ଭାଷାରେ ପାଠ୍ୟପୁସ୍ତକ କାହିଁ ? ମୁଷ୍ଟିମେୟ ବିଷୟରେ ଶିକ୍ଷାର ନିମ୍ନସ୍ତର ପାଇଁ କିଛି କିଛି ବହି ଲେଖାହୋଇଛି । ବହୁ ଆଧୁନିକ ବିଦ୍ୟାକୁ ନେଇ ଓଡ଼ିଆ ଭାଷାରେ ପ୍ରାୟ କିଛି ଲେଖା ହୋଇନାହିଁ କହିଲେ ଚଳେ । ଶିକ୍ଷାର ଉଚ୍ଚ ସ୍ତର ପାଇଁ ଓଡ଼ିଆରେ କୌଣସି ବହି ନାହିଁ । ତେଣୁ ଓଡ଼ିଆ ଭାଷା କେଉଁଠୁ ପାଇବ ସେ ସବୁ ବୈଷୟିକ ଶବ୍ଦ ? ଓଡ଼ିଆ ଭାଷାରେ ନୂତନ ବିଷୟରେ ଯଦି ବହି ଲେଖା ନହୁଏ, ଶିକ୍ଷକ ଓ ଅଧ୍ୟାପକମାନେ ଯଦି ଓଡ଼ିଆ ଭାଷାରେ ସେ ସବୁ ବିଷୟକୁ ଶିକ୍ଷା ନ ଦିଅନ୍ତି, କିପରି ଭାଙ୍ଗିବ ଓଡ଼ିଆ ଭାଷାର ଜଡ଼ତା ?

ଗୋଟିଏ ଆଧୁନିକ ଭାଷା କାବ୍ୟ କବିତା, ଗଳ୍ପ ଉପନ୍ୟାସକୁ ଆଶ୍ରୟ କରି ଅଗ୍ରସର ହୋଇପାରିବ ନାହିଁ । କାଳଜୟୀ ସାହିତ୍ୟ ସୃଷ୍ଟି କରି ଗୋଟିଏ ଭାଷାର ଗୌରବକୁ ବଢାଯାଇପାରେ, କିନ୍ତୁ ଭାଷାର ଆଧୁନିକୀକରଣ କ୍ଷେତ୍ରରେ ଏହାର ସେପରି କିଛି ଭୂମିକା ନାହିଁ । ପାଞ୍ଚ ଶହ ବର୍ଷ ତଳେ ଓଡ଼ିଆ ଭାଷାରେ ସାରଳା ମହାଭାରତ ଲେଖା ହୋଇପାରିଥିଲା । ସେତେବେଳର ସମୟ ପାଇଁ ସାରଳା ମହାଭାରତ ସାହିତ୍ୟ ହେବା ଛଡ଼ା ଥିଲା ଓଡ଼ିଆ ଭାଷାର ଏକ ଅଭିଧାନ । ବର୍ତ୍ତମାନ ଲେଖା ହୋଇଛି ଛ'ମାଣ ଆଠଗୁଣ୍ଠ ବା ଶ୍ରୀରାଧା । କିନ୍ତୁ ଭାଷାର ଦାରିଦ୍ର୍ୟ ଘୁଞ୍ଚି ନାହିଁ । ଭାଷାର ଆଧୁନିକୀକରଣକୁ ଏ ସାହିତ୍ୟର ସେପରି କୌଣସି ଅବଦାନ ନାହିଁ । ଏ ସାହିତ୍ୟ ସତ୍ତ୍ୱେ ଭାଷାକୁ ବଞ୍ଚାଇବା ପାଇଁ ଆମକୁ ଭିନ୍ନ ସାହିତ୍ୟର ସାହାଯ୍ୟ ନେବାକୁ ପଡ଼ିବ । ସମ୍ବାଦପତ୍ର ଓ ପାଠ୍ୟଗୁଡ଼ିକୁ ସାହିତ୍ୟ କୁହାଯାଉ କି ନଯାଉ, ଏଗୁଡ଼ିକର ଯଥେଷ୍ଟ ଗୁରୁତ୍ୱ ଅଛି ଭାଷା ପାଇଁ । ଏହିମାନଙ୍କ ଜରିଆରେ ହିଁ ଭାଷାରେ ନୂତନ ଶବ୍ଦ, ଅର୍ଥ ଓ ତଥ୍ୟ ପ୍ରବେଶ କରିପାରିବେ । କିନ୍ତୁ ଓଡ଼ିଆ ଭାଷା କ୍ଷେତ୍ରରେ ଏ ଦିଗଟି ଅତ୍ୟନ୍ତ ଦୁର୍ବଳ, ତେଣୁ କୌଣସି ପ୍ରକାର ବୈଜ୍ଞାନିକ ଚିନ୍ତା ପାଇଁ, ନୂତନ ଜ୍ଞାନ ପାଇଁ ଏ ଭାଷାର ସମ୍ଭାର ନାହିଁ । କିଛି ଅନଭିଜ୍ଞ ଲୋକେ ଯୁକ୍ତି ବାଢ଼ନ୍ତି ଯେ ଓଡ଼ିଆ ଭାଷାରେ ଆଧୁନିକ ସଭ୍ୟତାର ସବୁକିଛି ପ୍ରକାଶ କରାଯାଇପାରିବ । ଏହା ଏକ ବଳିଷ୍ଠ ଭାଷା । ଏ କଥା ଆଦୌ

ସତ୍ୟ ନୁହେଁ । କିଛି ପାରିବାରିକ କଥାବାର୍ତ୍ତା ଛଡ଼ା, କିଛି ଉଦ୍ଭଟ କଳ୍ପନା ପ୍ରସୂତ ସାହିତ୍ୟ ଲେଖିବା ଛଡ଼ା, ଏ ଭାଷାରେ କୌଣସି ଗୂଢ ତାତ୍ତ୍ୱିକ ଚର୍ଚ୍ଚା କରାଯାଇ ପାରିବ ନାହିଁ । ସେଥିପାଇଁ ବସି ମୁଣ୍ଡ କୋଡିଲେ ଭାଷା ଆପେ ଆପେ ଉନ୍ନତ ହୋଇଯିବ ନାହିଁ । ଭାଷା ପାଇଁ ନୂଆ ରାସ୍ତା ଖୋଲିବାକୁ ପଡ଼ିବ । ସେଥିପାଇଁ ଆମକୁ ପ୍ରତିଜ୍ଞାବଦ୍ଧ ହେବାକୁ ପଡିବ । ଯେଉଁ ତଦ୍‌ବିଦ୍‌ମାନେ ଏହା କରିପାରିବେ ବା ସେ ଦିଗରେ ବାଟ କଢାଇ ପାରିବେ, ସେମାନଙ୍କୁ ତା'ର ଦାୟିତ୍ୱ ଦେବାକୁ ପଡିବ । ସେଥିପାଇଁ ଓଡ଼ିଆ ଭାଷା ଅନୁଷ୍ଠାନମାନ ସରକାରୀ ଚେଷ୍ଟାରେ ହେଉ ବା ବେସରକାରୀ ଚେଷ୍ଟାରେ ହେଉ, ଗଢା ହେବା ଉଚିତ୍ । ଭାଷା ଗୋଟିଏ ଆଧୁନିକ ସମାଜର ଉପଯୁକ୍ତ ନହେଲେ, ଭାଷାଭାଷୀମାନେ ଆପେ ଆପେ ଏହି ଭାଷା ଉପରୁ ଆସ୍ଥା ହରାଇବେ । ସେମାନେ ଆପେ ଆପେ ଧରିନେବେ ଯେ, ଏ ଭାଷାର ଭବିଷ୍ୟତ ନାହିଁ । ଓଡ଼ିଆ ପିଲାମାନେ ଆହୁରି ବେଶୀ ସଂଖ୍ୟାରେ ଯିବେ ଇଂଲିଶ୍ ମିଡିଅମ ସ୍କୁଲ୍‌କୁ । କୌଣସି ପ୍ରକାର ଆଇନ୍ କରି ଲୋକମାନଙ୍କୁ ରୋକାଯାଇ ପାରିବ ନାହିଁ ଅନ୍ୟ ଭାଷାର ସ୍କୁଲକୁ ଯିବାରୁ । ମଣିଷ ଅବଶ୍ୟ ତା'ର ସ୍ୱାର୍ଥ ଦିଗଟିକୁ ହିଁ ପ୍ରଥମେ ଦେଖିବ । ଦେଶଭକ୍ତିର ଦ୍ୱାହି ଦେଇ କୌଣସି ଓଡ଼ିଆ ନିଜ ପିଲାଛୁଆଙ୍କର ଭବିଷ୍ୟତକୁ ଅନ୍ଧକାରମୟ କରିବ ନାହିଁ । ଶେଷକୁ ଓଡ଼ିଆ ଦେଶରେ ସୃଷ୍ଟି ହେବ ଦୁଇ ପ୍ରକାରର ଓଡ଼ିଆ ଭାଷା -ଇଂରାଜୀ ସ୍କୁଲ୍‌ରେ ପଢିଥିବା ଓଡ଼ିଆଙ୍କର ଖଣ୍ଡିଖଣ୍ଡିଆ ଓଡ଼ିଆ ଓ ଓଡ଼ିଆ ସ୍କୁଲରେ ପଢିଥିବା ଡେଫିସିଏଣ୍ଟ ବା ଦରିଦ୍ର ଓଡ଼ିଆ । ଭାଷା ଦୃଷ୍ଟିରୁ, ଏ ଦୁଇଟିଯାକ ପ୍ରକାର ଏ ଜାତି ପାଇଁ ଦୁର୍ଭାଗ୍ୟଜନକ ହେବ । ଏହା ଯେପରି ନହୁଏ, ସେଥିପାଇଁ ଆଜଠୁଁ ଓଡ଼ିଆ ଭାଷାକୁ ସମୃଦ୍ଧ କରିବାକୁ ପଡ଼ିବ, ଯୁଗୋପଯୋଗୀ କରିବାକୁ ପଡିବ । ଓଡ଼ିଆ ଭାଷା ଯେପରି ନିଜର ଶକ୍ତି ବଳରେ ଓଡ଼ିଆମାନଙ୍କୁ ଆପେ ଆପେ ବାନ୍ଧିବ, ଜାତିପ୍ରେମର ଶୁଷ୍କ ସ୍ଲୋଗାନରେ ଭାବପ୍ରବଣ ହୋଇ ନୁହେଁ ବା ଭାଷା ବିଷୟରେ ବୃଥା ଆସ୍ଫାଳନରେ ବିଶ୍ୱାସ କରି ନୁହେଁ । ଏ ଭାଷାରେ ଲୋକଙ୍କର ଭବିଷ୍ୟତ ସୁରକ୍ଷିତ ହେବା ଉଚିତ୍ । ସେଥିପାଇଁ ଗୋଟିଏ ଆଧୁନିକ ଭାଷା ଗଢିବା ହିଁ ଏକମାତ୍ର ପନ୍ଥା ।

ଶିକ୍ଷାର ଏକ ବିରାଟ ଭୂମିକା ଅଛି ଭାଷାକୁ ବଞ୍ଚାଇବାରେ, ବିଶେଷକରି ପ୍ରାଥମିକ ଶିକ୍ଷାର । ପ୍ରଥମ ଥର ପାଇଁ ଶିଶୁ ତା' ଭାଷାର ସ୍ଥାୟିତ୍ୱ ବିଷୟରେ ସଚେତନ ହୁଏ । ପ୍ରାଥମିକ ସ୍କୁଲରେ ଅ, ଆ, ଇ ଖାଲି ଓଡ଼ିଆ ବର୍ଣ୍ଣମାଳା ଶିଖିବା ନୁହେଁ, ନଶ୍ୱରଶୀଳ କଥିତ ଭାଷାକୁ ଲେଖା ମାଧ୍ୟମରେ ସ୍ଥାୟିତ୍ୱ ହେବା ମଧ୍ୟ ଏହାଦ୍ୱାରା ସଂପନ୍ନ ହୋଇଥାଏ । ନିଜ କଥା ପ୍ରତି ଓ ପରୋକ୍ଷରେ ନିଜ ଭାଷା ପ୍ରତି ଶିଶୁର ଆସ୍ଥା ଜନ୍ମେ । ଶିଶୁର ମାନସିକ ସ୍ୱାସ୍ଥ୍ୟ ପାଇଁ ଏହା ଏକ ଦୃଢ଼ ପଦକ୍ଷେପ ଓ ଜାତି ପାଇଁ ଏକ ବିରାଟ ବରଦାନ । ଶିଶୁ ଯଦି ଗୋଟିଏ ଭାଷା କହୁଥିବା

ବେଳେ ଅନ୍ୟ ଗୋଟିଏ ଭାଷାରେ ତାକୁ ଶିକ୍ଷା ଦିଆଯାଏ, ତା'ର ମାନସିକ ଭାରସାମ୍ୟ ବିପନ୍ନ ହୁଏ । ସେ ଭାବେ, ତା'ର ମାତୃଭାଷା ଶିକ୍ଷାର ଅଯୋଗ୍ୟ । ସେ ଭାଷାରେ ଗେଲ କରାଯାଏ, କିନ୍ତୁ କୌଣସି ଗୁରୁତ୍ୱପୂର୍ଣ୍ଣ ଚର୍ଚ୍ଚା କରାଯାଇ ପାରେ ନାହିଁ । ଇଂଲିଶ ମାଧ୍ୟମ ସ୍କୁଲ୍‌ରେ ମିସ୍ ଯେତେବେଳେ ପିଲାମାନଙ୍କୁ ନିଜ ମାତୃଭାଷାରେ ଉତ୍ତର ଦେବା ପାଇଁ ବା ନିଜ ନିଜ ଭିତରେ ସେଇ ଭାଷାରେ କଥାବାର୍ତ୍ତା ହେବାପାଇଁ ବାରଣ କରନ୍ତି, ଶିଶୁ ଆପେ ଆପେ ଧରିନିଏ ଯେ, ତା' ମାତୃଭାଷାଟା ଏକ ହୀନ ଭାଷା । ଆଜିର ବାପା ମା'ମାନେ ବି ଆଜି ସେୟା କରୁଛନ୍ତି । ପିଲାଙ୍କ ଇଂରାଜୀ ଶିକ୍ଷାକୁ ତ୍ୱରାନ୍ୱିତ କରିବା ପାଇଁ ସେମାନେ ପିଲାଙ୍କ ସହିତ ଓଡ଼ିଆରେ କଥାବାର୍ତ୍ତା ନହୋଇ ଇଂରାଜୀ ଭାଷାରେ କଥାବାର୍ତ୍ତା ହୋଇଥାନ୍ତି । ଏପରିକି ଏ ନିୟମ ଭଙ୍ଗ କଲେ ଶିଶୁ ଦଣ୍ଡିତ ହୋଇଥାଏ । ଏହାଦ୍ୱାରା ମାତୃଭାଷାର ବନ୍ଧନ ଜାତି ଉପରୁ ହୁଗୁଳା ହୋଇଯାଏ ଓ ମାତୃଭାଷାରେ କ୍ଷମତା ଆସେ ନାହିଁ । ଶିଶୁର ଆତ୍ମବିଶ୍ୱାସ ଭାଙ୍ଗିଯାଏ । ଆଗେ, ପ୍ରାଥମିକ ସ୍ତରରେ କେବଳ ମାତୃଭାଷା ହିଁ ଶିକ୍ଷା ଦିଆଯାଉଥିଲା । ଚତୁର୍ଥ ଶ୍ରେଣୀରୁ ଆରମ୍ଭ ହେଉଥିଲା ଇଂରାଜୀ ଭାଷା । ମାତୃଭାଷା ଦୃଷ୍ଟିରୁ ଏହା ଏକ ସୁସ୍ଥ ପରଂପରା ଥିଲା, କାରଣ ସେତେବେଳକୁ ଛାତ୍ରର ମାନସିକ ରାଜ୍ୟ ମାତୃଭାଷା ଦ୍ୱାରା ପୂର୍ଣ୍ଣ ଭାବେ ଗଠିତ ହୋଇସାରିଥିଲା । ମାଧ୍ୟମିକ ଶ୍ରେଣୀରେ ସେ ଯେତେବେଳେ ଅନ୍ୟ ଭାଷା ସହିତ ପରିଚିତ ହେଉଥିଲା, ସେତେବେଳକୁ ମାତୃଭାଷାର ମୂଳଦୁଆ ପଡ଼ିସାରିଥିଲା । ଶିଶୁର ମସ୍ତିଷ୍କରେ ଏ ରେଖାପାତ ଏତେ ଗଭୀର ଭାବେ ପଡୁଥିଲା ଯେ, ପରବର୍ତ୍ତୀ ବୟସର ଅନ୍ୟ ଭାଷା ତା'ର ମୂଳଦୁଆକୁ ହଲାଇ ପାରୁନଥିଲା ଓ ତା' ନିକଟରେ ଅନ୍ୟ ସବୁ ଭାଷା ଦ୍ୱିତୀୟ ଭାଷା ହୋଇ ରହିଯାଉଥିଲା । ଯେତେ ଚେଷ୍ଟା କଲେ ବି ଅନ୍ୟ ଭାଷାରୁ ତାକୁ ତୃପ୍ତି ମିଳୁନଥିଲା । ଦେଖାଯାଉ ନା ଆମ ପ୍ରତିଷ୍ଠିତ ଓଡ଼ିଆ କବିମାନଙ୍କୁ । ଇଂରାଜୀ ଶିକ୍ଷା ସତ୍ତ୍ୱେ ଏପରିକି ସେ ଭାଷାରେ ଯଥେଷ୍ଟ ପ୍ରବେଶ ସତ୍ତ୍ୱେ ଅଧିକାଂଶ କେବଳ ଓଡ଼ିଆ ଭାଷାରେ ହିଁ ସୃଷ୍ଟିଶୀଳ । ସେମାନଙ୍କ ଭିତରୁ ଅନେକ ଇଂରାଜୀରେ କାବ୍ୟ କବିତା ଲେଖିପାରିଥାନ୍ତେ, କିନ୍ତୁ ସେମାନେ ଲେଖିନାହାଁନ୍ତି । ସେମାନେ ତାଙ୍କ ସୃଷ୍ଟିଶୀଳତା ପାଇଁ ଓଡ଼ିଆ ଭାଷା ଉପରେ ହିଁ ନିର୍ଭର କରିଛନ୍ତି । ଏହା ଖାଲି ଭାଷା ଦକ୍ଷତାର କଥା ନୁହେଁ, ଏହା ପଛରେ ମାତୃଭାଷା ଉପରେ ମାନସିକ ନିର୍ଭଶୀଳତା ବି ଅଛି । ଇଂରାଜୀ ଭାଷାରେ ବହୁଲୋକେ ଓଡ଼ିଶାରେ ଉଚ୍ଚଶିକ୍ଷା ପାଇଛନ୍ତି । ତେବେ ଏଭାଷାରେ ଦକ୍ଷତା ଅର୍ଜନ କରିଛନ୍ତି ଖୁବ୍ ଅଳ୍ପ ଲୋକ । ଏପରିକି ଆପଣ ଲକ୍ଷ୍ୟ କରିଥିବେ ଯେ, ଏଇ କେଇ ବର୍ଷ ତଳ ପର୍ଯ୍ୟନ୍ତ ରଥଯାତ୍ରା ବା ଅନ୍ୟ କୌଣସି ଉତ୍ସବରେ ରେଡିଓ ବା ଟେଲିଭିଜନରେ ଇଂରାଜୀ ଧାରାବିବରଣୀ ଦେବା ପାଇଁ ଓଡ଼ିଶାରେ ଉପଯୁକ୍ତ ଲୋକ ମିଳୁନଥିଲେ, ଶେଷକୁ

ଇଂଲିଶ୍ ମିଡିୟମ ସ୍କୁଲର ପିଲାମାନଙ୍କୁ ଏ କାମ ପାଇଁ ବଛାଯାଉଥିଲା, ଯେହେତୁ ସେମାନଙ୍କର ପ୍ରାଥମିକ ଶିକ୍ଷା ଥିଲା ଇଂରାଜୀରେ ସେମାନଙ୍କର ଦକ୍ଷତା ଥିଲା ଇଂରାଜୀରେ ଭାଷଣ ଦେବା ପାଇଁ । ଅଥଚ ଏଇ ପିଲାଙ୍କର ମାତୃଭାଷା ଓଡ଼ିଆ ଉପରେ ସେ ଆତ୍ମବିଶ୍ୱାସ ନଥିଲା । ଏହି ପ୍ରକାରର ବହୁ ଛାତ୍ରଛାତ୍ରୀ ଆଜି ଓଡ଼ିଶାରେ ଖୋଜିଲେ ମିଳିବେ । ଏପରି ଅବସ୍ଥା ଆମ ଶିକ୍ଷା ପ୍ରଣାଳୀରେ କେବେ ସୃଷ୍ଟି ହୋଇ ନଥିଲା, କିନ୍ତୁ ଆଜି ହୋଇଛି । ଆଜି ପିଲାଏ ଖାଲି ଡାଡି ମମି କହୁନାହାଁନ୍ତି, ଏତିକି ହୋଇଥିଲେ ତ ଚିନ୍ତାର ସେପରି କାରଣ ନଥିଲା । କିନ୍ତୁ ଆଜି ଯାହା ହୋଇଛି ସେ ଏକ ଆତଙ୍କଜନକ ଅବସ୍ଥା । ଏ ପିଲାମାନଙ୍କର ଓଡ଼ିଆ ମେରୁଦଣ୍ଡ ଭାଙ୍ଗିଯାଇଛି । ଏ ପିଲାଏ ଓଡ଼ିଆ ସଂଖ୍ୟାରେ ଏକଠାରୁ କୋଡ଼ିଏ ଗଣିପାରିବେ ନାହିଁ, ଓଡ଼ିଆରେ ଦିନ ଗଣିପାରିବେ ନାହିଁ, ଓଡ଼ିଆ ମାସର ନାଁ କହିପାରିବେ ନାହିଁ । ଚାରିଟା ଫୁଲର ନାଁ, କି ମାଛର ନାଁ, କି ଗଛର ନାଁ, କି ରଙ୍ଗର ନାଁ ଚଟ୍ କରି କହିପାରିବେ ନାହିଁ । ଆମ ଅପେକ୍ଷା ସେମାନଙ୍କ ଇଂରାଜୀ ହୁଏତ ଅନେକ ଭଲ, କିନ୍ତୁ ଓଡ଼ିଆରେ ସେମାନଙ୍କ ମେରୁଦଣ୍ଡ ଭାଙ୍ଗିଯାଇଛି । ସେମାନଙ୍କ ଓଡ଼ିଆ ହେଉଛି ଏକ ମିଶ୍ରିତ ଭାଷା ନା ଓଡ଼ିଆ ନା ଇଂରାଜୀ । ଏହି ଅପମିଶ୍ରଣ ଖାଲି ଶବ୍ଦରେ ସୀମିତ ନରହି ଓଡ଼ିଆ ଭାଷାର ମଜ୍ଜାକୁ ବି ଖତ କରିଦେଉଛି । ଆଶ୍ଚର୍ଯ୍ୟ ହେବାର କିଛି ନାହିଁ- ଯଦି ଓଡ଼ିଆ ପିଲାଏ କହୁଥିବାର ଶୁଣନ୍ତି ଯେ, ମୁଁ ଗୋଟେ ଆମ୍ବ ଖାଇବି ଜାଗାରେ ମୋର ଆମ୍ବ ଦରକାର । ଏହା ଓଡ଼ିଆ ଭାଷାର ଗଠନ ନୁହେଁ ବରଂ ଅପଭାଷା । ଅଥଚ ଏଇ ପିଲେ କାଲି ବଡ଼ ବଡ଼ ଓଡ଼ିଆ ହୋଇ ସମାଜରେ ଠିଆ ହେବେ । ଏମାନେ ଯାହା କହିବେ, ଯେପରି କହିବେ ଅନ୍ୟମାନେ ତାକୁ ଅନୁସରଣ କରିବେ । ଏଇମାନଙ୍କ ଭାଷା ହେବ ଭାଷାର ଆଦର୍ଶ । ଏଇମାନଙ୍କ ଡେଢା ଭାଷା ହେବ ଭାଷାର ଫେଶନ୍ । ଲୋକେ ଚେଷ୍ଟା କରିବେ ସେମାନଙ୍କ ପରି ଓଡ଼ିଆ କହିବାକୁ । ନୀଳବର୍ଣ୍ଣ ଶୃଗାଳକୁ ଅନୁକରଣ କରି ସବୁ ଶୃଗାଳେ ନୀଳବର୍ଣ୍ଣ ହାଣ୍ଡିରେ ବୁଡ଼ିବେ । ସେଦିନ ଆଉ ଡେରି ନାହିଁ ଓ ସେଦିନ ଏ ଜାତି ପକ୍ଷରେ ହେବ ଚରମ ଦୁର୍ଦ୍ଦିନ । ଏ ଅବସ୍ଥା ଖାଲି ଆମରି ଭାଷାରେ ସୃଷ୍ଟି ହୋଇନାହିଁ, ଅଳ୍ପେ ବହୁତେ ସବୁ ଭାରତୀୟ ଭାଷା କ୍ଷେତ୍ରରେ ହୋଇଛି । ତେବେ ଅନ୍ୟାନ୍ୟ ଭାଷାରେ ଏହି ରୋଗର ନିରାକରଣ ପାଇଁ ଯଦିଓ ଭରଣା ଶିକ୍ଷାର ବ୍ୟବସ୍ଥା କରାଯାଉଛି, ଆମ ଭାଷାରେ କିଛି ହେଉନାହିଁ । ଇଂଲିଶ୍ ମିଡିୟମ ସ୍କୁଲ୍‌କୁ ଉଠାଇଦେବା ସମ୍ଭବ ନୁହେଁ ବା ପ୍ରାଥମିକ ଶ୍ରେଣୀରୁ ଇଂରାଜୀ ଭାଷାକୁ । ବରଂ ଏଣିକି ବେଶୀ ବେଶୀ ପିଲା ଇଂରାଜୀ ମିଡିଅମ୍ ସ୍କୁଲରେ ପ୍ରବେଶ କରିବେ ଓ ଖଣ୍ଡିଆ ଓଡ଼ିଆ ଶିଖି ବାହାରିବେ । ଏହା ଭାରତୀୟ ଶିକ୍ଷା ବ୍ୟବସ୍ଥାର ଏକ ଅବାଞ୍ଛିତ ପରିଣତି । ଏହାକୁ ଆୟତ୍ତ କରିବାକୁ ହେଲେ

ଆମ ଭାଷାକୁ ସଜାଡ଼ିବାକୁ ପଡିବ । ଆକର୍ଷଣୀୟ, ଉପାଦେୟ ପାଠ୍ୟସାମଗ୍ରୀ ସୃଷ୍ଟି କରିବା ସଙ୍ଗେ ସଙ୍ଗେ, ବକ୍ତୃତା, ଆଲୋଚନା, ତର୍କସଭା, ଆବୃତ୍ତି, ଗଦ୍ୟଲିଖନ ପରି ସୁଯୋଗମାନ ସୃଷ୍ଟି କରି ପିଲାମାନଙ୍କୁ ସେଥିପ୍ରତି ଆକର୍ଷିତ କରିବାକୁ ପଡିବ । ଭାଷାଦକ୍ଷତାକୁ ପୁରସ୍କୃତ କରିବାକୁ ପଡ଼ିବ। ପିଲାଏ ଯେପରି ମାତୃଭାଷାରେ ନିଜ ନିଜର ଦକ୍ଷତାକୁ ଦେଖାଇ ପାରିବେ ସେଥିପାଇଁ ପରିବେଶ ସୃଷ୍ଟି କରିବାକୁ ପଡ଼ିବ । ମାତୃଭାଷା ମନୁଷ୍ୟ ଜାତିର ଏକ ସ୍ପର୍ଶକାତର ଆଚରଣ । ଏହାକୁ ବଞ୍ଚାଇ ରଖିବା ପାଇଁ ଆବେଗପ୍ରବଣତା ଓ ପ୍ରତିଭା ଉଭୟର ପ୍ରୟୋଜନ ଅଛି । ଓଡ଼ିଆ ଭାଷାର ଅପମାନ ସହ୍ୟ କରନ୍ତୁ ନାହିଁ, ଏହା ଏକ ଆବେଗପ୍ରବଣ ସ୍ଲୋଗାନ୍ । କିନ୍ତୁ ଗୋଟିଏ ଜାତି ପାଇଁ ଏ ଆବେଗର ଯେପରି ଆବଶ୍ୟକତା ଅଛି, ଏ ଭାଷାକୁ ଅନ୍ୟ ପ୍ରତିଯୋଗୀ ଭାଷାମାନଙ୍କ ଠାରୁ ଆଗରେ ରଖିବା ପାଇଁ ପ୍ରତିଭାର ବି ଆବଶ୍ୟକତା ଅଛି । ମନୁଷ୍ୟର ଇତିହାସରେ ମାତୃଭାଷା ଯେତେବେଳେ ବିପନ୍ନ ହୋଇଛି, ତାକୁ ରକ୍ଷା କରିବା ପାଇଁ ଲୋକେ ଯୁଦ୍ଧ କରିଛନ୍ତି, ପ୍ରତିବାଦ କରିଛନ୍ତି, କିରୋସିନି ଢାଳି ହୋଇ ନିଜକୁ ଅଗ୍ନିରେ ଉତ୍ସର୍ଗ କରିଛନ୍ତି, ରାଜ୍ୟ ଦେଶ ଛାଡ଼ି ହଜାର ହଜାର ମାଇଲ ଅତିକ୍ରମ କରିଛନ୍ତି ଉତ୍ପୀଡ଼ନରୁ ରକ୍ଷା ପାଇବା ପାଇଁ, ତଥାପି ମାତୃଭାଷାକୁ ଛାଡ଼ିନାହାଁନ୍ତି । ସଂପ୍ରତି ତିବତ୍ତୀୟମାନେ ଏହାର ଏକ ପ୍ରକୃଷ୍ଟ ଉଦାହରଣ । ବାଲାଂଦେଶ ଭାଷା ପାଇଁ ଯୁଦ୍ଧ କରିଥିଲା । ତେଲୁଗୁ ରାଜ୍ୟ ଗଠନ ପାଇଁ ଲୋକେ ନିଜ ଦେହରେ ନିଆଁ ଲଗାଇଲେ । ମାତୃଭାଷା ପାଇଁ ଏସବୁ ଭାବପ୍ରବଣତାର ଦିଗ ଓ ତା'ର ଯଥେଷ୍ଟ ଆବଶ୍ୟକତା ଅଛି ଭାଷାକୁ ବଞ୍ଚାଇ ରଖିବା ପାଇଁ । ମାତୃଭାଷା ଏକ ଗର୍ବର ବିଷୟ, ଏକ ସ୍ପର୍ଶକାତର ବିଷୟ । ଖାଲି ଯେ ବଡ଼ ଜାତିମାନଙ୍କର ଏ ଗର୍ବ ଅଛି ତା' ନୁହେଁ, କ୍ଷୁଦ୍ରାତିକ୍ଷୁଦ୍ର ବନବାସୀମାନଙ୍କର ବି ତାଙ୍କ ମାତୃଭାଷା ପ୍ରତି ସେହି ପ୍ରୀତି ଅଛି । ଏହା ଗୋଟିଏ ଗୋଷ୍ଠୀକୁ ଆତ୍ମୀୟତା ସୂତ୍ରରେ ବାନ୍ଧିଥାଏ । 'ଆମେ ଓଡ଼ିଆ' କହିଲେ, ନାରୀପୁରୁଷ, ଅଣ୍ଡାବଚ୍ଚା, ବ୍ରାହ୍ମଣ, କରଣ, ରାଜା ପ୍ରଜା, ବାବୁ ପିଅନ୍, ସମ୍ବଲପୁରୀ କଟକୀ, ଗଡ଼ଜାତିଆ ମୋଗଲବନ୍ଦିଆ, ସମସ୍ତଙ୍କୁ ଯେଉଁ ସୂତ୍ରରେ ବନ୍ଧାଯାଇଥାଏ ସେ ହେଉଛି ଆତ୍ମୀୟତାର ବନ୍ଧନ । ଏ ବାଡ଼ ଘେରାଇବାର ଆବଶ୍ୟକତା ଅଛି । ମହାନୁଭବତା ଏକ ମହତ୍ ଗୁଣ ହୋଇପାରେ କିନ୍ତୁ ତା'ର ଦ୍ୱାହି ଦେଇ ଭାଷାର ସ୍ୱାର୍ଥକୁ ସୁରକ୍ଷିତ କରାଯାଇ ପାରିବ ନାହିଁ । ଭାଷା ପ୍ରତି ଜାତିର ଏ ଆବେଗମୟତା ଏକାନ୍ତ ଜରୁରୀ । ନୂଆ ପିଢିର ଓଡ଼ିଆମାନଙ୍କ ଠାରେ ଏହି ଆବେଗମୟତାର ଯଥେଷ୍ଟ ଅଭାବ ଦେଖାଦେଇଛି । ଗାଁ ଦାଣ୍ଡରୁ ଆରମ୍ଭ କରି ବିଶ୍ୱବିଦ୍ୟାଳୟ ଟୋକାଟୋକୀମାନଙ୍କ ପର୍ଯ୍ୟନ୍ତ ସମସ୍ତଙ୍କ ତୁଣ୍ଡରେ ହିନ୍ଦୀ ଗୀତ, ହିନ୍ଦୀ ଡାଇଲଗ୍ । ଆଗେ କହୁଥିଲେ- ଓଡ଼ିଆ ରାଗିଲେ ହିନ୍ଦୀ କହେ । ମୋ ଜାଣିବାରେ ଆମ ସଂସ୍କୃତିର ଏକ ମର୍ମ

ଢାଗାରେ ହିନ୍ଦୀ ଚଳୁଥିଲା । ମୁର୍ଦାର କୋକେଇରେ ଗଲାବେଳେ ମାଲଭାଇମାନେ ହିନ୍ଦୀରେ କହୁଥିଲେ ରାମନାମ ସତ୍ୟ ହେ, ଅର୍ ସବ୍ କୁଛ ଝୁଟ୍ ହୈ । ଏବେ ପ୍ରେମର ଡାଇଲଗ୍‌ଠାରୁ ରାଜନୀତିର ସ୍ଲୋଗାନ୍ ପର୍ଯ୍ୟନ୍ତ - ସେ ଇନ୍ଦିରା ଗାନ୍ଧୀକୀ ଜୟ ହେଉ ବା ଦମ୍ ମାରୋ ଦମ୍, ସବୁଠି ହିନ୍ଦୀ ପଶିଛି । ଏପରିକି ଡି.ଏମ୍.ୟୁ ଗାଡ଼ିର ଅନ୍ଧ ଭିକାରି ଓ ହିଞ୍ଜଡ଼ାମାନେ ହିନ୍ଦୀ ଗୀତ ବୋଲୁଛନ୍ତି । ମେଲୋଡ଼ି ପାର୍ଟିରେ ହିନ୍ଦୀ ଗୀତର ଫରମାସ ହେଉଛି । ରାମଚରିତ ମାନସ ନାଁରେ  ହିନ୍ଦୀରେ ପ୍ରବଚନ ହେଉଛି, ବ୍ରହ୍ମାକୁମାରୀମାନେ ହିନ୍ଦୀ ଭାଷାରେ ଧର୍ମ ପ୍ରଚାର କରୁଛନ୍ତି । ଏସବୁର ବିରୋଧ ମାତୃଭାଷାର ଆବେଗମୟ ଦିଗ ସହିତ ଜଡ଼ିତ ଓ ଏ ଅସହିଷ୍ଣୁତାର ଏକାନ୍ତ ପ୍ରୟୋଜନ ଅଛି ଭାଷା ସୁରକ୍ଷା ପାଇଁ ସେହିପରି ପ୍ରତିଭାର ବି । ଭାଷାକୁ ନେଇ ଖାଲି ତାତିଗଲେ ଇ ହେବନାହିଁ ଥଣ୍ଡା ଜ୍ଞାନ ଲଗାଇ ଭାଷାକୁ  ପୁଷ୍ଟ କରିବାକୁ ହେବ । କେଉଁଠି ଭାଷା  ଫାଟିଯାଉଛି କି ଉଜୁଡ଼ିଯାଉଛି, ଝଡିଯାଉଛି, ତା' ପ୍ରତି ଲକ୍ଷ୍ୟ ରଖି ଉପଯୁକ୍ତ ଭାଷା ସାମଗ୍ରୀ ପ୍ରସ୍ତୁତ କରିବାକୁ ପଡ଼ିବ । ସରକାରୀ ବା ଉଦ୍ୟୋଗର ସାହେବମାନେ ଓଡ଼ିଆରେ ଚିଠି ଲେଖି ପାରୁନଥିଲେ । ତାଙ୍କ ପାଇଁ ମଡେଲ ଚିଠି ପ୍ରସ୍ତୁତ କରିବାକୁ ପଡ଼ିବ । ସେ ସବୁ ପାଇଁ ବିଶେଷ ଜ୍ଞାନର ପ୍ରୟୋଜନ ଅଛି । ସେ ଜ୍ଞାନର ଘୋର ଅଭାବ ଅଛି ଓଡ଼ିଆ ଭାଷା କ୍ଷେତ୍ରରେ । ■

କଟକ ପ୍ରେଣ୍ଡସ୍ ପବ୍ଲିଶର୍ସ, ପ୍ରକାଶିତ
ଲେଖକଙ୍କ ମାତୃଭାଷା ଓଡ଼ିଆ ପୁସ୍ତକରୁ ଗୃହୀତ ।

# କବିତା ଓ ବିଜ୍ଞାନ

ଅଧ୍ୟାପକ ଦେବେନ୍ଦ୍ର କୁମାର ଦାଶ

ଓଡ଼ିଆ ସାହିତ୍ୟର ଆଧୁନିକ କାଳର ପ୍ରଖ୍ୟାତ କବି ସଚ୍ଚିଦାନନ୍ଦ ରାଉତରାୟଙ୍କର "ପାଣ୍ଡୁଲିପି" ଆଦି କାବ୍ୟ ଗ୍ରନ୍ଥ ଆଲୋଚନା କାଳରେ କୁହାଯାଇଥାଏ ଯେ କବିଦୃଷ୍ଟି ରାଜନୈତିକ ମତବାଦ ଦ୍ୱାରା ନିୟନ୍ତ୍ରିତ । ମାର୍କସବାଦର ଦର୍ଶନ କବିତାର ଭାବ ଓ ଅଭିବ୍ୟକ୍ତିରେ ପ୍ରତିଫଳିତ । କବିତା ବା ସାହିତ୍ୟ ଆଜି ରାଜନୀତି ଦ୍ୱାରା ଆକ୍ରାନ୍ତ । ରାଜନୈତିକ ଆବହାୱା ସଂପର୍କରେ ଆସି ସାହିତ୍ୟର ସ୍ୱାସ୍ଥ୍ୟ କିଛିଟା ପରିବର୍ତ୍ତନମୁଖୀ । କିନ୍ତୁ ଏହି ପରିବର୍ତ୍ତନ କ୍ଷତିକାରକ ବୋଲି କହି ହେବନାହିଁ ; ବରଂ ସାହିତ୍ୟରେ ରାଜନୀତି ଆଣିଛି କିଛିଟା ବୈଚିତ୍ର୍ୟ । ଅପର ପକ୍ଷରେ ବିଜ୍ଞାନର ପବନ ଲାଗି କବିତା ବିପଦର ସମ୍ମୁଖୀନ । ଇଂରାଜୀ କବି ରବର୍ଟ ବ୍ରାଉନିଂ One word More କବିତାର ଶେଷରେ ନିଜ ସ୍ତ୍ରୀଙ୍କ ଉଦ୍ଦେଶ୍ୟରେ ଯେଉଁଭଳି ଭାବେ ପ୍ରେମ ନିବେଦନ କରିଥିଲେ, ତାହା ଏହି ପରିପ୍ରେକ୍ଷୀରେ ସ୍ମରଣୀୟ ।

This to you - yourself my moon of poets !
Ah, but that's the world's side - there's the wonder -
thus they see you, praise you, think they know you !
There, in turn I stand with them and praise you .
But the best is when I glide form out them,
Cross a step or two of dubious twilight.
Come out on the others side, the novel
Silent silver lights and darks undreamed of,
Where I hush and bless myself with the silence.

ଏହି ଅତୁଳନୀୟ ପଂକ୍ତି ଗୁଡ଼ିକର ଶିଳ୍ପରୂପ ଆରମ୍ଭ ହୋଇଛି ଏଭଳି ଭାବରେ କବିପ୍ରିୟା ଯଶସ୍ୱିନୀ କବି; ଅନ୍ୟ କବିମାନେ ନକ୍ଷତ୍ର, ସେମାନଙ୍କ ଭିତରେ ଚନ୍ଦ୍ର ହେଉଛନ୍ତି କବିପ୍ରିୟା । ଏତିକି କହିଲା ପରେ ବ୍ରାଉନିଂଙ୍କର କଳ୍ପନା ଆହୁରି ଆଗେଇଗଲା । ଚନ୍ଦ୍ର ସହ ଯଶସ୍ୱିନୀ କବିଙ୍କର ଗୋଟିଏ ଚମତ୍କାର ସାଯୁଜ୍ୟ ମିଳିଗଲା । ସମସ୍ତେ ଜାଣନ୍ତି ଚନ୍ଦ୍ରର ଗୋଟିଏ ଗୋଲାର୍ଦ୍ଧ ପୃଥିବୀର ଅଧିବାସୀଙ୍କ ଦ୍ୱାରା ଦର୍ଶନ ସାଧ୍ୟ । ଅପର ଗୋଲାର୍ଦ୍ଧ ପୃଥିବୀର

ଲୋକମାନଙ୍କୁ ଦେଖାଯାଏନାହିଁ । ଏଲିଜାବେଥ ବାରେଟଙ୍କର ଗୋଟିଏ ଦିଗ ତାଙ୍କର କବିସ୍ୱଭାବ -ଚନ୍ଦ୍ରର ସର୍ବଜନ ଦୃଷ୍ଟ ଦିଗଭଳି ବାରଟେଙ୍କର ଅନ୍ୟ ସମସ୍ତ ଗୁଣ ଗ୍ରହିତାଂକ ଭଳି ବ୍ରାଉନିଂ ମଧ୍ୟ ଏହି ଦିଗ ଦେଖି ମୁଗଧ୍; କିନ୍ତୁ ତାଙ୍କର (ଏଲିଜାବେଥ ବାରେଟଙ୍କର) ଅନ୍ତରଙ୍ଗ ପ୍ରେମମୟୀ ବ୍ୟକ୍ତିତ୍ୱ କେବଳ ତାଙ୍କର ପ୍ରେମିକ ବ୍ରାଉନିଂଙ୍କ ଲାଗି ଉଦ୍ଧିଷ୍ଟ - ସେ ବ୍ୟକ୍ତିତ୍ୱର ଖାସ୍ ଦରବାରରେ କେବଳ ବ୍ରାଉନିଂକର ଆସନ ।

ଆଧୁନିକ କବିମାନଙ୍କ ଦ୍ୱାରା ଏଭଳି ଆଶ୍ଚର୍ଯ୍ୟ ପଂକ୍ତି ରଚନା ଆଉ ସମ୍ଭବ ନୁହେଁ । ବ୍ରାଉନିଂ ସାଂପ୍ରତିକ କାଳରେ ଜନ୍ମ ଗ୍ରହଣ କରିଥିଲେ ଏଭଳି ପଂକ୍ତି କେବେହେଲେ ଲେଖିପାରି ନଥାନ୍ତେ । କାରଣ ବର୍ତ୍ତମାନ କାଳରେ ବିଜ୍ଞାନ ବୋଧ ଦ୍ୱାରା କବିଙ୍କର କାବ୍ୟ ପ୍ରତ୍ୟୟ ଆହତ । ରାଜନୀତିର ସାହିତ୍ୟ ରାଜ୍ୟରେ ଜବରଦସ୍ତ ପ୍ରବେଶ ଫଳରେ ସାହିତ୍ୟର ଗୁଣରେ ପରିବର୍ତ୍ତନ ଆସିଛି , କିନ୍ତୁ ତା' ଠାରୁ ଦୂରେଇଗଲେ ବି କ୍ଷତିନାହିଁ । ରାଜନୀତି ବସ୍ତୁ ଓ ମଣିଷର ସଂଜ୍ଞାରେ ବିପରୀତମୁଖୀ ପରିବର୍ତ୍ତନ ଆଣିନାହିଁ - ଯାହା କରିଛି ବିଜ୍ଞାନ; ଚନ୍ଦ୍ର ମଣିଷର ଜିଜ୍ଞାସାରେ କୌଣସି ରହସ୍ୟମୟ ବସ୍ତୁ ଆଜି ନୁହେଁ; ଅତି ପୁରୁଣା କାଳିଆ ଗାଉଁଲିଆ ଓ ମୂର୍ଖତାର ଶରବ୍ୟ ନହେଲେ କେହି ଅନ୍ୟାନ୍ୟ ନକ୍ଷତ୍ରମାନଙ୍କ ତୁଳନାରେ ଚନ୍ଦ୍ରକୁ ବୃହତ୍ତର ବୋଲି କହିବେ ନାହିଁ । ମଣିଷ ତା' ଉପରେ ପଦସ୍ଥାପନ କରି ସାରିଲାଣି । ତେଣୁ ବିଦେଶରେ କେବଳ ନୁହେଁ, ଆମ ଦେଶରେ ବି ଚନ୍ଦ୍ରକୁ ନେଇ ଯେତେ ସ୍ୱପ୍ନ ପ୍ରବଣତା ଓ କଳ୍ପନା, ସେ ସବୁର ସ୍ଥାନ ଆଜି କେଉଁଠି ?

କାବ୍ୟବୋଧ ଉପରେ ଆଧୁନିକ ବିଜ୍ଞାନର ବିପ୍ଳବୀ ଓ ବିଧ୍ୱଂସୀ ଅଭିସଂଘାତ ଫଳରେ କବିପ୍ରାଣ ପୀଡ଼ିତ । ଇଂରାଜୀ ରୋମାଣ୍ଟିକ କିଟ୍ସଙ୍କ କବିତାରେ ବିଜ୍ଞାନର ଏହି ଗୁରୁତର ଅଭିସଂଘାତର କରୁଣ ପରିଣତି ସ୍ପଷ୍ଟ ଓ ମାର୍ମିକ ।

Do not all charms fly
At the mere touch of cold philosophy ?
There was an awful rainbow once in heaven:
We know her woof, her texture; she is given
In the dull catalogue of common things,
Philosophy will chip an angels wings,
Conquer all mysteries by rube and line,
Empty the haunted air, and gnomed mine –
Un weave a rain bow.

(Lamia 11, 229-37)

ଏହି ଛତ୍ରଗୁଡ଼ିକର ମୂଳ ବକ୍ତବ୍ୟ ହେଲା : ବୈଜ୍ଞାନିକ ବିଶ୍ଲେଷଣ ଓ ବିଗ୍ରହ ଫଳରେ ଆକାଶ ଓ ପାତାଳରୁ ଅନ୍ତର୍ହିତ ହୋଇଛନ୍ତି, ଋଷ, ଯକ୍ଷ ଓ କିନ୍ନରୀ ଗଣ; ଜଗତର ଯାବତୀୟ ଜ୍ଞାନାତୀତ ରହସ୍ୟ ସ୍ତୂପୀକୃତ ହୋଇଛି ମାମୁଲି ଘଟଣାର ନିରାବେଗ ତାଲିକାରେ । ଆକାଶରୁ ଉଭେଇ ଯାଇଛି ମହାନ୍ ଇନ୍ଦ୍ରଧନୁ: ବିଜ୍ଞାନର ଶୀତଳ ସ୍ପର୍ଶରେ (କିଟସ ବିଜ୍ଞାନ ଅର୍ଥରେ ହିଁ Philosophy ପ୍ରୟୋଗ କରିଛନ୍ତି । ପୂର୍ବରୁ ଫିଲସଫିର ଥିଲା ଦୁଇଟି ଶାଖା; Naturalphilosophy ଆଜି ଏହା Natural science ରୂପରେ ପରିଚିତ; Moral Philosophy ଆଜି ଫିଲସଫି କହିଲେ ଯେଉଁ ବିଦ୍ୟାକୁ ବୁଝାଏ") । ଜୀବନର ମୋହମୟ ରୂପ ଆଜି ଦୁର୍ଲଭ । ଇଂରାଜୀ ଲେଖକ ଚ୍ଚାର୍ଲସ ଲେମ୍ବ ମଧ୍ୟ ବିଜ୍ଞାନର ଆବିଷ୍କାରର ପ୍ରଭାବ କେତେ ନିଷ୍ଠୁର ତାହା ବିଶ୍ଲେଷଣ କରି ଲେଖିଥିଲେ : Newton had destroyed all the poetry of rainbow by reducing it to the prismatic colours.

କିଟସ୍ ଓ ଲେମ୍ବ ପ୍ରମୁଖ ଦେଖିପାରିଥିଲେ ବିଜ୍ଞାନ ଓ କବିତା ଭିତରେ ବିରୋଧ ଓ ବୈପରୀତ୍ୟ । କଳା ଆକର୍ଷକ, ଇନ୍ଦ୍ରଜାଲ ବିସ୍ତାରୀ ; ମୋହମୟ ତା'ର ରୂପ ଚିତ୍ତରେ ତାହା ସୃଷ୍ଟିକରେ ଆବେଗ । ଅପର ପକ୍ଷରେ ବିଜ୍ଞାନର ଶୀତଳ ଆଲିଂଗନରେ କବିତାର ମୋହନ-ରୂପ ଅନ୍ତର୍ହିତ ହୋଇଯାଏ । କେବଳ କିଟସ୍ ବା ଲେମ୍ବ ନୁହନ୍ତି; ବହୁ କବିଙ୍କ ରଚନାରେ ବିଜ୍ଞାନ ଓ ସାହିତ୍ୟର ବିରୋଧ କଥା କୁହାଯାଉଛି । ୱାଡସ୍‌ୱାର୍ଥ ଓ ଟେନିସନ ତା'ର ଦୃଷ୍ଟାନ୍ତ । ଉଭୟ ୱାଡସ୍‌ୱାର୍ଥ ଓ ଟେନିସନ ଦୁଇ ପ୍ରକାର ଅନ୍ତରଶକ୍ତି ଭିତରେ ପାର୍ଥକ୍ୟ ଲକ୍ଷ୍ୟ କରିଛନ୍ତି; ଗୋଟିଏ ମହତ ଓ ଅମିତପ୍ରଭବ, ଅପରଟି ସୀମାୟିତ, କ୍ଷୁଦ୍ର ବିଗ୍ରହୀ । ପ୍ରଥମଟି ସୃଷ୍ଟିକରେ ସାହିତ୍ୟ, ଦ୍ୱିତୀୟଟି ବିଜ୍ଞାନର ଜନକ । ବୈଜ୍ଞାନିକ ଚିଂତାପଦ୍ଧତି ସହ କାବ୍ୟର ସମନ୍ୱୟୀ କଳ୍ପନାର କେଉଁଠି ଗୋଟାଏ ସଂଘର୍ଷ ରହିଯାଇଛି - ଉନ୍ନବିଂଶ ଶତକର ପ୍ରଥମ ଦଶକ ଠାରୁ ଆଜି ପର୍ଯ୍ୟନ୍ତ ଲେଖିଥିବା ଅଧିକାଂଶ ଲେଖକଙ୍କ ଲେଖା ପଢ଼ିଲେ ଏହାହିଁ ମନେହୁଏ ।

॥ ୨ ॥

ବିଜ୍ଞାନ ଓ କବିତା ମଧ୍ୟରେ ଆଲୋଚିତ ସଂଘର୍ଷ ସର୍ବକାଳୀନ ବୋଲି କୁହାଯାଇ ପାରିବ ନାହିଁ । ବିଜ୍ଞାନ କହିଲେ ଯଦି ବୁଝାଯାଏ ପଦାର୍ଥ ଜଗତର ତଥ୍ୟନିଷ୍ଠ ବିଶ୍ଲେଷଣ ପଛୀ ସମ୍ୟକ ଜ୍ଞାନ, ତେବେ ସେହି ଜ୍ଞାନନେଇ ଅତି ପୁରାତନ କାଳରୁ ମଣିଷ ବ୍ୟସ୍ତ ଓ ବ୍ୟାପୃତ । କୌଣସି ଜଡ଼ ଜାଗତିକ ଜ୍ଞାନ ହୁଏତ ପ୍ରଥମ ଅବସ୍ଥାରେ ମଣିଷର ଅଭ୍ୟସ୍ତ ଧାରଣା ଓ

ପ୍ରଚଳିତ ଅନୁଭୂତି ସମୂହକୁ କିଛି ମାତ୍ରାରେ ପୀଡ଼ା ଦେଇ ଥାଇପାରେ, ତେବେ ବି ଅଳ୍ପ ସମୟ ଭିତରେ ଏହି ସମସ୍ତ ନୂତନ ଜ୍ଞାନ ଓ ଧାରଣା ସ୍ୱଳ୍ପ ଆୟାସରେ କବି ଓ କଳାକାରଙ୍କର ସମନ୍ୱୟୀ ପ୍ରତିଭା ସହ ମିଶିଯାଇଛି । ବୈଜ୍ଞାନିକ ତଥ୍ୟ ଓ ଧାରଣାର ନିକ୍ଷେପଣରେ କବିଚିତ୍ତ କ୍ଲିଷ୍ଟ ହୋଇଥିବାର ଉଲ୍ଲେଖଯୋଗ୍ୟ ପ୍ରମାଣ- ପ୍ରାକ୍-ଆଧୁନିକ କାଳର ଇତିହାସରେ ମିଳେ ନାହିଁ । ପ୍ରାଚୀନ କବିଙ୍କର କଳ୍ପନାଶକ୍ତିକୁ ସର୍ବଦା ଉଦ୍ଦୀପିତ ନକଲେ ମଧ୍ୟ ବିଜ୍ଞାନ ବା ବସ୍ତୁ ଜଗତର ଜ୍ଞାନ କେବେ ତାହା ସହିତ ଅସହଯୋଗ କରିନାହିଁ ବା ତାକୁ ଖର୍ବ କରିନାହିଁ । ଇଉରୋପୀୟ ସାହିତ୍ୟରେ ଲୁକ୍ରେସିୟସ ଓ ଦାନ୍ତେଙ୍କର କାବ୍ୟରେ ତତ୍କାଳୀନ ବୈଜ୍ଞାନିକ ଚିନ୍ତା ସ୍ୱଚ୍ଛଂଦରେ ପ୍ରକାଶିତ କବିତା ଓ ବିଜ୍ଞାନ ମଧ୍ୟରେ ଦ୍ୱଂଦ୍ୱସୃଷ୍ଟି ହୋଇନାହିଁ । ଭାରତୀୟ କାବ୍ୟର ପ୍ରାଚୀନତମ ଯୁଗରେ କାବ୍ୟ ଓ ତତ୍କାଳୀନ ବିଜ୍ଞାନ ମଧ୍ୟରେ ସାଯୁଜ୍ୟ ଥିଲା । ଐତରେୟୋପନିଷଦରେ (ଯଥା ,୧/୧/୧, ୨/୧/୩) ଓ ପ୍ରଶ୍ନୋପନିଷଦରେ (୩/୬,୩/୭) ଜନ୍ମ ବ୍ୟାପାର ଓ ମାନବ ଦେହଗତ ନାଡ଼ୀ ସମୂହର ବର୍ଣ୍ଣନା ପ୍ରଦତ୍ତ । ତତ୍କାଳୀନ ଜ୍ଞାନ ଭିତ୍ତିରେ ରଚିତ ସେ ସମସ୍ତ ସୂକ୍ତ କାବ୍ୟ ଗୁଣମଣ୍ଡିତ । ମହାଭାରତ ସେ ଯୁଗରେ ଯାବତୀୟ ଦାର୍ଶନିକ, ସାମାଜିକ ଓ ବୈଜ୍ଞାନିନ ଧାରଣାର ଏକ ଅଗାଧ ଭଣ୍ଡାର । ଏ ସବୁରୁ ମନେହୁଏ, କବିତା ସହ ବିଜ୍ଞାନର ବିରୋଧ ଅବଶ୍ୟମ୍ଭାବୀ ନୁହେଁ । ଫଳରେ କିଟସ୍‌ଙ୍କ ଯୁକ୍ତି ସଂପୂର୍ଣ୍ଣ ଗ୍ରାହ୍ୟ ହୋଇପାରେ ନାହିଁ  କାରଣ ବିରୋଧର କୌଣସି ଯଥାଯଥ ଯୁକ୍ତି ମଧ୍ୟ ନାହିଁ ।

ବିଜ୍ଞାନ ଅର୍ଥ ଜଗତ ସମ୍ବନ୍ଧରେ ଜ୍ଞାନଲାଭର କେତେ ଗୁଡ଼ିଏ ବିଶେଷ ପଦ୍ଧତି; ପରୀକ୍ଷଣ ତଥା ନିରୀକ୍ଷଣର କେତେକ ଉପାୟ । ଆଧୁନିକ ଯୁଗରେ ଏସବୁ ପଦ୍ଧତି ଓ ଉପାୟ ସଂଖ୍ୟାରେ ବହୁଗୁଣିତ ହୋଇଛି । ତା'ର କାର୍ଯ୍ୟ ପ୍ରଣାଳୀ ମଧ୍ୟ ଜଟିଳରୁ ଜଟିଳତର ହୋଇଛି । କିନ୍ତୁ ତା' ବୋଲି ସୁ-ପ୍ରାଚୀନ କାଳରେ ବୈଜ୍ଞାନିକ କାର୍ଯ୍ୟ ଓ ବିଚାର ମଣିଷକୁ ସଂପୂର୍ଣ୍ଣ ଅଜ୍ଞାତ ଥିଲା, ତାହା ନୁହେଁ । ଜଗନ୍ନାଥ ଦାସଙ୍କର 'ତୁଳାଭିଣା' ବଳରାମ ଦାସଙ୍କର 'ବ୍ରହ୍ମାଣ୍ଡ ଭୂଗୋଳ', ଖନା ବଚନରେ ବା କାହ୍ନୁପାଦଙ୍କର ଚର୍ଯ୍ୟାଗୀତିକାରେ ତତ୍କାଳୀନ ବୈଜ୍ଞାନିକ ଧାରଣା (ସେହି ଧାରଣା ଭୁଲ ଓ ଅଯଥାର୍ଥ ହୋଇପାରେ) କାବ୍ୟଭୁକ୍ତ ହୋଇନାହିଁ କି ? ଏଭଳି କାବ୍ୟିକ ଅଭିବ୍ୟକ୍ତି ସମ୍ଭବ ହେବାର କାରଣ ସ୍ୱଚ୍ଛ ଓ ସ୍ପଷ୍ଟ । ସେ ସମୟରେ ଜ୍ଞାନର ଜାତିଭେଦ ନଥିଲା । ସମାଜରେ  ବର୍ଣ୍ଣାଶ୍ରମ ପ୍ରଥାଥିଲା, ମାତ୍ର ଚିନ୍ତାଜଗତରେ ତାହା ପ୍ରବେଶ କରି ପାରି ନଥିଲା । ବୈଜ୍ଞାନିକ ଅବୈଜ୍ଞାନିକ, ପ୍ରାକୃତିକ କୃତ୍ରିମ ତଥା ଗ୍ରାହ୍ୟତା ପ୍ରାମାଣ୍ୟତା ଭିତ୍ତିରେ ଜ୍ଞାନର ବିଚାର ହେଉନଥିଲା । ଚିନ୍ତା ଭିତରେ ବିଭେଦ ଥିଲେ ବି ଜ୍ଞାନାର୍ଜନର ପନ୍ଥା ସମସ୍ତଙ୍କ ପାଇଁ ଥିଲା ଏକ ଧରଣର । ମାନବିକ ଚୈତନ୍ୟ ହିଁ ଥିଲା ସବୁ ଦର୍ଶନର ମୂଳାଧାରୀ ।

ସାଂଖ୍ୟବାଦୀ ଓ ବୈଦାନ୍ତିକ କେହି ନିଜ ନିଜ ଚିନ୍ତାଫଳରେ ପାରସ୍ପରିକ ସାଂସାରିକ ଆବେଗ ଓ ଅନୁଭୂତି ଗୁଡ଼ିକ ଠାରୁ ଅଲଗା ହେଉନଥିଲେ । ସମସ୍ତଙ୍କର ଜୀବନାଦର୍ଶ ଓ ଜୀବନ ପଦ୍ଧତିରେ ସଂଗତିଥିଲା, ସେମାନଙ୍କ ଚିନ୍ତା ଓ କର୍ମ, ମନୀଷା ଓ ଅନୁଭୂତି ମଧ୍ୟରେ ଥିଲା ସାଯୁଜ୍ୟ । ଯାହାର ଫଳ ସ୍ୱରୂପ କାବ୍ୟରେ ରୂପାୟିତ ହେଉଥିବା ଶିଳ୍ପୀମାନସ ଥିଲା ନିଟୋଳ, ସର୍ବାଙ୍ଗ-ସୁଷମ ଓ ସଂତୁଳିତ ମାନସ; ଆଧୁନିକ କାଳର ଶତଧାବିଚ୍ଛିନ୍ନ ସଂକ୍ଷୁବ୍ଧ -ସଂଗ୍ରାମ ବିକ୍ଷତ ଶିଳ୍ପୀମାନସ ନୁହେଁ । ସାଂପ୍ରତିକ କାଳର ଶିଳ୍ପୀମାନସ ଠାରୁ ପ୍ରାଚୀନକାଳର ଶିଳ୍ପୀମାନସ ଉଚ୍ଚ ଧରଣର ବୋଲି କୁହାଯାଉନାହିଁ । ଏଠାରେ ପ୍ରତିପାଦ୍ୟ ହେଲା ଶିଳ୍ପ ବିପ୍ଳବ-ପୂର୍ବ ଇଉରୋପୀୟ ସାହିତ୍ୟ ଓ ପ୍ରାକ୍ -ଉନବିଂଶ ଶତାବ୍ଦୀ ଭାରତୀୟ ସାହିତ୍ୟରେ ବୈଜ୍ଞାନିକ ପ୍ରତ୍ୟୟ ଓ କାବ୍ୟ କଳ୍ପନା ମଧ୍ୟରେ କୌଣସି ବୈପରୀତ୍ୟ ବା ସଂଘାତ ନଥିଲା । ବିଜ୍ଞାନ ଓ ଦର୍ଶନର ଚର୍ଚ୍ଚା କରୁଥିବା ଲୋକଙ୍କ ପାଇଁ ଶିଳ୍ପ ବା କଳାର ପଥ ସୁଗମ ଥିଲା । କଳାକାରଙ୍କ ଶିଳ୍ପ-ଭାବନା ବୈଜ୍ଞାନିକ ଧାରଣା ସହ ଦ୍ୱନ୍ଦ୍ୱର ସମ୍ମୁଖୀନ ହେଉନଥିଲା । ସେ ସମୟର ସୃଷ୍ଟିଶୀଳ ମନଥିଲା ସଂତୁଳିତ, ଓ ସୁଷମ ଓ ଭାରସାମ୍ୟ ବିଶିଷ୍ଟ (Balanced) । ରୋମର ନାଟ୍ୟକାର ଟେରେନ୍ସ କହିଥିଲେ, ସମଗ୍ର ମାନବତା କାବ୍ୟ ଇଲକା ଭୁକ୍ତ । ମଣିଷ-ସଂକ୍ରାନ୍ତ ଜ୍ଞାନ କାବ୍ୟଜଗତ ପାଇଁ କେବେହେଲେ ପରଦେଶୀ ନୁହେଁ । ବିଜ୍ଞାନରେ ମଣିଷ ଜୀବନର ଗୋଟିଏ ଅଂଶ ଜାଜ୍ୱଲ୍ୟମାନ ତେଣୁ କାବ୍ୟର ସୀମା ସରହଦ ମଧ୍ୟକୁ ବିଜ୍ଞାନର ପ୍ରବେଶ ନିଷିଦ୍ଧ କରିଦେଲେ, କାବ୍ୟର ଅଙ୍ଗହାନୀ ନିଶ୍ଚିତ ।

॥ ୩ ॥

ଏହି ପରିପ୍ରେକ୍ଷୀରେ ପ୍ରଶ୍ନ ଉଠେ; କାବ୍ୟଭାବନା ସହ ବିଜ୍ଞାନର ବୈଷମ୍ୟ କେବେଠାରୁ ଆରମ୍ଭ ? ଇଉରୋପୀୟ ସାହିତ୍ୟରେ ଏହି ବୈଷମ୍ୟର ଭିତ୍ତିସ୍ଥାପନ ସପ୍ତଦଶ ଶତାବ୍ଦୀରେ, ଉନବିଂଶ ଶତକରେ ତାହାର ମର୍ମନ୍ତୁଦ ରୂପ ପ୍ରତିଭାତ; ଭାରତୀୟ ସାହିତ୍ୟରେ ପାଶ୍ଚାତ୍ୟ ପ୍ରଭାବ ମଧ୍ୟ ଦେଇ ଏହି ବିଚ୍ଛେଦର ବାଣୀ ଉଚ୍ଚାରିତ ଓ ତାହାର କାଳ ଉନବିଂଶ ଶତାବ୍ଦୀ । ବିଂଶ ଶତାବ୍ଦୀରେ ବିଜ୍ଞାନ ଓ ସାହିତ୍ୟ ଭିତରେ ସଂପର୍କ ଏଭଳି ଏକ ତିକ୍ତ ଅବସ୍ଥାରେ ପହଞ୍ଚିଛି, ଯାହା ଫଳରେ ଅଦୂର ଭବିଷ୍ୟତରେ ଏଇ ଦୁଇର ଗତିପଥ ସଂପୂର୍ଣ୍ଣ ଭିନ୍ନ ହୋଇଯିବାର ସଂଭାବନା ।

ବିଜ୍ଞାନର ଆଧୁନିକ ସଂଜ୍ଞାପ୍ରତି ଆମର ଦୃଷ୍ଟି ସାଧାରଣତଃ ଆକର୍ଷିତ ହୋଇଥାଏ । ବିଜ୍ଞାନର ଲକ୍ଷ୍ୟ ସତ୍ୟ, ତଥ୍ୟ ନିର୍ଭର ସତ୍ୟ, ପରୀକ୍ଷା ସାଧ୍ୟ ସତ୍ୟ । କୌଣସି ବିଶେଷ ବ୍ୟକ୍ତି

ଓ ଦେଶକାଳର ସତ୍ୟନୁହେଁ, ଶାଶ୍ୱତ ବା ସାର୍ବିକ ସତ୍ୟ । ବାପା-ଅଜା କହିଆସିଛନ୍ତି ବା କରି ଆସିଛନ୍ତି ସେଇଥି ପାଇଁ କୌଣସି ନିୟମ ସତ୍ୟ ଅଥବା ଗୁରୁପରଂପରା ହେତୁ କୌଣସି ମତବାଦ ଅଭ୍ରାନ୍ତ ବା କୌଣସି ଅପୌରୁଷେୟ ବାଣୀ ହେତୁ ଏହା ଧ୍ରୁବ- ଏଭଳି ଯୁକ୍ତିରେ ବିଜ୍ଞାନ ବିଶ୍ୱାସ କରେନାହିଁ । ମୂଳତଃ ଏହା ପରଂପରା ବଶ୍ୟ ନୁହେଁ । ବିଜ୍ଞାନର ଗତି ମିଥ୍ୟାରୁ ସତ୍ୟ ଆଡ଼କୁ ବେଶୀ ଭୁଲ୍‌ରୁ କମ୍‌ଭୁଲ ଆଡ଼କୁ, ଅଜ୍ଞାତ ଓ ଅସାଧ୍ୟରୁ କମ୍ ଅସାଧ୍ୟ ଆଡ଼କୁ । ଅବଶେଷରେ ନିଃସଂଶୟ ପ୍ରମାଣ ଓ ପରୀକ୍ଷା ସାଧ୍ୟ ସତ୍ୟରେ ଉପନୀତ ହେବା ପାଇଁ ବୈଜ୍ଞାନିକଙ୍କର ସମସ୍ତ କ୍ଳେଶମୟ, ଦୁରୂହ, ନିରଳସ ପ୍ରୟାସ । ବିଜ୍ଞାନ ସତ୍ୟ ସ୍ୱ-ଅଭିଜ୍ଞତା ସାପେକ୍ଷ । ବିଜ୍ଞାନର ପ୍ରମାଣ କୌଣସି ଗୂଢ ଅନିକେତ କ୍ରିୟା ଉପରେ ପ୍ରତିଷ୍ଠିତ ନୁହେଁ; ରୁଦ୍ଧଦ୍ୱାର କୋଠରିର ଧୂପ-ଧୂଆଁ, ଆଧିଦୈବିକ ମାୟା ଓ ପ୍ରେରଣାରେ ସେ ସତ୍ୟ ଉଦ୍‌ଭାସିତ ହୋଇ ଉଠେନାହିଁ । ଗଣିତର ତର୍କରେ ତାହା ଧରାପଡ଼େ, ଲେବରେଟରିର ପରୀକ୍ଷା ଯନ୍ତ୍ରରେ ତାହାର ସିଦ୍ଧି । ବିଜ୍ଞାନର ଏହି ପଦ୍ଧତି ପ୍ରତିଷ୍ଠିତ ହୋଇଥିଲା ସପ୍ତଦଶ ଶତକର ଇଉରୋପରେ କୋପରନିକଶ, କେପଲର, ରବର୍ଟ ବୟଲ, ଗାଲିଲିଓ ଓ ନିଉଟନଙ୍କ ଦେଶରେ । ଏହା ପୂର୍ବରୁ ସତ୍ୟ ଓ ମିଥ୍ୟା ଥିଲା ଦର୍ଶନ-ତତ୍ତ୍ୱ-ନିହିତ । ସପ୍ତଦଶ ଶତକ ପରେ ସତ୍ୟହେଲା ବୈଜ୍ଞାନିକ ସତ୍ୟ; ଅନ୍ୟସବୁ କପୋଳ କଳ୍ପନା । ବେକନ କହିଲେ ସବୁରି ଉପରେ ଯୁକ୍ତିର ଅନାର୍ଦ୍ର 'ଆଲୋକ (Dry light of reason) ର ସ୍ଥିତି - ସେ ଆଲୋକ ନୈର୍ବ୍ୟକ୍ତିକ; ବ୍ୟକ୍ତି ଆବେଗର ଜଳୀୟବାଷ୍ପ ସେଥିରେ ଇନ୍ଦ୍ରଧନୁର ମାୟା ସୃଷ୍ଟି କରିପାରେ ନାହିଁ । ଏଇ ସତ୍ୟନିଷ୍ଠ, ପରୀକ୍ଷା, ପ୍ରମାଣ ତଥ୍ୟନିଷ୍ଠ, ନିର୍ମମ ତନ୍ମୟ ଜ୍ଞାନ ସାଧନାରେ ପ୍ରବୃତ୍ତ ହେଲେ ଶତଶତ ବିଜ୍ଞାନ -କର୍ମୀ, ଫଳରେ ସପ୍ତଦଶ ଶତାବ୍ଦୀ ଓ ତା' ପରର ଇଉରୋପରେ ଏହି ଆବେଗ-ଅନାର୍ଦ୍ର ନୂତନ ଦୃଷ୍ଟିଭଙ୍ଗୀ ଫଳରେ ମଣିଷର ଚିନ୍ତାଧାରା ବହୁ ପରିମାଣରେ ବଦଳିଗଲା । ଏହି ପରିବର୍ତ୍ତନର ଏକ ଚମତ୍କାର ବିବରଣୀ ଦେଇଛନ୍ତି ଅଧ୍ୟାପକ ବେସଲ ଉଇଲି । ତାଙ୍କ ସପ୍ତଦଶ ଶତକର ପୃଷ୍ଠଭୂମି (The Seventeenth Century Background) ପୁସ୍ତକରେ । ସେହି ପୁସ୍ତକ ପ୍ରଥମ ପରିଚ୍ଛେଦରେ ଗତି ବା Motion ସଂପର୍କରେ ମଧ୍ୟଯୁଗୀୟ ସନ୍ଥ ଟମାସ ଆକୋୟାନସ ଓ ସପ୍ତଦଶ ଶତାବ୍ଦୀର ବୈଜ୍ଞାନିକ ଗାଲିଲିଓଙ୍କ ଧାରଣାର ବିଭେଦ ବର୍ଣ୍ଣିତ । ସପ୍ତଦଶ ଶତାବ୍ଦୀ ପୂର୍ବରୁ ବିଜ୍ଞାନ କର୍ମୀମାନଙ୍କର ବିଶିଷ୍ଟ ଦୃଷ୍ଟଭଙ୍ଗୀ, ସ୍ୱତନ୍ତ୍ର ଜ୍ଞାନ ଲକ୍ଷ୍ୟ ବୋଲି କିଛି ନଥିଲା । କିନ୍ତୁ ଏହାପର ଠାରୁ ବିଜ୍ଞାନର ସାଧକଗଣ ନିଜ କର୍ମର ଉଦ୍ଦେଶ୍ୟ ଓ ମୂଲ୍ୟ ସଂପର୍କରେ ଅବହିତ ହେଲେ । ସତ୍ୟାନୁସଂଧିତ୍ସା ସେମାନଙ୍କର କାମ୍ୟ ହୋଇଥିବାରୁ ବିଜ୍ଞାନ ବହିର୍ଭୂତ ଓ ଅପରୋକ୍ଷ ଅନୁଭୂତିଭିତ୍ତିକ ଅନ୍ୟ ସମସ୍ତ ଜ୍ଞାନପନ୍ଥା ସେମାନଙ୍କ ଦୃଷ୍ଟିରେ

ଥିଲା କପୋଳ କଳ୍ପନା । ବିଜ୍ଞାନର କର୍ମୀ ବା ସାଧକମାନଙ୍କର କେବଳ ଦୃଷ୍ଟିକୋଣର ପରିବର୍ତ୍ତନ ଘଟିଲା, ତାହା ନୁହେଁ; ଜନସାଧାରଣଙ୍କର ମଧ୍ୟ ଜଗତ ଓ ଜୀବନ ପ୍ରତି ଦୃଷ୍ଟିଭଙ୍ଗୀ କ୍ରମଶଃ ପରିବର୍ତ୍ତିତ ହେଲା । ସେମାନଙ୍କ ଚିନ୍ତାର ଚେହେରା ମଧ୍ୟ କିଛିଟା ବଦଳିଗଲା । କଥାକଥାକେ Scientific point of view, scientific out -look ଭଳି ବ୍ୟବହାର ପରିଦୃଷ୍ଟ ହେଲା, ଆପ୍ତବାକ୍ୟରେ ଆସ୍ଥାଶିଥିଳ ହେଲା; ଭକ୍ତିମାର୍ଗ ବଦଳରେ ଯୁକ୍ତିବାଦ ଜୀବନରେ ପ୍ରବଳ ହୋଇ ଉଠିଲା ।

ସପ୍ତଦଶ ଶତାବ୍ଦୀ ଓ ତା' ପରେ ପରେ ଅତିନ୍ଦ୍ରିୟ ଜ୍ଞାନକୁ ନାକଚ କରି ଇନ୍ଦ୍ରିୟଗ୍ରାହ୍ୟ ତଥ୍ୟପ୍ରତିଷ୍ଠ ବିଜ୍ଞାନକୁ ମହତ୍ତର ମୂଲ୍ୟ ପ୍ରଦାନ କରାଯିବାର ପରିଣାମ ହେଲା ଗଭୀର ଓ ସୁଦୂର ପ୍ରସାରୀ । ଏହି ପରିବର୍ତ୍ତନର ଫଳସ୍ୱରୂପ ବେଶୀ ଭାଗରେ କ୍ଷତବିକ୍ଷତ ହେଲା ମାନବ ସଭ୍ୟତାର ଦୁଇ ପ୍ରଧାନ ଓ ପ୍ରାଚୀନ ଅଙ୍ଗ -ଧର୍ମ ଓ ସାହିତ୍ୟ । ଉଭୟ ଧର୍ମ ଓ ସାହିତ୍ୟର ମୂଳଭିତ୍ତି ସ୍ୱଜ୍ଞା (Intuition) ବା ବୋଧି । ଏ ଗୁଡ଼ିକର ସିଦ୍ଧି ଯୁକ୍ତି ତଥା ଇନ୍ଦ୍ରିୟଗମ୍ୟ ଅନୁଭୂତିରେ ଆବଦ୍ଧ ନୁହେଁ । ଯୁକ୍ତିର ସୀମାତୀତ ଉଜ୍ଜ୍ୱଳ କଳ୍ପନା ଓ ଅନୁଭୂତିର ତୁରୀୟ ଶକ୍ତି ସାହାଯ୍ୟରେ ଏଗୁଡ଼ିକ ସାର୍ଥକ । ଅନ୍ତିମ ବିଗ୍ରହରେ ଉଭୟ ସାହିତ୍ୟ ଓ ଧର୍ମର ପ୍ରତୀତି ଆଲୌକିକ, ଅନ୍ତତଃ ଲୋକାତୀତ । ସପ୍ତଦଶ ଶତାବ୍ଦୀର ଫରାସୀ ଦାର୍ଶନିକ ଦେକାର୍ତ (Descartes) ବିଜ୍ଞାନର ଭିତ୍ତିରେ ଦର୍ଶନ ଶାସ୍ତ୍ରକୁ ନୂଆମୋଡ଼ ଦେଲେ । ସେ ଦୃଢ଼ଭାବେ କହିଲେ,ଗାଣିତିକ ତର୍କଶୃଙ୍ଖଳା ସାହାଯ୍ୟରେ ପରିଚ୍ଛନ୍ନ ଚିନ୍ତାହିଁ ଏକମାତ୍ର ସତ୍ୟ । ଅଧ୍ୟାପକ ବେସଲ ଉଇଲି ଲେଖିଛନ୍ତି ଦେକାର୍ତଂକ ପରଠାରୁ କବିମାନଙ୍କ ଲେଖାରେ ଏହି ଅନତିକ୍ରମ୍ୟ ଧାରଣା ପ୍ରକାଶ ପାଇବାକୁ ଲାଗିଲା ଯେ ସେମାନଙ୍କର ରଚନା ସତ୍ୟ ନୁହେଁ, ଅନୃତ ଭାଷଣ ମାତ୍ର; ଆଉ ଏ ଧାରଣା ଫଳରେ ସେମାନଙ୍କ ରଚନାର ଗାମ୍ଭୀର୍ଯ୍ୟ ନଷ୍ଟ ହୋଇଗଲା । (After Descatres, poets were inevitably writing with the sense that their constructions were not true and this feeling robbed their work of essential seriousness.) ସମସାମୟିକ ଇଂରେଜ ଦାର୍ଶନିକ ଲକ ଲେଖିଲେ ଯେ ସାହିତ୍ୟରେ, ଆମେ ପାଉ କେବଳ ମନୋହର ଚିତ୍ର ତଥା ନୟନ ତୃପ୍ତିଦାୟକ ଛାୟାଦୃଶ୍ୟ (pleasant pictures and agreeable visions) ଅଥଚ ଏସବୁ ଚିତ୍ର ବାସ୍ତବତା ଓ ଯୁକ୍ତି ଉପରେ ପ୍ରତିଷ୍ଠିତ ନହେବା ଫଳରେ ଅଳୀକ ଓ ମୂଲ୍ୟହୀନ । କବିତା ସମେତ ସମସ୍ତ ସାହିତ୍ୟ ସୃଷ୍ଟି ସାରବାନ ପଦାର୍ଥ ନୁହେଁ; କ୍ଷଣିକର ଖେଳନା, ଆମୋଦ-ପ୍ରମୋଦର ସାମଗ୍ରୀ । ଯୁକ୍ତବାଦୀମାନଙ୍କର ଏବଂବିଧ ବିଚାରର ଚରମଉକ୍ତି ଉନ୍ନବିଂଶ ଶତକର ବିଖ୍ୟାତ ଉପଯୋଗବାଦୀ ଦାର୍ଶନିକ ଜେରେମି

ବେନ୍ଥାମଙ୍କର Rational of Reward ପୁସ୍ତକରୁ ମିଳେ:

It is not proper to regard the arts and sciences of amusement as destitute of utility; on the contrary, there is nothing the utility of which is more incontestable. To what shall the character of utility be ascribed, if not to that which is a source of pleasure ? All that can be alleged in diminution of their utility is, that it is limited to the excitement of pleasure : They cannot disperse the clouds of grief or of misfortune. They are useless to those who are not pleased with them : they are useful only to those who take pleasure in them.

Prejudice apart, the game of push-pin is of equal value with the arts and sciences of music and poetry. If the game of push-pin furnish more pleasure, it is more valuable than either .... Indeed, between poetry and truth there is a natural opposition : false morals, fictitious nature. The poet always stands indeed of some thing false. Truth exactitude of everykind is fatal to poetry.

ବେନ୍ଥାମଙ୍କର କବିତାପ୍ରତି ଆକ୍ଷେପ ରୁକ୍ଷ ଓ କଠୋର, ଏହି ଆକ୍ଷେପରେ କବିତାଲକ୍ଷ୍ମୀ ଶିହରି ଉଠିବା ସ୍ୱାଭାବିକ । ଏହାପୂର୍ବରୁ କବିତାଦେବୀ ବହୁବାର ଅପମାନିତା ହୋଇଛନ୍ତି କିନ୍ତୁ ଏଭଳି ଭାବରେ କେବେ ଧର୍ଷିତା ହୋଇନଥିଲେ । ପ୍ଲେଟୋଙ୍କର ଆଦର୍ଶରାଜ୍ୟରେ କବିଙ୍କର ପ୍ରବେଶ ନିଷିଦ୍ଧ ହୋଇଥିଲା । କାରଣ ତା'ର ନିତାନ୍ତ ଭାବରେ ଦାର୍ଶନିକ, କିନ୍ତୁ ସ୍ମରଣଯୋଗ୍ୟ ପ୍ଲେଟୋଙ୍କର କବିତା ସଂପର୍କରେ ଅଭିଯୋଗ କାବ୍ୟର ଅଳୀକତା ଓ ଅନୃତ ଭାଷଣ ପାଇଁ । କେତେ ଶତାବ୍ଦୀ ପରେ ସେଣ୍ଟ ଅଗଷ୍ଟିନ ନିଛକ ନୈତିକତା ପାଇଁ କାବ୍ୟ ବିରୋଧୀ ହୋଇ ଉଠିଥିଲେ । କିନ୍ତୁ ସପ୍ତଦଶ ଶତକ ପରେ କବିତା ସଂପର୍କରେ ଯାହା କୁହାଗଲା, ତାହା କାବ୍ୟର ଅପମାନ ନୁହେଁ, ଇଜ୍ଜତ ଲୁଣ୍ଠନ । ଲକ୍‌ଙ୍କ ଠାରୁ ବେନ୍ଥାମଙ୍କ ପର୍ଯ୍ୟନ୍ତ ପ୍ରଗ୍ରିତ କାବ୍ୟତତ୍ତ୍ୱରେ କୁହାଗଲା ଓ ବ୍ୟବହାରିକ ଜୀବନରେ ପ୍ରଦର୍ଶିତ ହେଲା : କାବ୍ୟର କୌଣସି ମୂଲ୍ୟ ନାହିଁ; ଏହା ଏକ ହାଲୁକା ବ୍ୟସନମାତ୍ର । କବିତା ସୃଷ୍ଟିରେ କୌଣସି ଦୈବରହସ୍ୟ ନାହିଁ - ଏହା ମଣିଷର ସ୍ଥୂଳ ଆନନ୍ଦ ପ୍ରଦାନ ପାଇଁ ନିର୍ମିତ; ମଣିଷର ଅନ୍ୟତମ ବିଳାସ ସାମଗ୍ରୀ । ତେଣୁ କବିତାକୁ ଦେବୀର ଆସନରେ ବସାଇ ପୂଜା କରିବା ମୂର୍ଖତା; ବାରାଙ୍ଗନା ଭଳି ଅର୍ଥ ବିନିମୟରେ ତାକୁ ଉପଭୋଗ କରାଯାଇ ପାରେ । ଏଭଳି ଗୁରୁତର ଆଘାତ ଫଳରେ କାବ୍ୟଲକ୍ଷ୍ମୀଙ୍କର ମର୍ଯ୍ୟାଦା ଲୁଣ୍ଠିତ ହୋଇଛି । ଏଭଳି ଏକ ଗ୍ଳାନିକର ପରିବେଶରୁ ଉତ୍ତୀର୍ଣ୍ଣ ହୋଇ ସେ ଏପର୍ଯ୍ୟନ୍ତ ମଧ୍ୟ ପୂର୍ଣ୍ଣଗୌରବ ନେଇ ଆବିର୍ଭୂତା ହୋଇପାରି ନାହାଁନ୍ତି । ନିକଟ ଭବିଷ୍ୟତରେ ହେବାର ସମ୍ଭାବନା ମଧ୍ୟ ନାହିଁ । ଏହି ପ୍ରବନ୍ଧର ଦ୍ୱିତୀୟଭାଗରେ

କୁହାଯାଇଛି, ସପ୍ତଦଶ ଶତକ ପୂର୍ବରୁ ଶିଳ୍ପଭାବନା ଓ ବୈଜ୍ଞାନିକ ଚିନ୍ତାମଧ୍ୟରେ କୌଣସି ଆବଶ୍ୟକ ବିରୋଧ ନଥିଲା । ଲିଓନାର୍ଡ ଦା ଭିଞ୍ଚି ଶରୀରତତ୍ତ୍ୱ ସହ ନାରୀଦେହର ଅପରୂପ ସୁଷମା ମଧ୍ୟ ଜାଣିଥିଲେ । ପ୍ରସିଦ୍ଧ ଇଂରାଜୀ କବି ଏଲିୟଟ ସଂବେଦନାର ବିଚ୍ଛେଦ ବା Dissociation of sensibility କହିଲେ ଯାହା ବୁଝନ୍ତି ତାହାର ପୁନାଦି ସପ୍ତଦଶ ଶତାବ୍ଦୀରେ କବିତା ଓ ବିଜ୍ଞାନର ବିରୋଧ ମଧ୍ୟରେ ପଡ଼ିଥିଲା । ଏଲିୟଟଙ୍କ ମତରେ ସତର ଶତକର କବିମାନଙ୍କର (ପଶ୍ଚିମ ଇଉରୋପର, ବିଶେଷତଃ ଇଂରେଜ କବିମାନଙ୍କର) ଏଭଳି ଏକ ଅନ୍ତଃଶକ୍ତି ଥିଲା, ଯାହା ଫଳରେ ସେମାନେ ସମସ୍ତ ପ୍ରକାର ଅଭିଜ୍ଞତାକୁ ପରିପାକ କରି ପାରୁଥିଲେ; ସେମାନଙ୍କ ବୁଦ୍ଧି ଓ ଅନୁଭୂତି ଭିତରେ ବିରୋଧ ସୃଷ୍ଟି ହେଉନଥିଲା । ଫଳରେ ସେମାନଙ୍କ ସାହିତ୍ୟସୃଷ୍ଟି ସହ ବୈଜ୍ଞାନିକ ଅନୁସଂଧିତ୍ସାର କୌଣସି ବିଚ୍ଛେଦ ଘଟି ନଥିଲା । ସେହି ଶିଳ୍ପସୃଷ୍ଟିକାରୀ ଅଗ୍ନି-ବୈଶ୍ୱାନର ଶକ୍ତି ସପ୍ତଦଶ ଶତାବ୍ଦୀ ପରଠାରୁ କବିମାନଙ୍କ ମଧ୍ୟରୁ ଅଦୃଶ୍ୟ ହୋଇଯାଇଛି । ସାରା ବିଶ୍ୱରେ, ହୋମାର, ଭର୍ଜିଲ୍, ଦାନ୍ତେ, ସେକ୍‌ସପିୟର, କାଳିଦାସ ଓ ସାରଳାଦାସଙ୍କ ଭଳି ଅଗ୍ନି -ବୈଶ୍ୱାନର ଶକ୍ତିମାନ ସୃଜନୀ ପ୍ରତିଭାର ଆବିର୍ଭାବ ହେଉନାହିଁ ।

॥ ୪ ॥

କାବ୍ୟର ଏହି ପ୍ରଚଣ୍ଡ ସଂକଟ ସଂବନ୍ଧରେ ଅବହିତ ଥିଲେ କିଟ୍‌ସ, ସେଲି, ୱାଡସ୍‌ୱାର୍ଥ ଓ ଟେନିସନ ପ୍ରମୁଖ ଊନବିଂଶ ଶତାବ୍ଦୀର ପ୍ରମୁଖ କବିଗଣ । କେବଳ ଅବହିତ ନଥିଲେ, ଏହି ସଂକଟରେ ସମାଧାନ ପାଇଁ ପଦକ୍ଷେପ ମଧ୍ୟ ନେଇଥିଲେ । ବସ୍ତୁତଃ ଊନବିଂଶ ଶତକର ଇଉରୋପୀୟ କାବ୍ୟତତ୍ତ୍ୱର ଏକ ମୁଖ୍ୟଅଂଶ କାବ୍ୟ ଗୌରବ ପୁନଃ ପ୍ରତିଷ୍ଠା ପ୍ରୟାସରେ ନିୟୋଜିତ । କାବ୍ୟ ବିରୋଧୀମାନଙ୍କର ପ୍ରଧାନ ଅଭିଯୋଗ ଥିଲା କାବ୍ୟର କାରବାର ମିଥ୍ୟାନେଇ; କାରଣ ସତ୍ୟ କହିଲେ ତଥ୍ୟ ଓ ଯୁକ୍ତିର ସତ୍ୟ, ତାଛଡ଼ା ଅନ୍ୟ କୌଣସି ସତ୍ୟର ଅସ୍ତିତ୍ୱନାହିଁ । ଉଣେଇଶ ଶତକର କାବ୍ୟତାତ୍ତ୍ୱିକଗଣଙ୍କର ଯୁକ୍ତି ହେଲା, ବିଜ୍ଞାନବାଦୀ ବା ହେତୁବାଦୀମାନଙ୍କର ଯୁକ୍ତି ସର୍ବାଂଶର ସତ୍ୟ ନୁହେଁ । ତଥ୍ୟ ଓ ଯୁକ୍ତିର ସତ୍ୟ କ୍ଷଣିକର ସତ୍ୟ, ଆଂଶିକ ସତ୍ୟ, ସ୍ଥାନ-କାଳ-ପାତ୍ର ସାପେକ୍ଷ ସତ୍ୟ । ତା'ଠାରୁ ମହତ୍ତର ସତ୍ୟ ନିରବଧି କାଳ ଓ ନିଃସୀମ କଳ୍ପରାଜ୍ୟରେ ବିଚରଣ କରେ । ପରା ଜଗତର ସେହି ଚିର-ଅମ୍ଳାନ ସତ୍ୟ ସହ କବିର ସଂପର୍କ । କାବ୍ୟସତ୍ୟ ଓ ତଥ୍ୟସତ୍ୟ ମଧ୍ୟରେ ପ୍ରଭେଦ ବିସ୍ତାର ।

କିନ୍ତୁ ପରାଜଗତର ସତ୍ୟ କବିର ସାଧ୍ୟାୟତ୍ତ ହୁଏ କିଭଳି ? ପ୍ରଥମ ଅବସ୍ଥାରେ ଏହାକୁ ନେଇ ଆଲୋଚନା ଥିଲା ଅପରିଚ୍ଛନ୍ନ ଓ ଅସ୍ପଷ୍ଟ । କ୍ରମେ କାବ୍ୟତତ୍ତ୍ୱବିଦ୍‌ଗଣ ପ୍ରଥମରୁ

ବିଶ୍ୱାସ କରିନେଲେ ଯେ କବି ବା ଶିଳ୍ପୀ ବିଶେଷ ଅସାମାନ୍ୟ ଅନ୍ତଃଶକ୍ତିର ଅଧିକାରୀ । ସ୍ରଷ୍ଟାର ଏହି ଅନ୍ତଃଶକ୍ତି ସାଧାରଣ ଯୁକ୍ତିଠାରୁ ଅନେକ ଗଭୀରତର, ମହତ୍ତର ଓ ଉଜ୍ଜ୍ୱଳତର ଶକ୍ତି; ଯାହା କଳ୍ପନା (Imagination) ଶକ୍ତି ରୂପରେ ପରିଚିତ । ପ୍ରାଚୀନ ଗ୍ରୀକ୍ ମାନଙ୍କର ଫାନ୍‌ଟାସିୟା ଓ ସଂସ୍କୃତ ଦାର୍ଶନିକ- ଆଳଂକାରିକମାନଙ୍କର ପ୍ରତିଭାର ଏହା ସମଧର୍ମୀ । ୱାର୍ଡସୱାର୍ଥ, କଲେରିଜ, ରସ୍‌କିନ କଳ୍ପନାଶକ୍ତିର ସ୍ୱରୂପ ଓ ବୈଶିଷ୍ଟ୍ୟ ନେଇ ପ୍ରଚୁର ଆଲୋଚନା କରିଗଲେ । ଶେଲି ଶ୍ଲେଗେଲ ନୋଭାଲିସ୍ କାଣ୍ଟଙ୍କ ବିଶ୍ୱାସରେ ଏହି ପ୍ରତିଭାବାଦ ଯୁକ୍ତିବାଦ ତୁଳନାରେ ଅଧିକ ପରିମାଣରେ ଗ୍ରହଣଯୋଗ୍ୟ ବିବେଚିତ ହେଲା । କବି ପ୍ରତିଭା ପ୍ରତି ଫେରି ଆସିଲା ଜନସାଧାରଣଙ୍କ ବିଶ୍ୱାସ । ଜନ୍ ଷ୍ଟୁଆର୍ଟ ମିଲଙ୍କର ଉକ୍ତି ଏହି ହୃତ-ବିଶ୍ୱାସ ଫେରି ଆସିବାର ଏକ ଚମତ୍କାର ଉଦାହରଣ । ମିଲ୍ ଥିଲେ ବେନ୍ଥାମଙ୍କର ଆତ୍ମିକ ଉତ୍ତରଦାୟାଦ; ଅଥଚ ନିଜ ଆତ୍ମଜୀବନୀରେ ସେ ସ୍ୱୀକାର କରିଗଲେ ଯେ କବିତା ବା ସାହିତ୍ୟ ସଂପର୍କରେ ବେନ୍ଥାମଙ୍କର ସିଦ୍ଧାନ୍ତ ଅଗ୍ରାହ୍ୟ । ବେନ୍ଥାମବାଦ ବା ଉପଯୋଗବାଦରେ କୁହାଯାଇଛି ଯେ ମଣିଷ କେବଳ ଯୁକ୍ତି-ପରାୟଣ, ସେ ଯେ ଆବେଗ ଓ ଅନୁଭୂତିର ଏକ ଜଟିଳ ପିଣ୍ଡ ଏକଥା ଅସ୍ୱୀକୃତ । ଏହି ଅସ୍ୱୀକରଣ ଫଳରେ ବେନ୍ଥାମବାଦ ଏକଦେଶଦର୍ଶୀ ହୋଇ ପଡ଼ିଛି । ସତ୍ୟର ରାସ୍ତା ଦୁଇଟି: ଗୋଟିଏ ଯୁକ୍ତି, ଅପରଟି ସ୍ୱପ୍ନ ବା କଳ୍ପନା । କାବ୍ୟ ଏହି ସ୍ୱପ୍ନ ବା କଳ୍ପନା - ସୃଷ୍ଟ । ଫଳରେ କାବ୍ୟର ସତ୍ୟକୁ ଅସ୍ୱୀକାର କଲେ ସୁସମଂଜସ ସତ୍ୟରାଜ୍ୟରେ ପହଞ୍ଚିହୁଏ ନାହିଁ ।

ଗୋଟିଏ ଦିଗରେ ଇଂରେଜ ରେମାଣ୍ଟିକ କବିଗଣଙ୍କ ଦ୍ୱାରା ଶିଳ୍ପ କଳ୍ପନାରେ ପରମସତ୍ୟର ସନ୍ଧାନ, ଅପର ଦିଗରେ କାଣ୍ଟ ଓ ମିଲ ପ୍ରମୁଖଙ୍କ ଭଳି ଲବ୍ଧପ୍ରତିଷ୍ଠ ତାର୍କିକ ଓ ଦାର୍ଶନିକମାନଙ୍କର ସାହିତ୍ୟ - ପକ୍ଷବାଦୀ ସିଦ୍ଧାନ୍ତ ଫଳରେ ସାହିତ୍ୟର ସମ୍ମାନ କିଛି ପରିମାଣରେ ପୁନଃ-ପ୍ରତିଷ୍ଠିତ ହେଲା ।

କଳା ଓ କବିତାର ହୃତ- ଗୌରବ ଉନବିଂଶ ଶତକରେ ପୁନରୁଜୀବିତ ଓ ପ୍ରସ୍ଫୁରିତ ହେଲା ସତ୍ୟ, କିନ୍ତୁ ମୂଳ ସମସ୍ୟାର କୌଣସି ସମାଧାନ ହେଲା ନାହିଁ । ସାହିତ୍ୟ ଓ ବିଜ୍ଞାନ, ସ୍ୱପ୍ନ ଓ ଜ୍ଞାନ, କଳ୍ପନା ଓ ବୁଦ୍ଧି ମଧ୍ୟରେ ସୃଷ୍ଟି ହୋଇଥିବା ବିଚ୍ଛେଦ ଓ ବିରୋଧ ମଧ୍ୟରେ ସାଲିସ୍ କରାହୋଇ ପାରିଲା ନାହିଁ । କାବ୍ୟକାରମାନଙ୍କୁ ପୀଡ଼ା ହୋଇଥିବା ସତ୍ୟର ଦ୍ୱୈତରୂପ ଓ ଅବିଚ୍ଛିନ୍ନ ସମ୍ବେଦନାର କୌଣସି ଉପଶମ ହେଲାନାହିଁ । ସପ୍ତଦଶ ଶତାବ୍ଦୀରୁ ଆଜି ପର୍ଯ୍ୟନ୍ତ ଇଉରୋପୀୟ କବିଗଣଙ୍କ ବୁଦ୍ଧିଗମ୍ୟ ପ୍ରତ୍ୟୟ ଓ ସହଜ ଅନୁଭୂତି ଏକ ଅନ୍ତର୍ଦ୍ୱନ୍ଦ୍ୱରେ ବିମଥିତ । ଏହି ଅନ୍ତର୍ଦ୍ୱନ୍ଦ୍ୱର ବେଦନାରେ ବିଶ୍ୱର କବିଚିତ୍ତ ଶତଧାରୁ ସହସ୍ରଧା କ୍ରମେ ଅଧିକରୁ ଅଧିକତର

ବ୍ୟାକୁଳ ଓ ବିକଳ । କବି ଓ କାବ୍ୟତାତ୍ତ୍ୱିକମାନଙ୍କ ମତରେ ସ୍ୱପ୍ନା ପ୍ରଜ୍ଜ୍ୱୋଳ କଳ୍ପନା-ଉଦ୍‌ଭାସିତ ସତ୍ୟ 'ଏକମେବା' 'ଦ୍ୱିତୀୟମସତ୍ୟ;' ତଥ୍ୟର ସତ୍ୟ ଧ୍ରୁବ ନୁହେଁ । କିନ୍ତୁ ବିଜ୍ଞାନର ଶିଷ୍ୟଗଣ ଏଭଳି ଯୁକ୍ତିକୁ ଯୁକ୍ତି ଅପେକ୍ଷା ମୁହଁ ଫୁଟ୍‌କିରିର ସମ୍ମାନ (?) ଦେଇଥାନ୍ତି । ବିଜ୍ଞାନର ସତ୍ୟ ପ୍ରତ୍ୟକ୍ଷ ପ୍ରମାଣ ଓ ପରୀକ୍ଷା-ନିରୀକ୍ଷା ପ୍ରତିଷ୍ଠିତ ଯୁକ୍ତି ଓ ବିଗ୍ରହର ସତ୍ୟ । ଆଧୁନିକ ବିଜ୍ଞାନବିତ୍ ଅବଶ୍ୟ ଅଠର ଓ ଉଣେଇଶ ଶତକର ବିଜ୍ଞାନବିଦ୍‌ମାନଙ୍କ ଭଳି ଜଡ଼ବାଦୀ ନୁହନ୍ତି; ତାଙ୍କର ଜଗତ ଆଉ ସଂପୂର୍ଣ୍ଣ ନିର୍ଦ୍ଦିଷ୍ଟ ଶୃଙ୍ଖଳାବଦ୍ଧ କାର୍ଯ୍ୟକରଣ -ନିୟନ୍ତ୍ରିତ ଜଗତ ନୁହେଁ । ହାଇଜେନବର୍ଗଙ୍କର ପ୍ରିନ୍‌ସିପଲ ଅଫ ଇନ୍‌ଡିଟାରମିନେସି (Principles of Indeterminecy) ର ପରେ ବିଜ୍ଞାନ ଚିନ୍ତାରେ ମଧ୍ୟ ଆଶ୍ଚର୍ଯ୍ୟ ଔଦାର୍ଯର ଆବିର୍ଭାବ ହୋଇଛି କିନ୍ତୁ ବିଜ୍ଞାନର ତଥ୍ୟପ୍ରିୟତା ଯୁକ୍ତିନିର୍ଭରତା କୌଣସି ପ୍ରକାରେ କମିନାହିଁ । କମିବାର ଲକ୍ଷଣ ଦେଖାଯାଇ ନାହିଁ, କାରଣ ମଧ୍ୟ ନାହିଁ । ସର୍ବବିଜୟୀ ଆଲେକ୍‌ଜାଣ୍ଡରଙ୍କ ଭଳି ବିଜ୍ଞାନ ପ୍ରତିଦିନ ତା'ର ସାମ୍ରାଜ୍ୟ ବିସ୍ତାରରେ ବ୍ୟସ୍ତ । ପ୍ରତ୍ୟେକ ଦିନ ଜ୍ଞାନରାଜ୍ୟରେ ସୀମା ସଂପ୍ରସାରିତ ହେଉଛି, ତା ସହିତ କ୍ରମଶଃ ବଢ଼ୁଛି ଆମର ସାଂସାରିକ ଓ ସାମାଜିକ ସୁଖ ସ୍ୱଚ୍ଛନ୍ଦ୍ୟ । ପ୍ରାକ୍ ବୈଜ୍ଞାନିକ ଯୁଗର ଅଜସ୍ର ବିପଦ, ଅସୁବିଧାରୁ ମଣିଷ ଆଜି ମୁକ୍ତ । ପ୍ରାକ୍ତନ ଅଳୀକ ସଂସ୍କାର ଓ ପ୍ରତ୍ୟୟଗୁଡ଼ିକର ଅତଡ଼ା ବିଜ୍ଞାନର ପ୍ରଳୟଂକରୀ ବନ୍ୟାରେ ଧସିଯାଉଛି । ଆଜିର ଜଗତ ବିଜ୍ଞାନମୟ । ଅପର ଦିଗରେ ସାହିତ୍ୟ ବିଶେଷତଃ କବିତାର କ୍ଷେତ୍ର ସଙ୍କୁଚିତ ହେଉଛି ଆସ୍ତେ ଆସ୍ତେ- କିଟସଙ୍କର ଆଶଂକା ଯେଭଳି ସତ୍ୟରେ ପରିଣତ ହେବାକୁ ଯାଉଛି । ଅଜସ୍ର ପ୍ରାଚୀନ କାବ୍ୟକବିତାର ପ୍ରତିଷ୍ଠାଭୂମି ପୌରାଣିକ ଓ ଆଧିଦୈବିକ ପ୍ରତ୍ୟୟ । ସେହି ପ୍ରତ୍ୟୟ ଗୁଡ଼ିକ ଆଜି ଅଗ୍ରାହ୍ୟ ଓ ଅଚଳ । କୌଣସି ଆଧୁନିକ କବି ଆଜି ଡିଭାଇନ କମେଡ଼ିଆ, ପାରାଡ଼ାଇଜ୍ ଲଷ୍ଟ, କୁମାର ସମ୍ଭବମ୍ ବା ପ୍ରେମାଲୋନା ଭଳି କାବ୍ୟ ଲେଖିବାକୁ ଯିବେନାହିଁ । ଆଜିର କବି ଯଦିବା କୌଣସି ପୌରାଣିକ କାହାଣୀର ଆଶ୍ରୟ ନିଅନ୍ତି, ତେବେ ବୁଝିବାକୁ ହେବ, ପ୍ରାଚୀନ କାହାଣୀର ପ୍ରତୀକିତ ଅର୍ଥ ସାଂପ୍ରତିକ ପୃଥିବୀର ପ୍ରତ୍ୟୟ- ସମର୍ଥିତ ; ସେଇଥି ପାଇଁ ପ୍ରତୀକରୂପେ ବ୍ୟବହୃତ ହେବା ପାଇଁ ଗୃହୀତ, ଅର୍ଥାତ୍ ପୌରାଣିକ କାହାଣୀ ଏକ ଉପଲକ୍ଷ ମାତ୍ର, ତା'ର ନିଜସ୍ୱ ମୂଲ୍ୟନାହିଁ । ପୁଣି କାହାଣୀର ପ୍ରାଚୀନ -ପ୍ରତ୍ୟୟ ଓ ତା'ର ଆଧୁନିକ ପ୍ରତୀକିତ -ପ୍ରତ୍ୟୟ ଭିତରେ ଥିବା ବିଭେଦରୁ ପ୍ରମାଣିତ ହୁଏ ଯେ କବିଙ୍କର କଳ୍ପନାକୁ ଉଦ୍ଦୀପିତ କରିଥିବା ବସ୍ତୁରେ କବିଙ୍କ ବୁଦ୍ଧିର ସମର୍ଥନ ନାହିଁ, ଅର୍ଥାତ୍ ଏଲିୟଟ କଥିତ ସଂବେଦନାର ବିଚ୍ଛେଦ କବିମାନସରେ ପ୍ରବଳ । ଆଧୁନିକ କବି ଯେତେବେଳେ କାବ୍ୟ ରଚନା କରନ୍ତି ସେତେବେଳେ ସେ ଓଟ ପକ୍ଷୀ ଭଳି ଚାରିଦିଗରେ ପଡ଼ିରହିଥିବା ବୁଦ୍ଧିଗ୍ରାହ୍ୟ ବିଶାଳ ଜଗତ ଦିଗରୁ ମୁହଁକୁ ବୁଲେଇ ନେଇ ଅସ୍ଥିର ବାଲୁକାର କ୍ଷୁଦ୍ର କନ୍ଦରରେ ମୁଣ୍ଡଗୁଞ୍ଜି

ଗୋଟିଏ କଳ୍ପନାରାଜ୍ୟ ରଚନା କରନ୍ତି । କବିତା କବିଙ୍କ ପାଇଁ ଯେଭଳି ଏକ ପଳାୟନ ପନ୍ଥା । ଏହି ପଳାୟନ ପନ୍ଥାକୁ ନେଇ କବିମାନଙ୍କର ସମସ୍ତ ସ୍ୱପ୍ନ, ଆବେଗ ଓ ଓକିଲାତି ।

ଆଧୁନିକ କାବ୍ୟ ଦର୍ଶନର ମୌଳ ଦୁର୍ବଳତା ହେଲା ବିଜ୍ଞାନର ସତ୍ୟଠାରୁ କାବ୍ୟସତ୍ୟକୁ ପ୍ରଭିନ୍ନ ମନେ କରିବା । କବିର ରୂପକାଶ୍ରିତ, ନ୍ୟାୟଶାସ୍ତ୍ର ଅଗମ୍ୟ ସତ୍ୟ ବିଜ୍ଞାନ ଦ୍ୱାରା ପ୍ରତିଷ୍ଠିତ ସତ୍ୟଠାରୁ ସଂପୂର୍ଣ୍ଣ ପୃଥକ୍ କହିବା ଦ୍ୱାରା କାବ୍ୟର ଅଧିକତର କ୍ଷତି ହୋଇଛି ଓ ହେଉଛି । ଏହା ଫଳରେ କବି ଓ କାବ୍ୟତାତ୍ତ୍ୱିକରଣ କାବ୍ୟକୁ ପ୍ରତ୍ୟକ୍ଷ ପୃଥିବୀ -ଅତୀତ କୌଣସି ଅଲକ୍ଷ୍ୟ ଅବାସ୍ତବ (ସୁତରାଂ ଅଳୀକ) ଜଗତକୁ ନେଇ ଯାଉଛନ୍ତି । କାବ୍ୟସହ ଶିଥିଳ ହେଉଛି ଜୀବନର ସଂପର୍କ । ଫଳରେ ତାହା ପରିଣତ ହେଉଛି ପ୍ରାଣହୀନ ପ୍ରତିମାରେ । ଏହାର ଅର୍ଥ ନୁହେଁ ଯେ କବିତା ଓ ବିଜ୍ଞାନର ଅଭିପ୍ରାୟ ତଥା କାର୍ଯ୍ୟ ଏକ ଓ ଅଭିନ୍ନ । ଏଠାରେ ବକ୍ତବ୍ୟ: କାବ୍ୟସତ୍ୟ ଓ ବିଜ୍ଞାନ-ସତ୍ୟ ରୂପରେ ସତ୍ୟର ଦୁଇଟି ରୂପନାହିଁ । ସତ୍ୟ ଏକ ନିରବୟବ, ଅଚଳ, ଅଟଳ ସତ୍ତା ନୁହେଁ । ନାନା ଜଟିଳ ଶକ୍ତିର ସଂଘାତ ଓ ସମୀକରଣର ଫଳସ୍ୱରୂପ ସତ୍ୟର ସ୍ୱରୂପ ବଦଳିଯାଏ । ସାହିତ୍ୟ ଓ ବିଜ୍ଞାନର ସତ୍ୟର ଦ୍ୱନ୍ଦ୍ୱ-ସଂଘାତ ସତ୍ୟ ଅନ୍ତର୍ଭୁକ୍ତ । ବିଜ୍ଞାନ ଓ ଅନ୍ୟାନ୍ୟ ପ୍ରତ୍ୟୟର ନାନ୍ଦନିକ ରୂପ କବିତା । ବିଜ୍ଞାନ ଏକ ପ୍ରାକ୍ କାବ୍ୟ ବିଷୟ -କବିତାଠାରୁ ଭିନ୍ନ ବିଷୟ ନୁହେଁ । ପ୍ରାକ୍ କାବ୍ୟ ବିଷୟ ଓ ରଚିତ କବିତା- ଏହା ମଧ୍ୟରେ ଥିବା ସଂପର୍କ ଓ ଭିନ୍ନତା ଫୁଲ ମଧ୍ୟରେ ଥିବା ସଂପର୍କ ଓ ବିଭେଦର ଅନୁରୂପ । ବାସ୍ତବତଃ ଏହା ଶୁଦ୍ଧିକରଣ ଓ ଉନ୍ନୟନର ପ୍ରଭେଦ । ଶୁଦ୍ଧୀକୃତ କାବ୍ୟବସ୍ତୁ ଯଦି ମିଥ୍ୟା ନୁହେଁ ତେବେ ପ୍ରାକ୍ -ଶୋଧନ କାବ୍ୟବସ୍ତୁ କିଭଳି ମିଥ୍ୟା ହୋଇ ପାରିବ ? ସମଗ୍ର କାବ୍ୟ ପ୍ରକ୍ରିୟାରେ ମିଥ୍ୟା ପାଇଁ ସ୍ଥାନାଭାବ । ସତ୍‌କାବ୍ୟ ରଚନା ପାଇଁ କବିଙ୍କୁ ସତ୍‌କବି ହେବାକୁ ପଡ଼ିବ କବିଙ୍କର ଶୁଦ୍ଧ-ପ୍ରତ୍ୟୟ ଓ ବ୍ୟବହାରିକ ପ୍ରତ୍ୟୟ ମଧ୍ୟରେ କୌଣସି ବିରାଟ ବ୍ୟବଧାନ ରହିବା ଉଚିତ୍ ନୁହେଁ । ବିଜ୍ଞାନ ମିଥ୍ୟା ତା'ର ପରୀକ୍ଷା ନିରୀକ୍ଷା ମିଥ୍ୟାଗ୍ରସ୍ତୁରାଂ; ଅଥଚ କବି କଳ୍ପନା ଏକମାତ୍ର ପୁଂଜିଭୂତ ସତ୍ୟ -ଏକଥା ଆଜିର ମାନବସମାଜ କୌଣସି ପ୍ରକାର ମାନି ନେଇ ପାରିବ ନାହିଁ । ଯଦି କୌଣସି ସମୟରେ ଉଭୟ ମଧ୍ୟରେ ଗୋଟିକୁ ବାଛି ନେବାର ସମସ୍ୟା ଆସେ, ତେବେ ଆଜିର ମାନବସମାଜ ବିଜ୍ଞାନକୁହିଁ ବାଛିନେବ । ତେଣୁ ବିଜ୍ଞାନର ବିରୋଧ କରି କବିତାକୁ ବଞ୍ଚେଇ ରଖିବାର କଳ୍ପନା ଏକ ବୃଥା ପ୍ରୟାସ । କାବ୍ୟକୁ ଯଥାର୍ଥ ଭାବରେ ବଞ୍ଚାଇ ରଖିବାକୁ ହେଲେ କବିଙ୍କୁ ହେବାକୁ ପଡ଼ିବ ଅନୁଭୂତିର ଅଗ୍ନିବୈଶ୍ୱାନର । ■

(ସଂଗୃହୀତ)

# ରସତତ୍ତ୍ୱ ଚର୍ଚ୍ଚାପରଂପରା

ଗୌରାଙ୍ଗ ଚରଣ ଦାଶ

॥ ଏକ ॥

ଭରତଙ୍କ କାଳ (ପ୍ରାୟ ଖ୍ରୀ.ପୂ.ପଞ୍ଚମ/ଚତୁର୍ଥ ? )ରୁ ଆଜିପର୍ଯ୍ୟନ୍ତ ତଦ୍‌ବିଦମାନେ ରସର ସ୍ଥିତି ଓ ସ୍ୱରୂପ ସଂପର୍କିତ ଦ୍ୱନ୍ଦ୍ୱରୁ ମୁକ୍ତ ହୋଇପାରିନାହାଁନ୍ତି । ରସ କେଉଁଠି ଥାଏ, ଏହି ପ୍ରଶ୍ନ ପଚାରିଆସୁଛନ୍ତି । ତାହା କ'ଣ, କ- ଅଭିନେତା ବା ନଟଙ୍କ ଅନୁଭବ, ଖ- କାବ୍ୟ ବା ନାଟକାଦିର ଚରିତ୍ର, ଗ-ସ୍ରଷ୍ଟା (ଯିଏ ଆପଣା ବିଗ୍ରହ ଓ ରସାନୁଭୂତିକୁ ଚରିତ୍ରମାନଙ୍କ ମାଧ୍ୟମରେ ପ୍ରମୂର୍ତ୍ତ କରନ୍ତି), ଘ-ଯେଉଁ ସମୟ ଖଣ୍ଡ, ପ୍ରାକୃତିକ ପରିବେଶ ଏବଂ ସାମାଜିକ ସାଂସ୍କୃତିକ ପରିମଣ୍ଡଳରୁ ଚରିତ୍ରମାନଙ୍କର ଜନ୍ମ, ଙ-ଦର୍ଶକ ଅଥବା ପାଠକ (ଏମାନେ କାବ୍ୟ ଓ ନାଟକାଦିର ଗ୍ରାହକ ବା ଉପଭୋକ୍ତା)ଙ୍କ ଭିତରେ ଥାଏ ? ପୁନଶ୍ଚ ସ୍ରଷ୍ଟା ଆପଣା କାବ୍ୟବର୍ଣ୍ଣିତ ଚରିତ୍ର ଓ ଘଟଣା ମାଧ୍ୟମରେ ପାଠକ ଓ ଦର୍ଶକମାନଙ୍କ ଚିତ୍ତବୃତ୍ତିରେ ଯେଉଁ ରସ ସୃଷ୍ଟି କରିବାକୁ ଚାହାନ୍ତି, ତାହା ସକଳଙ୍କ ଭିତରେ ସମଭାବରେ କ୍ରିୟାଶୀଳ ହୋଇଥାଏ କି ? ଉଦାହରଣ ସ୍ୱରୂପ, ମନ ଅଥବା କାବ୍ୟରେ ଶୃଙ୍ଗାରରସଧର୍ମୀ ପରିମଣ୍ଡଳ ସୃଷ୍ଟିପାଇଁ ସ୍ରଷ୍ଟା ଶ୍ରମଶୀଳ ହୋଇଛନ୍ତି । ମାତ୍ର ଏହି ପରିମଣ୍ଡଳ କ'ଣ ପ୍ରତ୍ୟେକ ଦର୍ଶକଙ୍କ ଚିତ୍ତବୃତ୍ତିରେ ସମଭାବ ସଞ୍ଚାର କରେ ? ଜଣେ କାମଭାବରେ ଉତ୍ତେଜିତ ହେଉଥିବା ବେଳେ, ଅନ୍ୟ କିଏ କ୍ରୋଧ ପ୍ରକାଶ କରିପାରେ; ଅନ୍ୟ କେହି କେହି ଲାଜ, ଭୟ, ଘୃଣା ବିସ୍ମୟଭାବରେ ମଧ୍ୟ ସମାଛନ୍ନ ହୋଇପାରନ୍ତି । ତଦ୍‌ବିଦମାନେ ଉପର୍ଯ୍ୟୁକ୍ତ ଦ୍ୱନ୍ଦ୍ୱରୁ ମୁକ୍ତି ପାଇଁ ନିଜକୁ ଓ ଅନ୍ୟକୁ ପ୍ରଶ୍ନ କରିଆସୁଛନ୍ତି । ଉତ୍ତର ଖୋଜୁଛନ୍ତି ମାତ୍ର ଉତ୍ତର ତଥାପି ନିରୁତ୍ତରିତ । ଏହି ଆଲୋଚନା ଭାରତୀୟମାନେ ପ୍ରାୟ ଦୀର୍ଘ ଅଢେଇହଜାର ବର୍ଷଧରି ପଚାରି ଆସୁଥିବା ପ୍ରଶ୍ନଗୁଡ଼ିକର ପ୍ରଶ୍ନ ।

॥ ଦୁଇ ॥

'ରସ' ଶବ୍ଦର ବହୁ ଅର୍ଥ ରହିଛି । ଅଭିଧାନକାରମାନେ ଏହାର ବତିଶିଟି ଅର୍ଥ ନିରୂପଣ କରିଛନ୍ତି । ଫଳରେ ଶସ, ସାର, ନିଷ୍କର୍ଷ, ପାନୀୟ, ପାଣି, ପାରଦ ଇତ୍ୟାଦି । ଯାହା ପାନ ବା

ଆସ୍ୱାଦନ କରାଯାଏ, ତାହା ପଦାର୍ଥ; ଅର୍ଥାତ୍ ଭୋଗ୍ୟ । ଆମ ଜୀବନ ବଞ୍ଚିବାପାଇଁ ଆବଶ୍ୟକତା । ତାହା ଖାଦ୍ୟର ସାର ବା ଶକ୍ତି । ଦେହକୁ ଯାଏ, ଆତ୍ମାକୁ ଜୀବନ୍ତ ଓ ଗତିଶୀଳ କରାଏ । ଗ୍ରୀକ୍ ଭାଷାରେ "ଆଲ୍‌କେମି" । ଏହାର ସୃଷ୍ଟିକର୍ତ୍ତା ଦେବୀ ହର୍‌ମେସ୍- ଆତ୍ମା ଓ ଦିବ୍ୟଦୂତମାନଙ୍କର ସେ ପ୍ରତିନିଧି । ଏହି ପ୍ରସଙ୍ଗରେ ପୁଣି ଦୁଇଟି ଶବ୍ଦ ଆସିଯାଇଛି । ବଞ୍ଚିବା ଓ ଆବଶ୍ୟକତା । କିଏ ବଞ୍ଚିବ ? ଉତ୍ତର-ଯାହାର ଜୀବନ ଅଛି । କିଏ ବଞ୍ଚାଇବ ? ଉତ୍ତର -ଖାଦ୍ୟ, ଏହା ଆବଶ୍ୟକତା । ପୁଣି ପ୍ରଶ୍ନ ଜୀବନ (ଶକ୍ତି) ତା' ହେଲେ କେଉଁଠି ଅଛି ? ଦେହ, ନା ଖାଦ୍ୟ (ପଦାର୍ଥ) ଭିତରେ ? ପଦାର୍ଥ ଯଦି କାହାର ସ୍ଥିତି, ଗତି ଓ ଶକ୍ତିର କାରଣ -ତାହାକୁ, ଅର୍ଥାତ୍ ଦେହକୁ ଆମେ ଶକ୍ତିହୀନ କରିପାରିବା କି? ତେଣୁ କୁହାଯାଇଛି, ବସ୍ତୁ ବା ପଦାର୍ଥସ୍ଥ ଏହି ଶକ୍ତିର ଅନ୍ୟନାମ ରସ ବା ଏସେନ୍‌ସ । ତାହା ମିଠା ଲାଗିପାରେ; ଖଟା, ପିତା, କଷା ବି ଲାଗିପାରେ । ଗୋଟିଏ ପଦାର୍ଥରୁ ଅଥବା ବହୁତ ବସ୍ତୁରୁ ପ୍ରସ୍ତୁତ ମିଶ୍ରିତ ପାଚନ ବି ହୋଇପାରେ । ସେଗୁଡ଼ିକ ଗ୍ରହଣ କରୁଥିବା ଦେହ ମଧ୍ୟ ସେଗୁଡ଼ିକର ଘର । ଘର ହୋଇ ନଥିଲେ, ଗ୍ରହଣ କରିପାରନ୍ତା କିପରି ? ଉପର୍ଯ୍ୟୁକ୍ତ ପ୍ରଶ୍ନ ଓ ଉତ୍ତର କେବଳ ଯୁକ୍ତି ନୁହେଁ, ତତ୍ତ୍ୱର କଥା । ତେଣୁ ରସର ଚର୍ଚ୍ଚା କାଳରେ ଦେହ ଓ ରସର ସ୍ଥିତି (ଦୃଶ୍ୟମାନ ଅଥବା ଅଦୃଶ୍ୟ ହୋଇପାରେ) ଏବଂ ପ୍ରକାର୍ଯ୍ୟର ଅବଲୋକନ ଓ ଅନୁଭବ ହିଁ ବଡ଼ କଥା ।

ତତ୍ତ୍ୱ କହିଲେ ଆମେ ବୁଝୁ ଗୂଢ ଓ ଗୋପନ ବିଦ୍ୟା-ଅନୁଭବ, ଅବଲୋକନ ଓ ମେଧା ଆଧାରିତ । ପ୍ରକୃତ ଜ୍ଞାନ । ଜ୍ଞାନସିଦ୍ଧିର ଅଧିକାରୀ ହେବା ଆଦୌ ସହଜ ନୁହେଁ, ସାଧନାସାପେକ୍ଷ । ଅନ୍ୟପକ୍ଷରେ, ଯେକୌଣସି ସଂରଚନା ସ୍ପଷ୍ଟ, ଦୃଶ୍ୟ, ଶ୍ରାବ୍ୟ, ସ୍ପର୍ଶ୍ୟ ଓ ଅନୁଭବ୍ୟ । ତେଣୁ ଦୃଶ୍ୟମାନତାର ଅଦୃଶ୍ୟଭୂମି ହେଉଛି ତତ୍ତ୍ୱ । କୁହାଯାଏ ସ୍ରଷ୍ଟାର ଭୂମି ଭେଦନ ମାତ୍ରା ଉପରେ ଯେକୌଣସି ସଂରଚନାର ରସ ଓ ରୂପ ପ୍ରକଟିତ ହୋଇଥାଏ । ଅଭିବ୍ୟକ୍ତିର ଯେକୌଣସି ପ୍ରାରୂପ-ସାହିତ୍ୟ, ଚିତ୍ର, ସ୍ଥାପତ୍ୟ, ସଂଗୀତ, ନୃତ୍ୟ ଆଦିକଳା; ପ୍ରାକୃତିକ ବିଜ୍ଞାନ ସମାଜବିଜ୍ଞାନରେ ଆମେ ଯାହାକିଛି ଦେଖୁ, ଯେଉଁ ବିଚାରଦ୍ୱାରା ନିୟନ୍ତ୍ରିତ ହେଉ- ତତ୍ତ୍ୱ ବା ସୂତ୍ରବଦ୍ଧ, ଏହା ସର୍ବସ୍ୱୀକୃତ । ଉପର୍ଯ୍ୟୁକ୍ତ ବିଚାର ଆଧାରରେ ସାହିତ୍ୟ ପ୍ରସଙ୍ଗ ବିଚାର କରାଯାଉ । ସାହିତ୍ୟ ଏକ ଅଭିବ୍ୟକ୍ତି । ମାଧ୍ୟମ ହେଉଛି ଶବ୍ଦ । ତେଣୁ କୁହାଯାଏ— ଏହା ଶବ୍ଦଶିଳ୍ପ ବା ଶବ୍ଦକର୍ମ । ଶବ୍ଦମୟ ପିଣ୍ଡ, ଅର୍ଥାତ୍ ଶବ୍ଦର ନାନ୍ଦନିକ ସଂରଚନା । ଲକ୍ଷ୍ୟ ହେଉଛି, ଦେହ ଓ ଚେତନାକୁ ଆନନ୍ଦ ଓ ଗତିପ୍ରଦାନ । ପିଣ୍ଡର ଆନନ୍ଦ ଓ ଗତିଶୀଳତାର କେନ୍ଦ୍ର ହେଉଛି ଅନ୍ନ । ଅନ୍ନର ଅନ୍ୟ ପରିଭାଷା ଶକ୍ତି ଏବଂ ଶକ୍ତି ହିଁ ରସ । ତେଣୁ ନନ୍ଦନଶାସ୍ତ୍ରରେ

ରସକୁ ଯେକୌଣସି ଅଭିବ୍ୟକ୍ତିର ଆତ୍ମା ବୋଲି କୁହାଯାଇଛି । ପ୍ରଶ୍ନ ଉଠେ ଏହି ରସ ବା ଆତ୍ମା ସଂରଚନାର କେଉଁଠି ଥାଏ ? ଶବ୍ଦରେ ? ଶବ୍ଦଗୁଡ଼ିକର ସୁସଂହତ ଯୋଡ଼ଣରେ ଗଠିତ ସୌଧରେ ? ଯୋଡ଼ଣକାରୀର ମସ୍ତିଷ୍କ ଅଥବା ହୃଦୟରେ ? ନା ଉପଭୋକ୍ତା (ସଂରଚନାର ଗ୍ରାହକ)ର ମସ୍ତିଷ୍କ ଓ ମନରେ ? ନାନା ପ୍ରଶ୍ନ । ଏବଂ, ପ୍ରତ୍ୟେକ ପ୍ରଶ୍ନ ବହୁ ଉତ୍ତର ବିଶିଷ୍ଟ ବହୁପ୍ରଶ୍ନଯୁକ୍ତ । ମାତ୍ର ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗ, ତତ୍ତ୍ୱବିଦ୍‌ମାନେ ସାହିତ୍ୟସୌଧର ନାନ୍ଦନିକ ପ୍ରସଙ୍ଗକୁ ସମାଜତତ୍ତ୍ୱ, ନୃତତ୍ତ୍ୱ, ମନସ୍ତତ୍ତ୍ୱ, ଭାଷାତତ୍ତ୍ୱ ,ଦର୍ଶନ, ସଂସ୍କୃତି, ପ୍ରାକୃତିକ ବିଜ୍ଞାନ ଆଦି ନାନା ବିଦ୍ୟାଶୃଙ୍ଖଳା ଆଧାରରେ ଆଲୋଚନା କରିଛନ୍ତି । ଫଳତଃ, ଏହା ଆନ୍ତର୍ବିଦ୍ୟାଭିତ୍ତିକ ହୋଇପଡ଼ିଛି ଏବଂ ସୌଧ (ଦୃଶ୍ୟମାନ ଅଥବା ଅଦୃଶ୍ୟ)ର ଏକ ଆପାତଃ ସୂକ୍ଷ୍ମ, ଜଟିଳ ଅଥଚ ସ୍ପଷ୍ଟ ଅବବୋଧପାଇଁ ସୁଯୋଗ ଦେଇଛି ଆନ୍ତର୍ବିଦ୍ୟାଭିତିକତା ।

ଭାରତୀୟ ସାହିତ୍ୟବିଦ୍ୟାରେ, ଭରତଙ୍କୁ (ସେ ଜଣେ ଅଥବା ବହୁତ ପ୍ରତିଭାଙ୍କ ସମବାୟ ହୋଇପାରନ୍ତି) ରସଚର୍ଚ୍ଚାର ପ୍ରଥମ ଆଚାର୍ଯ୍ୟ ଏବଂ ନାଟ୍ୟଶାସ୍ତ୍ରକୁ ପ୍ରଥମ ପ୍ରମାଣିକ ଗ୍ରନ୍ଥ କୁହାଯାଇଛି । ମୁଖ୍ୟତଃ ପ୍ରଦର୍ଶନଧର୍ମୀ କଳା ବା ଦୃଶ୍ୟକାବ୍ୟ ଓ କବିତା ପରିପ୍ରେକ୍ଷୀରେ ରସପ୍ରସଙ୍ଗକୁ ସେ ପ୍ରାଧାନ୍ୟ ଦେଇଛନ୍ତି । "କହିଛନ୍ତି ଜଣେ ଦର୍ଶକ ନାଟକ ଦେଖିବା ଓ କବିତା ପଢିବା କାଳରେ ଯେଉଁ ଭାବ (ଆନନ୍ଦ) ତାକୁ ଆବିଷ୍ଟକରେ, ତାହାହିଁ ରସ । ତାଙ୍କ ଶବ୍ଦରେ- 'ନହି ରସଦ୍ରିତେ କଷ୍ଚିତ ଅର୍ଥ ପ୍ରବତର୍ତେ' । ଦୃଶ୍ୟକାବ୍ୟର ଅନ୍ତର୍ନିହିତ ବିବବହିଁ ରସ । ବାକ୍ୟ ପଢିଲେ ବା ଶୁଣିଲେ ଅର୍ଥ ବୁଝି ହେଇପାଉଥିବ । ଅର୍ଥର ସ୍ପଷ୍ଟ ଅବବୋଧ ମନକୁ ଆବିଷ୍ଟ କରିବ । ଏହି ପ୍ରସଙ୍ଗରେ ଆଚାର୍ଯ୍ୟଙ୍କର ସର୍ବ ପରିଚିତ ଶ୍ଳୋକ-"ବିଭାବାନୁଭାବ ବ୍ୟଭିଚାରୀ ସଂଯୋଗାତ୍ ରସନିଷ୍ପତି ।" ଅର୍ଥାତ ରସ ହେଉଛି ବିଭାବ (କାରଣ), ଅନୁଭାବ (ପରିଣାମ) ଓ ବ୍ୟଭିଚାରୀ (ଆନୁବଂଶିକ) ଭାବରେ ମିଶ୍ର ଅଭିବ୍ୟକ୍ତି । ଏହି ତତ୍ତ୍ୱକୁ ବୁଝିବାପାଇଁ ସେ ଏକ ଉଦାହରଣ ଦେଇଛନ୍ତି । କହିଛନ୍ତି -ରସ ଏକ ସ୍ୱାଦ; ବିଭିନ୍ନ ପଦାର୍ଥ ଓ ଆନୁସଙ୍ଗିକ ମସଲା ପ୍ରସ୍ତୁତ ଖାଦ୍ୟର ସ୍ୱାଦ ପରି । ସ୍ୱାଦ, ସବୁକାଳର ପଦାର୍ଥ ଓ ମସଲାର ଆନୁପାତିକ ମିଶ୍ରଣ ଓ ପ୍ରସ୍ତୁତକାରୀଙ୍କ ସର୍ଜ୍ଜନଶକ୍ତି ଉପରେ ନିର୍ଭରଶୀଳ । ନାଟକ କହିଲେ ଆମେ ତାହାହିଁ ବୁଝିଥାଉ । ତାହା ବହୁଭାବର ସମାହାର । ସେଗୁଡ଼ିକ ସ୍ଥାୟୀଭାବ ରୂପରେ ଆମ ଭିତରେ ଥା'ନ୍ତି । ଭାବଗୁଡ଼ିକର ରୂପ ଗୋଟିଏ ନୁହେଁ ଅନେକ । ମାତ୍ର ଏକ ଅଖଣ୍ଡତାର ଭିନ୍ନଭିନ୍ନ ନାମ, ବହୁର ସଂହତ ଅଭିବ୍ୟକ୍ତି । ସଂଖ୍ୟାରେ ଆଠ । ଶୃଙ୍ଗାର, ବୀର, କରୁଣ, ଅଦ୍ଭୁତ, ହାସ୍ୟ, ଭୟାନକ, ବୀଭତ୍ସ, ରୌଦ୍ର । ପରବର୍ତ୍ତୀ କାଳରେ ଆଚାର୍ଯ୍ୟମାନେ ଏହି ସଂଖ୍ୟାକୁ ବାର ପର୍ଯ୍ୟନ୍ତ ବଢାଇ ଦେଇଛନ୍ତି । ଶାନ୍ତ, ବାତ୍ସଲ୍ୟ, ଭକ୍ତି ଓ ମଧୁର ମିଶିଛି । ଆଚାର୍ଯ୍ୟ ଭରତ

ଭାବ ସହିତ ସେଗୁଡ଼ିକର ରଙ୍ଗ, ଅଧିପତି (ଦେବତା) ଓ ଲକ୍ଷଣ ମଧ୍ୟ ନିର୍ଣ୍ଣୟ କରିଛନ୍ତି । ସେ ସ୍ପଷ୍ଟ କରିଦେଇଛନ୍ତି- ରସ ଏକ ନାନ୍ଦନିକ ଅନୁଭବ, ଆସ୍ୱାଦ୍ୟ ଏବଂ ସ୍ଥାୟୀଭାବଗୁଡ଼ିକର ରୂପାନ୍ତର । ଅର୍ଥାତ୍ ରସ ନିଷ୍ପନ୍ନ ହୁଏ । କେଉଁଠି ନିଷ୍ପନ୍ନ ହୁଏ ? ଦର୍ଶକ ନା ନଟର ହୃଦୟରେ ? ଉତ୍ତରରେ ସେ ଦର୍ଶକ ଓ ନଟ-ଉଭୟଙ୍କ ଚିତ୍ତବୃତ୍ତିକୁ ସ୍ୱୀକାର କରିଛନ୍ତି ।

ଭରତଙ୍କ ରସ-ବିଚାର, ତାଙ୍କ ସମକାଳୀନ କପିଳଙ୍କ 'ସାଂଖ୍ୟ' ଦର୍ଶନର ପ୍ରତିଧ୍ୱନି । କପିଳ ଅନୁଭବ କରିଛନ୍ତି- ଜାଗତିକ ଜୀବନ ଚିରନ୍ତନ ଦୁଃଖମୟ । ମୁକ୍ତି ଆବଶ୍ୟକ । ଦୃଶ୍ୟମାନ ଜଗତ ହେଉଛି ପୁରୁଷ ଓ ପ୍ରକୃତିର ସୃଜନ । ସୃଜନକୁ ନିୟନ୍ତ୍ରଣ କରୁଛି ଆତ୍ମା । ଆତ୍ମା ବହୁ ଭାବ ଓ ଗୁଣର ସମାହାର । ପ୍ରକୃତି, ତ୍ରିଗୁଣାତ୍ମକ । ସତ୍ତ୍ୱ , ରଜ, ତମ, ମୃତ୍ୟୁ, ଦୁଃଖ ଓ ମୋହ ହେଉଛି ସବୁକିଛିର କାରଣ । ତ୍ରିଗୁଣରୁ ସୃଷ୍ଟି । ସୃଷ୍ଟି ହେଉଛି ପଞ୍ଚଭୂତ— କ୍ଷିତି, ଅପ୍, ମରୁତ, ତେଜ, ବ୍ୟୋମର ସମାହାର । ଏମାନଙ୍କ ସଂକ୍ରମଣରୁ ମୁକ୍ତି କ'ଣ ସମ୍ଭବ ? ସହଜ ? ମୁକ୍ତିକୁ ସମ୍ଭବ ଓ ସହଜ କରିଦେବାପାଇଁ ପୁରୁଷ ଓ ପ୍ରକୃତି ସୃଷ୍ଟିକରିଛନ୍ତି ବୁଦ୍ଧି । ବୁଦ୍ଧିକୁ ପୁଞ୍ଜିକରି ମଣିଷ ସୁଖ ଓ ଦୁଃଖର ସକଳ ବନ୍ଧନ ଅତିକ୍ରମ କରିଯାଉଛି । ଆଧ୍ୟାତ୍ମ୍ୟ ଲାଭପାଇଁ ଆପଣାକୁ ଖୋଲିଦେଉଛି ଏବଂ ସେହି ଆକାଂକ୍ଷିତ ଶୀର୍ଷଭୂମିରେ ରହିଗଲା ପରେ ପୁରୁଷ ଓ ପ୍ରକୃତି ମଧ୍ୟରେ ଥିବା ରହସ୍ୟକୁ ସେ ବୁଝିପାରୁଛି । ରଙ୍ଗମଞ୍ଚ ଅନ୍ୟକିଛି ନୁହେଁ, ସର୍ଜନକର୍ମର ଲୀଳାଭୂମି । ଏହି କଥା ବୁଦ୍ଧିବଳରେ ବ୍ୟକ୍ତିକୁ ମୁକ୍ତି-ଅନ୍ୱେଷୀ, ଅଧ୍ୟାତ୍ମ-ଯାତ୍ରୀ କରେ । ସେହି ଆଧ୍ୟାତ୍ମକୁ ଆସ୍ୱାଦିବାକୁ ହେବ ।

ଭରତଙ୍କ ରସତତ୍ତ୍ୱ ବା ରସନିଷ୍ପତ୍ତି ସିଦ୍ଧାନ୍ତ, ବେଶ୍ କେତେଶହ ବର୍ଷଧରି ଭାରତର କବି ଓ ପଣ୍ଡିତମାନଙ୍କର ଆଦର୍ଶ ହୋଇଛି । ମାତ୍ର ଏହାର ଆସ୍ୱାଦନ ଓ ଆଦର୍ଶ ସଂପର୍କରେ ପ୍ରଦତ୍ତ ଉଦାହରଣ (ପଦାର୍ଥ ଓ ନାନାବିଧ ମସଲାର ପ୍ରୟୋଗ)କୁ ପରବର୍ତ୍ତୀ କାଳରେ ଭଟ୍ଟଲୋଲ୍ଲଟ, ଶଙ୍କୁକ ଭଟ୍ଟନାୟକ ଓ ଅଭିନବଗୁପ୍ତ ପ୍ରମୁଖ ଦାର୍ଶନିକ ଗ୍ରହଣ କରିପାରିନାହାନ୍ତି । ବରଂ ପ୍ରଶ୍ନ କରିଛନ୍ତି । ଯୁକ୍ତି— ଏହି ଉଦାହରଣ ରସର ବାହ୍ୟରୂପକୁ ସୂଚିତ କରୁଛି । ତେଣୁ ଏଥିରେ କୌଣସି ବିଶେଷ ଦାର୍ଶନିକ ଜିଜ୍ଞାସା ପ୍ରତୀକିତ ହେଉନାହିଁ । ମାତ୍ର କେଉଁ ଅନ୍ତର୍ଦୃଷ୍ଟି ଆଚାର୍ଯ୍ୟ ଭରତଙ୍କୁ ଏହି ପ୍ରଶ୍ନକରୁଛି, ତାହାର ବିଶଦ ଚର୍ଚ୍ଚା କରିବାରେ ସାହିତ୍ୟବିଦ୍ୟାବିତ୍‌ମାନେ ସମର୍ଥ ହୋଇ ପାରିନାହାଁନ୍ତି । କାରଣ ଲୋଲ୍ଲଟ, ଶଙ୍କୁକ ଓ ଭଟ୍ଟନାୟକଙ୍କ ପରିଚୟ ଅସମାହିତ ଓ ରଚନା ଆଜି ମଧ୍ୟ ଅନାବିଷ୍କୃତ । ତେବେ ସେମାନଙ୍କ ବିଚାର ସଂପର୍କରେ ଅଭିନବଗୁପ୍ତ ଓ ମମ୍ମଟଙ୍କ ପୁସ୍ତକଗୁଡ଼ିକରେ ସ୍ପଷ୍ଟ ସୂଚନା ରହିଛି ।

ଲୋଲ୍ଲଟଙ୍କ ବିଚାର- ରସ ହେଉଛି ସ୍ଥାୟୀ ମାନସିକ ଅବସ୍ଥା । ବିଭାବ ଓ ସଂଚାରୀ

ଭାବ ମାଧ୍ୟମରେ କୌଣସି ରଚନାରେ ସ୍ଥାୟୀଭାବ ବା ସୂକ୍ଷ୍ମ ଅନୁଭବ କ'ଣ ରସ ସୃଷ୍ଟି କରିପାରିବ? ଏହି ପ୍ରଶ୍ନର ଉତ୍ତର ସେ ଦେଇଛନ୍ତି । କହିଛନ୍ତି -କାବ୍ୟ ଓ ନାଟକାଦିର ଚରିତ୍ରମାନଙ୍କ ଭିତରେ ରସଥାଏ । କାରଣ, ସେମାନେ ପ୍ରେମ ବିରହ-ମିଳନ, ଆନନ୍ଦ-ବିଷାଦ, ବୀରତ୍ୱ-ଗ୍ଲାନି ଆଦି ଭାବକୁ ପ୍ରଥମେ ଅନୁଭବ କରିଥାନ୍ତି । ଅଭିନେତା ପରେ କାବ୍ୟ ବର୍ଣ୍ଣିତ ଚରିତ୍ରମାନଙ୍କ ମାନସିକ ଅବସ୍ଥା ଓ ଆଚରଣକୁ ଅନୁସନ୍ଧାନ କରନ୍ତି । ଯାହା ଚେତନା ଓ ସ୍ମୃତିରେ ଥାଏ, ତାହାକୁ ଜଣେ ଖୋଜେ ଏବଂ ନିଜ ଭିତରକୁ ଆଣେ । ଉଦାହରଣ ସ୍ୱରୂପ, ଜଣେ ନଟ ରାମ ଭୂମିକାରେ ଅଭିନୟ କରୁଛନ୍ତି । ସେ ରାମ ଭିତରେ ଥା'ନ୍ତି ରାମଙ୍କୁ ନିଜ ଭିତରକୁ ଆଣନ୍ତି, ଅର୍ଥାତ୍ ରାମଙ୍କୁ ଦେଖିପାରନ୍ତି । ରସ ଅନୁଭବୀ ହୁଅନ୍ତି । ନିଜକୁ ପ୍ରକାଶ କରନ୍ତି । ଅନ୍ୟ ଶବ୍ଦରେ କହିଲେ କବି ଆପଣା ଚରିତ୍ରମାନଙ୍କ ଭିତରେ ଯେଉଁ ଅନୁଭବ/ ବିଚାର ସଂଚାର କରିଥାନ୍ତି, ନଟ ତାହାହିଁ ବ୍ୟକ୍ତ କରନ୍ତି । ଏହା ଉଭୟ (ନଟ ଓ କବିସୃଷ୍ଟି ଚରିତ୍ର)ଙ୍କ ମାନସିକ ଅବସ୍ଥାର ଏକୀକରଣ । ମାତ୍ର ନାଟକର ଗୋଟିଏ ପାର୍ଶ୍ୱରେ ଥା'ନ୍ତି ଲେଖକ/କବି ଓ ଅଭିନେତା ଏବଂ ଅନ୍ୟପାଖରେ ଦର୍ଶକ/ପାଠକ/ଶ୍ରୋତା । ଲୋଲ୍ଲଟଙ୍କ ଚର୍ଚ୍ଚାରେ ଏକଥା ସ୍ପଷ୍ଟ ହୋଇଯାଇଛି ଯେ ସେ ରସକୁ ଅଭିନେତା/ପାଠକ/ଦର୍ଶକ ଓ ନାଟ୍ୟ-ବର୍ଣ୍ଣିତ ଚରିତ୍ରମାନଙ୍କ ମଧ୍ୟରେ ଅନୁଭବ କରିଛନ୍ତି । କହୁଛନ୍ତି, ସକଳ ପ୍ରଚୋଦନା ହେଉଛି ମାନସିକ ପ୍ରବୃତ୍ତି ଚାଳିତ, ତେଣୁ ଅନୁକରଣାତ୍ମକ । ପରିବର୍ତ୍ତନ ହେଉଛି ମାନସିକ ଅବସ୍ଥାର ପରିବର୍ତ୍ତନ । ରସର ତାତ୍ତ୍ୱିକ ବ୍ୟାଖ୍ୟାରେ ଲୋଲ୍ଲଟଙ୍କ ଏହି ବିଚାରକୁ କୁହାଯାଇଛି- 'ଉତ୍ପତ୍ତିବାଦ' । ଅନୁସନ୍ଧାନର ଅଭିବ୍ୟକ୍ତି । ଶୈବ ଦର୍ଶନର 'ଅନୁସନ୍ଧାନତତ୍ତ୍ୱ'ର ଏହା ନାନ୍ଦନିକ ବ୍ୟାଖ୍ୟା ।

ଲୋଲ୍ଲଟଙ୍କ ଏହି ପ୍ରଶ୍ନ, ପୁନଃ ପ୍ରଶ୍ନର କାରଣ ହୋଇଛି । ଏଥରର ପ୍ରଶ୍ନକର୍ତ୍ତା ଶଙ୍କୁକ ତାଙ୍କ ପ୍ରଶ୍ନ ନାଟକ/କାବ୍ୟର ଗୋଟିଏ ପାଖରେ ଥାନ୍ତି ଲେଖକ/କବି ଓ ଅଭିନେତା ଏବଂ ଅନ୍ୟପାଖରେ ଥା'ନ୍ତି ଦର୍ଶକ/ପାଠକ/ଶ୍ରୋତା । ରସ ସୃଷ୍ଟିରେ ଏମାନଙ୍କ ଭୂମିକା ସଂପର୍କରେ ଲୋଲ୍ଲଟ ସ୍ପଷ୍ଟ କରିପାରିନାହାଁନ୍ତି । ଏହି ପ୍ରଶ୍ନର ଉତ୍ତର ଦେବା କାଳରେ ସେ ପ୍ରଥମେ ଦର୍ଶକମାନଙ୍କୁ ପକ୍ଷଭୁକ୍ତ କରିଛନ୍ତି । ତାଙ୍କ ଯୁକ୍ତି -ନାଟକ ଏକ ରଙ୍ଗମଞ୍ଚରେ ପ୍ରଦର୍ଶିତ ହୁଏ । ଏଥିରେ ଅଭିନେତା ଓ ଅନ୍ୟ ସହଯୋଗୀମାନଙ୍କ ଜୀବନ୍ତ ଓ ପ୍ରଭାବଶାଳୀ ଅଙ୍ଗଚାଳନା; ଭାବଧର୍ମୀ ଗୀତ, ସଂଳାପ, ନୃତ୍ୟ ଓ ବାଦ୍ୟକୁ ଦର୍ଶକମାନେ ପ୍ରାଣଭରି ଉପଭୋଗ କରୁଥାନ୍ତି । ସେମାନେ ବେଳେବେଳେ ଏତେ ମାତ୍ରାରେ ମଞ୍ଚମନସ୍କ ହୋଇଯାଇଥାନ୍ତି ଯେ ମଞ୍ଚ ଯେ ବାସ୍ତବ ନୁହେଁ, ବାସ୍ତବର ଅନୁକରଣ, କୃତ୍ରିମ- ଏହି ସତ୍ୟକୁ ସେମାନେ ପ୍ରାୟତଃ ପାସୋରି ଦେଇଥାନ୍ତି । ଅର୍ଥାତ୍ ନଟ ଓ ନାଟ୍ୟ ଚରିତ୍ରଙ୍କୁ ଦର୍ଶକ ଭୁଲିଯାଇଥାଏ । ବାସ୍ତବତା ଅନୁଭବର ଭୂମି

ହୋଇଯାଏ ମଞ୍ଚ । ଏହି ତତ୍ତ୍ୱକୁ ସେ ଏକ ଉଦାହରଣ ମାଧ୍ୟମରେ ସ୍ପଷ୍ଟ କରିଦେଇଛନ୍ତି । ସାହିତ୍ୟ ସଂରଚନାର ଏହି ତତ୍ତ୍ୱ 'ଚିତ୍ର ତୁରଗ-ନ୍ୟାୟ' ନାମରେ ପରିଚିତ । ତାହା ଏହିପରି : ଜଣେ ଘୋଡ଼ାର ଚିତ୍ରଟିଏ ଦେଖିଲେ । ସେ ଚିତ୍ର ଘୋଡ଼ାକୁ ଜୀବନ୍ତ ଘୋଡ଼ା ବୋଲି ଅନୁଭବ କରିପାରିବେ କି ? ଘୋଡ଼ା ନୁହେଁ ବୋଲି ମଧ୍ୟ କହିପାରିବେ ନାହିଁ । କାରଣ ଯାହା ଘୋଡ଼ା ପରି ଦିଶୁଛି, ତାହା ଅନ୍ୟ ଜୀବର ଭ୍ରମ ସୃଷ୍ଟି କରିବା ସମ୍ଭବ ନୁହେଁ । ଘୋଡ଼ା ଅଙ୍କାଯାଇଛି ବା ତିଆରି ହୋଇଛି । ଉପାଦାନ- ମାଟି, କାଠ, ପଙ୍କ ଓ ରଙ୍ଗ । ଚିତ୍ରକୁ ଦେଖିଲେ -ଉପାଦାନଗୁଡ଼ିକ ଦିଶନ୍ତି ନାହଇଁ । ଘୋଡ଼ା ଦିଶେ । ଏହା ବୋଲି ଉପାଦାନଗୁଡ଼ିକୁ ଆମେ ମିଛ ବୋଲି କହିପାରିବା କି ?

ଶଙ୍କୁକ ରସତତ୍ତ୍ୱକୁ ଏହି ଚିତ୍ର ମାଧ୍ୟମରେ କିପରି ଆଲୋକିତ କରିଛନ୍ତି— ତାହା ବିଚାର୍ଯ୍ୟ । କହିଛନ୍ତି- ଜଣେ ଅଭିନେତା ନାଟ୍ୟ ବର୍ଣ୍ଣିତ ଚରିତ୍ର (ମାନଙ୍କ) ଭିତରକୁ ପ୍ରବେଶ କାଳରେ ନିଜ ସତ୍ତା (ଅହଂ) ସଂପର୍କରେ ସଚେତନ ଥା'ନ୍ତି । ଏବଂ ଆପଣାର ପ୍ରତିଭା ବଳରେ ସେ ଅନୁପ୍ରବେଶ କରନ୍ତି ଅନ୍ୟସତ୍ତା ଭିତରକୁ । ମାତ୍ର ସଂପୂର୍ଣ୍ଣ ମିଶାଇ ଦିଅନ୍ତିନାହିଁ । ଅଭିନେତାଙ୍କର ଅନ୍ୟ କାୟା- ପ୍ରବେଶଜନିତ ଅନୁଭବ, ଅଭିନୟକୁ ଶକ୍ତିଶାଳୀ କରେ । ଅର୍ଥାତ୍ ଅଭିନେତା (ନଟ)ର ହୃଦୟ ହେଉଛି ରସ ଉତ୍ପତ୍ତିର କ୍ଷେତ୍ର । ଉଭୟ (ଅଭିନେତା ଓ ନାଟ୍ୟଚରିତ୍ର)ଙ୍କ ସଂପର୍କ କିପରି ତାହା ଜାଣିବାପାଇଁ ଶଙ୍କୁକ, 'ଅନୁମିତି' ଶବ୍ଦ ପ୍ରୟୋଗ କରିଛନ୍ତି । ଭାରତୀୟ ସମୀକ୍ଷାଶାସ୍ତ୍ରରେ ଏହି ସିଦ୍ଧାନ୍ତ 'ଅନୁମିତବାଦ' । ଆମେ ରଙ୍ଗମଞ୍ଚରେ ଯାହା ଦେଖୁ ତାହା ବାସ୍ତବ ନୁହେଁ; ମାନସିକ ଅବସ୍ଥାର ଅନୁକୃତି, ତେଣୁ ରସ । କୌଣସି ଏକ କାରଣ ବ୍ୟକ୍ତିର ଚିତ୍ତବୃତ୍ତିକୁ ଉତ୍ତେଜିତ କଲେ ସେ ଗତିକରେ । ନଟ ଅଭିନୟ ମାଧ୍ୟମରେ ଦର୍ଶକମାନଙ୍କ ଚିତ୍ତକୁ ଏପରି ରୂପାନ୍ତର କରିଦେଇଥାନ୍ତି, ଅଭିନୟ ଯେ କୃତ୍ରିମ, ଅବାସ୍ତବ - ସେମାନେ ଏକଥା ଜାଣିପାରନ୍ତି ନାହିଁ ଏବଂ, ନାଟ୍ୟଚରିତ୍ରମାନଙ୍କ ସହିତ ଏକାତ୍ମ ହୋଇଯାଇଥାନ୍ତି ।

ମାତ୍ର ମଜାକଥା, ଏହି ସିଦ୍ଧାନ୍ତର ମଧ୍ୟ ଅପବାଦ (ଦୁର୍ବଳତା) ରହିଛି । କୁହାଯାଇଛି- ବୋଧଗମ୍ୟତା ବା ଉପଲବ୍ଧି ସବୁକାଳରେ ପ୍ରତ୍ୟକ୍ଷ । ତେଣୁ ଯାହା ଅନୁମାନ ତାହା ଉପଲବ୍ଧି ବା ଅନୁଭବ ହେବା କ'ଣ ସମ୍ଭବ ? ତାହା ତ ବୋଧଶକ୍ତି ଆଧାରିତ ନୁହେଁ । ଏହି କଥାକୁ ସହଜ ଭାବରେ କହିଲେ, ଜଣେ ଅନ୍ୟ ଜଣଙ୍କୁ ଦେଖିଲେ, ଶୁଣିଲେ ତାଙ୍କୁ ପୂର୍ଣ୍ଣତଃ ଅନୁଭବରେ ଧରି ରଖିପାରିବାରେ ସମର୍ଥ ହୋଇପାରିବ କି ? ଏହି ଅନ୍ୟଜଣଙ୍କର ଆଚରଣ ଛଳନା ବା ମାୟା ମଧ୍ୟ ହୋଇପାରେ ? ତେଣୁ କୁହାଯାଇଛି- ଅନୁମାନ ଆଧାରିତ ଜ୍ଞାନ ବା ଯାହା ଦିଶେ, ତାହାକୁ 'ସତ୍ୟ' ଅଥବା 'ପୂର୍ଣ୍ଣ' ମାନିନେବା ତଥାପି ପ୍ରଶ୍ନ ହୋଇ ରହିଯାଏ । ସେହି

ନ୍ୟାୟରେ ଆମେ ରସ ସଂକ୍ରାନ୍ତ ଅବବୋଧ ବା ଧାରଣାକୁ 'ଅନୁମାନ' -ପ୍ରକ୍ରିୟାକୈନ୍ଦ୍ରିକ (ଚିତ୍ର ହିଁ ପ୍ରକୃତ ଘୋଡ଼ା) ବୋଲି ମାନିନେବା ଅସହଜ ମନେହୁଏ । ସେ ପୁଣି ସ୍ପଷ୍ଟ କରିଦେଇଛନ୍ତି । ଅନୁକରଣ ଓ ଅନୁମାନ ଏକାକଥା ନୁହେଁ । ବାସ୍ତବ ସତ୍ୟକୁ ଅନୁମାନ ମାଧ୍ୟମରେ ହିଁ ଅନୁଭବ ଓ ପୁନଃଉପସ୍ଥାପନ କରାଯାଇପାରିବ । ଅନୁମାନ ମାଧ୍ୟମଦେଇ ଆମେ ମାନସିକ ଅବସ୍ଥାକୁ ଅନୁକରଣ କରୁ ଏବଂ ଅନୁମାନ ସବୁକାଳରେ ବସ୍ତୁନିଷ୍ଠ ହେବା ଆବଶ୍ୟକ । କାରଣ ଅନୁମାନ ଏକ ମାନସିକ ଅବସ୍ଥା । ଆଭିମୁଖ୍ୟ ସ୍ପଷ୍ଟ ହୋଇଗଲେ, ଅନୁମାନ ଭୁଲ୍ ହେବନାହିଁ । କାରଣ ଦର୍ଶକ/ପାଠକ ଜାଣେ, ସେ ଯାହା ଦେଖୁଛି ବା ପଢୁଛି, ନିଜେ ତାହା ନୁହେଁ । ସେ ଜଣେ ସ୍ୱତନ୍ତ୍ର ସତ୍ତା । ନିଜ ଦୃଷ୍ଟି ମାଧ୍ୟମ ଦେଇ ସେ ସୌନ୍ଦର୍ଯ୍ୟ ଜଗତରେ ବିଚରଣ କରୁଛି । ଘୋଡ଼ା ଏକ ଜୀବ ବିଶେଷ । ମାତ୍ର ଘୋଡ଼ାର ଛବି ସେହି ଜୀବର କଳାରୂପ । ଦୁଇଟି (ଜୀବନ୍ତ ଘୋଡ଼ା ଓ ଚିତ୍ର ଘୋଡ଼ା)ଏକ ହୋଇ ପାରିଲେ, ଅଭିବ୍ୟକ୍ତି ଚିତ୍ତ ପ୍ରସାଦକ ହେବ । ଏହି ଅନୁଭବକୁ ବ୍ୟାଖ୍ୟା କରିହେବ ନାହିଁ ।

ଏଠାରେ ଶଙ୍କୁକ ନଟ ଓ ଦର୍ଶକଙ୍କ ମଧ୍ୟରେ ସଂପର୍କର କଥା କହୁଛନ୍ତି ।ଦର୍ଶକ ମଞ୍ଚରେ ନାଟକ ଦେଖୁଛି ଏବଂ ତାହା ବାସ୍ତବ ପରି ଲାଗୁଛି । ବାସ୍ତବତା ହେଉଛି, ଅନୁମାନ ଆଧାରିତ ମାନସିକ ଅବସ୍ଥା, ଅନୁକରଣ ନୁହେଁ । ଅଭିନେତା ବାସ୍ତବତାର କଳାରୂପ ତିଆରି କରୁଛି । କଳାରୂପ ହେଉଛି ସାଦୃଶ୍ୟବୋଧ, ପ୍ରତ୍ୟକ୍ଷ ନୁହେଁ, ଦର୍ଶକ ଭିତରେ ଥାଏ । ନଟ ଓ ଦର୍ଶକଙ୍କ ଭିତରେ ସାଦୃଶ୍ୟବୋଧ, କିପରି କ୍ରିୟାଶୀଳ, ତାହା ବିଚାର୍ଯ୍ୟ । ଉଦାହରଣ ସ୍ୱରୂପ : ନଟ ରାମଙ୍କ ଭୂମିକାରେ ଅଭିନୟ କରୁଛନ୍ତି । ସେ କ'ଣ ରାମ ହୋଇଯାଇ ପାରିବେ ? ଦର୍ଶକ ମଧ୍ୟ ଜାଣିଥାଏ ସେମାନେ ରାମ ରୂପରେ ଯେଉଁ ଚରିତ୍ରଙ୍କୁ ଦେଖୁଛନ୍ତି, ସେ ରାମ ନୁହଁନ୍ତି । ସେ ଜଣେ ସ୍ୱତନ୍ତ୍ର ସତ୍ତା । ପୁଣି ରାମ ନୁହଁନ୍ତି ବୋଲି କହିପାରୁନାହାଁନ୍ତି ।ତେଣୁ ମଞ୍ଚରେ ରାମଙ୍କ ଆଚରଣ ଦେଖି ଦର୍ଶକମାନେ ଉତେଜିତ ହେବେ କାହିଁକି ? ସେମାନେ ଆପଣା ଦୃଷ୍ଟି ଓ ଅବବୋଧ ମାଧ୍ୟମରେ ସୌନ୍ଦର୍ଯ୍ୟ ଜଗତରେ ବିଚରଣ କରୁଥାନ୍ତି । ଅନ୍ୟ ଏକ ଉଦାହରଣ ଦିଆଯାଉ । ଦର୍ଶକ ଦେଖିଲେ ଅଭିନେତା ପିଉଛନ୍ତି । ଦୁଧ, ପାଣି କି ମଦ-ଯାହାବି ହୋଇପାରେ । ନଟ ଅଳଙ୍କାର ପିନ୍ଧିଛନ୍ତି । ତାଙ୍କ ପାଇଁ ତାହା ପଦାର୍ଥ ନୁହେଁ, ମାନସିକ ଅବସ୍ଥା ଉଦ୍ରେକକାରୀ ବିଭବ । ମାତ୍ର ଦର୍ଶକକୁ ଦିଶୁଛି ଅଳଙ୍କାର । ତେଣୁ ନଟ ହିଁ କଳାର ସ୍ରଷ୍ଟା ଏବଂ ଅଭିନୟ ବାସ୍ତବତାର ଅନୁକୃତି । ତାହା ବାସ୍ତବତାର ଅନୁକୃତି ଭିନ୍ନ ଅନ୍ୟ କିଛି ହୋଇପାରିବ ନାହିଁ । ମାତ୍ର ଅନୁକୃତି ସବୁକାଳରେ ପରିବେଶ ଓ ପରିସ୍ଥିତି ନିର୍ଭର । ଏହି ବିଚାରକୁ ସ୍ପଷ୍ଟ କରିଦେବାପାଇଁ ସେ ଗୋବରପୋକ ସହିତ ଗୋବରର ସଂପର୍କକୁ

ଉଦାହରଣ କରିଛନ୍ତି । ଗୋବର ଭିତରୁ ପୋକ ବାହାରେ । ମାତ୍ର ତା ଭିତରେ ପୋକ କେଉଁଠି ଓ କିପରି ଥାଏ, ତାହା ଜାଣି ହୁଏନାହିଁ । ଅନୁକୂଳ ପରିବେଶ ପାଇଲେ ଅଦୃଶ୍ୟ ପୋକ ଆଖିରେ ଧରାଦିଏ । ଜଣେ କଳାକାର ଅନୁମାନ ଶକ୍ତିରେ ନାଟ୍ୟ ବର୍ଣ୍ଣିତ ଚରିତ୍ରକୁ ଆବିଷ୍କାର କରେ । ଅର୍ଥାତ୍, ଦୃଶ୍ୟରୂପରୁ ଗୋପନୀୟତାକୁ, ଅନ୍ୟ ଶବ୍ଦରେ କହିଲେ ଗୁଣସୂତ୍ରକୁ, ବୁଝିବାକୁ ଚେଷ୍ଟାକରେ । ତେଣୁ ଆମେ ରଙ୍ଗମଞ୍ଚରେ ଯେଉଁମାନଙ୍କ ରୂପ ଓ ଆଚରଣକୁ ଦେଖୁ - ତାହା ଅନୁମାନ, କାର୍ଯ୍ୟ କାରଣ ଆଧାରିତ । ସେହି ନ୍ୟାୟରେ, ରସ ହେଉଛି ଏକ ବିଚାର (ସିଦ୍ଧାନ୍ତ), ଚେତନର ଅଭିବ୍ୟକ୍ତି । ଅନ୍ୟ କୌଣସି କନ୍‌ସସ୍‌ନେସ୍ ସହିତ ତାହା ତୁଳନୀୟ ନୁହେଁ । ଆମେ ଯାହାକୁ ସ୍ଥାୟୀଭାବ କହୁ ତାହା ନଟର ଅନୁମାନ ସୃଷ୍ଟ ତାହା ବାସ୍ତବ ନୁହେଁ, ତେଣୁ ରସ, ଅର୍ଥାତ୍, ରସ ସ୍ଥାୟୀଭାବକୁ ଅନୁକରଣ କରେ । ଅନୁକୃତି ସହିତ ପ୍ରତ୍ୟକ୍ଷ ସଂପର୍କ/ଅବବୋଧ ନଥିଲେ; ଜଣେ ଯାହା ନୁହେଁ, ତାହା କିପରି କହିବ ? ତେଣୁ ନଟର ଅଭିନୟ ବସ୍ତୁଗତ ନୁହେଁ, ଭାବଗତ ଅଭିବ୍ୟକ୍ତି ।

ଶଙ୍କୁକଙ୍କ ବିଚାର ବହୁଭାବରେ ନ୍ୟାୟଦର୍ଶନର ପ୍ରତିଧ୍ୱନି ପରି ମନେହୁଏ । ନ୍ୟାୟଦର୍ଶନର ପ୍ରବକ୍ତା ଗୌତମ, ଅନ୍ୟନାମ ଅକ୍ଷପାଦ (ଯିଏ ପାଦ ଉପରେ ଆଖିରଖି ଚାଲୁଥାନ୍ତି) ଏବଂ ତାଙ୍କ ଗ୍ରନ୍ଥ 'ନ୍ୟାୟସୂତ୍ର' । ନ୍ୟାୟଦର୍ଶନ ପ୍ରତ୍ୟେକ କାର୍ଯ୍ୟର କାରଣ ଖୋଜେ । ଅର୍ଥାତ୍ ଆମେ ଯାହା ଦେଖୁ, ତାହାକୁ ସହଜରେ ବିଶ୍ୱାସ କରିବା ଉଚିତ୍ ନୁହେଁ; ତାହା ତର୍କ, ବିଚାର ଓ ବୋଧଶକ୍ତି ଆଧାରିତ । ଅନ୍ୟଭାରତୀୟ ଦାର୍ଶନିକମାନଙ୍କ ପରି ଗୌତମ ମଧ୍ୟ ମୁକ୍ତିର କଥା କହିଛନ୍ତି । ତାଙ୍କ ମୁକ୍ତିଲାଭର ମାର୍ଗ କିନ୍ତୁ, ଏତେ ସହଜ ନୁହେଁ । ଷୋହଳ ସ୍ତରବିଶିଷ୍ଟ: ଯଥା- ପ୍ରମାଣ, ପ୍ରମେୟ, ସଂଶୟ, ପ୍ରୟୋଜନ, ଦୃଷ୍ଟାନ୍ତ, ଅବୟବ, ତର୍କ, ନିର୍ଣ୍ଣୟ, ବାଦ, ଜଳ୍ପ, ହେତ୍ୱାଭାବ, ଛଳ ଜାତି, ନିଗ୍ରହ । ଏହି ସକଳ ସ୍ତରର ଉତ୍ତରଣହିଁ ଯଥାର୍ଥ ଜ୍ଞାନ । ମାତ୍ର ସବୁଠାରୁ ଗୁରୁତ୍ୱପୂର୍ଣ୍ଣ କଥା, କୌଣସି ସିଦ୍ଧାନ୍ତରେ ପହଞ୍ଚିବାପାଇଁ ଗୌତମ ବାକ୍ୟୋବାକ୍ୟ ବା ବିତର୍କ (ଗ୍ରୀକ୍ ଦର୍ଶନରେ ଡାଇଲେକ୍‌ଟିକ୍‌ସ) ନିର୍ଭର ହୋଇଛନ୍ତି । ଏବଂ ଉପର୍ଯ୍ୟୁକ୍ତ ବିଚାର ଆଧାରରେ ଧର୍ମ, ସମାଜ, ଶାସନବ୍ୟବସ୍ଥା ନୁହେଁ; ଶବ୍ଦ ଶବ୍ଦଗଠନ, ବାକ୍ୟଗଠନ, ବାଚ୍ୟାର୍ଥ ଓ ଅର୍ଥ ଅବବୋଧ ଆଦି ନାନା ପ୍ରସଙ୍ଗର ଗୁଣସୂତ୍ର ଆବିଷ୍କରଣ ପାଇଁ ଏହି ଦର୍ଶନ ମଧ୍ୟ ଭୂମି ପ୍ରସ୍ତୁତ କରିଛି । ତେଣୁ ଶଙ୍କୁକଙ୍କ ରସମର୍ମ ଅନୁସନ୍ଧାନ ମାନସିକତାକୁ ଗୌତମ ପ୍ରେମର ପ୍ରଭାବ ବୋଲି କହିଲେ ଭୁଲ୍ ହେବନାହିଁ ।

ଶଙ୍କୁକଙ୍କ ପରବର୍ତ୍ତୀକାଳୀନ ଦୁଇଜଣ ଶକ୍ତିଶାଳୀ ରସତତ୍ତ୍ୱବିଦ୍ ଭଟ୍ଟନାୟକ (୯୩୫-୯୮୫) ଓ ଅଭିନବଗୁପ୍ତ (୯୫୦-୧୦୨୦) । ଏହି ଦୁହିଁଙ୍କ ମଧ୍ୟରେ ଭଟ୍ଟନାୟକ ପୂର୍ବଜ ।

ମାତ୍ର ଉଭୟଙ୍କ ମଧ୍ୟରେ କେତେକ କ୍ଷେତ୍ରରେ ବିଚାରଗତ ସାଦୃଶ୍ୟ ରହିଛି । ସେମାନେ ରସକୁ ବ୍ରହ୍ମବିଦ୍ୟା ଓ ଦର୍ଶନ ଆଧାରରେ ଚର୍ଚ୍ଚା କରିଛନ୍ତି । ରସକୁ ଗ୍ରନ୍ଥ କି ଅଭିନୟ ମାଧ୍ୟମରେ ନୁହେଁ, ଦର୍ଶକ/ପାଠକଙ୍କ ବ୍ୟକ୍ତିସତ୍ତାର 'ଅହଂ'ରେ ଅନୁଭବ କରିଛନ୍ତି- ରସାନୁଭୂତି ପ୍ରାପକ ବା ଜାଗତିକ ଆନନ୍ଦର ପ୍ରସଙ୍ଗ ନୁହେଁ; ରଙ୍ଗମଞ୍ଚ ବା କାବ୍ୟ, ଜଣେ ଦର୍ଶକ ବା ପାଠକର ଚେତନାରେ ଦିବ୍ୟାନନ୍ଦର ଚମକ ସୃଷ୍ଟିକରେ । ଏହି ଚମକ ତାକୁ ବସ୍ତୁଜଗତରୁ ଏକ ଅଚିନ୍ତ୍ୟ ଜଗତ ଆଡ଼କୁ ଉତ୍ତୋଳିତ କରିନିଏ । ଆତ୍ମଦର୍ଶନ କରାଏ । ତେଣୁ ରସାନୁଭବର ଅନ୍ୟ ପରିଭାଷା 'ସ୍ୱରୂପାନନ୍ଦ' । ଭଟ୍ଟନାୟକଙ୍କ ଭାଷାରେ- ତାହା ଜଣେ ଯୋଗୀର ଆତ୍ମସାକ୍ଷାତ୍କାର ଅନୁଭବର ଅନୁରୂପ ।

କୁହାଯାଏ, ଭଟ୍ଟନାୟକ ହେଉଛନ୍ତି ରସାନୁଭବ ପ୍ରସଙ୍ଗର ମନସ୍ତାତ୍ତ୍ୱିକ ବାଖ୍ୟାକାର । ତାଙ୍କ ବିଚାରର ଗ୍ରନ୍ଥରୂପ 'ହୃଦୟଦର୍ପଣ' । ଏହି ଗ୍ରନ୍ଥକୁ ଅଳଙ୍କାର ଶାସ୍ତ୍ରବିତ୍‌ମାନେ ଭାମହଙ୍କ କାବ୍ୟପ୍ରକାଶର ବ୍ୟାଖ୍ୟାଗ୍ରନ୍ଥ ବୋଲି କହିଥାନ୍ତି । ଏଥିରେ ସେ କାବ୍ୟ, ଶାସ୍ତ୍ର ଓ ଆଖ୍ୟାନ ମଧ୍ୟରେ ସୂକ୍ଷ୍ମ ପାର୍ଥକ୍ୟକୁ ସ୍ପଷ୍ଟ କରିଦେଇଛନ୍ତି । 'ଶାସ୍ତ୍ର' 'ଆଖ୍ୟାନ' ଏବଂ 'କାବ୍ୟ' ହେଉଛି, ଯଥାକ୍ରମେ 'ଶବ୍ଦପ୍ରଧାନ', 'ଅର୍ଥପ୍ରଧାନ,' ଓ 'ବ୍ୟାପାରପ୍ରଧାନ' (ଅଭିଧାପ୍ରଧାନ) । କାବ୍ୟ ଶାସ୍ତ୍ର କି ଆଖ୍ୟାନ ନୁହେଁ; କବିର ଅଭିବ୍ୟକ୍ତି ହେଉଛି ଭାବକତ୍ୱ ବ୍ୟାପାର ବା ଭାବପ୍ରଧାନ । ଗୁଣ ଓ ଅଳଙ୍କାର ମାଧ୍ୟମରେ କାବ୍ୟ ହୃଦ୍ୟ ଓରମଣୀୟ ହୋଇଥାଏ ଏବଂ ଏକ ସୃଷ୍ଟି ବ୍ୟକ୍ତିକୁ କ୍ରମଶଃ ମହତ୍ତମ ସତ୍ତା ସହିତ ସଂଯୁକ୍ତ କରିଦିଏ ।

ମାତ୍ର ପ୍ରଶ୍ନଉଠେ, ଜଣେ ଦର୍ଶକ/ପାଠକ ପକ୍ଷରେ ଆତ୍ମମୁକ୍ତି ଓ ପରମାତ୍ମା-ସଂପୃକ୍ତି - ଯାତ୍ରା କ'ଣ ସମ୍ଭବ ? ଭଟ୍ଟନାୟକ 'ଭାବକତ୍ୱ' ଶବ୍ଦ ମାଧ୍ୟମରେ ଏହି ପ୍ରଶ୍ନର ସହଜ ସମାଧାନ କରିଛନ୍ତି । 'ଭାବକତ୍ୱ'ର ଅନ୍ୟ ପରିଭାଷା ସାଧାରଣୀକରଣ । ରସାନୁଭବରେ 'ଭାବକତ୍ୱ' ହିଁ ପ୍ରକୃତ ଚାବିକାଠି । ସାଧାରଣୀକରଣର ଅର୍ଥ-ଅସାଧରଣ, ଅଶ୍ରବ୍ୟ, ଅଦୃଶ୍ୟକୁ ଯଥାକ୍ରମେ ସାଧାରଣ, ଶ୍ରବ୍ୟ ଓ ଦୃଶ୍ୟମାନ କରିବା ପ୍ରକ୍ରିୟା । ଆମେ ଜାଣୁ, କୌଣସି ଗ୍ରନ୍ଥର ସ୍ରଷ୍ଟା ଗ୍ରନ୍ଥର ଚରିତ୍ର ଏବଂ ଉପଭୋକ୍ତା ପ୍ରତ୍ୟକ୍ଷ ଜଣେ ଜଣେ ବ୍ୟକ୍ତି; ପରସ୍ପର ଠାରୁ ଭିନ୍ନ, ତେଣୁ ସ୍ୱତନ୍ତ୍ର ସତ୍ତା । ମାତ୍ର ସର୍ଜନପ୍ରକ୍ରିୟାର କୁହୁକ ସକଳଙ୍କୁ ଯେପରି ଏକ -ଘଟାଶ୍ରୟୀ କରିଦିଏ । ଯାହା ଅସାଧାରଣ/ଅସମ୍ଭବ ଲାଗୁଥିଲା, ତାହା ସାଧାରଣ /ସମ୍ଭବ ହୋଇଯାଏ । ପ୍ରତ୍ୟେକ ସ୍ଥାନ, କାଳ ଓ ଅହଂର ସଂକ୍ରମଣରୁ ମୁକ୍ତ ହୋଇଯାନ୍ତି । ଅର୍ଥାତ୍, ମଣିଷ ହୋଇଯାନ୍ତି ଏପରି ମଣିଷ, ତାକୁ ପୃଥିବୀର ଯେକୌଣସି ସ୍ଥାନ ଓ କାଳରେ, ସମଭାବରେ ଅନୁଭବ କରାଯାଇପାରିବ । ଏହି ସ୍ଥାନ ଓ କାଳୋତ୍ତୀର୍ଣ୍ଣ ମଣିଷର କଥା କହିବାବେଳେ, ଭଟ୍ଟନାୟକ ନିଶ୍ଚିତ ଭାବରେ ତାଙ୍କ

ଦୁଇ ପାଖରେ, ଦୁଇ ପ୍ରକାରର ମଣିଷଙ୍କୁ ଦେଖିଥିବେ । ଗୋଟିଏ ପାଖରେ ଆପଣା ଅହଂଚାଳିତ ବ୍ୟକ୍ତିସତ୍ତା ଦର୍ଶକ ଏବଂ ଅନ୍ୟପାଖରେ ଅଭିନେତା ଓ ଗ୍ରନ୍ଥବର୍ଣ୍ଣିତ ଚରିତ୍ର । ସେମାନଙ୍କ ଭିତରେ ପୁଣି କ୍ରିୟାଶୀଳ କାରୁଣ୍ୟ, ଯନ୍ତ୍ରଣା ଓ ଅଭାବବୋଧର ଅନୁଭବ । ମାତ୍ର ସେ ବିଶ୍ୱାସ କରିଛନ୍ତି ଯେ, ଜୀବନର ସକଳ ଅନୁଭବ- କାରୁଣ୍ୟ, ପ୍ରେମ, ବୀରତ୍ୱ ଇତ୍ୟାଦି ସବୁକିଛି -ଏକ ନିର୍ଦ୍ଦିଷ୍ଟ ସମୟରେ ଆନନ୍ଦରେ ରୂପାନ୍ତରିତ ହୋଇଯାଏ । ବ୍ୟକ୍ତି/ଦର୍ଶକ ସକଳ କାରୁଣ୍ୟକୁ ଭୁଲିଯାଏ । ଯେପରି ଏକ ଭାବମୟ ପିଣ୍ଡ । ଏବଂ ତା ପିଣ୍ଡ ଭିତରେ ସଂସାରର ସବୁକାଳର ମଣିଷମାନଙ୍କ ବର୍ତ୍ତମାନ ।

ରସାନୁଭୂତି ବିଶ୍ଳେଷଣ ପ୍ରସଙ୍ଗରେ ଭଞ୍ଜନାୟକ ମୁଖ୍ୟତଃ ତିନିଗୋଟି ପ୍ରସଙ୍ଗ ଉପରେ ପ୍ରାଧାନ୍ୟ ଦେଇଛନ୍ତି, ଯଥା: ଅଭିଧା (ଭାଷାର ପ୍ରକାର୍ଯ୍ୟ), ଭାବକତ୍ୱ (ସାଧାରଣୀକରଣ) ଏବଂ ଭୋଜକତ୍ୱ (ଗ୍ରହଣଶୀଳତା) । ଅଭିଧା ଭାଷିକ ଅଭିବ୍ୟକ୍ତିକୁ ବୁଝାଏ । ଭାବକତ୍ୱ ସାଧାରଣ ଅଭିବ୍ୟକ୍ତି ଓ କାବ୍ୟିକ ଅଭିବ୍ୟକ୍ତି ମଧ୍ୟରେ ଥିବା ପାର୍ଥକ୍ୟର ସୂଚକ । ଏହା ସବୁଠାରୁ ଗୁରୁତ୍ୱପୂର୍ଣ୍ଣ । ଭୋଜକତ୍ୱ ବା ଭୋଗ ଗ୍ରାହକର ମନୋଭାବ ଓ ପରିବେଶ ସହ ସଂପୃକ୍ତ । ଦାର୍ଶନିକ ପରିଭାଷାରେ ଏହା ଭୁକ୍ତିବାଦ । ଭୋଗ କହିଲେ, ମୁଁ ସଂପର୍କିତ ଅବବୋଧ । 'ମୁଁ'ର ପ୍ରତିବିମ୍ବ ବ୍ୟକ୍ତି । ସେ ବସ୍ତୁକୁ ଭଲପାଏ । କାରଣ ବସ୍ତୁ ଭୋଗର ସାମଗ୍ରୀ ମୋପାଇଁ ଉଦ୍ଦିଷ୍ଟ । ମାତ୍ର ନାନ୍ଦନିକ ଅବବୋଧ ଭୋଗକୈନ୍ଦ୍ରିକ ନୁହେଁ, ଭୋଗମୁକ୍ତିର ପ୍ରସଙ୍ଗ । ଜଣେ ଯଦି କୌଣସି କଳାକର୍ମ ଭିତରେ ନିଜକୁ ଦେଖେ, ସେ ବାସ୍ତବ ଆନନ୍ଦଲାଭରୁ ବଞ୍ଚିତ ହୋଇଯାଏ । ଏଥିପାଇଁ ତାଙ୍କୁ ନଟ ମାଧ୍ୟମରେ ନାୟକର ମାନସିକ ଓ ଶାରୀରିକ ଅବସ୍ଥା ସହ ଏକାତ୍ମ ହେବାକୁ ପଡ଼େ । କୌଣସି କଳା ବ୍ୟକ୍ତିକ ଅନୁଭବ ନୁହେଁ । ସୌନ୍ଦର୍ଯ୍ୟାନୁଭବର ପ୍ରସଙ୍ଗ । ଏହା ନିର୍ଦ୍ଦିଷ୍ଟ ଆଧାର, ସ୍ଥାନ କି କାଳରେ ନଥାଏ । ସର୍ବବ୍ୟାପ୍ତ । ଜଣେ ଯେତେବେଳେ ନାଟକ ଦେଖେ ତା ବ୍ୟକ୍ତିକ ଜୀବନବୋଧ, ଅଭିନେତା ଓ କାବ୍ୟଚରିତ୍ର - ପ୍ରତ୍ୟେକ ଗୋଟିଏ ବିନ୍ଦୁରେ ମିଳିତ ହୋଇଯାନ୍ତି । ଭଞ୍ଜନାୟକଙ୍କର ଏହି ବିଚାର ହେଉଛି ବେଦାନ୍ତ ଦର୍ଶନର ପ୍ରତିଧ୍ୱନି । ବେଦାନ୍ତ ଦର୍ଶନ- ଦୃଶ୍ୟମାନ ପ୍ରକୃତି, ମଣିଷ (ଆତ୍ମା) ଓ ଈଶ୍ୱର (ପରଂବ୍ରହ୍ମ)ଙ୍କ ସ୍ଥିତି ସଂପର୍କରେ ଚର୍ଚ୍ଚା କରିଛି । ଈଶ୍ୱର ପରମବ୍ରହ୍ମ ସତ୍ୟ, ଚେତନା, ଆନନ୍ଦ; ସୃଷ୍ଟି, ସ୍ଥିତି ଓ ପ୍ରଳୟର କାରଣ । ମାତ୍ର ମୋହମୁକ୍ତ । ଅନ୍ୟପକ୍ଷ୍ୟରେ , ପ୍ରକୃତି ଦୃଶ୍ୟମାନ, ଈଶ୍ୱରସୃଷ୍ଟ ପ୍ରପଞ୍ଚମାୟା । ମଣିଷ, ଆତ୍ମାର ପ୍ରତୀକ । ପ୍ରକୃତି ସୃଷ୍ଟ ଅବିଦ୍ୟା, ନାନାବିଧ ଭାବ (ପ୍ରେମ, ପ୍ରତାରଣା, କାରୁଣ୍ୟ, ହିଂସା, ଘୃଣା, ବାତ୍ସଲ୍ୟ ଇତ୍ୟାଦି) ସଂକ୍ରମିତ । ଆତ୍ମାର ଶେଷ ବା ଏକମାତ୍ର ଇଚ୍ଛା ହେଉଛି ମୋକ୍ଷ । ପ୍ରପଞ୍ଚର ସକଳ ଆକର୍ଷଣ ଓ ମୋହମାୟା ଛିନ୍ନକରି ପରମ ସହିତ ସମ୍ମେଳନ ।

ମାତ୍ର ଚକ୍ରବତ୍ ଜନ୍ମ ଓ ମୃତ୍ୟୁର ଅଧୀନ ଆତ୍ମା ସେହି ଅଦୃଶ୍ୟସତ୍ତା ସହିତ ଏକାତ୍ମ ହୋଇଯିବା କ'ଣ ସମ୍ଭବ, ସହଜ ? ଏହି ସମ୍ମିଳନ ଯାତ୍ରାର ଅନ୍ୟନାମ ଯଦି ମୁକ୍ତି, ତାହାକୁ ପାଇବାପାଇଁ ବହୁମାର୍ଗ ରହିଛି । ବୁଦ୍ଧି, ଭକ୍ତି, ପ୍ରୀତି, ନୈତିକତା, ତପସ୍ୟା ଓ ସମର୍ପଣ । ଭଟ୍ଟନାୟକଙ୍କ ଦୃଷ୍ଟିରେ ରଙ୍ଗମଞ୍ଚ ପ୍ରପଞ୍ଚ /ପ୍ରକୃତି; ଅଭିନେତା, ଅଭିନେତ୍ରୀ, ଦର୍ଶକ ହେଉଛି ଆତ୍ମା । ମଞ୍ଚ ସଂପୃକ୍ତି ଆତ୍ମାମାନଙ୍କୁ ଅହଂମୁକ୍ତ କରେ ।ସକଳଭାବ (ରସ)ର ସମାୟନ ଈଶ୍ୱରଙ୍କ ସହିତ ଏକାତ୍ମ କରିଦିଏ । ବ୍ରହ୍ମସ୍ୱାଦ ଆସ୍ୱାଦନର ସୁଯୋଗ ଦିଏ, ଅର୍ଥାତ୍ ଅଦୃଶ୍ୟକୁ ଦୃଶ୍ୟମାନ ଓ ଅସାଧାରଣକୁ ସାଧାରଣ କରିଦିଏ ।

ଅଭିନବଗୁପ୍ତ କାଶ୍ମୀର ପଣ୍ଡିତ । ବାପା: ନରସିଂହଗୁପ୍ତ - କାଶ୍ମୀରରେ ବିକଶିତ ଶୈବବାଦର ଅନ୍ୟତମ ଶାଖା 'ପ୍ରତିଭିଜ୍ଞତତ୍ତ୍ୱ ଅନୁବର୍ତ୍ତୀ । ଶୈବଧର୍ମ ସଂକ୍ରାନ୍ତ ଅଭିନବଙ୍କର ବଖ୍ୟାତ୍ ଗ୍ରନ୍ଥ ତନ୍ତ୍ରସାର, ତନ୍ତ୍ରଲୋକ, ଈଶ୍ୱରପ୍ରତ୍ୟାଭିଜ୍ଞାମର୍ଶିନୀ । ମାତ୍ର ରସତତ୍ତ୍ୱ ସଂକ୍ରାନ୍ତରେ ତାଙ୍କ ବୈଚାରିକ ନିଷ୍କର୍ଷ ଆଜି ମଧ୍ୟ ସ୍ୱତନ୍ତ୍ର । ନାନା କାରଣରୁ ତାଙ୍କୁ ଭାଗ୍ୟବାନ କୁହାଯାଇପାରେ । କାରଣ ତାଙ୍କ କାଳକୁ କାବ୍ୟର ଆତ୍ମାକୁ କେନ୍ଦ୍ରକରି ଭାମହ (ଷଷ୍ଠ ଶତାବ୍ଦୀ: ଅଳଙ୍କାରବାଦର ପ୍ରବକ୍ତା, କାବ୍ୟାଳଙ୍କାରସୂତ୍ରାଣୀ ଗ୍ରନ୍ଥର ପ୍ରଣେତା), କୁନ୍ତକ (ଦଶମ ଶତାବ୍ଦୀ: ବକ୍ରୋକ୍ତିବାଦର ପ୍ରବକ୍ତା, ଗ୍ରନ୍ଥ -ବକ୍ରୋକ୍ତିଜୀବିତମ୍), ବାମନ (୮/୯ମ ଶତାବ୍ଦୀ : ରୀତିବାଦର ପ୍ରବକ୍ତା: ଗ୍ରନ୍ଥ -କାବ୍ୟାଳଙ୍କାର୍ସୂତ୍ରବୃତ୍ତି), ଦଣ୍ଡି (ଗୁଣବାଦର ପ୍ରବକ୍ତା: ଗ୍ରନ୍ଥ - କାବ୍ୟାଦର୍ଶ): ଆନନ୍ଦବର୍ଦ୍ଧନ (ନବମ ଶତାବ୍ଦୀ: ଧ୍ୱନିବାଦର ପ୍ରବକ୍ତା, ଗ୍ରନ୍ଥ: ଧ୍ୱନ୍ୟାଲୋକ) ନିଜ ନିଜର ସିଦ୍ଧାନ୍ତ ପ୍ରତିଷ୍ଠା କରିସାରିଲେଣି । ଅଭିନବଗୁପ୍ତ ସକଳ ପୂର୍ବସୂରୀଙ୍କ ବିଚାର ସଂପର୍କରେ ଅଭିହିତ ହୋଇଛନ୍ତି । ବିଶେଷତଃ; ଭରତ, ଲୋଲ୍ଲଟ, ଶଙ୍କୁକ, ଭଟ୍ଟନାୟକ ଓ ଆପଣା ଭୂମି (କାଶ୍ମୀର) ର ତଦ୍‌ବିଦ୍ ଆନନ୍ଦବର୍ଦ୍ଧନ ତାଙ୍କୁ ବହୁଭାବରେ ପ୍ରଭାବିତ କରିଛନ୍ତି । ଏହାର ପ୍ରମାଣ ଆନନ୍ଦବର୍ଦ୍ଧନଙ୍କ ଧ୍ୱନ୍ୟାଲୋକର ଲୋଚନଟୀକା, ନାଟ୍ୟାଶାସ୍ତ୍ରର ଟୀକା ଅଭିନବଭାରତୀ । ରସଚର୍ଚ୍ଚା କାଳରେ ସେ ନାଟକ ସହିତ କାବ୍ୟକୁ ମଧ୍ୟ ଆଲୋଚନାଭୁକ୍ତ କରିଛନ୍ତି ।

ଅଭିନବଗୁପ୍ତ ବହୁ ବ୍ୟକ୍ତିତ୍ୱଙ୍କୁ ଗୁରୁ କରିଛନ୍ତି । ବାପାଙ୍କ ପାଖରୁ ସଂଗୀତ, ଉତ୍ପଳଙ୍କ ପାଖରୁ ଦର୍ଶନ, ତଉତଙ୍କ ପାଖରୁ ନାଟ୍ୟସୂତ୍ରର ବ୍ୟାଖ୍ୟା ଓ ଭଟ୍ଟନାୟକଙ୍କ ପାଖରୁ 'ସାଧାରଣୀକରଣ' ତତ୍ତ୍ୱ । ତଉତଙ୍କ ବିଚାରରେ ରସ-ନାଟ୍ୟ ଓ ଅଭିନୟରେ ଥାଏ । ନଟର ମନଷ୍ଚକ୍ଷୁ ରସକୁ ଅନୁଭବ କରିପାରେ, ଅଙ୍ଗଭଙ୍ଗୀ ମାଧ୍ୟମରେ ବ୍ୟକ୍ତ କରେ । ତାଙ୍କ ଭାଷାରେ 'ପ୍ରୟୋଗାତ୍ୱଂ ଅନାପନ୍ନେ ନାଟ୍ୟାୟମାନ ଏବଂ ରସ' । ସେ ଭରତଙ୍କ ଅନୁକରଣ ତତ୍ତ୍ୱକୁ ଅସ୍ୱୀକାର କରିଛନ୍ତି । ନୂଆ ଶବ୍ଦ ଯୋଡ଼ିଛନ୍ତି- ଅନାୟତାନୁଂକରଣରମ୍ ବା ଅନୁଭବ୍ୟସାୟ ।

ତଉତଙ୍କ ବିଚାରରେ ଅନ୍ୟତମ ବିଶେଷତ୍ୱ, ସେ ନାଟକ ପରି କାବ୍ୟକୁ 'ରସାନୁଭବ'ର ପ୍ରାରୂପ ରୂପରେ ବିବେଚନା କରିଛନ୍ତି । ନାଟକରେ ନଟର ଅଭିନୟ ଓ କାବ୍ୟରେ କବିଙ୍କ ବର୍ଣ୍ଣନା ଦର୍ଶକ/ପାଠକ ହୃଦୟରେ ରସ ସୃଷ୍ଟିର ମାଧ୍ୟମ । ବର୍ଣ୍ଣନା କହିଲେ -ଜଣେ ଶକ୍ତିଶାଳୀ ପ୍ରତିଭାଙ୍କ 'ପ୍ରୋକ୍ତି' । ଏହି ପ୍ରସଙ୍ଗରେ ସେ କବିଙ୍କ ଲକ୍ଷଣ ନିରୂପଣ କରିଛନ୍ତି । କହିଛନ୍ତି - କବି ହେଉଛନ୍ତି ଭବିଷ୍ୟଦ୍ରଷ୍ଟା, ସାଧକ ଓ ମୁନି । ମାତ୍ର ପ୍ରତିଭାସଂପନ୍ନ କବିଙ୍କର ଥାଏ ସୂକ୍ଷ୍ମ ଅନ୍ତର୍ଦୃଷ୍ଟି । ତେଣୁ କବିକର୍ମ ହେଉଛି 'ଲୋକୋତ୍ତର ବର୍ଣ୍ଣନା କୁଶଳତା' । ନାଟକରେ ଅଭିନୟର ସ୍ଥାନ ନିଏ କାବ୍ୟର ବର୍ଣ୍ଣନା । ବର୍ଣ୍ଣନା ଶ୍ରୋତାଙ୍କ ଚେତନାରେ ନାଟକର ଦୃଶ୍ୟରୂପ ସୃଷ୍ଟି କରିଥାଏ । ତଉତଙ୍କ ପାଖରୁ ଅଭିନବଗୁପ୍ତ ଏହି ଗୂଢ଼ କଥା ଶିଖିଛନ୍ତି ଓ ଆପଣା ରଚନାରେ ଏହି ତତ୍ତ୍ୱର ବିସ୍ତାର କରିଛନ୍ତି ।

ଭଟ୍ଟନାୟକଙ୍କ ବିଚାରକୁ ଅଭିନବଗୁପ୍ତ ସମ୍ମାନ ଜଣାଇ କହିଛନ୍ତି— କଳା ସବୁକାଳରେ ଅଧ୍ୟାତ୍ମ ଅନୁଭବର କଥା, ତେଣୁ ରହସ୍ୟମୟ ସଂରଚନା, ଦିବ୍ୟାନନ୍ଦର ଉତ୍ସ । ତାହା ସୂକ୍ଷ୍ମ ଓ ନୈର୍ବ୍ୟକ୍ତିକ । ଭାବପ୍ରବଣତା, କାଳ, ସ୍ଥାନ ଓ ପାତ୍ର ପ୍ରେମର ସୀମାବଦ୍ଧତା ଓ ସକଳ ଅହଂ ବୋଧରୁ ବ୍ୟକ୍ତିକୁ ମୁକ୍ତକରେ । ଏହା ଭଟ୍ଟନାୟକଙ୍କ ସାଧାରଣୀକରଣ ତତ୍ତ୍ୱର ପ୍ରତିଧ୍ୱନି । ମାତ୍ର ଭଟ୍ଟନାୟକଙ୍କ ଭାବକତ୍ୱ ଓ ଭୋଜକତ୍ୱ ବିଚାରକୁ ସେ ଗ୍ରହଣ କରିପାରିନାହାଁନ୍ତି । ସେ ସ୍ପଷ୍ଟ କରିଦେବାକୁ ଚାହୁଁଛନ୍ତି— ଉଭୟ ଦର୍ଶକ ଓ ନଟ (ମାନଙ୍କ)ଙ୍କ ହୃଦୟ ସ୍ୱଚ୍ଛ ଦର୍ପଣ ପରି । ନଟ ଯେଉଁ ଚରିତ୍ରକୁ ରଙ୍ଗମଞ୍ଚକୁ ଆଣନ୍ତି, ସେମାନେ ସ୍ୱପ୍ନ କି ମାୟା ନୁହନ୍ତି -ବ୍ୟକ୍ତି ସତ୍ତାର ଭାବରୂପ ଏବଂ, ସେମାନେ ଅନୁମାନ ନୁହେଁ, ଅନୁଭବରୁ ଜନ୍ମ ନିଅନ୍ତି । ତେଣୁ ଜଣେ ଚରିତ୍ରକୁ ମଞ୍ଚାୟନ କରିବାକୁ ହେଲେ, ତାଙ୍କୁ ଜାଣିବାକୁ ପଡ଼ିବ । ମାତ୍ର ଏହା କ'ଣ ସମ୍ଭବ ? ହଁ, ଅସମ୍ଭବ ନୁହେଁ । ଜଣେ (ନଟ) ସ୍ୱାଧୀନ ଓ ମୋହମୁକ୍ତ ମନରେ ଚେତନାର ସେହି ଉଚ୍ଚତମ ସୋପାନକୁ ଯାଇପାରିଲେ, ଚରିତ୍ର ତାଙ୍କ ଭିତରକୁ ଅବତରି ଆସିବ ଏବଂ ଆତ୍ମପ୍ରକାଶ କରିବ ।

କବି, ଦର୍ଶକ/ପାଠକ/ଶ୍ରୋତା ଏବଂ ନଟ (ମାନଙ୍କ)ଙ୍କ ଚିତ୍ତବୃତ୍ତି କିପରି ପରସ୍ପର ସହ ସଂପର୍କିତ ଅଭିନବଙ୍କ ମାଧ୍ୟମରେ ଚର୍ଚ୍ଚା କରିବା । ପ୍ରଥମେ ଦର୍ଶକ/ପାଠକ ବା ଉପଭୋକ୍ତାଙ୍କ କଥା ବିଚାର କରାଯାଉ । ଏମାନେ ଆସ୍ୱାଦନପାଇଁ ଗ୍ରନ୍ଥ/ମଞ୍ଚ ପାଖକୁ ଆସନ୍ତି । କୌଣସି ପଦାର୍ଥ ଆସ୍ୱାଦନ କରିବାକୁ ହେଲେ, ମୂଳକୁ ଯିବାକୁ ପଡ଼େ । ମୂଳ କେଉଁଠି ? ତାହାର ସ୍ଥିତି ଗୂଢ଼ ଓ ରହସ୍ୟମୟ । ସେହି ରହସ୍ୟକୁ ସାକ୍ଷାତ କରିବାପାଇଁ ବହୁ ପ୍ରସ୍ତର ଆବରଣକୁ ଖୋଲିବାକୁ ହେବ । ଜଣେ ପ୍ରଥମେ ଦେଖନ୍ତି, ଶୁଣନ୍ତି, ପଢନ୍ତି ଅଭିନେତାଙ୍କୁ ।

ଦ୍ୱିତୀୟରେ , ଅଭିନେତାଙ୍କ ମାଧ୍ୟମରେ ସାକ୍ଷାତ କରନ୍ତି ଗ୍ରନ୍ଥ-ବର୍ଣ୍ଣିତ ଚରିତ୍ରଙ୍କୁ; ତୃତୀୟରେ, ଚରିତ୍ରମାନଙ୍କ ଆଚରଣ ମାଧ୍ୟମରେ ଅନୁଭବ କରନ୍ତି ରଚନାକାରଙ୍କ ବ୍ୟକ୍ତିତ୍ୱକୁ, ଏବଂ ରଚନାକାରଙ୍କ ମାଧ୍ୟମରେ ଆବିଷ୍କାର କରନ୍ତି ଏକ ନିର୍ଦ୍ଦିଷ୍ଟ କାଳଖଣ୍ଡର, ସାମାଜିକ ଓ ସାଂସ୍କୃତିକ ପରିମଣ୍ଡଳର ଚମକ । ଏହି ଚମକପ୍ରଦ ଭୂମିରୁ ସକଳଙ୍କ ଜନ୍ମ ଓ ବିକାଶ । ଏତେ ପ୍ରସ୍ଥ ଅତିକ୍ରମକରି ମୂଳ ପାଖକୁ ଯିବା ଓ ତାହାକୁ ଭେଦିବା କ'ଣ ସହଜ ? ଦର୍ଶକ ଜଣେ ବ୍ୟକ୍ତି । ଏକ ନିର୍ଦ୍ଦିଷ୍ଟ ସମୟ, ଭୂମି ଓ ସାମାଜିକ ସାଂସ୍କୃତିକ ପରିମଣ୍ଡଳରେ ତାଙ୍କ ବିଚରଣ । ନିଜ ଭିତରୁ ମୁକ୍ତହୋଇ ଅନେକଙ୍କ ଭିତରେ, ଦେଶ-କାଳ-ପାତ୍ର ଊର୍ଦ୍ଧ୍ୱସ୍ଥ ଏକ ବିନ୍ଦୁରେ ସେ ମିଶିଯିବେ କିପରି ?

କଳାକାର ଓ ଦର୍ଶକଙ୍କ ଉଦ୍ଦେଶ୍ୟରେ ଅଭିନବଗୁପ୍ତ 'ହୃଦୟସମ୍ବେଦ' ଶବ୍ଦ ପ୍ରୟୋଗ କରିଛନ୍ତି । ହୃଦୟସମ୍ବେଦର ଅର୍ଥ -ଅନ୍ୟ ହୃଦୟ ସହିତ ସୂତ୍ରାୟନ । କଳାକାର ଓ କଳାଗ୍ରାହକଙ୍କ ମଧ୍ୟରେ ଯୋଗସୂତ୍ର ନ ରହିଲେ, କେହି କାହାକୁ ବୁଝିପାରିବେ ନାହିଁ । ଏଥିରୁ ସ୍ପଷ୍ଟ ବୁଝାପଡୁଛି ଅଭିନବଗୁପ୍ତ ରସତତ୍ତ୍ୱରେ କାଳାଗ୍ରାହକ/ଦର୍ଶକ/ ପାଠକମାନଙ୍କ ଉପରେ ପ୍ରାଧାନ୍ୟ ଦେଇଛନ୍ତି । କହିଛନ୍ତି: ପ୍ରତ୍ୟେକ ବ୍ୟକ୍ତିର ଅନ୍ତର୍ଲୋକରେ ରସର ସ୍ଥିତି । ମାତ୍ର ରସାନୁଭୂତି ପାଇଁ ପ୍ରଥମ ଆବଶ୍ୟକତା ସହୃଦୟତା । ସେ ପୁଣି ସହୃଦୟ ଶବ୍ଦର ବ୍ୟାଖ୍ୟା କରିଛନ୍ତି । ସହୃଦୟତା ଏକ ମାନସିକତା, ଚିତ୍ତବୃତ୍ତି ଆପଣାର ମତ, ବିଚାର, ବିଶ୍ୱାସ ଓ ଭାବାଦର୍ଶକୁ ଦମନ କରିପାରିଥିବା ବ୍ୟକ୍ତି ହିଁ ସହୃଦୟ ହୋଇପାରିବ । ଦମନର ଅର୍ଥ - ଆପଣା ସୀମାବଦ୍ଧତା ସଂପର୍କରେ ଅବଗତି ଓ ଅନ୍ୟକୁ ସମ୍ମାନ ଦେବାର ମାନସିକତା । ଏହି ଆଚରଣ ବ୍ୟକ୍ତି ପକ୍ଷରେ ଆଦୌ ସହଜ ନୁହେଁ କାରଣ ଏହା ବ୍ୟକ୍ତିସତ୍ତାର ଅହଂମୁକ୍ତି ଆରୋହଣ ପ୍ରସଙ୍ଗ ଏବଂ ଆରୋହଣ ପ୍ରକ୍ରିୟା ମୁଖ୍ୟତଃ ଉଚ୍ଚାଙ୍ଗ ସାହିତ୍ୟ ଓ ଦର୍ଶନ ଗ୍ରନ୍ଥ ଆଦିର ବାରମ୍ବାର ଅଧ୍ୟୟନ, ନାନାବିଦ୍ୟାସଂପୃକ୍ତି ଓ ବିଦ୍ୟାର ମୋହମୁକ୍ତ ଚର୍ଚ୍ଚାଦ୍ୱାରା ହିଁ ସମ୍ଭବ ହୋଇଥାଏ । ଏହା ହୃଦୟକୁ ପ୍ରସାରିତ କରିଥାଏ । ମାତ୍ର, ବାସ୍ତବ ଜୀବନରେ ଏହା କ'ଣ ବ୍ୟକ୍ତି ପକ୍ଷରେ ସମ୍ଭବ ? ଯଦି ନୁହେଁ, କିଏ ତାହାଲେ ବାଧକ ? ଅଭିନବଗୁପ୍ତ ଗୋଟିଏ ମାତ୍ର ଶବ୍ଦରେ ଏହାର ଉତ୍ତର ଦେଇଛନ୍ତି "ବିଘ୍ନତତ୍ତ୍ୱ" । ଯାହା ରସ ଅବବୋଧ (ସହୃଦୟତାବୋଧ)ର ପ୍ରଧାନ ଅନ୍ତରାୟ । ଏହା ସାତ ପ୍ରକାରର ବିଶ୍ୱାସହୀନତା, ମାତ୍ରାଧିକ ବ୍ୟକ୍ତିକ ସଂପୃକ୍ତି (ନାନ୍ଦନିକ ଦୂରତା ରଚନାରେ ପ୍ରଧାନ ବାଧକ), ଅନ୍ୟର ଅନୁଭୂତିକୁ ଆତ୍ମସ୍ଥ କରିବା ମାନସିକତା (ଗୀତ, ନୃତ୍ୟ ମାଧ୍ୟମରେ ସେଥିରୁ ମୁକ୍ତି ମିଳିପାରେ) ଅବବୋଧ ମାଧ୍ୟମର ଅଭାବ, ଅସ୍ପଷ୍ଟତା ମୁଖ୍ୟରସ ସଂପର୍କରେ ଧାରଣାର ଅଭାବ ଏବଂ ଯୁକ୍ତିବଦ୍ଧତା ବା ସନ୍ଦେହ ।

ସକଳ ବିଘ୍ନମୂଳରେ 'ମୁଁ'— ରଜ ଓ ତମ ଗୁଣର ଅଧିକାରୀ । 'ମୁଁ'କୁ ହତ୍ୟା କରିପାରିଲେ, ବାହ୍ୟ ଜଗତର ସଂକ୍ରମଣରୁ ମୁକ୍ତ ରହିପାରିଲେ, ଜଣେ ଅବଶ୍ୟ ଅନ୍ୟ (ମାନଙ୍କୁ) କୁ ମିତ୍ର କରିପାରିବେ ଏବଂ ଏହି ମିତ୍ରତା ହିଁ କାବ୍ୟାନୁଷଙ୍ଗ ମାଧ୍ୟମରେ ତାକୁ ପରମ ସହ ଯୁକ୍ତ ହେବାପାଇଁ ସୁଯୋଗ ଦେବ ।

ଏହି 'ମୁଁ' ମାନେ କିପରି ସାର୍ବଜନୀନ, ଅଭିନବ ଏକ ଉଦାହରଣ ମାଧ୍ୟମରେ ସ୍ପଷ୍ଟ କରିଦେଇଛନ୍ତି । ସେ ଉପାସନା ବା ଧର୍ମ ଉତ୍ସବର କଥା କହୁଛନ୍ତି । ଜଣେ ଯେତେବେଳେ ଉପାସନା ଭୂମିକୁ ଯାଏ, ବହୁତଙ୍କ ସହିତ ଏକ ହୋଇଯାଏ । ଅର୍ଥାତ୍ ମାନସିକ ସ୍ତରରେ ଏକତ୍ୱବୋଧ ତାଙ୍କୁ ସଂକ୍ରମିତ କରେ । ବାଧା ନାହିଁ ବନ୍ଧନ ନାହିଁ, କ୍ରୋଧ ନାହିଁ, ଅଭିମାନ କି ଦୁଃଖ ନାହିଁ- ଏକ ସଂପର୍କମୁକ୍ତ ଶୋଧିତ ଅବସ୍ଥା । ଲକ୍ଷ୍ୟ ଗୋଟିଏ । ଏହି ଲକ୍ଷ୍ୟ ରୂପାନ୍ତରିତ ହୋଇଯାଏ ନାନ୍ଦନିକ ଅନୁଭବରେ । ମାତ୍ର ଏହା ଏକ ଚିରନ୍ତନ ଅନୁଭବ କି ? ନା , ନୁହେଁ । ସ୍ଥାୟୀ ନୁହେଁ, ଏକ ନିର୍ଦ୍ଦିଷ୍ଟ ସମୟର ଅନୁଭବ । ପୁଣି, ସେ ସମୂହ ପାଖରୁ ନିଜ ପାଖକୁ ଫେରିଆସେ । ନିଜପାଇଁ ମାଗେ । ଏପରି କାହିଁକି ହୁଏ ? ଅଭିନବ ଏହି ପ୍ରଶ୍ନର ଉତ୍ତରରେ କୁହନ୍ତି ବ୍ୟକ୍ତି ସମୂହ ଭିତରୁ ବାହାରିଯାଏ ଅବଶ୍ୟ, ମାତ୍ର ତାହାର ମୁକ୍ତି ସଚେତନ ପ୍ରବୃତ୍ତି ତାକୁ ପ୍ରସାରିତ କରିଦିଏ । ଏହା ମୁହୂର୍ତ୍ତକପାଇଁ ହୋଇପାରେ । ସେ ଅନ୍ୟମାନଙ୍କଠାରୁ ଭିନ୍ନ ବୋଲି ଭାବୁଛି, ମାତ୍ର ନୁହେଁ । ଏହି ଅଭିନ୍ନତାବୋଧ ହିଁ ଆନନ୍ଦ, ରସ । ତାହା ଦର୍ଶକ/ ଶ୍ରୋତା/ପାଠକ/ ଉପଭୋକ୍ତା ଭିତରେ ଥାଏ । ଅଭିନବ ପୁଣି କହୁଛନ୍ତି - ଉପଭୋକ୍ତାଙ୍କ ହୃଦୟ ବା ଚିତ୍ତବୃତ୍ତି ହେଉଛି ରସାଗାର । ଏଥିରେ ଉଦ୍‌ବେଳନ ସୃଷ୍ଟି କରିବାକୁ ହେବ । ମାତ୍ର କାହାଦ୍ୱାରା ଏହା ସମ୍ଭବ ? ଉତ୍ତର- ଅନ୍ୟଜଣେ ସହୃଦୟ ଓ ରସିକଙ୍କ ମାଧ୍ୟମରେ । ସେ ରସିକ ଜଣେ କବି, ପ୍ରଜାପତି । ଅନ୍ୟ ଶବ୍ଦରେ ସ୍ରଷ୍ଟା । ରାଜଶେଖରଙ୍କ ବିଚାରରେ 'ପ୍ରତିଭା' । ପ୍ରତିଭା ଉଭୟ କାରୟିତ୍ରୀ (ଉତ୍‌ପାଦ୍ୟା) ଓ ଭାବୟତ୍ରୀ (ସହଜା) ଶକ୍ତିର ଅଧିକାରୀ । ଆନନ୍ଦବର୍ଦ୍ଧନ ମଧ୍ୟ କବି ପରିଚିତି ସଂପର୍କିତ ଏହି ଭାବାଦର୍ଶକୁ ସ୍ୱୀକାର କରିଛନ୍ତି ଏବଂ, ଅଭିନବଗୁପ୍ତ ଉପର୍ଯ୍ୟୁକ୍ତ ଭାବାଦର୍ଶରେ ଅନ୍ୟ ଏକ ଶବ୍ଦ ଖଞ୍ଜି ଦେଇଛନ୍ତି । ତାହା 'ପ୍ରଜ୍ଞା' । ତାଙ୍କପାଇଁ ପ୍ରଜ୍ଞା ତଥ୍ୟ ନୁହେଁ, ଅନୁଭବସିଦ୍ଧ ଜ୍ଞାନ ଓ ଜ୍ଞାନର ନିର୍ବିଶେଷ ଉତ୍ସ । ପ୍ରଜ୍ଞାର ଅଧିକାରୀ ହେବାକୁ ପଡ଼େ । ଆପଣା ଚିନ୍ତାକାଶକୁ ସଦା ଉନ୍ମୁକ୍ତ ରଖିଥିବା ବ୍ୟକ୍ତି ହିଁ ଏହି ବିଶେଷ ଜ୍ଞାନର ଅଧିକାରୀ ହେବାପାଇଁ ଯୋଗ୍ୟ । ଏହି ଯୋଗ୍ୟବ୍ୟକ୍ତି ହିଁ ଆପଣା ଇଚ୍ଛାଶକ୍ତିରେ ସମଗ୍ର ଜଗତକୁ ସମୁଦ୍‌ଭାସିତ ଓ ରସମୟ କରିପାରନ୍ତି । ସେ ବନ୍ଧନମୁକ୍ତ, ତେଣୁ ସ୍ୱାଧୀନ-ଚିନ୍ତକ । ସେ ବସ୍ତୁକୁ ଭାବରୂପ ଏବଂ ଭାବକୁ ବସ୍ତୁରୂପ ମଧ୍ୟ ଦେଇପାରନ୍ତି । କାରଣ ତାଙ୍କ

ପାଇଁ ବସ୍ତୁ ଓ ଭାବ ପରସ୍ପରଠାରୁ ଭିନ୍ନ ନୁହଁନ୍ତି । ସେ ପୁଣି ସ୍ଥାନ, କାଳ ଓ ପାତ୍ରଗତ ବନ୍ଧନମୁକ୍ତ, ଆତ୍ମଶକ୍ତି ସମାହିତ । ଆପଣା ସୃଷ୍ଟ ଚରିତ୍ର ଏବଂ ସେମାନଙ୍କ କାଳଗତ, ପାରିବେଶିକ ରହସ୍ୟକୁ ସେ ଦେଖିପାରନ୍ତି, ବୁଝିପାରନ୍ତି । ସେହି ନ୍ୟାୟରେ କବି ରସର ଅଧିକାରୀ ଏବଂ ରସ କବିଙ୍କ ସୂକ୍ଷ୍ମାତିସୂକ୍ଷ୍ମ ଚିତ୍ତବୃତ୍ତିର ଉଦ୍‌ଭାସନ । ଫଳତଃ ତାଙ୍କ ରସ ଅବବୋଧ ଓ ଅବବୋଧଜନିତ ସୂକ୍ଷ୍ମ ଅଭିପ୍ରକାଶ ହିଁ ଦର୍ଶକ, ଗାୟକ, କଥକ ଓ ଅଭିନେତାଙ୍କ ଚେତନାରେ ସଞ୍ଚରିଯାଏ, ଉଦ୍‌ବେଳିତ କରେ, ପ୍ରକାଶିତ ହୁଏ । ଚିତ୍ତବୃତ୍ତି ରସାଗାର ହୋଇଯାଏ ।

ଅଭିନବଗୁପ୍ତଙ୍କ ଜିଜ୍ଞାସା ଏଥର କବି, କବିସୃଷ୍ଟ ଚରିତ୍ର ଏବଂ ଦର୍ଶକମାନଙ୍କ ପାଖରୁ ନଟ (କଳାକାର) ଙ୍କ ଉପରେ କେନ୍ଦ୍ରୀଭୂତ ହୋଇଛି । କହିଛନ୍ତି, କବି ଚରିତ୍ର ସୃଷ୍ଟି କରନ୍ତି ଏବଂ ନଟ ଆପଣା କଳ୍ପନା ଓ ଆଚରଣ (ଅଭିନୟ) ମାଧ୍ୟମରେ ସୃଷ୍ଟ -ଚରିତ୍ରମାନଙ୍କୁ ଦର୍ଶକମାନଙ୍କ ଚିତ୍ତବୃତ୍ତି ସହିତ ପରିଚିତ କରାଇଦିଅନ୍ତି । ମାତ୍ର ସେତେବେଳେ ନଟ କ'ଣ ସଚେତନ ଭାବରେ ନାଟ୍ୟ-ଚରିତ୍ରମାନଙ୍କ ଭିତରେ ନିଜ 'ଅହଂ'କୁ ଏକ କରିଦେଇଥାନ୍ତି ? ନା, ଉଭୟଙ୍କ ମଧ୍ୟରେ ଦୂରତା ଥାଏ ? ନଟ ନାଟ୍ୟ -ଚରିତ୍ର ଭିତରେ ଏକାତ୍ମା ହୋଇଗଲେ, ଅର୍ଥାତ୍ ନିଜକୁ ଚରିତ୍ର ଜ୍ଞାନକଲେ, ତାଙ୍କୁ କ'ଣ ଆମେ ନଟ କହିପାରିବା ? ଏବଂ, ମଞ୍ଚରେ ଯେକୌଣସି ଅସ୍ୱାଭାବିକ ଓ ଅପ୍ରୀତିକର ଘଟଣା (ହତ୍ୟା, ସମ୍ଭୋଗ, ବୀଭତ୍ସତା ଇତ୍ୟାଦି)ର କ୍ଷେତ୍ର ହୋଇଯିବ ନାହିଁକି ? ଅଭିନବ ଉତ୍ତରରେ କହିଛନ୍ତି ଅଭିନୟ ମାଧମରେ ନଟ ହୃଦୟ ଅନ୍ତର୍ଗତ ରସକୁ ପ୍ରକାଶ କରନ୍ତି । ତାହା ଭାବ । ରସ ଉତ୍ପନ୍ନ ନହେଲେ, ଭାବ ବ୍ୟକ୍ତ ହୁଏନାହିଁ । ଭାବଦ୍ୱାରା ରସ ଓ ରସଦ୍ୱାରା ଭାବ ଅଭିବ୍ୟକ୍ତ ହେଉଥାଏ । ଏଥର ଅନ୍ୟଏକ ପ୍ରଶ୍ନ । ନଟ -ପ୍ରଦର୍ଶିତ ଚରିତ୍ରମାନଙ୍କୁ ଦର୍ଶକମାନେ କ'ଣ ଦେଖିଥା'ନ୍ତି ? ଅର୍ଥାତ୍ ସେମାନଙ୍କର ନାଟ୍ୟ -ବର୍ଣ୍ଣିତ ଚରିତ୍ରମାନଙ୍କ ସହିତ କ'ଣ ସଂପର୍କ ଥାଏ ? ଯଦି ନଥାଏ ସେମାନେ ଚରିତ୍ରମାନଙ୍କ ଭିତରେ ନିଜକୁ କିପରି ଅନୁଭବ କରିପାରିବେ ? ଉତ୍ତର ହଁ ସମ୍ଭବ । ମାତ୍ର କିପରି ? ଉତ୍ତର ମନଭୂମି ସହିତ ସଂପର୍କିତ ବ୍ୟକ୍ତି (ଦର୍ଶକ)ଭିତରେ ସ୍ୱାଭାବତଃ ବୃତ୍ତିଗୁଡ଼ିକ ସଞ୍ଚିତ ହୋଇ ରହିଛି । ଏହା ସାଧାରଣ ବା ଲୌକିକ ଭାବଗୁଡ଼ିକର ସମାହାର । ବ୍ୟକ୍ତି ଭିତରୁ ଏହି ସାଧାରଣ ଭାବଗୁଡ଼ିକ ଦୂରେଇ ଗଲେ, ରସ ସୃଷ୍ଟି ହୁଏ । ଉଦାହରଣ ସ୍ୱରୂପ- ଜଣେ ନଟ କୌଣସି କାରଣ (ଭୟ, ବିଚ୍ଛେଦ, ଆନନ୍ଦ ଇତ୍ୟାଦି)ରୁ କାନ୍ଦୁଛନ୍ତି । ଏହାର ଅର୍ଥ ନୁହେଁ ଯେ, ତାଙ୍କ ଭିତରେ କରୁଣ ରସ ସୃଷ୍ଟି ହେଉଛି । ଅଥଚ ତାଙ୍କ ଅଭିନୟ ଦେଖି ଦର୍ଶକ ସମଭାବରେ ଆଚ୍ଛନ୍ନ ହେଉଛନ୍ତି ତେଣୁ ନଟ ଅଭିନୟ କାଳରେ ନିଜର ବ୍ୟକ୍ତିତ୍ୱ ଓ କାବ୍ୟନାଟକ ବର୍ଣ୍ଣିତ ଚରିତ୍ର(ମାନଙ୍କ) ର ଭାବ ସଂପର୍କରେ ସଚେତନ ଥା'ନ୍ତି । ପ୍ରତି ମୁହୂର୍ତ୍ତରେ ନଟସତ୍ତା

ଓ କବିସୃଷ୍ଟ ଚରିତ୍ରସତ୍ତା ପରସ୍ପର ସହିତ ଯୁକ୍ତ ଓ ବିଯୁକ୍ତ ହେଉଥା'ନ୍ତି । ଏହି ସଂପୃକ୍ତ ମୁହୂର୍ତ୍ତ ଦିବ୍ୟ, ଜଣେ ଶକ୍ତିଶାଳୀ ନଟର ଲକ୍ଷଣ । ବିଯୁକ୍ତ ମୁହୂର୍ତ୍ତ ଲୌକିକ, ତାଙ୍କ ଅହଂ ସଚେତନତା ଏବଂ, ବିଯୁକ୍ତି ହିଁ ରସ ସୃଷ୍ଟିର କାରଣ ହୋଇଥାଏ । ଏହି ଅକସ୍ମାତ ମୁହୂର୍ତ୍ତହିଁ ବିସ୍ମୟ ଚମତ୍କାର । ଯେଉଁ ଭାବ ଅକସ୍ମାତ ଉଦୟ ହୋଇ ଅନ୍ତର୍ହିତ ହୋଇଯାଉଥାଏ, ତାହାର ଗୁଣସୂତ୍ର କେଉଁଠାରେ, ନିର୍ଦ୍ଧିଷ୍ଟ କରିପାରିବା କ'ଣ ସମ୍ଭବ ? ଏଥିରୁ ଏକଥା ସ୍ପଷ୍ଟ ଯେ ନାଟ୍ୟରସ ଉପଭୋଗ କାଳରେ ଦର୍ଶକ ବାହ୍ୟ ଜଗତଠାରୁ ଦୂରେଇ ଯାଇଥାଏ, ଦୁଃଖ-ସୁଖ, ଭୟ- ଘୃଣା ଓ କ୍ରୋଧ-ମୁକ୍ତ ଆନନ୍ଦରେ ବିଭୋର ଥାଏ ।

କଳାଗ୍ରାହକ (ଦର୍ଶକ/ପାଠକ)ମାନଙ୍କ ହୃଦୟପାଖରୁ ଅଭିନବଗୁପ୍ତ ଏଥର ଗ୍ରନ୍ଥ ପାଖକୁ ଆସିଛନ୍ତି । କହିଛନ୍ତି, ଦର୍ଶକ କେବଳ ସହୃଦୟ/ମିତ୍ରବତ୍ ହେଲେ ଚଳିବ ନାହିଁ, ଗ୍ରନ୍ଥ/କାବ୍ୟ ମଧ୍ୟ ହୃଦୟଗ୍ରାହୀ ଓ ସୁନ୍ଦର ହେବା ଆବଶ୍ୟକ । କାବ୍ୟସୌନ୍ଦର୍ଯ୍ୟ ପରିପ୍ରେକ୍ଷୀରେ ସେ ଆନନ୍ଦବର୍ଦ୍ଧନଙ୍କୁ ହିଁ ସ୍ୱୀକାର କରିଛନ୍ତି । ତାଙ୍କ ପ୍ରଶ୍ନ, କାବ୍ୟ ଯଦି ଶବ୍ଦର ଅର୍ଥବଦ୍ଧ ସଂରଚନା ବା ଶବ୍ଦଶିଳ୍ପ, ଏହାକୁ ଆନନ୍ଦଦାୟୀ କରିବା ଆଦୌ ସହଜ ନୁହେଁ । ତାହା ପୂର୍ଣ୍ଣତଃ ଜଣେ ପ୍ରତିଭାର ଶବ୍ଦଶକ୍ତି ନିୟନ୍ତ୍ରଣ ଦକ୍ଷତା -ନିର୍ଭର । ଏହି ଶକ୍ତି ଉପଭୋକ୍ତାର ହୃଦୟରେ ରସ ସଞ୍ଚାର କରିଥାଏ । ଏଥିପାଇଁ ସେ ଶବ୍ଦର ତିନୋଟି ଅର୍ଥ -ଅଭିଧା, ଲକ୍ଷଣା ଓ ବ୍ୟଞ୍ଜନା- ସଂପର୍କରେ ଚର୍ଚ୍ଚା କରିଛନ୍ତି । ଶବ୍ଦର ବ୍ୟାକରଣିକ / ଆଭିଧାନିକ ଅର୍ଥ- ତାହାର ବ୍ୟୁତ୍ପତ୍ତି କେନ୍ଦ୍ରିକ । ଲକ୍ଷଣା ମଧ୍ୟ ପ୍ରାୟ ସମଅର୍ଥବୋଧକ । ଅଭିଧା ଓ ଲକ୍ଷଣା ଶବ୍ଦର ଅର୍ଥ -ବ୍ୟକ୍ତିର ବିଚାର ଓ ଆବଶ୍ୟକତାକୁ ଅବଶ୍ୟ ପ୍ରକାଶକରେ; ମାତ୍ର ତାହା ପ୍ରତ୍ୟକ୍ଷ ଓ ବକ୍ତବ୍ୟ ପ୍ରଧାନ । ଅନ୍ୟପକ୍ଷରେ, ସୌନ୍ଦର୍ଯ୍ୟ ଅନୁଭବର ପ୍ରସଙ୍ଗ ହେଉଛି ଭାବାତ୍ମକ । ତାହା ସହଜରେ କହିହୁଏ ନାହିଁ, କି ପୂର୍ଣ୍ଣତଃ ବୁଝିହୁଏ ନାହିଁ; କହିହେଲା, ବୁଝିହେଲାପରି ଲାଗେ; ମାତ୍ର କହିବାକୁ ପଡ଼ିବ, ବୁଝିବାକୁ ହେବ । ଶବ୍ଦର ଏହି ଅନ୍ତର୍ନିହିତ ଶକ୍ତି ହିଁ ଧ୍ୱନି, କେବଳ ଧ୍ୱନି । ରହସ୍ୟମୟ, ବହୁ ଅର୍ଥବ୍ୟଞ୍ଜକ । ପାଠକ ତା ମାନସିକତା ଓ ବିଚାର ଆଧାରରେ ସେହି ଅର୍ଥକୁ ବୁଝିପାରେ ।

ତେଣୁ କୁହାଯାଇଛି- ଶବ୍ଦର ଏହି ଧ୍ୱନି ବା ସୂଚକଶକ୍ତି ହିଁ ରସ । ଆନନ୍ଦବର୍ଦ୍ଧନଙ୍କ ଭାଷାରେ ତାହା ସ୍ଫୋଟ । ସେ ଅବଶ୍ୟ ଧ୍ୱନିକୁ ବସ୍ତୁ, ଅଳଙ୍କାର ଓ ରସଭେଦର ତିନିଭାଗରେ ବିଭକ୍ତ କରିଛନ୍ତି । କହିଛନ୍ତି -ସକଳ ଧ୍ୱନି ମଧ୍ୟରେ ରସଧ୍ୱନି ପ୍ରଧାନ । କାରଣ ରସକୁ କହି ହୁଏ ନାହିଁ, ଅନୁଭବ କରିହୁଏ ଏବଂ ତାହା (ରସ) ବିଭାବ ଓ ଅନୁଭାବ ମାଧ୍ୟମରେ ବ୍ୟଞ୍ଜିତ ହୁଏ । ଆନନ୍ଦବର୍ଦ୍ଧନଙ୍କ ଧ୍ୱନିବିଚାରକୁ ଭୂମିକରି, ଅଭିନବଗୁପ୍ତ, ଆଚାର୍ଯ୍ୟ ଭରତଙ୍କ ରସନିଷ୍ପତି ତତ୍ତ୍ୱର ସର୍ବଶେଷ ଚର୍ଚ୍ଚା କରିଛନ୍ତି । ଭରତଙ୍କ ରସତତ୍ତ୍ୱ ଏହିପରି : ବିଭାନୁଭାବ- ବ୍ୟଭିଚାରୀ

ସଂଯୋଗାଦ୍ ରସନିଷ୍ପତ୍ତି । ଅଭିନବ ଗୁପ୍ତଙ୍କ ଉକ୍ତି ସଂଯୋଗାଦ୍- ଆଭାସିତ ଓ ଆଭାସକ ମଧ୍ୟରେ ସଂପର୍କ ଏବଂ ନିଷ୍ପତ୍ତି ସଂଯୋଗସୃଷ୍ଟ ଅଭିପ୍ରକାଶ ବା ଅଭିବ୍ୟକ୍ତି (ଭାବ)ର ସୂଚକ । ଏହି ତତ୍ତ୍ୱ ନନ୍ଦନଶାସ୍ତ୍ରରେ 'ଅଭିବ୍ୟକ୍ତିବାଦ' । ଭରତ ଓ ଆନନ୍ଦବର୍ଦ୍ଧନଙ୍କ ଦର୍ଶନର ମିଶ୍ରରୂପ, ମାତ୍ର ସ୍ୱତନ୍ତ୍ର ।

ଏଥିରୁ ସ୍ପଷ୍ଟ ଯେ, ଅଭିନବ ଭରତଙ୍କ ରସନିଷ୍ପତ୍ତି ବିଚାର 'ବିଭାବ ଅନୁଭାବ ବ୍ୟଭିଗ୍ରାରୀ ଭାବ ସଂଯୋଗ'କୁ ପୂର୍ଣ୍ଣତଃ ଗ୍ରହଣ କରୁନାହାନ୍ତି । ତାଙ୍କ ବିଚାରରେ ଭାବଗୁଡ଼ିକର ଆସ୍ୱାଦ ମାନ୍ୟତାହିଁ ରସ । ବିଭାବଗୁଡ଼ିକ ମଧ୍ୟ ବାହ୍ୟବସ୍ତୁ ନୁହନ୍ତି ; ଅନ୍ତର୍ଗତ । ବିଭାବଗୁଡ଼ିକର ସାକ୍ଷାତକାରରେ ରସର ଉଦୟ ଏବଂ ରସର ଅଭିପ୍ରକାଶ ହିଁ କାବ୍ୟ ରଚନାର ଉଦ୍ଦେଶ୍ୟ । ଏହି ସାକ୍ଷାତକାରର ମୁହୂର୍ତ୍ତ ଉପରେ ଅଭିନବଙ୍କ ବିଚାର କେନ୍ଦ୍ରୀଭୂତ ହୋଇଛି । ମୁହୂର୍ତ୍ତକୁ ରସର ସୃଷ୍ଟି ଓ ଆସ୍ୱାଦନ, ଅର୍ଥାତ୍ ଦିବ୍ୟ ଅନୁଭବ ବୋଲି କହୁଛନ୍ତି । କହୁଛନ୍ତି – ଏହି ମୁହୂର୍ତ୍ତ ଅଧ୍ୟାତ୍ମ ସହ ସମ୍ମେଳନର ମୁହୂର୍ତ୍ତ । ତାହା କଳା -ସଂପୃକ୍ତ ସକଳ (ସ୍ରଷ୍ଟା, ସୃଷ୍ଟି, ନଟ ଓ ଉପଭୋକ୍ତା)ଙ୍କୁ ଗୋଟିଏ ବିନ୍ଦୁରେ ମିଳିତ କରେ । ସେଠାରେ 'ମୁଁ', ନୁହେଁ; ଏକ ଅଦୃଶ୍ୟ 'ମୁଁ' ସହିତ ସମ୍ମିଳିତ ସତ୍ତା, ଆତ୍ମବିସ୍ମୃତ ଭାବ ଏବଂ ଏହାହିଁ ସତ୍ୟ, ବାସ୍ତବତା ସର୍ବଶେଷ ସତ୍ୟ । ପ୍ରପଞ୍ଚର ସକଳ ଆକର୍ଷଣମୁକ୍ତ ମୁହୂର୍ତ୍ତ । ମାତ୍ର ଗୁରୁତ୍ୱପୂର୍ଣ୍ଣ କଥା, ଏହି ବାସ୍ତବତାକୁ ବ୍ୟାଖ୍ୟା କରିହେବ ନାହିଁ । ଏହା 'ହଁ' 'ନା'; କି ହଁ-ନା- ଏହା ମଧ୍ୟ କହିହେବ ନାହିଁ । ଏକ ସାଧାରଣ ମଣିଷର ମସ୍ତିଷ୍କ ଏହି ଗୂଢ଼କଥାକୁ ସହଜରେ ବୁଝିପାରିବନାହିଁ । ତାହା ଆଲୌକିକ । ଏହାର ରୂପ ଓ ଭାବକୁ ଶବ୍ଦରେ ମଧ୍ୟ କହିହେବ ନାହିଁ । କହିବା ପାଇଁ ଶବ୍ଦ ଅସମର୍ଥ । କାରଣ ଶବ୍ଦ ଏକ ନିର୍ଦ୍ଦିଷ୍ଟ ଅର୍ଥ ଓ ଭାବଗ୍ରାହୀ ସଂରଚନା । ଅନୁକରଣ କି ଅନୁମାନ ନୁହେଁ ଯେ, ତାକୁ ରୂପଦେଇ ହେବ । ଗୋଟିଏ ଶବ୍ଦରେ କହିଲେ- ଅଧ୍ୟାତ୍ମ ଅନୁଭବ । ସର୍ବଶେଷ ସତ୍ୟ ଅନୁଭବଜନିତ ଆନନ୍ଦ ଓ ବାସ୍ତବତା । ଅଭିନବଗୁପ୍ତଙ୍କର ଉପର୍ଯ୍ୟୁକ୍ତ ବିଚାରକୁ ତତ୍ତ୍ୱବିଦ୍‌ମାନେ ରାସନାଲ୍ ମିଷ୍ଟିକ୍ କହିଛନ୍ତି । ଏବଂ ତାଙ୍କ ରସସଂକ୍ରାନ୍ତ ଏହି ବିଚାରକୁ କହିଛନ୍ତି- ସୁପର ସେନ୍‌ସୁଅସ୍ ଏକ୍ସପେରିଏନ୍ସ; ଅତିନ୍ଦ୍ରିୟ ଅନୁଭୂତି ଏବଂ ସ୍ରଷ୍ଟା, ସୃଷ୍ଟି, ନଟ ଓ ଦର୍ଶକଙ୍କ ଏହି ଚିତ୍ତବୃତ୍ତିକୁ କୁହାଯାଇଛି ଶାନ୍ତ ବ୍ୟକ୍ତିସତ୍ତାର ଅହଂମୁକ୍ତ ସ୍ଥିତି: ଯେଉଁ ସ୍ଥିତି ବ୍ୟକ୍ତିକୁ ତାହାର ସ୍ୱରୂପ ଅନୁଭବରେ ସୁଯୋଗ ଦିଏ । ସେଥିପାଇଁ ଅଭିନବଗୁପ୍ତ 'ଶାନ୍ତ'କୁ ଏକ ରସ ବୋଲି କହିଛନ୍ତି, ଏବଂ କହିଛନ୍ତି – ଏହା ସକଳ ରସର ମୂଳାଧାର ।

ଆପଣାର ସାଧାରଣୀକରଣ ବିଚାରକୁ ସ୍ପଷ୍ଟ କରିଦେବାପାଇଁ ଅଭିନବ ଗୋଟିଏ ଗଛର ଉଦାହରଣ ଦେଇଛନ୍ତି । ଗଛ ମଞ୍ଜିରୁ ଜନ୍ମନିଏ, ବଢେ, ଡାଳ ମେଲେ, ପତ୍ର, ଫୁଲ,

ଫଳରେ ଭରିଯାଏ । ଚମତ୍କାର ଦିଶେ । ପଥିକମାନଙ୍କୁ ପାଖକୁ ଡାକେ । ନିରବରେ ଯେପରି କହୁଥାଏ-ଆସ, ବସ, ଦେଖ ଓ ଭୋଗକର । ସେହି ଗଛ ପୁଣି ଫଳ ଖାଆଏ । ଫଳ ଭିତରେ ମଞ୍ଜି । ଫଳ ପାଚେ । ଶୁଖିଯାଏ । ମଞ୍ଜି ମାଟିରେ ପଡ଼େ । ନୂଆ ଗଛ ଜନ୍ମନିଏ । କାବ୍ୟ/ ନାଟକ ଗଛ, ନଟଙ୍କ ଅଭିବ୍ୟକ୍ତି ଗଛରେ ପତ୍ର ଓ ଫୁଲ । ଦର୍ଶକଙ୍କ ଆଖି ଫଳ ଉପରେ । ତେଣୁ ଫଳ ଆସ୍ୱାଦ୍ୟ । ଗଛ ବଢୁଥାଏ ଭୂମି ଉପରେ । ଭୂମି ହେଉଛି କବି ବା ସ୍ରଷ୍ଟାଙ୍କ ଚିନ୍ତନ । ମଞ୍ଜି ଭିତରେ ଥାଏ ସତ୍ୟ ବା ରସ । ଏହି ସତ୍ୟ ସ୍ୱତଃ କବିଚେତନାରୁ ଉଦ୍‌ଗତ ହୁଏ । ଦିଗ ବିଦିଗରେ ପ୍ରସରି ଯାଏ । ସ୍ଥାନ, କାଳ ଓ ପାତ୍ରଗତ ବନ୍ଧନମୁକ୍ତ; ସଂଗ୍ରାମଶୀଳ ଏବଂ ଆତ୍ମଶକ୍ତିରେ ସମାହିତ । ସେ ନିଜକୁ ବ୍ୟକ୍ତକରେ । ଅଭିବ୍ୟକ୍ତିରେ ଥାଏ ଆନନ୍ଦ । ତେଣୁ ଭୂମି । ଅଭିନେତାଙ୍କ ଚେତନାରେ କବିର ଶକ୍ତି ପ୍ରସରିଯାଏ, ଉପଭୋକ୍ତାଙ୍କୁ ଆସ୍ୱାଦନପାଇଁ ପ୍ରମତ୍ତ କରେ । ପ୍ରମତ୍ତତା ମଞ୍ଜିରେ ରୂପାନ୍ତରିତ ହୋଇଯାଏ । ମଞ୍ଜି ପୁଣି ଭୂମିରେ ପଡ଼େ । ଅଙ୍କୁରିତ ହୁଏ । ଅର୍ଥାତ୍ ସ୍ରଷ୍ଟା, ସୃଷ୍ଟି, ଉପଭୋକ୍ତା ଓ ଗ୍ରାହକ- ପ୍ରତ୍ୟେକ ଯେପରି ପରସ୍ପରର ମିତ୍ରବତ୍ ।

ଏଥର ରସକୈନ୍ଦ୍ରିକ ଦ୍ୱନ୍ଦ୍ୱ- ପାଖକୁ ଆସିବା । ଦ୍ୱନ୍ଦ୍ୱ ରସ କେଉଁଠି ଥାଏ ? ସ୍ରଷ୍ଟା (କବି, ଚିତ୍ରକର, ସ୍ଥପତି)ଙ୍କ ସୂକ୍ଷ୍ମ ଅବବୋଧ, ଉତ୍ପାଦିତ ସାମଗ୍ରୀ, ଗ୍ରାହକ/ଦର୍ଶକ/ ଉପଭୋକ୍ତାଙ୍କ ଚିତ୍ତ; ସ୍ରଷ୍ଟା -ସୃଷ୍ଟ ଚରିତ୍ର ଓ ଘଟଣା; ନା ନଟ ? ଏମାନେ ଗୋଟିଏ ବିନ୍ଦୁରେ ମିଳିତ ନହେଲେ ରସ ଉତ୍ପନ୍ନ ହୁଏନାହିଁ । ଅର୍ଥାତ୍ ସେହି ମିଳନର ମୁହୂର୍ତ୍ତ, ଦିବ୍ୟମୁହୂର୍ତ୍ତ । ସକଳ 'ମୁଁ'ର ଗୋଟିଏ 'ମୁଁ'ରେ ରୂପାନ୍ତରଣ ଅବସ୍ଥା । ଏହି ମୁହୂର୍ତ୍ତରେ ସକଳ ରସ ଗୋଟିଏ ରସର ରୂପ ନିଅନ୍ତି । ଅର୍ଥାତ୍ ଭିନ୍ନ ଚିତ୍ତବୃତ୍ତିର ଉପଭୋକ୍ତା ଏକ ବୃତ୍ତିରେ ସମାଛନ୍ନ ହୋଇଯାନ୍ତି । ତାହା ମୁହୂର୍ତ୍ତକ ପାଇଁ ହୋଇପାରେ, ମାତ୍ର ସତ୍ୟ । ତାହା ପୁଣି ଦେଶ, କାଳ ଓ ପାତ୍ରାତୀତ । ନନ୍ଦନଶାସ୍ତ୍ରରେ ଏହି ଅବସ୍ଥାର ପରିଭାଷା 'ସାଧାରଣୀକରଣ' । ମାତ୍ର ରସ ଓ ଆବେଗ ଏକା କଥା ନୁହେଁ । ଗ୍ରାହକ ବା ଉପଭୋକ୍ତା, ଅଭିନେତା ବା ନଟ ଆପଣା ଆବେଗରୁ ବିଚ୍ଛିନ୍ନ ହୋଇଗଲେ ତାଙ୍କ ଭିତରେ ରସ ସୃଷ୍ଟି ହୁଏ । ରସବୋଧ ତାଙ୍କ ଭିତରେ ଉତ୍ତେଜନା ସୃଷ୍ଟି କରେନାହିଁ । ସେ ବାସ୍ତବତା/ ସୌନ୍ଦର୍ଯ୍ୟକୁ ଅନୁଭବ କରନ୍ତି । ଏହି 'ବାସ୍ତବ' ରହସ୍ୟମୟ । ଗବେଷକମାନେ ଅଭିନବଗୁପ୍ତଙ୍କର ରସତ୍ୱ ସଂକ୍ରାନ୍ତ ଏହି ବିଚାରକୁ ମନସ୍ତତ୍ତ୍ୱ, ସମାଜତତ୍ତ୍ୱ, ଦର୍ଶନଆଦି ନାନା ବିଦ୍ୟାଶୃଙ୍ଖଳା ଆଧାରରେ ଚର୍ଚ୍ଚା କରିଛନ୍ତି । ଏବଂ, ପ୍ରତ୍ୟେକ ତାଙ୍କ ସ୍ୱାତନ୍ତ୍ର୍ୟକୁ ସ୍ୱୀକାର କରିଛନ୍ତି । ମାତ୍ର ଏପରି ଏକ ବିଚାର ତାଙ୍କ ଚେତନାକୁ ଉଦୟ ହେଲା କିପରି - ଏକ ଗୁରୁତ୍ୱପୂର୍ଣ୍ଣ ପ୍ରଶ୍ନ ।

ପୂର୍ବରୁ କହିଛି, ଆନନ୍ଦବର୍ଦ୍ଧନ ଓ ଅଭିନବଗୁପ୍ତ - ଉଭୟ ଶୈବ । ଅଭିନବ, କାଶ୍ମୀରରେ ବିକଶିତ ଶୈବବାଦର ପ୍ରତ୍ୟାଭିଜ୍ଞମାର୍ଗର ଅନୁଗାମୀ, ଉତ୍ପଳଦେବଙ୍କ ଶିଷ୍ୟ, ବହୁ ଶୈବତତ୍ତ୍ୱ ଗ୍ରନ୍ଥର ପ୍ରଣେତା । ତାଙ୍କ ବ୍ୟକ୍ତିତ୍ୱ-ରସତତ୍ତ୍ୱ ଓ ଶିବତତ୍ତ୍ୱର କିପରି ସମୀକରଣ, ତାହା ବିଚାର୍ଯ୍ୟ । କାଶ୍ମୀରର ଶୈବଦର୍ଶନ 'ତ୍ରିକଶାସ୍ତ୍ର' ନାମରେ ପରିଚିତ । ତ୍ରିକ—ଶିବ (ପରାଶକ୍ତି, ଚେତନାର ଶୀର୍ଷରେ ତାଙ୍କର ସ୍ଥିତି), ଶକ୍ତି (ପରାପର, ଅସ୍ମିତାଗତ ଭିନ୍ନତା ବା ବୈଚିତ୍ର୍ୟର ପ୍ରତୀକ), ନର (ପରାଶକ୍ତି) ଭିନ୍ନତାର ସୂଚକ । ଭିନ୍ନତା କିପରି ଏକରେ ପରିଣତ ହୁଏ, ଶୈବବାଦ ତାହାହିଁ କହିଛି, ଏବଂ ଏହି ବିଚାରକୁ କେନ୍ଦ୍ରକରି ରଚିତ ଶାସ୍ତ୍ରକୁ ଆଗମ, ସ୍ପନ୍ଦ ଓ ପ୍ରତ୍ୟାଭିଜ୍ଞ ଭେଦରେ, ତିନି ଭାଗରେ ବିଭକ୍ତ କରାଯାଇଛି । ଆଗମ ଶାସ୍ତ୍ର ଶିବଙ୍କ; ନିଗମ ଶାସ୍ତ୍ର ଶକ୍ତିଙ୍କ ସ୍ୱରୂପ ଏବଂ ପ୍ରତ୍ୟାଭିଜ୍ଞଶାସ୍ତ୍ର ଦର୍ଶନର ବ୍ୟାଖ୍ୟାରୂପ । ଏହି ଦର୍ଶନକୁ ଚାରିଗୋଟି ସ୍ତରରେ ଚର୍ଚ୍ଚା କରାଯାଇଛି- ଚରମ ସତ୍ୟ, ପ୍ରମୂର୍ତ୍ତିକରଣ, ବନ୍ଧନ ଓ ମୁକ୍ତି ।

ପରମଶକ୍ତି ହେଉଛି ଚିତ୍ ବା ପରାସମ୍ବିତ । ଏହା ବ୍ୟକ୍ତିସତ୍ତାର ନିର୍ବିକଳ୍ପ ସ୍ଥିତି - ମୁଁ ଓ ଅନ୍ୟ ସକଳ ଭାବର ଊର୍ଦ୍ଧ୍ୱରେ । ପ୍ରତିଭିଜ୍ଞଶାସ୍ତ୍ର ଏହି ଅବସ୍ଥାକୁ 'ପ୍ରକାଶବିମର୍ଶମୟ' କହିଛି । ପ୍ରକାଶ- ଚିରନ୍ତନ ଆଲୋକ; ବିମର୍ଶ -ଶକ୍ତି, ଶିବଙ୍କର ସ୍ୱଭାବ ଓ ଚରିତ୍ର । ଶକ୍ତି ହେଉଛି ଦର୍ପଣ- ଯାହା ମାଧ୍ୟମରେ ଶିବ ନିଜକୁ ଦେଖନ୍ତି, ଅନୁଭବ କରନ୍ତି ଏବଂ ବିମର୍ଶ -ଶିବଙ୍କର କର୍ତ୍ତୃତ୍ୱ ଶକ୍ତି— ଯାହା ଅନୁଭବର ସୁଯୋଗ ଦିଏ । ତେଣୁ ଅନ୍ତିମ ସତ୍ୟ । ଶିବ ହେଉଛନ୍ତି ଆତ୍ମସଚେତନ । ସେ କ୍ରିୟାଶୀଳ । ସେ ନିଜ ଇଚ୍ଛାନୁସାରେ, ଜ୍ଞାନ ଓ କର୍ମ ମାଧ୍ୟମରେ ନିଜକୁ ପ୍ରକାଶ କରନ୍ତି । ଯିଏ ନିଜକୁ ପ୍ରକାଶ କରିବାପାଇଁ ଅସମର୍ଥ, ସେ 'ଚେତନା' ହେବା ସମ୍ଭବ ନୁହେଁ । ତାହା (ଚେତନା) ବିଶାଳ ବରଗଛର ଫଳ ଭିତରେ ଥିବା ଅଦୃଶ୍ୟ ମଞ୍ଜି ପରି । ବ୍ୟକ୍ତି ବା ଜୀବ ନିଜର ଅଜ୍ଞତା ବଶତଃ କାଳଗ୍ରସ୍ତ ହୁଏ । ବିଶ୍ୱ ଚେତନା (ଶିବ)ଙ୍କୁ ଅନୁଭବ କରିପାରେନାହିଁ । କାମନା ମଧ୍ୟ ତା ବିଚାର ଓ କର୍ମ ପ୍ରବଣତାକୁ ଆହତ କରେ । କାମନାର ଅନ୍ୟ ନାମ ବନ୍ଧନ । ଏହି ବନ୍ଧନ ଚକ୍ରବତ୍ ଜନ୍ମମୃତ୍ୟୁର କାରଣ ହୁଏ । ମାତ୍ର ତାହାର ମୁକ୍ତି ଲୋଡ଼ା । ମୁକ୍ତିର ଅର୍ଥ ପ୍ରତ୍ୟାଭିଜ୍ଞ- ଆପଣା ଅହଂର ଆବିଷ୍କରଣ । ଅଭିନବ ଗୁପ୍ତଙ୍କ ବିଚାରରେ, ମୁକ୍ତିବଦ୍ଧତା ହେଉଛି ଆପଣା ପ୍ରବୃତ୍ତି ବା ଚେତନା ସଂପର୍କରେ ସଚେତନତା । ବ୍ୟକ୍ତିର ଅନ୍ତିମ ଲକ୍ଷ୍ୟ, ପୁଣି, ମୁକ୍ତି; ଅର୍ଥାତ୍ ଶିବବୋଧ ସହିତ ସମ୍ମେଳନ । ଯେଉଁ ମୁହୂର୍ତ୍ତରେ ଦିବ୍ୟଶକ୍ତି ବ୍ୟକ୍ତି ଚେତନାରେ ଅବତରି ଆସେ, ଆଚ୍ଛନ୍ନ କରେ; ତାଙ୍କପାଇଁ ସମଗ୍ର ବିଶ୍ୱ ଶିବମୟ, ଅର୍ଥାତ୍ ତାଙ୍କ ଅହଂ ଶିବରେ ରୂପାନ୍ତର ହୋଇଯାଏ । ଏବଂ ଶକ୍ତି ମଧ୍ୟ ସେହି ଶିବଙ୍କର ପ୍ରମୂର୍ତ୍ତାୟନ । ଶିବ ଓ ଶକ୍ତିଙ୍କ ସଂପର୍କକୁ ଏକ ପ୍ରତୀକ ମାଧ୍ୟମରେ ସ୍ପଷ୍ଟକରି

ଦିଆଯାଇଛି । ଜଣେ ଜହ୍ନ, ଅନ୍ୟଜଣଙ୍କ ଜ୍ୟୋସ୍ନା ; ଜଣେ ପୂର୍ଣ୍ଣ, ଅନ୍ୟଜଣଙ୍କ ପୂର୍ଣ୍ଣର ଅଂଶବିଶେଷ । କେହି କାହାଠାରୁ ଭିନ୍ନ ନୁହନ୍ତି । ଦୃଶ୍ୟମାନ ସଂସାର ହିଁ ଶକ୍ତି, ତେଣୁ ଆନନ୍ଦର ଆୟତନ । ମାତ୍ର ଅଦ୍ୱୈତ ବେଦାନ୍ତଦର୍ଶନ ସଂସାରକୁ ଆନନ୍ଦ, କି ଶକ୍ତି ନୁହେଁ; ମାୟା ବୋଲି କହିଛି ।

ପ୍ରଶ୍ନଉଠେ, ରସତତ୍ତ୍ୱ ସହିତ ଶିବତତ୍ତ୍ୱର ସଂପର୍କ କେଉଁଠାରେ ? ଉତ୍ତର ସ୍ପଷ୍ଟ । ଅଭିନବଗୁପ୍ତ ଶିବତତ୍ତ୍ୱର ଦୁଇଗୋଟି ଶବ୍ଦ 'ସମ୍ବିତ୍' ଓ 'ବିମର୍ଶ'କୁ ରସ ଅବବୋଧରେ ପ୍ରୟୋଗ କରିଛନ୍ତି । ସମ୍ବିଦ୍ (ପରା) ପରମସତ୍ତା; ଏବଂ ବିମର୍ଶ ହେଉଛି ଶକ୍ତି- ପରମର ସ୍ୱଭାବ ବା ଚରିତ୍ର । ରସ ଯଦି ଆନନ୍ଦ (ସମ୍ବିତ୍), ବିମର୍ଶ ଆନନ୍ଦଲାଭର ମାଧ୍ୟମ, ଶବ୍ଦ ହେଉଛି ଶକ୍ତି । ପୁଣି ନର ବା ପରାଶକ୍ତି ହେଉଛି ଦର୍ଶକ/ଗ୍ରାହକ/ପାଠକ । ସେ ସାଧାରଣ ଗ୍ରାହକ ନୁହେଁ; ଅହଂମୁକ୍ତ ଓ ମୁକ୍ତିକାମୀ ଗ୍ରାହକ । ଏବଂ, ସବୁଠାରୁ ବଡ଼କଥା, ରସର ସ୍ଥିତି କେଉଁଠାରେ ? ରଚନାରେ, ସ୍ରଷ୍ଟା, ନା ଗ୍ରାହକ ଅବବୋଧରେ ? ଉତ୍ତର ସବୁଠାରେ ।ତତ୍ପ୍ରୈକ । ଏହି ବିଚାରର ପରିଭାଷା 'ସାଧାରଣୀକରଣ ତତ୍ତ୍ୱ' ଲେଖକ, ରଚନା ଓ ଗ୍ରାହକଙ୍କ ମଧ୍ୟରେ ମୋହମୁକ୍ତ ଅନ୍ତରଙ୍ଗ ଏକତ୍ୱଭାବ । ଅଭିନବଗୁପ୍ତଙ୍କ ଏହି ବିଚାରକୁ ପଢିଲେ, ଜଣେ ପାଠକ ନିଶ୍ଚିତ ଭାବରେ ସ୍ୱୀକାରକରିବ ଯେ ଭାରତୀୟ ନନ୍ଦନଶାସ୍ତ୍ରରେ ରସତତ୍ତ୍ୱ ସଂକ୍ରାନ୍ତ କାଳକ୍ରମିକ ଚର୍ଚ୍ଚାର ସେ ଶିଖର ଓ ଶେଷ ବ୍ୟକ୍ତିତ୍ୱ ।

॥ ତିନି ॥

ଆଲୋଚନାର ଆରମ୍ଭରେ ମୁଁ ସୂଚନା ଦେଇଥିଲି, ମଣିଷର ଶାରୀରିକ, ମାନସିକ ଓ ବୈଚାରିକ ବିବର୍ତ୍ତନ, ତା'ର ସକଳ ସର୍ଜନକର୍ମ—ସମାଜ, ଧର୍ମ ଓ ଧର୍ମାଚାର, ସଂସ୍କୃତି, କଳା, ସାହିତ୍ୟରେ ପ୍ରତିଧ୍ୱନିତ ହେଉଛି । ସେ ବିଦ୍ୟା-ଶୃଙ୍ଖଳାକୁ ତତ୍‌ଅନୁସାରେ, ନାନାଭାଗରେ ବିଭକ୍ତ କରିଛି । ମାତ୍ର ସକଳ କର୍ମ ମୂଳରେ ସୁଖକର ଓ ଆପଦମୁକ୍ତ ଜୀବନ ବଞ୍ଚିବାରେ ଅଭୀପ୍ସା ହିଁ କ୍ରିୟାଶୀଳ ରହିଛି । ତେଣୁ ରସତତ୍ତ୍ୱ ଆଲୋଚନା କାଳରେ ସକଳ ବିଦ୍ୟାଶୃଙ୍ଖଳା ସମୀକୃତ ହେବା ସ୍ୱାଭାବିକ । କାରଣ ମଣିଷ ନାମକ ଜୀବ, ପୃଥିବୀର ପ୍ରତ୍ୟେକ ଭୂମି, ପ୍ରାକୃତିକ ପରିମଣ୍ଡଳରେ ବଞ୍ଚିପାରେ । ପ୍ରାକୃତିକ ପରିମଣ୍ଡଳ ତା ଦେହର ରଙ୍ଗ ଓ ଆକାରଗତ ବିବିଧତାର କାରଣ ହୋଇପାରେ । ସମାଜ ଓ ସଂସ୍କୃତି ସ୍ୱତନ୍ତ୍ର ଭାବରେ ତିଆରି ହୋଇଯାଉଥାଏ । ଅର୍ଥାତ୍ ପବିବର୍ତ୍ତନ ତା ଦେହ, ସମାଜ ଓ ସଂସ୍କୃତି କ୍ଷେତ୍ରରେ ସମତାଳରେ ସଂଘଟିତ ହେଉଥାଏ । ମାତ୍ର ମାନସିକ ସ୍ତରରେ ସବୁଠି, ସବୁ ମଣିଷ ସମାନ । ଅର୍ଥାତ୍ ତା'ର ସକଳ ବୈଚାରିକ,

ବୈଷୟିକ ଓ ଶାରୀରିକ ବିବର୍ତ୍ତନ ଓ ସର୍ଜନ ପ୍ରକ୍ରିୟା ମନ-ନିୟନ୍ତ୍ରିତ । ବ୍ୟକ୍ତିଠାରୁ ଆରମ୍ଭ କରି ପରିବାର, ଗୋଷ୍ଠୀ, ସମାଜର- ସକଳ କ୍ଷେତ୍ରରେ କୌଣସି ପ୍ରସଙ୍ଗକୁ କେନ୍ଦ୍ରକରି ନାନାମତ, ମତକୈନ୍ଦ୍ରିକ ଦ୍ୱନ୍ଦ୍ୱ, ବିତର୍କ, ନିଷ୍କର୍ଷ ଓ ପୁନଃବୈଚାରିକ ଭିନ୍ନତା ରହିଛି । ସେହି ଭିନ୍ନତା ହିଁ ଜୀବନ, ଗତିଶୀଳ ମାନସିକ ଅବସ୍ଥାର ସୂଚକ । ଅର୍ଥାତ୍ ରସର ସୂଚକ, ଜୀବନଶକ୍ତିର ସୂଚକ । କାରଣ ରସ ହିଁ ମନର ମର୍ମ । ଭାରତର ଆଚାର୍ଯ୍ୟମାନେ ମର୍ମର ରହସ୍ୟ ଉଦ୍‌ଘାଟନ ପ୍ରୟାସୀ ହୋଇଛନ୍ତି । ରସର ପ୍ରକାର ନିରୂପଣ କରିଛନ୍ତି, ସ୍ଥିତି ଓ ପ୍ରକାର୍ଯ୍ୟକୁ ବିଦ୍ୟାଶୃଙ୍ଖଳାର ସକଳ ଗବାକ୍ଷ ମାଧ୍ୟମରେ ପରିଶୀଳନ କରିଛନ୍ତି । ଫଳତଃ, ରସର ବୈଚିତ୍ର୍ୟ ଓ ସୂକ୍ଷ୍ମତାକୁ ବୁଝିହେଉଛି । କେବଳ ସେତିକି ନୁହେଁ, ସେମାନଙ୍କ ବିଚାର ମାଧ୍ୟମ ଦେଇ ସେମାନଙ୍କ ବ୍ୟକ୍ତିତ୍ୱ ଓ ସମକାଳର ସମାଜ, ସଂସ୍କୃତି କଳା, ସାହିତ୍ୟ, ଧର୍ମଦର୍ଶନ, ଅର୍ଥ ବ୍ୟବସ୍ଥା - ସବୁକିଛି ସ୍ପଷ୍ଟତର ହୋଇଯାଇଛି । ଏବଂ ସକଳ ବିଦ୍ୟାଶୃଙ୍ଖଳାର ବିକାଶର ପ୍ରସ୍ଥଗୁଡ଼ିକ ମଧ୍ୟ ଖୋଲି ଖୋଲି ଯାଉଛି । ରସଚର୍ଚ୍ଚା ପ୍ରସଙ୍ଗରେ ଗୁରୁତ୍ୱପୂର୍ଣ୍ଣ ସିଦ୍ଧାନ୍ତ-- ପଶ୍ଚିମର ଶରୀରବିଜ୍ଞାନୀମାନେ ବିଭାବ ସହିତ ଶରୀରସ୍ଥ ରସଗ୍ରନ୍ଥିଗୁଡ଼ିକର କିପରି ସଂପର୍କ ରହିଛି, ତତ୍‌ସଂପର୍କରେ ମଧ୍ୟ ସ୍ପଷ୍ଟ କରିଦେଇଛନ୍ତି । ପୃଥିବୀର ବହୁ ଭୂମିର ନନ୍ଦନଶାସ୍ତ୍ରୀମାନେ ଭାରତର ଆଚାର୍ଯ୍ୟମାନଙ୍କ ଅବବୋଧକୁ ଅପଣାଆପଣା ଦୃଷ୍ଟିରେ ଚର୍ଚ୍ଚା କରିଛନ୍ତି । ଚର୍ଚ୍ଚା ଏକ ବୌଦ୍ଧିକ ଯାତ୍ରାର ଅନୁଷଙ୍ଗ ହୋଇଛି ।

ନାଟକ ଓ କବିତାକୁ ଭୂମିକରି ଆରମ୍ଭ ହୋଇଥିବା ରସଚର୍ଚ୍ଚା, ପରବର୍ତ୍ତୀକାଳରେ ସଂଗୀତ, ନୃତ୍ୟ, ସାହିତ୍ୟ, ଚିତ୍ର, ସ୍ଥାପତ୍ୟ ଆଦି ଅଭିବ୍ୟକ୍ତିର ପ୍ରାରୂପ ମୂଲ୍ୟାୟନର ସର୍ବମୂଳଭିତ୍ତି ହୋଇଛି; ହୋଇଛି ଭାରତୀୟ ନନ୍ଦନତତ୍ତ୍ୱର ମୌଳ ଆଧାର । ■

ରେଭେନ୍‌ସା ବିଶ୍ୱବିଦ୍ୟାଳୟର ଓଡ଼ିଆ ବିଭାଗ ଦ୍ୱାରା ପ୍ରକାଶିତ
'ସାହିତ୍ୟପତ୍ର ୨୦୧୫' ରୁ ସଂଗୃହୀତ)

# ଆଧୁନିକ ବିଶ୍ୱରେ ସମାଜବାଦର ନୂତନ ରୂପରେଖ

କିଶନ ପଟ୍ଟନାୟକ

ଶ୍ରଦ୍ଧେୟ ସଭାପତି ମହୋଦୟ ଏବଂ ବନ୍ଧୁଗଣ ।

ମୁଁ ମାଳତୀ ଦେବୀ-ନବକୃଷ୍ଣ ଚୌଧୁରୀ ଟ୍ରଷ୍ଟର କାର୍ଯ୍ୟକର୍ତ୍ତା ଓ ପଦାଧିକାରୀମାନଙ୍କୁ କୃତଜ୍ଞତା ଜଣାଇବା ପାଇଁ ଚାହେଁ ଯେ ନବକୃଷ୍ଣ ଚୌଧୁରୀ ବକ୍ତୃତାମାଳାର ପ୍ରଥମ ବକ୍ତୃତା ଦେବାର ଦାୟିତ୍ୱ ମୋତେ ଦେଇଛନ୍ତି । ମୋତେ କାହିଁକି ଏ ଦାୟିତ୍ୱ ଦେଇଛନ୍ତି ମୁଁ ଜାଣେନା । ସାଧାରଣତଃ ଯେଉଁମାନେ ସାମାଜିକ ଭାବରେ କିମ୍ବା ବିଦ୍ୱାନମଣ୍ଡଳୀରେ ପ୍ରତିଷ୍ଠିତ ସେମାନଙ୍କୁ ସ୍ମାରକୀ ବକ୍ତୃତା ଦେବାର ସୁଯୋଗ ଦିଆଯାଇ ଥାଏ । ମୁଁ ସେପରି ଏକ ପ୍ରତିଷ୍ଠାସଂପନ୍ନ ବ୍ୟକ୍ତି ନୁହେଁ । ଆଉ ଦୁର୍ଯ୍ୟୋଗକୁ ଏପରି ହେଲା ଯେ, ଯେଉଁ ସୁଯୋଗ ମୋତେ ମିଳିଲା ତାହାକୁ ମଧ୍ୟ ଠିକ ଭାବରେ ନିର୍ବାହ କରିପାରିଲି ନାହିଁ । ସ୍ମାରକୀ ବକ୍ତୃତାମାଳାର ଗୋଟିଏ ପରିପାଟୀ ରହିଛି । ଅଧିକାଂଶ ସ୍ଥାନରେ ତାହା ପାଳିତ ହୁଏ । ତାହା ହେଲା, ସ୍ମାରକୀ ବକ୍ତୃତାଟି ଆଗରୁ ଲେଖାଯାଇ ଥାଏ ଏବଂ ଛପାଯାଇ ବିତରିତ କରାଯାଏ । ତାହାଦ୍ୱାରା ବକ୍ତାର ପ୍ରତିଷ୍ଠା ବଢେ । କିନ୍ତୁ ଏକ ବ୍ୟକ୍ତିଗତ, ପାରିବାରିକ କାରଣରୁ ମୁଁ ତାହା ମଧ୍ୟ ତୁଲାଇ ପାରିଲି ନାହିଁ । ତେବେ ମୁଁ ଅଯୋଗ୍ୟ ହେଲେ ବି ଦାୟିତ୍ୱ ପ୍ରତି ସଚେତନ ଏବଂ ସେ ବିଷୟରେ ଯେତିକି ଚିନ୍ତା କରିବା କଥା କରିଛି ଓ ଆପଣମାନଙ୍କ ଆଗରେ ନିଜର ବକ୍ତବ୍ୟ ରଖୁଛି ।

ନବକୃଷ୍ଣ ଚୌଧୁରୀ ମୋ ପାଇଁ ଏକ ପ୍ରିୟ ନାମ । ତେବେ ସେଥିରେ ଗୋଟିଏ ବୈଚିତ୍ର୍ୟ ବି ରହିଛି । ନବକୃଷ୍ଣ ଚୌଧୁରୀ ଏବଂ ଜୟପ୍ରକାଶ ନାରାୟଣଙ୍କର ନାମ ବେଳେବେଳେ ମୋ ମନରେ ଏକା ସାଙ୍ଗରେ ଆସେ । କାହିଁକି ନା, ମୁଁ ଯେତେବେଳେ ୧୯୫୨ରେ ଓଡ଼ିଶା ସୋସାଲିଷ୍ଟ ପାର୍ଟିର ଜଣେ ସକ୍ରିୟ କାର୍ଯ୍ୟକର୍ତ୍ତା ଭାବରେ ଯୋଗ ଦିଏ, ସେତେବେଳେ ସେ ଦୁଇ ତିନି ବର୍ଷ ଭିତରେ ଭିନ୍ନଭିନ୍ନ ସମୟରେ ଭିନ୍ନଭିନ୍ନ କାରଣରୁ ଉଭୟ ନବକୃଷ୍ଣ ଚୌଧୁରୀ ଏବଂ ଜୟପ୍ରକାଶ ନାରାୟଣଙ୍କୁ କଟୁ ଭାଷାରେ ସମାଲୋଚନା କରିଥିଲି । ସେ କଥା ମନେ ପଡ଼ିଲେ ମୋତେ ହସ ଲାଗେ । ମୁଁ ନୂଆ କରି ପତ୍ରିକା ଚଳାଇବା ଓ ଲେଖାଲେଖି କରିବା

ଆରମ୍ଭ କରିଥାଏ । 'କୃଷକ' ସହ-ସଂପାଦନାର ଦାୟିତ୍ୱରେ ଥିଲି । ସେତେବେଳେ ନବକୃଷ୍ଣ ଚୌଧୁରୀ ମୁଖ୍ୟମନ୍ତ୍ରୀ ଥିଲେ ଏବଂ ଭୂଦାନ ଆନ୍ଦୋଳନରେ ଆଗୁଆ ମଧ୍ୟ ଥିଲେ । ତାଙ୍କର ଏକ ଭାଷଣର ପ୍ରତିକ୍ରିୟା ପ୍ରକାଶ କରି ମୁଁ ଆମ ପତ୍ରିକାରେ ଲେଖିଲି, "ଓଡ଼ିଶାର ମୁଖ୍ୟମନ୍ତ୍ରୀ ଧନୀ ଲୋକଙ୍କର କୁତ୍ତା" । ଶିରୋନାମା ଭାବରେ ଏହା ଏକ ଅସଂଯତ ବାକ୍ୟ ଥିଲା, ମାତ୍ର ମୁଁ ଲେଖିଥିଲି । ତାପରେ ମନମୋହନ ଚୌଧୁରୀଙ୍କର ଏକ ପ୍ରତିବାଦ ଆସିଲା ଏବଂ ଆମେ ତାକୁ ମଧ୍ୟ ଛାପିଥିଲୁ । ପ୍ରାୟ ସେହି ସମୟରେ ଜୟପ୍ରକାଶ ନାରାୟଣ ସୋସାଲିଷ୍ଟ ପାର୍ଟିରୁ ଓହରି ଯାଇ ଭୂଦାନ ଆନ୍ଦୋଳନରେ ଯୋଗ ଦେଇଥିଲେ । ସେ ପ୍ରଧାନମନ୍ତ୍ରୀ ନେହରୁଙ୍କ ସହ ସମଝୋତା କରିବା ପାଇଁ କଥାବାର୍ତ୍ତା ଆରମ୍ଭ କରି ଦେଇଥିଲେ । ତାଙ୍କୁ ମଧ୍ୟ ମୁଁ କଟୁ ସମାଲୋଚନା କରି କେତେ ଜାଗାରେ ଲେଖିଥିଲି । ଅସଲ କଥା ହେଲା ଯେ, ମୁଁ ଭୂଦାନ ଆନ୍ଦୋଳନର କଟୁ ସମାଲୋଚକ ଥିଲି । ନବବାବୁ ଏବଂ ଜୟପ୍ରକାଶ ଉଭୟେ ବାଟବଣା ହୋଇଛନ୍ତି ବୋଲି ମୋତେ ଜଣା ପଡ଼ିଥିଲା । ଏହି ପ୍ରାରମ୍ଭିକ କଟୁ ସମାଲୋଚନା ପରବର୍ତ୍ତୀ କାଳରେ ମଧୁର ସଂପର୍କରେ ପରିଣତ ହେଲା । ନବକୃଷ୍ଣ ଚୌଧୁରୀ ମୁଖ୍ୟମନ୍ତ୍ରୀତ୍ୱ ଛାଡ଼ିବାପରେ ସାମାଜିକ ବୈପ୍ଳବିକ କାର୍ଯ୍ୟରେ ଏଭଳି ତନ୍ମୟତାର ସହ ଯୋଗଦେଲେ ଯେ, ସେଥିରୁ ଏକ ନୂଆ ରକମର ସଂପର୍କ ତାଙ୍କ ସହ ସ୍ଥାପିତ ହେଲା । ପରବର୍ତ୍ତୀ କାଳରେ ୧୯୭୪ରେ ବିହାରର ପାଟଣାଠାରେ ରହି ଜୟପ୍ରକାଶ ନାରାୟଣ ସଂପୂର୍ଣ୍ଣ କ୍ରାନ୍ତି ଆନ୍ଦୋଳନ ଆରମ୍ଭ କଲେ । ତାଙ୍କ ସହ ମଧ୍ୟ ଦେଖାହେଲା । ତାଙ୍କର ନିକଟତର ହେବା ସଙ୍ଗେ ସଙ୍ଗେ ତାଙ୍କ ବିଷୟରେ ଥିବା ପୁରୁଣା ଧାରଣା ଗୁଡ଼ିକ ଦୂରେଇ ଗଲା । ସେହି ସଂପୂର୍ଣ୍ଣ କ୍ରାନ୍ତି ଆନ୍ଦୋଳନରେ ଓଡ଼ିଶାରେ ନବକୃଷ୍ଣ ଚୌଧୁରୀଙ୍କର ନେତୃତ୍ୱରେ କାମ କରିବାର ସୁଯୋଗ ମୋତେ ମିଳିଥିଲା । ଏସବୁ ହେଉଛି କେତେକ ସ୍ମୃତି । ମୋଟ ଉପରେ ନବକୃଷ୍ଣ ଚୌଧୁରୀଙ୍କ ବିଷୟରେ ମୋର ଯେଉଁ ଆକଳନ ରହିଛି ଜୟପ୍ରକାଶ ନାରାୟଣଙ୍କ ବିଷୟରେ ମଧ୍ୟ ଏକ ସମତୁଲ୍ୟ ଆକଳନ ରହିଛି । ଉଭୟେ ବିପ୍ଳବକୁ ବା ବୈପ୍ଳବିକ ଆନ୍ଦୋଳନକୁ ଖୋଜି ବୁଲୁଥିଲେ । ଜୀବନସାରା ଖୋଜି ବୁଲୁଥିଲେ । ସେଥିପାଇଁ ସେମାନେ ଜୀବନସାରା କେଉଁଠି ସ୍ଥିର ହୋଇ ରହିପାରି ନାହାଁନ୍ତି । ଏହି ସ୍ଥିର ହୋଇ ରହିପାରୁନଥିବା ବ୍ୟକ୍ତିଙ୍କୁ ଯେ ପାଖରେ ଦେଖିନାହିଁ କିମ୍ବା ତାଙ୍କର ବିଚାରଧାରାର ପ୍ରକ୍ରିୟା ସହ ଯାହାର ଘନିଷ୍ଠ ସଂପର୍କ ନାହିଁ ସେ ତାଙ୍କୁ ଭୁଲ୍ ବୁଝିପାରେ । ନବକୃଷ୍ଣ ଚୌଧୁରୀ ଓ ଜୟପ୍ରକାଶ ନାରାୟଣ - ଉଭୟଙ୍କୁ ଅନେକ ସମୟରେ ଭୁଲ ବୁଝିବା ସହଜ ହୋଇଥାଏ; କାରଣ ସେମାନେ ଅସ୍ଥିର ଥିଲେ । କିନ୍ତୁ ସେମାନଙ୍କର ଅସ୍ଥିରତାର ଏକ ନିଜସ୍ୱ ଚରିତ୍ର ଥିଲା । ଯେଉଁମାନେ ରାଜନୀତିରେ ଦଳ ବା ଆଦର୍ଶର ପରିବର୍ତ୍ତନ କରି ଥାଆନ୍ତି ତାଙ୍କର

ଦୁଇଟି ରକମର ଗତି ଥାଏ । ଗୋଟିଏ ରକମର ପରିବର୍ତ୍ତନରେ ଭୌତିକ ସୁଖ, ଧନ ସଂପତ୍ତି ଓ ସାମାଜିକ ପ୍ରତିଷ୍ଠା ବଢ଼େ । ଆଉ ଗୋଟିଏ ରକମର ପରିବର୍ତ୍ତନରେ ଏଗୁଡ଼ିକ ବଢ଼େ ନାହିଁ, ବରଂ କମିଯାଏ । ନବକୃଷ୍ଣ ଚୌଧୁରୀ ମୁଖ୍ୟମନ୍ତ୍ରୀ ଗାଦିରେ ବସି ସାରିଥିଲେ । କିନ୍ତୁ ପରବର୍ତ୍ତୀ କାଳରେ ମୁଁ ଯେବେ ବି ତାଙ୍କୁ ଦେଖିଛି ମୋର ମନେ ହେଉ ନ ଥିଲା ଯେ ନବବାବୁ କେବେ ବି ସେ ପୁରୁଣା କଥା, ମୁଖ୍ୟମନ୍ତ୍ରୀ ପଦ କଥା ଭାବୁଥିବେ । କଟକରୁ ସମ୍ବଲପୁର ଗଲାବେଳେ ସେ କାଖରେ ଏକ ମସିଣା ଯାକି ବସରୁ ଓହ୍ଲାଉଥିଲେ । ତାଙ୍କ ପାଖରେ ଥିବା ବୁଜୁଲାଟିକୁ ଆମର ସାଥିମାନେ ଯିଏ ବା ଧରିବାକୁ ଚେଷ୍ଟା କରିଛନ୍ତି ତାଙ୍କ ପାଖରୁ ଗାଳି ଖାଇଛନ୍ତି । ଏଥିଲେ ନବକୃଷ୍ଣ ଚୌଧୁରୀ । ଗୋପବନ୍ଧୁ ଦାସଙ୍କ ପରେ ଓଡ଼ିଶାର ରାଜନୀତିରେ ସେ କାଟର, ସେହି ଯୋଗ୍ୟତାର ନେତା ଥିଲେ ନବକୃଷ୍ଣ ଚୌଧୁରୀ । କିନ୍ତୁ ବୋଧହୁଏ ସେ ଇତିହାସରେ ସେତେ ପ୍ରତିଷ୍ଠିତ ହୋଇ ପାରିବେ ନାହିଁ । ତାହାର କାରଣ କିଛିଟା ପରିସ୍ଥିତିଗତ, କିଛିଟା ଯୁଗଗତ, ଏବଂ କିଛିଟା ତାଙ୍କ ସ୍ୱଭାବଗତ । ଯେଉଁ ଯୁଗରେ ନବକୃଷ୍ଣ ଚୌଧୁରୀ ମୁଖ୍ୟମନ୍ତ୍ରୀ ପଦ ଛାଡ଼ି ନିଜ ଗୋଡ଼ରେ ଠିଆ ହୋଇ ବୈପ୍ଳବିକ ରାଜନୀତି ଗଢ଼ିବା ପାଇଁ ଚେଷ୍ଟା କଲେ ସେ ଯୁଗ ଏ ପର୍ଯ୍ୟନ୍ତ ଚାଲିଛି । ଏ ଯୁଗରେ ପ୍ରକୃତ ବୈପ୍ଳବିକ ଧାରା (ତାହାର ଦିଗ୍‌ଦର୍ଶନ ଓ ସୂତ୍ର) କଣ, ତାହା ଏପର୍ଯ୍ୟନ୍ତ ସ୍ପଷ୍ଟ ହୋଇପାରିନାହିଁ । ଏଭଳି ଯୁଗରେ ଯେ ପ୍ରକୃତରେ ବିପ୍ଳବକୁ ଖୋଜୁଛି ସେପରି ନେତା କେହି ପ୍ରତିଷ୍ଠିତ ହୋଇ ପାରିବେନାହିଁ । ନବକୃଷ୍ଣ ଚୌଧୁରୀ ବିପ୍ଳବର ଧାରାରେ ଚାଲୁଥିଲେ, ଅଣ୍ଡାଳି ହେଉଥିଲେ । ତାଙ୍କ ସାଙ୍ଗରେ ଆମେ ବି ଅଣ୍ଡାଳି ହେଉଥିଲୁ ଏବଂ ଆଜି ବି ହେଉଛୁ । ତାଙ୍କର ଶେଷ ଦିନଗୁଡ଼ିକର କଥା ମନେପଡ଼ିଲେ ଅସନ୍ତୋଷ ମୁଦ୍ରାଟି ବେଶ୍ ମନେପଡ଼େ । ସେ ଅସନ୍ତୋଷ ବ୍ୟକ୍ତିଗତ କାରଣରୁ ନ ଥିଲା । ଦେଶ, ଦୁନିଆ ଓ ଲୋକଙ୍କ ଭିତରେ ଯାହା ହେବା କଥା ତାହା ହୋଇପାରୁ ନଥିବା କାରଣରୁ ଅସନ୍ତୋଷ । ତାଙ୍କର ସେ ଗଭୀର ଅସନ୍ତୋଷ ନିଜ ପ୍ରତି ଧିକ୍‌କାର ଓ କ୍ରୋଧ ରୂପରେ ପରିସ୍ଫୁଟ ହେଉଥିଲା । ତାଙ୍କ ବିଷୟରେ ମୁଁ ଆଉ ବିଶେଷ କହିବି ନାହିଁ । ଅଳ୍ପ ଦିନ ତଳେ ତାଙ୍କର ଜୀବନ ଉପରେ ଶ୍ରୀ ଚିତ୍ତରଞ୍ଜନ ଦାସଙ୍କ ଦ୍ୱାରା ରଚିତ ବହିଟିଏ ପଢ଼ିଲି । ତାହାର ଶେଷ ପୃଷ୍ଠାର ଏକ ଅଂଶ ପଢ଼ି ମୋର ମନେହେଲା ମୁଁ ନବବାବୁଙ୍କୁ ଯେଭଳି ଭାବେ ଚିତ୍ରଣ କରିବାକୁ ଚାହୁଁଥିଲି ଠିକ୍ ସେହିକଥାକୁ ସେ ଭାଷା ଦେଇଛନ୍ତି । ସେ ଲେଖିଛନ୍ତି "ଶ୍ରୀଯୁକ୍ତ ଚୌଧୁରୀ ତାଙ୍କର ଜୀବନକାଳ ମଧ୍ୟରେ ଯେତେବେଳେ ଯେଉଁ ପଲ୍ଲୀରେ ଥିଲେ ସବୁଠାରେ ସେ ଏକ ସମୁଜ୍ଜ୍ୱଳ ବ୍ୟତିକ୍ରମ ନ ହୋଇ ରହିପାରୁନଥିଲେ । ରାଜନୀତି ଭିତରେ ସେ କୌଣସି ବ୍ୟକ୍ତିଗତ କାମନା ନେଇ ପ୍ରବେଶ କରି ନଥିଲେ । ଅନ୍ୟମାନଙ୍କ କାନ୍ଧ ଉପରେ ଗୋଡ଼ ଦେଇ ଆଗକୁ ଯିବା ଆଗକୁ

ଚାଲିଯିବେ ବୋଲି କୌଣସି । ଦୁର୍ବାସନା ତାଙ୍କର ନଥିଲା ସ୍ୱାଧୀନ ଭାରତର ଦୁଷ୍ଟ ଓ ପଥଚ୍ୟୁତ ରାଜନୀତି ତାଙ୍କୁ କୌଣସି ପ୍ରକାରେ ପଥଚ୍ୟୁତ କରିପାରିନଥିଲା । ବାଟଟିଏ ଖୋଜି ସେ ଯେତେବେଳେ ଯେଉଁଠି ପହଞ୍ଚୁଥିଲେ ସେଠାରେ ଭିଡ଼ କରିଥିବା ଲୋକମାନେ ଯେ ଆଦୌ କୌଣସି ବାଟ ଖୋଜି ସେଠାକୁ ଆସି ନାହାଁନ୍ତି ଏହା ଭାବି ଅଚିରେ ସେ ବିଷୟରେ ତାଙ୍କର ମୋହଭଙ୍ଗ ହେଉଥିଲା ଓ ସେ ସେଠାରୁ ଯଥାଶୀଘ୍ର ଚାଲିଯିବେ ବୋଲି ଛଟପଟ ହେବାକୁ ଲାଗୁଥିଲେ । ଜୀବନରେ ଏପରି କେତେ ଗୋଠ, କେତେ ତୁଠ ହେଲେ । ଅସନ୍ତୋଷ -ଯାହା ହେଉ ବୋଲି ଚାହୁଁଛନ୍ତି ତାହା କିଛି କରି ନପାରିବାର ଅସନ୍ତୋଷ ତାଙ୍କୁ କ୍ରୁଦ୍ଧ କରୁ" ।

ଆଜିର ବକ୍ତୃତାରେ ମୋତେ ଯେଉଁ ବିଷୟ କହିବାକୁ ଦିଆଯାଇଛି ତାହାର ସୂଚନା ବୈଦ୍ୟନାଥବାବୁ ଆପଣମାନଙ୍କୁ ଦେଇଛନ୍ତି । "ଆଧୁନିକ ବିଶ୍ୱରେ ସମାଜବାଦର ପରିବର୍ତ୍ତିତ ରୂପରେଖ', ଏ ବିଷୟରେ କହିବାକୁ ଗଲାବେଳେ ମୋତେ ଗୋଟିଏ ଜଙ୍ଗଲ ଭିତରେ ଚାଲିବା ଭଳି ଲାଗୁଛି । ଲଙ୍କାରେ ହରିଶଚ୍ଚ ଯାହା, ଉଦାରୀକରଣର ଏ ଯୁଗରେ ସମାଜବାଦର ଚର୍ଚ୍ଚା ତାହା । ଏହା ନିଶ୍ଚିତ ଯେ ସମାଜବାଦର ଯେତେ ପୁରୁଣା କାଳିଆ ପରିଭାଷା ଥିଲା ସେସବୁ ଅତୁଆରେ ପଡ଼ିଯାଇଛି । ତାକୁ ନିଖାରିବାକୁ ପଡ଼ିବ । ତାର ସ୍ଥାନ ପୁଣି ଥରେ ନିରୂପଣ କରିବାକୁ ହେବ । ଏହି କାର୍ଯ୍ୟ ଯେତେ ହେବା କଥା ପୃଥିବୀର କୌଣସିଠାରେ ହେଉନାହିଁ ।

ଅତି ସଂକ୍ଷେପରେ କହିବାକୁ ଗଲେ ସମାଜବାଦ ଏକ ଅର୍ଥନୈତିକ ଅବଧାରଣା । ଯେତେଦିନ ପର୍ଯ୍ୟନ୍ତ ମଣିଷ ନିଜର ବୁଦ୍ଧି ବିବେକ ବିଷୟରେ ସଚେତ ରହିବ, ସେତେଦିନ ପର୍ଯ୍ୟନ୍ତ ସେ ନିଜର ସମାଜକୁ ନ୍ୟାୟମୂଳକ ଭାବରେ ଗଢିବାକୁ ନିଷ୍ଟୟ ଚେଷ୍ଟା କରିବ । ସେଇ ଚେଷ୍ଟା ଭିତରେ ସେ ସମାଜର ପୁନର୍ଗଠନ ଚାହେଁ । ଅର୍ଥ ବ୍ୟବସ୍ଥାର ପୁନର୍ନିର୍ମାଣ ଚାହେଁ । ବୈପ୍ଳବିକ ପରିବର୍ତ୍ତନ ଚାହେଁ । ନୂତନ ସମାଜ ନିର୍ମାଣର ଯେତେଯେତେ ଧାରା ଆଜି ପର୍ଯ୍ୟନ୍ତ ମାନବ ସଭ୍ୟତାରେ ରହିଥିଲା ତାହାଭିତରେ ଗତ ଏକ ଶତାବ୍ଦୀ ଧରି (ଉନବିଂଶ ଶତାବ୍ଦୀର ଶେଷାର୍ଦ୍ଧ ଏବଂ ବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ) ଚାଲିଥିବା ସମାଜବାଦ ସବୁଠାରୁ ଶ୍ରେଷ୍ଠ ଏବଂ ପ୍ରଭାବଶାଳୀ ଧାରା ଥିଲା ।

ସମାଜବାଦୀ ଆର୍ଥିକ ବ୍ୟବସ୍ଥାରେ ସଂପତ୍ତି କାହାରି ବ୍ୟକ୍ତିଗତ ବୋଲି ବିବେଚିତ ହେବ ନାହିଁ, ସାମାଜିକ ବୋଲି ବିବେଚିତ ହେବ । ସଂପତ୍ତିର ଉପଭୋଗରେ ବିଷମତା ରହିବ ନାହିଁ । ରହିଲେ ଅତି ନଗଣ୍ୟ ଭାବରେ ରହିବ । ଏ ହେଉଛି ସମାଜବାଦର କେନ୍ଦ୍ରୀୟ ତତ୍ତ୍ୱ । ଏପରି ଏକ ଅର୍ଥ ବ୍ୟବସ୍ଥା ପାଇଁ ଏକ ବିଶେଷ ପ୍ରକାରର ସାମାଜିକ ଦର୍ଶନ ବା ସଂସ୍କୃତି ନିଷ୍ଟୟ ଦରକାର ହେବ । ଏହି ସାଂସ୍କୃତିକ ଓ ଆର୍ଥିକ ପରିବର୍ତ୍ତନ ଆଣିବା ପାଇଁ ଏକ ରାଜନୈତିକ

ପ୍ରକ୍ରିୟା ମଧ୍ୟ ରହିବ । ତେଣୁ ସମାଜବାଦର ଅର୍ଥନୀତି, ସମାଜବାଦର ରାଜନୀତି ଓ ସମାଜବାଦର ସଂସ୍କୃତି ଏଭଳି ଏହାର ତିନୋଟି ଦିଗ ରହିଛି ।

ଆଧୁନିକ ସମାଜବାଦର ବିକାଶ ଊନବିଂଶ ଶତାବ୍ଦୀରେ ଘଟିଲା । ତାହାର ଏକ ବିଶେଷ ଐତିହାସିକ ପୃଷ୍ଠଭୂମି ରହିଛି । ଊନ୍ନବିଂଶ ଶତାବ୍ଦୀରେ ୟୁରୋପୀୟ ଦେଶମାନଙ୍କରେ ଅଭୂତପୂର୍ବ ସମୃଦ୍ଧି ଦେଖାଦେଲା । ତାହା ଏକ ପ୍ରକାରର ଅର୍ଥନୈତିକ ପ୍ରତିପାଦନକୁ ଜନ୍ମ ଦେଲା । ପ୍ରତିପାଦନଟି ହେଉଛି ଏହିପରି- ୟୁରୋପୀୟ ସମୃଦ୍ଧିର ମୁଖ୍ୟ କାରଣ ହେଉଛି ଆଧୁନିକ ଶିଳ୍ପ ବିପ୍ଳବ । ବିଜ୍ଞାନ ଓ ବୈଷୟିକ ବିଦ୍ୟା ଏହି ବିପ୍ଳବ ଘଟାଇଛି । ବୈଷୟିକ ବିଦ୍ୟାର ଉପଯୋଗ ଦ୍ୱାରା ସମସ୍ତେ ନିଜ ନିଜ ଦେଶରେ ଶିଳ୍ପ ବିପ୍ଳବ ଆଣିପାରିବେ । ପ୍ରତ୍ୟେକ ଦେଶ ସମୃଦ୍ଧ ହୋଇପାରିବ, ପ୍ରତ୍ୟେକ ନାଗରିକକୁ ମଧ୍ୟ ସଂପନ୍ନ କରାଯାଇ ପାରିବ । କିନ୍ତୁ ବାସ୍ତବରେ ଯେତେବେଳେ ପୁଞ୍ଜିବାଦର ଶୋଷଣ ଅତି ତୀବ୍ର ଥିଲା । ତେଣୁ ବିବେକଶୀଳ ଲୋକଙ୍କ ମନରେ ପ୍ରଶ୍ନ ହେଲା, ସମୃଦ୍ଧି ସାଙ୍ଗରେ ଏହି ଶୋଷଣର ମେଳ ନାହିଁ । ଏଇଟା ଅସ୍ୱାଭାବିକ । ଏହାକୁ ବଦଳାଇବାକୁ ପଡ଼ିବ । ବଦଳାଇ ହେବ କି ନାହିଁ ? କିପରି ବଦଳାଇବାକୁ ହେବ? ବୈଭବ ଓ ଶୋଷଣ ଉଭୟ ପ୍ରତି ଯେଉଁ ପ୍ରତିକ୍ରିୟା ହେଲା, ଏବଂ ବିଭିନ୍ନ ମନୀଷୀ ଓ ସାମାଜିକ କାର୍ଯ୍ୟକର୍ତ୍ତାମାନେ ଯେଉଁସବୁ ଚିନ୍ତା କଲେ ତାହା ଭିତରୁ ସମାଜବାଦର ବିକାଶ ହେଲା । ଏଥିପାଇଁ ଭିନ୍ନଭିନ୍ନ ଉଦ୍ୟମ ହୋଇଥିଲା ଏବଂ ଶେଷରେ କାର୍ଲମାର୍କ୍ସ ଓ ଏନ୍‌ଜେଲସ ଦୁହେଁ ମିଶି ଯେଉଁ ପ୍ରତିପାଦନ କଲେ ଏବଂ ସିଦ୍ଧାନ୍ତ ବଖାଣିଲେ ତାହାରି ଭିତରୁ ସମାଜବାଦ ଏକ ସ୍ପଷ୍ଟ ରୂପନେଲା । ଊନବିଂଶ ଶତାବ୍ଦୀର ସମୃଦ୍ଧି ଏହାର ମୂଳ ଉଦ୍‌ଗମ ସ୍ଥଳ । କାର୍ଲମାର୍କ୍ସ ତାହାକୁ ଏକ ତାତକାଳୀକ ପଦ୍ଧତିରେ ବୁଝାଇବାକୁ ଚେଷ୍ଟା କଲେ ଯେ ଆଧୁନିକ ବୈଷୟିକ ଜ୍ଞାନ ଫଳରେ ଏହି ସମୃଦ୍ଧି ସମ୍ଭବ ହୋଇଛି ଏବଂ ତାହା ପୁଞ୍ଜିବାଦର ରୂପ ନେଇଛି । ଏ ପୁଞ୍ଜିବାଦ ସମୃଦ୍ଧିକୁ କିଛି ଦିନ ପାଇଁ ବଢାଇବ, କିନ୍ତୁ ଗୋଟିଏ ସୀମା ପରେ ପୁଞ୍ଜିବାଦର ପ୍ରଗତିରେ ଅବରୋଧ ଆସିବ । ସେହି ଅବରୋଧକୁ ଛିନ୍ନ କରିବ ସମାଜବାଦ । ସେହି ଅବରୋଧ ଛିନ୍ନ ହେବା ପରେ ସମୃଦ୍ଧି ଏତେ ବେଶୀ ହେବ ଯେ, ଆର୍ଥିକ ବିସମତାର ଦରକାର ମଧ୍ୟ ହେବ ନାହିଁ । ଯାହାର ଯେତେ ଦରକାର ସେତକ ସେ ପାଇ ପାରିବ"- ମାର୍କସଙ୍କର ପ୍ରସିଦ୍ଧ ବାକ୍ୟ " From each according to his ability to each according to his need" ମଧ୍ୟବର୍ତ୍ତୀ କାଳରେ ରାଜ୍ୟର ଶକ୍ତି ପ୍ରୟୋଗ ଦ୍ୱାରା ସମାଜବାଦ ସ୍ଥାପିତ ହେବ । ପରେ ପରେ ଅତ୍ୟଧିକ ପ୍ରାଚୁର୍ଯ୍ୟ ହେବା ଫଳରେ ରାଜ୍ୟଶକ୍ତିର ଦରକାର ମଧ୍ୟ ହେବନାହିଁ, ରାଜ୍ୟମଧ୍ୟ ଉଭେଇଯିବ । ମାର୍କସ ଏବଂ ଏନ୍‌ଜେଲ୍‌ସ ତାଙ୍କର

କମ୍ୟୁନିଷ୍ଟ ମେନିଫେଷ୍ଟୋରେ ଏହି ସ୍ୱପ୍ନ ଦେଖିଥିଲେ । ତାଙ୍କର ଅତୁଳନୀୟ ଶୈଳୀରେ ମାର୍କସ ଏ ସବୁର ତାତ୍ତ୍ୱିକତା ପ୍ରତିପାଦନ କରିଛନ୍ତି । ତାଙ୍କ ମତରେ ଇତିହାସର ଦ୍ୱନ୍ଦ୍ୱାତ୍ମକ ଗତି ଏପରି ଯେ ଶିଳ୍ପ ସଭ୍ୟତାରହିଁ ଏକ ପରିଣତି ହିସାବରେ ପୁଞ୍ଜିବାଦକୁ ସମାଜବାଦରେ ପହଞ୍ଚାଇବ । ଏହା ହେଉଛି ଇତିହାସର ଗତି ଏବଂ ଆମକୁ ନିମିତ୍ତ ମାତ୍ର ହେବାକୁ ପଡ଼ିବ । ଯେଉଁମାନେ ବୈପ୍ଲବିକ ଭାବରେ ନିମିତ୍ତ ହେବେ ସେମାନଙ୍କୁ ଏକ ବୈପ୍ଲବିକ ଆନ୍ଦୋଳନ ଆରମ୍ଭ କରିବାକୁ ପଡ଼ିବ । ଶିଳ୍ପ ସଭ୍ୟତା ଓ ଆଧୁନିକ ପ୍ରଗତିର ତାତ୍ତ୍ୱିକ ପରିଣତି ହେଉଛି ସମାଜବାଦ । ତେଣୁ ଆଧୁନିକ ସମାଜବାଦ ବା ସାମ୍ୟବାଦକୁ ଶିଳ୍ପ ସଭ୍ୟତାର ଏକ ଉପସିଦ୍ଧାନ୍ତ ବୋଲି ମଧ୍ୟ କୁହାଯାଇପାରେ । ସମାଜବାଦର ବୌଦ୍ଧିକ ଦିଗଟି ହେଉଛି ଏଇଆ । ୟୁରୋପର ବାହାରେ ଏସିଆ, ଆଫ୍ରିକା ତଥା ଲାଟିନ୍ ଆମେରିକାର ବିଭିନ୍ନ ଦେଶ- ଯେଉଁମାନେ ସମାଜବାଦୀ ବା ସାମ୍ୟବାଦୀ ହେଲେ , ସେମାନଙ୍କ ଆଗରେ ଦୁଇଟି ମଡେଲ ଥିଲା । ଗୋଟିଏ, ପଶ୍ଚିମ ୟୁରୋପର ଜନମଙ୍ଗଳ ରାଷ୍ଟ୍ର, ଏବଂ ଅନ୍ୟଟି ସୋଭିଏତ୍ ରୁଷିଆର ସାମ୍ୟବାଦୀ ଅର୍ଥ ବ୍ୟବସ୍ଥା । ଏ ଦୁଇଟି ମଡେଲକୁ ଆଖି ଆଗରେ ରଖି ସମାଜବାଦୀ ଆନ୍ଦୋଳନକୁ ଦୁଇଟି ଭାଗରେ ବିଭକ୍ତ କରାଯାଇ ପାରେ । ଗଣତାନ୍ତ୍ରିକ ସମାଜବାଦୀ ଓ ସାମ୍ୟବାଦୀ । ଭାରତରେ ପ୍ରଥମଟି ସମାଜବାଦୀ,ଏବଂ ଦ୍ୱିତୀୟଟି ସାମ୍ୟବାଦୀ ନାମରେ ପ୍ରଚଳିତ । କିନ୍ତୁ ଦୁଇଟି ଯାକ ଧାରାର ବୌଦ୍ଧିକ ଉଦ୍‌ଗମସ୍ଥଳ ହେଉଛି ମାର୍କସବାଦ ।

ମାର୍କସଙ୍କର ସିଦ୍ଧାନ୍ତର ଏକ ମୂଳ ସ୍ଥାପନ ହେଲା ଯେ ପୁଞ୍ଜିବାଦର ସମୃଦ୍ଧି ଦିନେ ସମାଜବାଦରେ ପରିଣତ ହେବ । ଗତ ୪୦/୫୦ବର୍ଷ ମଧ୍ୟରେ ବିଶ୍ୱ ସ୍ତରରେ ଯେଉଁସବୁ ପରିବର୍ତ୍ତନମାନ ଘଟିଯାଇଛି ତାହା ଫଳରେ ଏହି ସ୍ଥାପନା ସମ୍ମୁଖରେ ଏକ ପ୍ରଶ୍ନବାଚୀ ଆସିଯାଇଛି । ୧୯୫୦ରେ ପାଖାପାଖି ବା ବିଂଶ ଶତାବ୍ଦୀର ମଧ୍ୟ ଭାଗରେ ଗଣତାନ୍ତ୍ରିକ ସମାଜବାଦୀ ଧାରାରେ ହ୍ରାସ ହେବାକୁ ଲାଗିଲା । ସେମାନେ ଖଣ୍ଡ ଖଣ୍ଡ ହେଲେ, ପ୍ରଭାବହୀନ ହେଲେ ଏବଂ ଶେଷରେ ଲୁପ୍ତ ହୋଇଗଲେ । ବିଂଶ ଶତାବ୍ଦୀର ଶେଷ ଦଶନ୍ଧି ବେଳକୁ ସାମ୍ୟବାଦର ମୁଖ୍ୟ ଦୁର୍ଗ ସୋଭିଏତ୍ ରୁଷିଆ ଭୁଶୁଡ଼ି ପଡ଼ିଲା, ଏବଂ ଦେଖୁ ଦେଖୁ ସାରା ଦୁନିଆରେ ସାମ୍ୟବାଦର ଆନ୍ଦୋଳନ ପ୍ରଭାବହୀନ ଅବସ୍ଥାକୁ ଆସିଗଲା । ବର୍ତ୍ତମାନ ପୃଥିବୀରେ ସାମ୍ୟବାଦ ବା ସମାଜବାଦୀ ବୋଲି କୌଣସି ସକାରାତ୍ମକ ଧାରା ନାହିଁ । ଏଣୁ ସମାଜବାଦର ଭବିଷ୍ୟତ ବିଷୟରେ ଏକ ସନ୍ଦେହ ବା ଅବିଶ୍ୱାସ ସୃଷ୍ଟି ହୋଇଛି । କଥା ପଡ଼ିଛି ସମାଜବାଦର ଭବିଷ୍ୟତ ଅଛି କି ନାହିଁ ? ଏହାର ଉତ୍ତର ମୁଁ ନିମ୍ନଲିଖିତ ଭାବରେ ରଖିବାକୁ ଚାହେଁ ।

ସମାଜବାଦକୁ ଦୁଇଟି ଅର୍ଥରେ ପ୍ରକାଶ କରାଯାଇ ଥାଏ । ଗୋଟିଏ ଅର୍ଥ ହେଉଛି

ଯେଉଁଟା ମୁଁ ପ୍ରଥମେ କହିଲି । ଅନ୍ୟ ପରିଭାଷାଟି ହେଲା ଏକ ନ୍ୟାୟମୂଳକ ସମାଜର ପ୍ରତିଷ୍ଠା ବା ବା ଏକ ସମତାମୂଳକ ଅର୍ଥବ୍ୟବସ୍ଥାର ସ୍ଥାପନା । ଏ ହେଉଛି ଏକ ଆଦର୍ଶ, ଏବଂ ଏହା ଚିରଦିନ ରହିବ । ତାହାକୁ ସାର୍ଥକ କରିବାକୁ ମାନବ ସମାଜରେ ନୂଆ ନୂଆ ଆନ୍ଦୋଳନ ହୋଇ ଚାଲିବ । ସେହି ଦୃଷ୍ଟିରୁ ସମାଜବାଦର ଭବିଷ୍ୟତ ଅଛି ଏବଂ ଏକ ତାତ୍କାଳୀନ ଆବଶ୍ୟକତା ମଧ୍ୟ ରହିଛି । କିନ୍ତୁ ୟୁରୋପର ପୁଞ୍ଜିବାଦ ଓ ଶିଳ୍ପ ସଭ୍ୟତାକୁ ଦେଖି ଯେଉଁ ସମାଜବାଦର ପରିକଳ୍ପନା କରାଯାଇଥିଲା, ତାହାର ଭବିଷ୍ୟତ ମୁଁ ଦେଖିପାରୁନାହିଁ । ତାହାର କେତେକ କାରଣ ମୁଁ ଚିନ୍ତା କରୁଛି ।

ଉନବିଂଶ ଶତାବ୍ଦୀରେ ୟୁରୋପର ଯେଉଁ ସମୃଦ୍ଧି ସଂଘଟିତ ହେଲା, ତାହାର କାରଣ ବିଷୟରେ ଶିକ୍ଷିତ ଲୋକମାନଙ୍କ ମନରେ ଅନେକ ଭୁଲ ଧାରଣା ରହିଛି । ମୋଟ ଉପରେ ଆଧୁନିକ ଶିଳ୍ପ ସଭ୍ୟତା ବିଷୟରେ ଦୁଇଟି ଭୁଲ୍ ଧାରଣା ମୁଁ ଉଲ୍ଲେଖ କରିବି । ପ୍ରଥମ ଧାରଣା ହେଲା- ଏହି ସମୃଦ୍ଧିର କାରଣ ହେଉଛି ଆଧୁନିକ ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟାର ପ୍ରୟୋଗ । ମୋ ବିଚାରରେ ଏହା ଏକ ସଂପୂର୍ଣ୍ଣ ଭୁଲ ଧାରଣା । ଦ୍ୱିତୀୟଟି ହେଉଛି, ପୃଥିବୀର ପ୍ରାକୃତିକ ସଂସାଧନ ଗୁଡ଼ିକ ଅସୀମ । ଏ ସଂକ୍ରାନ୍ତରେ ମୁଁ ଏତିକି ନିଶ୍ଚିତ ଭାବେ କହିପାରେ ଯେ, ବିଦ୍ୟାଳୟମାନଙ୍କରେ ଯେତିକି ରକମର ଜ୍ଞାନ ରହିଛି ସେଥିରୁ ସାଧାରଣ ଶିକ୍ଷିତ ଲୋକମାନଙ୍କର ଏ ଯାଏ ଜ୍ଞାନ ହୋଇପାରିନାହିଁ ଯେ ମଣିଷ ପାଇଁ ଉପଯୋଗୀ ପ୍ରାକୃତିକ ସଂସାଧନ ଗୁଡ଼ିକ ସୀମିତ, ଅସୀମ ନୁହେଁ । ଏହି ଭୁଲ୍ ଧାରଣା ଯୋଗୁଁ ଆମର କେତେ ଯେ ସଂପଦ ନଷ୍ଟ ହେଉଛି ଏବଂ ଆହୁରି କେତେ ଯେ ବିପର୍ଯ୍ୟୟ ହେବାର ଅଛି ସେ ବିଷୟରେ ଆଲୋଚନା ହେବା ଆବଶ୍ୟକ ।

ଆଧୁନିକ ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟା ସତରେ କ'ଣ ଏତେ ସମୃଦ୍ଧି ଆଣି ଦେଲା । ଯେଉଁ ସମୟରେ ଷ୍ଟିମ୍ ଏବଂ ପରେପରେ ୟୁରୋପରେ ନାନା ରକମର ଆଧୁନିକ ଯନ୍ତ୍ରପାତିର ଆବିଷ୍କାର ହେଲା, ସେତେବେଳେ ପୃଥିବୀରେ ଆଉ କ'ଣ ଘଟୁଥିଲା ? ଉନ୍ନବିଂଶ ଶତାବ୍ଦୀବେଳକୁ ଇଉରୋପ ସମଗ୍ର ପୃଥିବୀର ମାଲିକ ଥିଲା ଓ ସାମ୍ରାଜ୍ୟବାଦ ବିଶ୍ୱବ୍ୟାପୀ ହୋଇସାରିଥିଲା । ଏ ସାମ୍ରାଜ୍ୟବାଦ ବିନା କଣ ସମୃଦ୍ଧି ସମ୍ଭବ ହୋଇ ପାରିଥାନ୍ତା ? ଏ ପ୍ରଶ୍ନ ଉପରେ ବେଳେବେଳେ ଚର୍ଚ୍ଚା ତ ହେଉଛି, ହେଲେ ତା ଉପରେ ବିଧିବଦ୍ଧ ଅଧ୍ୟୟନ କରି ବିଶେଷଜ୍ଞମାନେ ଏବେ ସୁଦ୍ଧା ଏକ ସିଦ୍ଧାନ୍ତ ଦେଇପାରି ନାହାଁନ୍ତି । ସାମ୍ରାଜ୍ୟବାଦ ଯଦି ନଥାନ୍ତା ଏବଂ ଆଧୁନିକ ବିଜ୍ଞାନର ସୂତ୍ରଗୁଡ଼ିକ ବାହାରି ଯାଇଥାନ୍ତା, ତାହାହେଲେ ବି' କ'ଣ ଆଧୁନିକ ପ୍ରଯୁକ୍ତି ବିଦ୍ୟାର ଉଦ୍ଭାବନ ସମ୍ଭବ ହୋଇଥାନ୍ତା ? ମୋ ମତରେ 'ନୁହେଁ' । କାରଣ ଉନବିଂଶ ଶତାବ୍ଦୀର ୟୁରୋପରେ

ଯେଉଁ ସବୁ ଉଦ୍ଭାବନମାନ ହେଲା ତାହାର ସମକକ୍ଷ ଉଦ୍‌ଭାବନମାନ ଚୀନ୍ ଦେଶରେ ମଧ୍ୟ ଆଗରୁ ହୋଇସାରିଥିଲା । ଚୀନ୍‌ରେ ବୈଜ୍ଞାନିକ ଉଦ୍ଭାବନର ପରିଣାମ ସ୍ୱରୂପ ଅଭୂତପୂର୍ବ ସମୃଦ୍ଧି ହେଲା ନାହିଁ, ମାତ୍ର ୟୁରୋପରେ କାହିଁକି ହେଲା ? ଏହା ସହ ସାମ୍ରାଜ୍ୟବାଦ ଯଦି ଯୋଡ଼ି ହୋଇ ନଥାନ୍ତା ୟୁରୋପର ସମୃଦ୍ଧି କଦାପି ଆସିପାରି ନଥାନ୍ତା । ୟୁରୋପ ପୃଥିବୀର ଏକ ଛୋଟ ଅଂଶ ।ସାରା ପୃଥିବୀ ସେମାନଙ୍କ ହାତରେ । ପୃଥିବୀର ସବୁଆଡୁ କଞ୍ଚାମାଲ ଓ ଶସ୍ତାଶ୍ରମ ଏବଂ ବିଶ୍ୱବ୍ୟାପୀ ବଜାର- ଏ ତିନୋଟି ଯାକ ସେମାନଙ୍କୁ ମିଳିଲା । ସେ ଯେଉଁ ସାମ୍ରାଜ୍ୟବାଦର ସୁଯୋଗ ମିଳିଲା ତାକୁ କାର୍ଯ୍ୟରେ ଲଗାଇବା ପାଇଁ ସେମାନେ ଆଧୁନିକ ବିଜ୍ଞାନ ବଳରେ ଆଧୁନିକ ଯନ୍ତ୍ରପାତି ତିଆରି କରି ତାହାର ଉପଯୋଗ କରିବାକୁ ଲାଗିଲେ । ତେଣୁ ସେମାନେ ଯେଉଁ ପ୍ରଯୁକ୍ତି ବିଦ୍ୟା ଉଦ୍ଭାବନ କରିଛନ୍ତି ତାହାର ସମୃଦ୍ଧି ତ ନିଶ୍ଚୟ ହେବ ମାତ୍ର ଯେତେ ସମୃଦ୍ଧ ହେବ ତା ଅପେକ୍ଷା ଅଧିକ ଦାରିଦ୍ର୍ୟ ସୃଷ୍ଟି କରିବ । ଆଧୁନିକ ପ୍ରଯୁକ୍ତି ବିଦ୍ୟା ବିଷୟରେ ମୁଁ ଯାହା କହିବାକୁ ସାହାସ କରୁଛି, ସେପରି ହୁଏତ କେହି କହୁନଥିବେ । ଆଧୁନିକ ବିଦ୍ୟାର ଏ ଯେଉଁ ନିୟମ ଏ ପର୍ଯ୍ୟନ୍ତ ଚାଲି ଆସିଛି ଏବଂ ଭବିଷ୍ୟତରେ ମଧ୍ୟ ଚାଲିବ, ତାହାର ଅନ୍ତ କଣ ହେବ ବୋଲି ଭାବିଲେ ଏକ ଭୟାନକ ସ୍ୱପ୍ନ ଭଳି ଲାଗୁଛି ।

ଆଧୁନିକ ପ୍ରଯୁକ୍ତି ବିଦ୍ୟାର ଅସଲ ଚରିତ୍ର କ'ଣ ? ଏହାର କେତୋଟି ସ୍ଥାନଜୟୀ ଓ କାଳଜୟୀ ଗୁଣ ରହିଛି । ସ୍ଥାନଜୟୀ, ଅର୍ଥାତ୍ ଯେତେ ଦୂରରେ ଗୋଟିଏ ଜିନିଷ ଥାଉ ନା କାହିଁକି ଏହା ସଙ୍ଗେସଙ୍ଗେ ଆଣି ପାରିବ । ଉତ୍ତରମେରୁ ଅବା ଦକ୍ଷିଣମେରୁ ଅବା ସାହାରା ମରୁଭୂମି ହେଉ, ସେ ସ୍ଥାନରୁ ଜିନିଷ ନେଇ ଆସିବା ପାଇଁ ଯନ୍ତ୍ର ତିଆରି ହୋଇଛି । କାଳଜୟୀ ଅର୍ଥ ଠିକ୍ ସେହିପରି । ଯେଉଁ ଜିନିଷଟା ଭବିଷ୍ୟତ ବଂଶଧରଙ୍କ ପାଇଁ ଛଡ଼ା ଯାଇଥାନ୍ତା ତାକୁ ମଧ୍ୟ ବ୍ୟବହାର କରିଦେବା । ପାଣି, ପବନ ଆଦି ପ୍ରକୃତିର ସମସ୍ତ ସଂପଦ ଆମେ ଚାହିଁଲେ ଆଧୁନିକ ପ୍ରଯୁକ୍ତି ବିଦ୍ୟା ବଳରେ ଆଜି ବ୍ୟବହାର କରି ସାରିଦେଇ ପାରିବା । ଆଫ୍ରିକା ବା ଏସିଆ ୟୁରୋପ ପାଇଁ ଦୂର ଜାଗା ନୁହେଁ । ଉରୁଗୁଏ ଆମେରିକା ପାଇଁ ଦୂର ନୁହେଁ ।ସେମାନେ ଯଦି ଚାହିଁବେ ଆର୍କ୍ଟିକାରୁ ପେଟ୍ରୋଲ ବାହାର କରିପାରିବେ । ଭାରତର ଖଣିମାନଙ୍କରୁ ମଧ୍ୟ ପଦାର୍ଥ କାଢି ନେଇ ପାରିବେ । ସେମାନେ ଯାହା ଜିନିଷ ତିଆରି କରିବେ ସେଗୁଡ଼ିକ ଏସବୁ ଜାଗାରେ ବିକ୍ରି କରି ପାରିବେ । ଏହି ବିଦ୍ୟାଟି ଯେଉଁଠି ଆସ୍ଥାନ ଜମାଇବ, ସେଠି ଗୋଟିଏ ସମୃଦ୍ଧ ଅଞ୍ଚଳ ସୃଷ୍ଟିହେବ । ସେହି ଅଞ୍ଚଳକୁ ବଞ୍ଚାଇ ରଖିବାପାଇଁ ଗୋଟିଏ ବାହ୍ୟ ଅଞ୍ଚଳ ଦରକାର । ସମୃଦ୍ଧ ଅଞ୍ଚଳଟି ଯେତିକି ବଡ଼, ବାହ୍ୟ ଅଞ୍ଚଳଟି ତା ଠାରୁ ଆହୁରି ବଡ଼ ହେବା ଦରକାର । ସେହି ଅଞ୍ଚଳଟି ପ୍ରଯୁକ୍ତି ବିଦ୍ୟାରେ ଦୁର୍ବଳ ଓ ପଛୁଆ ଥିବ ଏବଂ ସେଠିକାର

ରାଜନୀତି ମଧ୍ୟ ଦୁର୍ବଳ ଥିବ । ଏପରି ଏକ ବାହ୍ୟ ଅଞ୍ଚଳ ଯଦି ଆମର ଅଛି ଆମେ ନିଜକୁ ସମୃଦ୍ଧ କରିପାରିବା । ମୁଁ ଯେଉଁ ବାହ୍ୟ ଅଞ୍ଚଳ ବୋଲି କହୁଛି, ତାହାକୁ ଉପନିବେଶ ବୋଲି ମଧ୍ୟ କୁହାଯାଏ । ଉପନିବେଶ କହିଲେ ଅନ୍ୟ ଦେଶ ବୋଲି ସାଧାରଣତଃ ବୁଝାଯାଏ । ଭାରତ ଇଂଲଣ୍ଡର ଉପନିବେଶ ଥିଲା, ଜର୍ମାନୀର ଉପନିବେଶ ଥିଲେ ଆଫ୍ରିକାର ଦେଶମାନେ । କିନ୍ତୁ ଉପନିବେଶ ନିଜ ଦେଶରେ ମଧ୍ୟ ହୋଇପାରେ । ଗୋଟିଏ କଲିକତା ବା କଲିକତା ଭଳି ଅଞ୍ଚଳ ତିଆରି କରିବା ପାଇଁ ଗୋଟିଏ ଓଡ଼ିଶା ବା ଆସାମ ଭଳି ଅଞ୍ଚଳ ଦରକାର । ଆମେ ଯେତେବେଳେ ପଢୁଥିଲୁ ଏହାକୁ ହିଣ୍ଟରଲ୍ୟାଣ୍ଡ (Hinterland) କୁହାଯାଉଥିଲା । ଆଜିକାଲି ସେ ଶବ୍ଦର ବେଶୀ ପ୍ରଚଳନ ନାହିଁ । କାରଣ ବହି ଲେଖିବା ଲୋକେ ବୁଝିଗଲେ ଯେ ଏହା ଏକ ଠିକ୍ ଶବ୍ଦ ନୁହେଁ । ଗୋଟିଏ ମହାନଗରୀ ହେବ ତ, ତା ଚାରିପାଖରେ ଏକ ହିଣ୍ଟରଲ୍ୟାଣ୍ଡ ରହିବ; ତାହାର ଗୋଟିଏ ଉପନିବେଶ ରହିବ । ପୃଥିବୀର ଯେଉଁଠି ବି ଆଧୁନିକ ସମୃଦ୍ଧି ହେଉଛି- ଇଂଲଣ୍ଡ, ଫ୍ରାନ୍ସ, ଜର୍ମାନୀ, ଆମେରିକା ବା ଜାପାନ- ସବୁଠି ଏହି ନିୟମରେ ହୋଇଛି । ସେମାନେ ନିଜକୁ ସମୃଦ୍ଧ କରିବା ପାଇଁ ପୃଥିବୀର ବହୁ ଦେଶକୁ ବିପନ୍ନ ଓ ବଞ୍ଚିତ କରିଛନ୍ତି ।

ଯଦି ଭାରତ ନଥାନ୍ତା, ଇଂଲଣ୍ଡ ସମୃଦ୍ଧ ହୋଇପାରିନଥାନ୍ତା । ଏ ବିଷୟରେ ବୌଦ୍ଧିକ ଓ ବୈଷୟିକ କାର୍ଯ୍ୟ ଆରମ୍ଭ ହୋଇଥିଲା ରାଷ୍ଟ୍ରୀୟ ଆନ୍ଦୋଳନ କାଳରେ । ସେତେବେଳେକାର ଦୁଇଟି ଉଲ୍ଲେଖଯୋଗ୍ୟ ନାମ ଦାଦାଭାଇ ନାରୋଜୀ ଓ ରମେଶଚନ୍ଦ୍ର ଦତ୍ତ । ସେମାନେ ଯେଉଁ ବୌଦ୍ଧିକ ପ୍ରତିପାଦନ କରିବାକୁ ଯାଉଥିଲେ ସେ ଧାରା ଆଉ ରହିଲା ନାହିଁ । କାରଣ ମ୍ୟାକଲେ ଭାରତରେ ଯେଉଁ ଶିକ୍ଷା ପଦ୍ଧତିର ପ୍ରବର୍ତ୍ତନ କରିଥିଲେ ତାହାର ସୁଫଳ ବାହାରି ସାରିଥିଲା । ଯେଉଁ ବିଚାରଟି ୟୁରୋପରୁ ଆସିଲା ସେହି ବିଚାରଟି ହିଁ ଭଲ ଏବଂ ଭାରତ, ଆଫ୍ରିକା ବା ଏସିଆର ଅନ୍ୟାନ୍ୟ ଦେଶରୁ ଆସିଥିବା ବିଚାର ଭଲ ନୁହେଁ- ଏ ଧାରଣା ସାଧାରଣ ଶିକ୍ଷିତ ଲୋକଙ୍କ ମନରେ ବଳବତୀ ହେବାକୁ ଲାଗିଲା । ତେଣୁ ଦାଦାଭାଇ ନାରୋଜୀ ଯେଉଁ ବୈଚାରିକ ସୂତ୍ର ବାନ୍ଧିଥିଲେ ତାହା ବିସ୍ମୃତ ହୋଇଗଲା । ରମେଶ ଚନ୍ଦ୍ର ଦତ୍ତ ଐତିହାସିକ ଭାବରେ ଯେଉଁସବୁ ତଥ୍ୟ ଦେଇଥିଲେ ସେଥିରୁ କିଛି ଗ୍ରହଣ କରାଗଲା ନାହିଁ । ଏହି ଜ୍ଞାନ କେବଳ ଗାନ୍ଧିଜୀଙ୍କ ଭିତରେ ସୀମିତ ହୋଇ ରହିଲା । କଲେଜ ଶିକ୍ଷାଦ୍ୱାରା ଆମକୁ ଭ୍ରାନ୍ତ କରାଗଲା ଯେ ସମୃଦ୍ଧିର ଏକମାତ୍ର କାରଣ ହେଉଛି ଆଧୁନିକ ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟା । ଏହାକୁ ପ୍ରୟୋଗ କର, ତୁମେ ମଧ୍ୟ ସମୃଦ୍ଧ ହୋଇଯିବ । ଏହା ଯେ କଦାପି ସମ୍ଭବ ନୁହେଁ; ଏକଥା ତଥ୍ୟ ଦ୍ୱାରା ପ୍ରମାଣିତ ହୋଇ ସାରିଛି; ଶାସ୍ତ୍ର ଏହାକୁ ଗ୍ରହଣ କରି ନାହିଁ ।

ଦେଖିବାକୁ ଗଲେ ସାମନ୍ତବାଦ ଓ ପୁଞ୍ଜିବାଦ ମଧ୍ୟରେ କୌଣସି ଫରକ ନାହିଁ । ପୁରୁଣା ସମାଜବାଦୀ ଓ ସାମ୍ୟବାଦୀମାନଙ୍କୁ ଏକଥା ଶୁଣିଲେ ଆଶ୍ଚର୍ଯ୍ୟ ଲାଗିପାରେ । ସେମାନଙ୍କ ବିଚାରରେ ସାମନ୍ତବାଦୀ ସବୁଠାରୁ ବଡ଼ ଗଛ, ପୁଞ୍ଜିବାଦୀ ତା ଅପେକ୍ଷା ଛୋଟ ଗଛ । ଏହାର କାରଣ ମୁଁ ବୁଝିପାରେ ନାହିଁ। ବାମପନ୍ଥୀମାନେ ପୁଣି କାହାକୁ ସାମନ୍ତବାଦ ଅପେକ୍ଷା ବେଶି ପ୍ରଗତିଶୀଳ କହିଥାନ୍ତି, କାହିଁକି ? ପୁଞ୍ଜିବାଦୀମାନେ ସାମନ୍ତବାଦୀମାନଙ୍କ ଅପେକ୍ଷା କଣ କମ୍ ଧନ ଲୁଟ୍ କରୁଛନ୍ତି ? ସେମାନେ କ'ଣ କମ୍ ଆଡ଼ମ୍ବରରେ ରହୁଛନ୍ତି ? ସେମାନେ କ'ଣ କମ୍ ବୌଦ୍ଧିକ ଲୋକଙ୍କୁ ଦାସ କରି ରଖିଛନ୍ତି ? ସାମନ୍ତବାଦୀ ରାଜା, ମହାରାଜା ଓ ଜମିଦାରମାନଙ୍କ ଭିତରେ, ବ୍ୟତିକ୍ରମ ହିସାବରେ ହେଉ, ଭଲ ମଣିଷର ଦୃଷ୍ଟାନ୍ତ ମିଳିଯାଏ । ସମ୍ରାଟ ଅଶୋକଙ୍କ ଉଦାହରଣ ନିଆଯାଇ ପାରେ । ମାତ୍ର ବିଶ୍ୱର ମଙ୍ଗଳ ପାଇଁ ଜୀବନକୁ ଦାନ କରିଥିବାର ଜଣେ ପୁଞ୍ଜିପତିର ଦୃଷ୍ଟାନ୍ତ ମିଳେନାହିଁ । ହାଇଦ୍ରାବାଦର ନିଜାମଙ୍କ ପାଖରେ ଠୁଳହୋଇଥିବା ଅମାପ ମଣି ମୁକ୍ତା ଓ ହୀରା କେଉଁଠୁ ଆସିଥିଲା ? ପ୍ରଜାଙ୍କ ଧନ ସଂପତ୍ତିକୁ ଲୁଟ ହୋଇ ସେସବୁ ରାଜାଙ୍କର ଉଆସରେ ଠୁଳ ହେଉଥିଲା । ଆଜିର ପୁଞ୍ଜିପତିମାନେ କେଉଁ ଉପାୟରେ ଅମାପ ଧନସଂପତ୍ତିର ମାଲିକ ହେଉଛନ୍ତି ? ସେମାନେ ମଧ୍ୟ ଅନ୍ୟମାନଙ୍କର ଭାଗ ଲୁଣ୍ଠନ କରି ନିଜର ଧନ ବଢାଉଛନ୍ତି । ଅତୀତରେ ମୁଁ ମଧ୍ୟ ଜଣେ ସମାଜବାଦୀ ହିସାବରେ ପୁଞ୍ଜିବାଦକୁ ସାମନ୍ତବାଦ ଅପେକ୍ଷା ବେଶୀ ପ୍ରଗତିଶୀଳ ବୋଲି କହିଛି । ବର୍ତ୍ତମାନ ମୁଁ ଆଉ ତାର କୌଣସି କାରଣ ଦେଖୁନାହିଁ । ଅନ୍ୟ ଅଞ୍ଚଳରୁ, ଏବଂ ଭବିଷ୍ୟତ ବଂଶଧରଙ୍କ ଭାଗରୁ ସଂପତ୍ତି ଲୁଣ୍ଠନ କରି ଗୋଟିଏ ଜାଗାରେ ଠୁଳ କରିବା ବିଜ୍ଞାନର ଚମତ୍କାରିତା ନୁହେଁ, ତାହା ଶୋଷଣ ଓ ଲୁଣ୍ଠନର ଚମତ୍କାରିତା । ଏହି ସଂପର୍କରେ ରାସାୟନିକ ସାର ପ୍ରୟୋଗର ଦୃଷ୍ଟାନ୍ତ ନିଆଯାଇ ପାରେ । ଏହାଦ୍ୱାରା ଶସ୍ୟର ଉତ୍ପାଦନ ବହୁମାତ୍ରାରେ ବଢୁଛି ସତ, ମାତ୍ର ତଦ୍ୱାରା ମାଟିର ଉର୍ବରା ଶକ୍ତି ବହୁମାତ୍ରାରେ ହ୍ରାସ ପାଉଛି । ଏହାକୁ କ'ଣ ବିଜ୍ଞାନର ଚମତ୍କାରିତା ବୋଲି କହିବା ? ମୁଁ ସେହି ଉତ୍ପାଦନ ପ୍ରଣାଳୀକୁ ବୈଜ୍ଞାନିକ କହିବି, ଯଦ୍ୱାରା ଅଧିକ ଶସ୍ୟ ଉତ୍ପାଦନ ସାଙ୍ଗକୁ ମାଟିର ଉର୍ବର ଶକ୍ତି ମଧ୍ୟ ଅକ୍ଷୁଣ୍ଣ ରହିବ । ଆଧୁନିକ ପ୍ରଯୁକ୍ତି ବିଦ୍ୟା ଶହେ ବର୍ଷର ଉର୍ବରା ଶକ୍ତିକୁ ନଷ୍ଟ କରି ମାଟିରେ ପାଞ୍ଚକି ଦଶଗୁଣ ଅଧିକ ଫସଲ ଉତ୍ପାଦନ କରାଉଛି । କିନ୍ତୁ ମାଟିର ଉର୍ବରାଶକ୍ତି ଉପରେ ତ' ଭବିଷ୍ୟତ ବଂଶଧରମାନଙ୍କର ମଧ୍ୟ ଭାଗ ରହିଛି । ସେମାନଙ୍କର ଦଶା କ'ଣ ହେବ ? ଏ ବିଷୟରେ ବୈଜ୍ଞାନିକମାନେ ଭାବୁ ନାହାଁନ୍ତି । ସଂପ୍ରତି ଯାହାକୁ ପରିବେଶ ସଙ୍କଟ ବୋଲି କୁହାଯାଉଛି ତାହାର ସମାଧାନର ଉପାୟ ସେମାନେ ବାହାର କରିପାରୁ ନାହାଁନ୍ତି । ଆଧୁନିକ ପ୍ରଯୁକ୍ତି ବିଦ୍ୟା ସଂକ୍ରାନ୍ତରେ ମୋର ସ୍ପଷ୍ଟ ଓ ଦୃଢ ମତ

ଯେ ଏଥିରେ ଉତ୍ପାଦନ ବଢାଇବାର ବିଶେଷ କ୍ଷମତା ନାହିଁ । ଏଥିରେ କେବଳ ଲୁଣ୍ଠନର କ୍ଷମତା ରହିଛି । ଦ୍ୱିତୀୟ କଥା ହେଲା, ଏ ପ୍ରଯୁକ୍ତି ବିଦ୍ୟାଜନିତ ସମୃଦ୍ଧି ହେଉଛି ବିସମତା ଭିତ୍ତିକ । ଗୋଟିଏ ଅଞ୍ଚଳରେ ବିସମତା ସୃଷ୍ଟି କଲେ ଯାଇ ଅନ୍ୟ ଅଞ୍ଚଳରେ ଏହା ସମୃଦ୍ଧି ପକାଇ ପାରିବ ।

ତେଣୁ ଆଧୁନିକ ପ୍ରଯୁକ୍ତି ବିଦ୍ୟାକୁ ଭିତ୍ତି କରି ଗଢ଼ି ଉଠିଥିବା ପୁଞ୍ଜିବାଦୀ ସମୃଦ୍ଧିକୁ କେନ୍ଦ୍ରକରି ଯେଉଁ ସମାଜବାଦର ପରିକଳ୍ପନା ହୋଇଥିଲା ତାହା ଆଉ ପ୍ରାସଙ୍ଗିକ ନୁହେଁ । ସମାଜବାଦର ମନୀଷୀମାନେ ଲେଖିଯାଇଥିଲେ ଯେ ୟୁରୋପର ଧନୀ ପୁଞ୍ଜିବାଦୀ ଦେଶମାନଙ୍କରେ ସର୍ବ ପ୍ରଥମେ ସମାଜବାଦ ଆସିବ । ମାତ୍ର ସେହିପରି ଘଟିଲା ନାହିଁ । ୟୁରୋପର ଏକ ଦୁର୍ବଳ ଦେଶ ସୋଭିଏତ୍ ୟୁନିୟନରେ କମ୍ୟୁନିଷ୍ଟ ଆନ୍ଦୋଳନର ବିଜୟ ଘଟିଥିଲା । ତାପରେ ଯାହାବି ହେଲା ୟୁରୋପ ବାହାରେ । ଏସିଆର ଚୀନ ଓ ଭିଏତ୍‌ନାମ ତଥା ଲାଟିନ୍ ଆମେରିକାର କ୍ୟୁବା ଭଳି ପଛୁଆ ଦେଶମାନଙ୍କରେ ଘଟିଲା । ସମୃଦ୍ଧି ସାଙ୍ଗରେ ସାମ୍ୟବାଦର କୌଣସି ସଂପର୍କ ଦେଖାଦେଲା ନାହିଁ । ସୋଭିଏତ୍ କ୍ରାନ୍ତିର ନେତା ଲେନିନ ଅନେକ ଦିନଯାଏ କ'ଣ କରିବେ ବୋଲି ଭାବି ପାରିନଥିଲେ । ଶେଷରେ ସେ ଏକ ସୂତ୍ର ବାହିଲେ । 'ରାଷ୍ଟ୍ର ପୁଞ୍ଜିବାଦ' (State capitalism) ର ଏକ ଅବଧାରଣା ଦେଲେ । ସେ ଅନୁସାରେ ସାମ୍ୟବାଦୀ ବିପ୍ଳବର ବିଜୟ ଘଟି ସାରିଲା ପରେ ରୁଷିଆରେ ଯେଉଁ ବ୍ୟବସ୍ଥା ସ୍ଥାପିତ କରାଗଲା ତାହା ସମାଜବାଦୀ ବା ସାମ୍ୟବାଦୀ ନ ଥିଲା, ଥିଲା 'ରାଷ୍ଟ୍ର ପୁଞ୍ଜିବାଦ'; ଏହାକୁ ସାମ୍ୟବାଦ ବୋଲି ପ୍ରଚାର କରାଗଲା । ପରିକଳ୍ପନା ଥିଲା ଯେ ପ୍ରଥମେ ପୁଞ୍ଜିବାଦ ଆସିବ ଏବଂ ସମୃଦ୍ଧି ବଢାଇବ, ଏବଂ ତା'ପରେ ସମାଜବାଦ ଆସି ସେହି ସମୃଦ୍ଧିର ବଣ୍ଟନ କରିବ । ଏହି ପରିକଳ୍ପନାଟି ବିଗିଡ଼ି ଯାଇଛି । ରୁଷ ବିପ୍ଳବ ସମୟରୁ ହିଁ ବିଗିଡ଼ି ଯାଇଛି । ସୋଭିଏତ୍ ରୁଷିଆରେ ସାମ୍ୟବାଦର ଦୁର୍ଗ ଭୁଶୁଡ଼ି ପଡ଼ିବାପରେ ସେ କଥା ଧରା ପଡୁଛି । ସୋଭିଏତ୍ ଅର୍ଥ ବ୍ୟବସ୍ଥା ଭୁଶୁଡ଼ି ପଡିବାର କାରଣ ସମାଜବାଦୀ ଓ ସାମ୍ୟବାଦୀମାନେ ଏପର୍ଯ୍ୟନ୍ତ ଗମ୍ଭୀରତା ସହକାରେ ବିଶ୍ଳେଷଣ କରିପାରି ନାହାଁନ୍ତି । ଜ୍ଞାନ କ୍ଷେତ୍ରରେ ଏହା ଏକ ବଡ଼ ବିଡ଼ମ୍ବନା । ଏଥିପାଇଁ ରାଜନେତାମାନଙ୍କ ଅପେକ୍ଷା ବୁଦ୍ଧିଜୀବୀମାନଙ୍କୁ ମୁଁ ବେଶୀ ଦୋଷୀ ବୋଲି ମନେ କରେ । ମୁଁ ନିଜେ ଜଣେ ରାଜନେତା ବୋଲି ସେପରି କହୁଛି, ତାହା ନୁହେଁ । ସୋଭିଏତ୍ ଅର୍ଥ ବ୍ୟବସ୍ଥାର ପତନର କାରଣ ସଂକ୍ରାନ୍ତରେ ଜଣେ ସାଧାରଣ ରାଜନୈତିକ କର୍ମୀ ହିସାବରେ ମୋର ମନ୍ତବ୍ୟକୁ ମୁଁ ଉପସ୍ଥାପନା କରିବି । ଏ ବିଷୟରେ ସି.ପି.ଆଇ. ବା ସି.ପି.ଏମ୍. ନେତାମାନଙ୍କୁ ପ୍ରଶ୍ନ ପଚାରିଲେ ସେମାନେ ସମସ୍ତେ ଏକ ସ୍ୱରରେ ଉତ୍ତର ଦେଇଥାନ୍ତି ଯେ ଏଥିପାଇଁ ପୁଞ୍ଜିବାଦି ଦେଶମାନଙ୍କର

ଷଡ଼ଯନ୍ତ୍ର ଦାୟୀ । ଏକଥା କାହିଁକି ବିଶ୍ୱାସ ଯୋଗ୍ୟହୁଏ ନାହିଁ । ମୋ ମତରେ, ସୋଭିଏତ୍ ୟୁନିୟନ୍‌ରେ ଯେଉଁ 'ରାଷ୍ଟ୍ର ପୁଞ୍ଜିବାଦ' ଆରମ୍ଭ କରାଯାଇଥିଲା, ତାହା ସୁରୁଖୁରୁରେ ଚାଲି ପାରିଲା ନାହିଁ । ସେଠିକାର ଅର୍ଥ ବ୍ୟବସ୍ଥା ଭୁଶୁଡ଼ି ଯିବାର ଏହା ମୁଖ୍ୟ କାରଣ । ଷ୍ଟାଲିନ୍ ଯୁଗରେ ଯେଉଁ ସମୃଦ୍ଧି ହାସଲ ପାଇଁ ଏକ 'ବାହ୍ୟ ଅଞ୍ଚଳ' ବା ଉପନିବେଶ ବ୍ୟବହାର କରାଗଲା କଞ୍ଚାମାଲ୍, ଶସ୍ତା ଶ୍ରମ ଓ ବଜାର ଉଦ୍ଦେଶ୍ୟରେ ଏସବୁ ଅଞ୍ଚଳକୁ ବ୍ୟବହାର କରାଗଲା । ସୋଭିଏତ୍ ସଂଘର ଚାରିଆଡ଼େ ସମୃଦ୍ଧି ସୃଷ୍ଟି ହେଲା କହିବା ଭୁଲ୍ ହେବ । ଅଳ୍ପ କେତେକ ସ୍ଥାନରେ, ବିଶେଷ କରି ମସ୍କୋ ଓ ଲେନିନ୍ ଗ୍ରାଡ୍ ଅଞ୍ଚଳର ଗୋଟିଏ ପରିଧି ଭିତରେ ଆଧୁନିକ ସମୃଦ୍ଧି ଦେଖାଦେଲା । ୧୯୫୬ରେ ଏହି ସମୃଦ୍ଧି ଚରମ ଉତ୍କର୍ଷରେ ପହଞ୍ଚିଲା । ବିଶ୍ୱର ପ୍ରଥମ ଦେଶ ହିସାବରେ ସୋଭିଏତ୍ ସଂଘ ମହାକାଶକୁ ଯାନ ଛାଡ଼ିଲା । ସେଠିକାର ସାମ୍ୟବାଦୀ ଅର୍ଥ ବ୍ୟବସ୍ଥାକାରଣରୁ ଏହା ସମ୍ଭବପର ହେଲା ବୋଲି ଦାବି ହେଲା । ସେ ଯାହାହେଉ, ତାହା ମଧ୍ୟ ଗୋଟିଏ ସମୃଦ୍ଧି ଥିଲା । ମାତ୍ର ସେ ସମୃଦ୍ଧି ମଧ୍ୟ ପୁଞ୍ଜିବାଦ ଭିତ୍ତିକ ଥିଲା ।

୧୯୫୦ ପରେ ପୂର୍ବ ୟୁରୋପର ସାମ୍ୟବାଦୀ ଦେଶମାନଙ୍କରେ ଗୋଟିଏ ପରେ ଗୋଟିଏ ବିଦ୍ରୋହ ସଂଘଟିତ ହେବାକୁ ଲାଗିଲା । ପ୍ରଥମ ୟୁଗୋସ୍ଲୋଭିଆ, ତାପରେ ହଙ୍ଗେରୀ, ଚେକୋସ୍ଲୋଭାକିଆ ଆଦି ଭିନ୍ନଭିନ୍ନ ଦେଶରେ ବିଦ୍ରୋହ ହେଲା ସୋଭିଏତ୍ ରୁଷିଆର ଆଧିପତ୍ୟ ବିରୁଦ୍ଧରେ । ତାହାର ଫଳରେ ପୂର୍ବ ୟୁରୋପର ଦେଶମାନଙ୍କୁ ଯେତିକି ଅବାଧରେ ଶୋଷଣ ଚାଲିଥିଲା, ତାହା ଆଉ ସମ୍ଭବ ହେଲାନାହିଁ । ଏ ସବୁ ବିଦ୍ରୋହର ପ୍ରଭାବ କାଳକ୍ରମେ ସୋଭିଏତ୍ ସଂଘ ଭିତରେ ଥିବା ଏସୀୟ ଗଣରାଜ୍ୟଗୁଡ଼ିକ ଉପରେ ପଡ଼ିଲା । ସୋଭିଏତ୍‌ରେ ମଧ୍ୟ ବିଦ୍ରୋହର ସ୍ୱର ଉତ୍ତୋଳନ ହେଲା । ଅର୍ଥାତ୍ ସୋଭିଏତ ସମୃଦ୍ଧି ପାଇଁ ଯେଉଁ ଅଞ୍ଚଳମାନଙ୍କର ଆର୍ଥିକ ଶୋଷଣ ହେଉଥିଲା ସେମାନେ ବିଦ୍ରୋହ କରିବାରୁ ସମୃଦ୍ଧିର ସଂକଟ ଘଟିଲା ।

ସୋଭିଏତ୍ ସଂଘର ଏହି ବିପର୍ଯ୍ୟ ପଛରେ କଣ ଏକ ଷଡ଼ଯନ୍ତ୍ର ଥିଲା ? ନିଶ୍ଚୟ ଥିବ ଏଥିରେ ସନ୍ଦେହ କରିବାର କିଛି କାରଣ ନାହିଁ । ମାତ୍ର ବିପର୍ଯ୍ୟୟର ମୁଖ୍ୟ କାରଣ ଷଡ଼ଯନ୍ତ୍ର ନୁହେଁ । ଏ ବିଷୟରେ ମୋର ସିଦ୍ଧାନ୍ତ ହେଲା ଯେ, ବୈଭବ କେବେ ମଧ୍ୟ ବିସମତା ଓ ଶୋଷଣ ବିନା ସମ୍ଭବ ନୁହେଁ । ତାହା ରାଜା ମହାରାଜାମାନଙ୍କର ସମୃଦ୍ଧି ହେଉ, ପୁଞ୍ଜିବାଦୀମାନଙ୍କର ହେଉ ଅବା ସୋଭିଏତ୍ ସଂଘର ହେଉ । ପ୍ରକୃତି ଏପରି ଭାବରେ ନିର୍ମିତ ଯେ ବୈଭବ ସେଇଠି ସୃଷ୍ଟି ହେବ ଯେଉଁଠି ଅନ୍ୟ ଅଞ୍ଚଳର ସଂପତ୍ତି ଠୁଳ କରି ହେବ । ଗୋଟିଏ ଅଞ୍ଚଳକୁ ପଛୁଆ ଓ ଦରିଦ୍ର କରି ନ ରଖିଲେ ଆଉ ଗୋଟିଏ ଅଞ୍ଚଳକୁ ବିଭବମୟ

କରି ହେବ ନାହିଁ । ପ୍ରତ୍ୟେକ ସମାଜବାଦୀ ଆଶା କରିବା ଉଚିତ୍ ଯେ, ଜନସାଧାରଣଙ୍କର ପ୍ରାଥମିକ ଆବଶ୍ୟକତା- ଖାଦ୍ୟ, ବସ୍ତ୍ର, ବାସଗୃହ, ଶିକ୍ଷା ଓ ସ୍ୱାସ୍ଥ୍ୟ ପୂରଣ ପାଇଁ ପ୍ରକୃତି ଏପରି ନିର୍ମିତ ହୋଇଛି ଯେ, ମଣିଷ ସମାଜ ନିଜର ବୁଦ୍ଧି ବିବେକ ବଳରେ ତା ଠାରୁ ବାହାର କରି ପାରିବ । କିନ୍ତୁ ବିଳାସବ୍ୟସନ ଓ ବୈଭବ ପାଇବାକୁ ହେଲେ ଅନ୍ୟମାନଙ୍କୁ ବଞ୍ଚିତ କରିବାକୁ ହେବ । ବିଳାସ ଯେଉଁଠି ରହିବ, ଶୋଷଣ ଓ ବିସମତା ଅବଶ୍ୟ ରହିବ । ଯାହା ସମସ୍ତଙ୍କ ପାଇଁ ଏକ ସୁସ୍ଥ ଓ ସକ୍ରିୟ ଜୀବନ ପାଇଁ ଦରକାର ସେତିକି ଯେଉଁଠି ଥିବ ତାହାକୁ ମୁଁ କହିବି ସମ୍ପନ୍ନତା । ତା ଠାରୁ ବେଶୀ ନେବାକୁ ଚେଷ୍ଟା କରିବା- ବିଳାସ ଓ ଆଡ଼ମ୍ବର ପାଇଁ ହେଉଛି ସମୃଦ୍ଧି । ସଂପନ୍ନତା ଆଉ ସମୃଦ୍ଧି କିମ୍ବା ସଂପନ୍ନତା ଓ ବୈଭବ ଭିତରେ ମୁଁ ଏକ ମୌଳିକ ଫରକ ଦେଖୁଛି ।

ଆଧୁନିକ ସଭ୍ୟତା ଆମକୁ ସମୃଦ୍ଧି ବିଷୟରେ ଯେଉଁ ଶିକ୍ଷା ଦେଇଛି, ସମାଜବାଦ ପ୍ରତିଷ୍ଠା ଦିଗରେ ତାହା ସବୁଠାରୁ ବଡ଼ ବାଧା । ଶିଳ୍ପ ସଭ୍ୟତା ବିଷୟରେ ଥିବା ଆମର ମତକୁ ପରିବର୍ତ୍ତନ କରିବାକୁ ହେବ । ପୁରୁଣା ସମାଜବାଦୀ ଦୃଷ୍ଟିକୋଣ ଅନୁସାରେ ଶିଳ୍ପ ସଭ୍ୟତାର ପରିଣତି ହେଉଛି ସମାଜବାଦ । କିନ୍ତୁ ଭବିଷ୍ୟତ ସମାଜବାଦର ସିଦ୍ଧାନ୍ତ ସେଇଆ ନୁହେଁ । ପୁଞ୍ଜିବାଦୀ ସଭ୍ୟତା, ଯାହାକୁ ଆଧୁନିକ ତଥା ପଶ୍ଚିମା ସଭ୍ୟତା ମଧ୍ୟ କୁହାଯାଇ ଥାଏ, ତାର ମୂଳ ଉତ୍ସ ହେଉଛି ବିସମତା । ଆଧୁନିକ ସଭ୍ୟତାକୁ ମୁଁ ନୈତିକ ବା ଆଧ୍ୟାତ୍ମିକ ଦୃଷ୍ଟିରୁ ସମାଲୋଚନା କରୁନାହିଁ, ବିଶୁଦ୍ଧ ଭୌତିକ ଦୃଷ୍ଟିରୁ ମୁଁ ଏହାର ସମାଲୋଚନା କରିବାକୁ ଚାହେଁ । ଆଧୁନିକ ସଭ୍ୟତାର ଯେତେ ଲୋକ ଭୋକ ଉପାସରେ ରହୁଛନ୍ତି, କୌଣସି ପ୍ରାଚୀନ ସଭ୍ୟତାର ସେତେ ଲୋକ ରହୁନଥିଲେ । ଥରେ କେବେ ମହାମାରୀ ହେଲା, ଦୁର୍ଭିକ୍ଷ ହେଲା ବା ବାଘ ଆସି ଅନେକ ଲୋକଙ୍କୁ ଖାଇଗଲା, ଏପରି ଭାବରେ ହୁଏତ ବହୁ ଲୋକ ମରୁଥିଲେ । ମାତ୍ର ପ୍ରତିଦିନ ଏତେ ଲୋକ କୌଣସି ସଭ୍ୟତାରେ ଭୋକିଲା ରହୁ ନଥିଲେ । ଚିକିତ୍ସା ଅବିକଶିତ ଅବସ୍ଥାରେ ଥିଲା । ଏଲୋପ୍ୟାଥିକ ତୁଳନାରେ ଆୟୁର୍ବେଦ ଏକ ନଗଣ୍ୟ ଶାସ୍ତ୍ର; ମାତ୍ର ଏତେ ରୋଗବ୍ୟାଧି ନଥିଲା । ଏତେ ସଂଖ୍ୟାରେ ବାସଶୂନ୍ୟ ଓ କାମଧନ୍ଦା ବିହୀନ ଲୋକ କୌଣସି ସଭ୍ୟତାରେ ନଥିଲେ । ବିଶେଷଜ୍ଞମାନେ ଏହାର ଖଣ୍ଡନ କରିପାରିବେ ବୋଲି ଭାବୁନାହିଁ ।

ଆଧୁନିକ ସଭ୍ୟତାର ଯେତେ ସଂଖ୍ୟକ ଲୋକ ପ୍ରତିଦିନ ଅକାଳ ମୃତ୍ୟୁର ଶିକାର ହେଉଛନ୍ତି, ଅତୀତରେ କୌଣସି ସଭ୍ୟତାରେ ହେଉ ନଥିଲା । ଆମେ ଯେତେବେଳେ କଲେଜରେ ପାଠ ପଢିବା ଆରମ୍ଭ କଲୁ ଆଧୁନିକ ସଭ୍ୟତାର ପ୍ରଶଂସା କରିବାକୁ ଯାଇ କହୁଥିଲୁ ଯେ ଆଗେ ବହୁ ଲୋକ ବଣ ଜଙ୍ଗଲରେ ସାପ କାମୁଡ଼ାରେ ମରୁଥିଲେ, ଆଜିକାଲି ତାହା ଘଟୁ ନାହିଁ ।

କିନ୍ତୁ ଦୁର୍ଘଟଣାଜନିତ ଅକାଳ ମୃତ୍ୟୁର ଶିକାର ତା ଠାରୁ ବହୁ ଗୁଣ ଲୋକ ହେଉଛନ୍ତି । ଅକାଳ ମୃତ୍ୟୁର ରୂପ ବଦଳିଛି, ମାତ୍ର ମୃତ୍ୟୁ ସଂଖ୍ୟା ବଢିଛି ।

ଏ ସ୍ଥିତି ଯେ ଭୟାବହ- ଏକଥା ମୁଁ କିମ୍ବା କେବଳ ପରିବେଶ ଆନ୍ଦୋଳନକାରୀମାନେ କହୁନାହାଁନ୍ତି, ଆମେରିକାର ଉପରାଷ୍ଟ୍ରପତି ମଧ୍ୟ ଏହି ମର୍ମର କଥା କହୁଛନ୍ତି । ଆମେରିକାର ବର୍ତ୍ତମାନର ଉପରାଷ୍ଟ୍ରପତି ଆଲ୍‌ଗୋରେ Earth in the Balance ନାମକ ଏକ ପୁସ୍ତକ ରଚନା କରିଛନ୍ତି । ଅଳ୍ପ ଦିନ ତଳେ ଉକ୍ତ ପୁସ୍ତକଟିକୁ ମୁଁ ଦେଖିବାର ସୁଯୋଗ ପାଇଲି । ଏହାକୁ ପଢିବା ପରେ ମୁଁ ଅନୁଭବ କଲି ଏହା ଏକ ଗୁରୁତ୍ୱପୂର୍ଣ୍ଣ ବହି । ଏଥିରେ ନୂଆ କଥା କିଛି ନାହିଁ । ହେଲେ ଏ ବହିର ବିଶେଷତ୍ୱ ହେଲା ଯେ ପୃଥିବୀର ଭବିଷ୍ୟତ ସଂକ୍ରାନ୍ତୀୟ ଯେଉଁସବୁ କଟୁ ସତ୍ୟକୁ ଆମ ଦେଶର ସାଧାରଣ ଶିକ୍ଷିତ ଲୋକେ, ଗାନ୍ଧିବାଦୀ, ଆଦର୍ଶବାଦୀ, ବା ପରିବେଶ ଆନ୍ଦୋଳନକାରୀଙ୍କ ଡରାଇବା କଥା ବୋଲି ଉଡ଼ାଇ ଦେଉଥିଲେ, ସେ ସବୁ କଥାକୁ ସେ ସତ୍ୟ ବୋଲି ଉକ୍ତ ବହିରେ ଲେଖିଛନ୍ତି । ଉପରାଷ୍ଟ୍ରପତି ନିର୍ବାଚନରେ ଅବତୀର୍ଣ୍ଣ ହେବାର କିଛି ଦିନ ପୂର୍ବରୁ ସେ ବହିଟିକୁ ଲେଖିଥିଲେ । ଉକ୍ତ ବହିରେ ସେ ସ୍ୱୀକାର କରିଛନ୍ତି ଯେ ପୃଥିବୀର ଧ୍ୱଂସ ଆସନ୍ନ ବୋଲି ଧରି ନିଆଯାଇ ପାରେ । ଆମର ଏ ଆଧୁନିକ ସଭ୍ୟତାରେ ପ୍ରତିବର୍ଷ ୩୭.୦୦୦ଶିଶୁ ମୃତ୍ୟୁ ମୁଖରେ ପଡୁଛନ୍ତି । ପ୍ରତିଦିନ ୨୬୦ଟନ ଭୂପୃଷ୍ଠ ମାଟି ବୋହିଯାଇ ମିସିସିପି ନଦୀରେ ମିଶିଯାଉଛି; ଅର୍ଥାତ୍ ମାଟିର ଉର୍ବର ଶକ୍ତି ନଷ୍ଟ ହୋଇ ଯାଉଛି । ପୃଥିବୀର ୧୮% ସ୍ଥଳ ଭୂମି ଏବଂ ଆଫ୍ରିକାର ୨୫% ସ୍ଥଳଭୂମି ମରୁଭୂମି ହେବାକୁ ଯାଉଛି । ଏସବୁ ତଥ୍ୟ ଆଲ୍‌ଗୋରେ ବହୁ ବୈଜ୍ଞାନିକ ତଥା ବିଶେଷଜ୍ଞମାନଙ୍କ ସହ ବିସ୍ତୃତ ଆଲୋଚନା କରି ଲିପିବଦ୍ଧ କରିଛନ୍ତି ।

ଏକବିଂଶ ଶତାବ୍ଦୀରେ ମାନବ ସଭ୍ୟତାର ଭବିଷ୍ୟତ ସଂକ୍ରାନ୍ତରେ ମୁଁ ଆଗରୁ ଯେଉଁସବୁ କଥା କହୁଥିଲି ଏ ବହି ପଢିବାପରେ ଆହୁରି ସାହସ ସହିତ ସେ ସବୁ କଥା କହୁଛି । ଏକବିଂଶ ଶତାବ୍ଦୀ ମଣିଷ ସମାଜ ପାଇଁ ଏକ ଭୟଙ୍କର ଶତାବ୍ଦୀ ବୋଲି ପ୍ରମାଣିତ ହେବ । ଆଲ୍‌ଗୋରେଙ୍କ ପୁସ୍ତକରୁ ଦୁଇଟି ପାରାଗ୍ରାଫ୍ ଉଦ୍ଧାର କରି ମୁଁ ଶୁଣାଇବାକୁ ଚାହେଁ:

" Unless we come to a better understanding of both the potential and the danger of technology, the addition of more technological power simply ensures further degradation of the environment and no matter what new technology we discover, no matter how cleverly and efficiently we manage to get them into the hands of the people through out the world, the underlying crisis will worsen unless at the same time we redefine our relationship with the environment" (page -318)

ଅବସ୍ଥା ଆହୁରି ଖରାପ ହେବ । ଏହାର ଯଥେଷ୍ଟ ସମ୍ଭାବନା ରହିଛି । ପୃଥିବୀର ଜନସଂଖ୍ୟାରେ ପ୍ରତି ଦଶବର୍ଷରେ ୧୦୦କୋଟି ଲୋକ ଯୋଡ଼ି ହେଉଛନ୍ତି । ଏହା ଯଦି ଚାଲୁ ରହେ, ଆଲଗୋରେଙ୍କ ଭାଷାରେ :

" It is creating a bold range of problems and all by itself . The exploding population is liable to push the civilisation into a super critical state leaving it vulnerable to very large avalanches of unpredictable change. To cope with this dangerous turn of events we must somehow find a why to accelerate our movement to a new state of development".(Page -366)

ଆଲ୍‌ଗୋରେଙ୍କ ମନ୍ତବ୍ୟରୁ ଆମେ ସ୍ଥୂଳ ଭାବରେ ଏହି ଉପସଂହାରରେ ଉପନୀତ ହୋଇପାରିବା ଯେ ଏକବିଂଶ ଶତାବ୍ଦୀରେ ଭାରତ ଭଳିଆ ଅନେକ ଦେଶରେ କୋଟି କୋଟି ଲୋକ ଭୋକ ଉପାସରେ ମରିଯିବେ । ୨୦୩୦ ମସିହା ସୁଦ୍ଧା ଏ ଅବସ୍ଥା ଆସି ସାରିଥିବ । ଖାଦ୍ୟଶସ୍ୟ ଉତ୍ପାଦନ ବୃଦ୍ଧି ହୋଇପାରିବ ଏକଥା ଆମେରିକା ଓ ୟୁରୋପର ବୈଜ୍ଞାନିକମାନେ ଦୃଢତା ସହ କହିପାରୁ ନାହାଁନ୍ତି । ଆଧୁନିକ ପ୍ରଯୁକ୍ତି ବିଦ୍ୟା ବିଷୟରେ ଯେଉଁ ସବୁ ବାହାସ୍ଫୋଟ ହେଉଥିଲା, ସେସବୁ ଆଉ ନାହିଁ । ଆଲ୍‌ଗୋରେ ପୁସ୍ତକର ଅନ୍ୟ ଏକ ସ୍ଥାନରେ ଲେଖିଛନ୍ତି । "But the singlemost serious strategic creation to the global food system is the fate of the genetic erosion. The loss of germ plantation and the incresing vulnerblity of the food crops to their natural enemies". ଖାଦ୍ୟ ଭିତରେ ଯେଉଁ ଜୀବକୋଷ ରହେ, ତାହା ସଂକ୍ରମିତ ଓ ପ୍ରଦୂଷିତ ହୋଇ ଦୁର୍ବଳ ହୋଇ ଯାଉଛି । ବିଜ୍ଞାନକୁ ନେଇ ଯେଉଁ ବୈଜ୍ଞାନିକମାନେ ବହୁତ ଗର୍ବ ଅନୁଭବ କରନ୍ତି ସେମାନେ ଏକଥାକୁ ବୁଝିବା ଦରକାର । "Scientists have never created a new gene. Thy simply combine the genes, they find in nature and it is the suppy of gene that is now endangered" ବୈଜ୍ଞାନିକ କୌଣସି ନୂତନ ଜୀବକୋଷ ସୃଷ୍ଟି କରିପାରିବ ନାହିଁ । ଯେଉଁ ଜୀବକୋଷ ଗୁଡ଼ିକ ଅଛି ତାକୁ ହିଁ ଯୋଡ଼ାଯୋଡ଼ି କରି ଏବଂ ବିଭିନ୍ନ ଭାବରେ ସଞ୍ଚାଳିତ କରିବା କାମ ସେ କରିପାରୁଛି । ତେଣୁ ଯେଉଁ ଜୀବକୋଷ ଗୁଡ଼ିକ ରହିଛି ସେଗୁଡ଼ିକ ଧ୍ୱଂସ ପାଇଗଲେ ବୈଜ୍ଞାନିକମାନେ ଆଉ କ'ଣ କରିପାରିବେ ? ତେଣୁ ଆଲଗୋରେଙ୍କ ମନ୍ତବ୍ୟର ସାରାଂଶ ହେଉଛି ଯେ ବର୍ଦ୍ଧିତ ଜନସଂଖ୍ୟା ସକାଶେ ଖାଦ୍ୟଶସ୍ୟ ବୃଦ୍ଧିର ଉପାୟ ଆଧୁନିକ ପ୍ରଯୁକ୍ତି ବିଦ୍ୟା ପାଖରେ ନାହିଁ । ଏ ପ୍ରଯୁକ୍ତି ବିଦ୍ୟା ସାହାଯ୍ୟରେ ଆମେ ଆଉ ପୃଥିବୀକୁ ସୁରକ୍ଷିତ ରଖିପାରିବା ନାହିଁ ।

ଏଭଳି ଅବସ୍ଥାରେ ସମାଜବାଦକୁ ସମତାର ପରିକଳ୍ପନା କରିବା ସଙ୍ଗେ ସଙ୍ଗେ

ମଣିଷ ସମାଜ କିପରି ବଞ୍ଚିପାରିବ, ସେ କଥା ମଧ୍ୟ ଚିନ୍ତା କରିବାକୁ ହେବ । ଭବିଷ୍ୟତ ସମାଜବାଦର ଏହା ପ୍ରଥମ ଦାୟିତ୍ୱ ।

ମଣିଷ ସମାଜକୁ କିପରି ବଞ୍ଚାଯାଇ ପାରିବ ? ଆଲଗୋରେଙ୍କ ପୁସ୍ତକରେ ମଧ୍ୟ କେତେକ ପ୍ରସ୍ତାବ ରହିଛି । ଉକ୍ତ ଅଂଶକୁ ପଢି ମୋର ମନ୍ତବ୍ୟ ଯେ, ଉକ୍ତ ପୁସ୍ତକର ପ୍ରଥମ ଭାଗ ଗୁରୁତ୍ୱପୂର୍ଣ୍ଣ ହେଲେ ବି ଦ୍ୱିତୀୟ ଭାଗ (ପ୍ରସ୍ତାବ ଅଂଶ) ଅଭିସନ୍ଧିମୂଳକ । ତାକୁ ପଢିଲାବେଳେ ମୋର ରାଜୀବ ଗାନ୍ଧୀ ପ୍ରଧାନମନ୍ତ୍ରୀ ଥିବା ସମୟର ଏକ ପ୍ରସଙ୍ଗ ମନେ ପଡ଼ିଲା । ସେ ଶିକ୍ଷା ନୀତିର ପରିବର୍ତ୍ତନ କରିବାକୁ ଚାହିଁଲେ । ପ୍ରଥମେ ସରକାରଙ୍କ ତରଫରୁ ଏକ ପୁସ୍ତକ ଛାପି ବଣ୍ଟାଗଲା । ତା ଉପରେ ବହୁତ ଚର୍ଚ୍ଚା ହେଲା । ଉକ୍ତ ପୁସ୍ତକରେ ଭାରତର ଶିକ୍ଷା ବ୍ୟବସ୍ଥାର ଦୁରବସ୍ଥା ଉପରେ ଟିକିନିଖି ବିବରଣୀ ରହିଥିଲା । ପରିସଂଖ୍ୟାନ ସହ ଶିକ୍ଷକର ଅଭାବ, କଳାପଟାର ଅଭାବ, ସ୍କୁଲଘର ଛାତ ନଥିବା ଆଦି କଥା ସେଥିରେ ଲିପିବଦ୍ଧ ଥିଲା । କିନ୍ତୁ ସେସବୁ ବର୍ଣ୍ଣନା ପରେ ଯେଉଁ ଶିକ୍ଷାନୀତି ବାହାରିଲା ସେଥିରେ ଶିକ୍ଷକ ବା କଳାପଟାର ଅଭାବ କିମ୍ବା ସ୍କୁଲଘର ଛାତର ଦୁରବସ୍ଥା ସୁଧାରିବା କଥା ନଥିଲା । "ନବୋଦୟ ବିଦ୍ୟାଳୟ' ନାମରେ ଗ୍ରାମାଞ୍ଚଳର ପିଲାମାନଙ୍କ ପାଇଁ ଗୋଟିଏ ରକମର ସ୍କୁଲ୍ ପ୍ରତିଷ୍ଠାର ପ୍ରସ୍ତାବ ଆସିଲା । ଆଲ୍‌ଗୋରେ ମଧ୍ୟ ପୃଥିବୀ କିଭଳି ଭାବେ ଧ୍ୱଂସ ହେବାକୁ ଯାଉଛି ଏବଂ ମାନବ ସମାଜର ଅର୍ଦ୍ଧେକ ଅଞ୍ଚଳ ଲୋପ ପାଇବାକୁ ଯାଉଛି ଏସବୁ କଥା କହିସାରିଲା ପରେ ଯେଉଁ ସବୁ ପରାମର୍ଶ ଦେଇଛନ୍ତି ବା ନୀତି ଘୋଷଣା କରିଛନ୍ତି, ଠିକ ସେହି ରକମର । ସେ କହିଛନ୍ତି ଯେ ପରିବେଶର କ୍ଷତି ନ କଲା ଭଳି ପ୍ରଯୁକ୍ତି ବିଦ୍ୟାର ଉଦ୍‌ଭାବନ ତୀବ୍ରତର ହେବା ଦରକାର । ତାଙ୍କ କହିବା ଅନୁସାରେ ସେ ରକମର ପ୍ରଯୁକ୍ତି ବିଦ୍ୟାର ଉଦ୍‌ଭାବନ କ୍ଷେତ୍ରରେ ଜାପାନ କିଛିଟା ଅଗ୍ରଗତି କରିଛି । ଆମେରିକା ବୈଜ୍ଞାନିକମାନେ ଯଦିଓ ସେ ସଂକ୍ରାନ୍ତୀୟ ନିୟମ ଗୁଡ଼ିକ ଉପରେ ଆଗରୁ ଚିନ୍ତା କରିଥିଲେ, ଆମେରିକାର କମ୍ପାନିମାନେ ସେସବୁ ତିଆରି କରିନାହାଁନ୍ତି । ପୃଥିବୀର ପ୍ରାକୃତିକ ସଂସାଧନ ଗୁଡ଼ିକ ଦ୍ରୁତ ଗତିରେ ସମାପ୍ତ ହୋଇ ଚାଲିଛି । ତାର ସବୁଠାରୁ ବଡ଼ ଉଦାହରଣ ହେଲା ପେଟ୍ରୋଲିୟମ । ଏ ସଂକ୍ରାନ୍ତରେ ଆଉ କାହାର ସନ୍ଦେହ ନାହିଁ ପେଟ୍ରୋଲ ସରିଗଲା ପରେ ମଟର ଗାଡ଼ି ଚାଲିବ କେମିତି ? ଆମେରିକା ଓ ଜାପାନର ବୈଜ୍ଞାନିକମାନେ ବିଶେଷ ଭାବରେ ଚିନ୍ତିତ ହେବା ସ୍ୱାଭାବିକ । ଜାପାନ ମଟର ଗାଡ଼ି ବ୍ୟବସାୟରୁ ବେଶ ଲାଭ କରେ । ସେମାନେ ନୂଆ ରକମର ବ୍ୟାଟେରି ଉଦ୍‌ଭାବନ କଲେଣି । ସୌରଶକ୍ତି ତଥା ଅନ୍ୟାନ୍ୟ ସ୍ରୋତରୁ ସେ ବ୍ୟାଟେରିରେ ମଟର ଗାଡ଼ି ଚାଲିବ । ପେଟ୍ରୋଲ ସରିଗଲା ପରେ ବି ମଟରଗାଡ଼ି ଚାଲିବ । ଏ ରକମର ଯନ୍ତ୍ରପାତି ଦ୍ୱାରା ପ୍ରଦୂଷଣ

ବି କମ୍ ହେବ । ଆଲ୍‌ଗୋରେଙ୍କ ପ୍ରସ୍ତାବ ଅନୁସାରେ ନୂଆନୂଆ ଯନ୍ତ୍ରପାତି ଦ୍ୱାରା ପ୍ରଦୂଷଣ କମ୍ ହେବ ଏବଂ ଶିଳ୍ପ ବ୍ୟବସ୍ଥା ଯଥାବିଧି ରହିବ, ଉଦ୍ଭାବନ ଉପରେ ଜୋର ଦେବାକୁ ପଡ଼ିବ । ଏହି ରକମର ନୂତନ ପ୍ରଯୁକ୍ତି ବିଦ୍ୟା ସଂକ୍ରାନ୍ତରେ ସେ ପୁସ୍ତକଟିରେ ୪୦/୫୦ପୃଷ୍ଠା ଲେଖିଛନ୍ତି । ତୃତୀୟ ବିଶ୍ୱର ଦେଶମାନେ ମଧ୍ୟ ସେସବୁକୁ ଯେମିତି ଗ୍ରହଣ କରିବେ ସେ ଦିଗରେ ବୁଝାଇବାକୁ ହେବ ବୋଲି ସେ ଲେଖିଛନ୍ତି । ଏହି କଥାରୁ ତାଙ୍କର ଅସଲ ଅଭିସନ୍ଧି ସ୍ପଷ୍ଟ ହୋଇ ପଡ଼ିଛି । ସେ ଧରି ନେଇଛନ୍ତି ଯେ, ଯେଉଁ ସବୁ ଧ୍ୱଂସର ପ୍ରକ୍ରିୟା ଚାଲିଛି, ତାହା ଚାଲିବ ଏବଂ ପୃଥିବୀର ଅନ୍ତତଃ ଦୁଇ -ତୃତୀୟାଂଶ ଦେଶର କୋଟି କୋଟି ଲୋକେ ମରିବେ । ଧନୀ ଦେଶମାନେ ଯେଉଁସବୁ ପ୍ରଦୂଷଣ-ବିରୋଧୀ ଯନ୍ତ୍ରପାତି ନିର୍ମାଣ କରିବେ ସେସବୁକୁ କିଣିବା ପାଇଁ ତୃତୀୟ ବିଶ୍ୱର ଗରିବ ଦେଶ ମାନଙ୍କୁ ପ୍ରବର୍ତ୍ତାଯିବ । ଯେ କେହି ଚିନ୍ତାଶୀଳ ବ୍ୟକ୍ତି ଜାଣିପାରିବ ଯେ ସେ ସବୁକୁ ଦରିଦ୍ର ଦେଶର ଲୋକମାନେ ବ୍ୟବହାର କରି ପାରିବେ ନାହିଁ । ନୂଆ ପ୍ରଯୁକ୍ତି ବିଦ୍ୟା ବହୁତ ବ୍ୟୟସାପେକ୍ଷ । ତେଣୁ ସେସବୁକୁ ଆମେରିକା, ୟୁରୋପ ଆଦିର ଧନୀ ଲୋକମାନେ ଉପଭୋଗ୍ କରି ପାରିବେ । ବିଧ୍ୱସ୍ତ ହୋଇ ସାରିଥିବା ବସୁନ୍ଧରା ଉପରେ ସେମାନଙ୍କର ରାଜତ୍ୱ ରହିଥିବ ।

ଏହି ପରିପ୍ରେକ୍ଷୀରେ ସମାଜବାଦର ଭୂମିକା କଣ ହେବା ଉଚିତ୍ ? ମଣିଷ ସଭ୍ୟତା ଯେଉଁ ଅବଶ୍ୟମ୍ଭାବୀ ଧ୍ୱଂସ ଆଡ଼କୁ ଗତି କରୁଛି ସେଥିପାଇଁ ଦାୟୀ ହେଉଛି ଆଧୁନିକ ଶିଳ୍ପ ସଭ୍ୟତା । ପୃଥିବୀକୁ ଏ ଧ୍ୱଂସ ମୁଖରୁ ରକ୍ଷା କରିବା ପାଇଁ ଆଧୁନିକ ପ୍ରଯୁକ୍ତି ବିଦ୍ୟା ପାଖରେ କୌଣସି ଉପାୟ ନାହିଁ । ସମାଜବାଦକୁ ଏହାର ଚିନ୍ତା କରିବାକୁ ହେବ ।

ଧନୀ ଦେଶମାନଙ୍କର ରାଜନେତା ଓ ନୀତି ପ୍ରଣେତାମାନେ ଜନସଂଖ୍ୟା ବୃଦ୍ଧି କଥାଟାକୁ ଉଠାଇ ସବୁ ସଙ୍କଟ ପାଇଁ ତୃତୀୟ ବିଶ୍ୱର ଲୋକମାନଙ୍କୁ ଦାୟୀ କରିଥାନ୍ତି । ଏ ଦୋଷଟାକୁ ସଂପୂର୍ଣ୍ଣ ଏଡ଼ାଇ ଦିଆଯାଇ ନପାରେ । ବାସ୍ତବରେ ଏହା ଏକ ଅର୍ଦ୍ଧ ସତ୍ୟ । ଏହାକୁ ଯେତିକି ପ୍ରାଥମିକତା ଦିଆଯାଉଛି ତାହା ଠିକ ନୁହଁ । ଏ ବିଷୟରେ ଜୁଲିୟସ୍ ନେୟେରେ ଯେଉଁ କଥା କହିଛନ୍ତି ତାହା ସ୍ମରଣଯୋଗ୍ୟ । ସେ କହିଛନ୍ତି, "ସବୁଠାରୁ ବଡ଼ ଗର୍ଭନିରୋଧକ ହେଉଛି ସାମାଜିକ ସୁରକ୍ଷା " । ସାମାଜିକ ସୁରକ୍ଷା ପ୍ରଦାନ ଦ୍ୱାରାହିଁ ଜନ୍ମ ନିୟନ୍ତ୍ରଣ ସଫଳ ହୋଇ ପାରିବ । ଦାରିଦ୍ର୍ୟ ହେଉଛି ଏ ଦିଗରେ ସବୁଠାରୁ ବଡ଼ ଅନ୍ତରାୟ ।

ପୃଥିବୀରେ ପରିବେଶ ସଙ୍କଟର ସମାଧାନର ପନ୍ଥା ଚିନ୍ତା କଲାବେଳେ ବି ଆମେରିକା ତଥା ଅନ୍ୟାନ୍ୟ ଦେଶ ତୃତୀୟ ବିଶ୍ୱର ଦରିଦ୍ର ଦେଶମାନଙ୍କୁ ଗୋଟିଏ ବଡ଼ ବଜାର ହିସାବରେ ଦେଖୁଛନ୍ତି । ଆମେରିକା ସାମ୍ରାଜ୍ୟବାଦ ନୂଆ ନୂଆ ରୂପରେ ଭାରତ ତଥା ଅନ୍ୟାନ୍ୟ ଗରିବ

ଦେଶମାନଙ୍କ ଉପରେ ଆକ୍ରମଣ ଚଳାଇଛି । ଏହି ନୂତନ ପରିସ୍ଥିତିକୁ ଆଖି ଆଗରେ ରଖି ସାମ୍ରାଜ୍ୟବାଦ ବିରୁଦ୍ଧରେ ସ୍ୱର ଉତ୍ତୋଳନ କରିବା ସମାଜବାଦକୁ ପୁନଃଜୀବନ୍ତ କରିବାର ପ୍ରଥମ ପଦକ୍ଷେପ ହେବ । ତଦ୍ୱାରା ଉଭୟ ପୁଞ୍ଜିବାଦ ଓ ସାମ୍ରାଜ୍ୟବାଦର ବିରୋଧ ହେବ । ଲେନିନ୍ ସାମ୍ରାଜ୍ୟବାଦକୁ ପୁଞ୍ଜିବାଦର ଚରମ ପରିଣତି ବୋଲି କହିଥିଲେ (Imperialism is the highest stage of capitalism) । ମୋ ମତରେ ଏହା ଏକ ଭୁଲ୍ ପ୍ରତିପାଦନ । ସାମ୍ରାଜ୍ୟବାଦ ହେଉଛି ପୁଞ୍ଜିବାଦର ଆଜନ୍ମ ସଖା । ସାମ୍ରାଜ୍ୟବାଦର ବାହୁବଳରେ ହିଁ ପୁଞ୍ଜିବାଦର ସମୃଦ୍ଧି ସମ୍ଭବ ହୋଇପାରିଛି । ସାମ୍ରାଜ୍ୟବାଦ ବିନା ପୁଞ୍ଜିବାଦ ଚଳି ପାରିବ ନାହିଁ । ଯେଉଁଦିନ ଏସିଆ, ଆଫ୍ରିକା ଓ ଲାଟିନ୍ ଆମେରିକାର ଗରିବ ଦେଶମାନେ, ସମଗ୍ର ଭାବରେ ହେଉ ବା ଆଂଶିକ ଭାବରେ ହେଉ, ସାମ୍ରାଜ୍ୟବାଦୀ ବଜାର ସାଙ୍ଗରେ ସଂପର୍କ ଛିନ୍ନ କରିବାର ନିଷ୍ପତ୍ତି ନେଇଯିବେ, ସେହିଦିନ ଆମେରିକା ଓ ୟୁରୋପର ପୁଞ୍ଜିବାଦ ଭୁଶୁଡ଼ି ପଡ଼ିବ । ଭାରତ, ଚୀନ୍ ଓ ବ୍ରାଜିଲ୍ - ଏହି ତିନୋଟି ଦେଶ ବି ଯଦି ଆମେରିକା, ୟୁରୋପ ଓ ଜାପାନ୍ ସାଙ୍ଗରେ ବାଣିଜ୍ୟ ସଂପର୍କ ଛିନ୍ନ କରିବାର ସଙ୍କଳ୍ପ ନିଅନ୍ତି, ଏହି ଧନୀ ଦେଶ ଗୁଡ଼ିକର ପୁଞ୍ଜିବାଦ ଟଳମଳ କରିବ । ଏହାର ମୁକାବିଲା କରିବାପାଇଁ ଆମେରିକା ସଙ୍ଗେ ସଙ୍ଗେ ଯୁଦ୍ଧ ଘୋଷଣା କରିପାରେ । ମଧ୍ୟ ଏସିଆରୁ ପେଟ୍ରୋଲ ଯୋଗାଣ କମ୍ ହେବାର ଆଶଙ୍କା ଦେଖି ଆମେରିକା ଥରେ ଯୁଦ୍ଧ କରି ସାରିଛି ।

୨୦୧୦ ମସିହା ବେଳକୁ ବିଶ୍ୱର ଜନସଂଖ୍ୟା ଯେତିକି ହୋଇଥିବ ସେହି ପରିମାଣରେ ଖାଦ୍ୟଶସ୍ୟ ବୃଦ୍ଧି ଘଟିବ କି ନାହିଁ ? ଏହାର ଉତ୍ତର କେହି ଦେଇ ପାରୁ ନାହାଁନ୍ତି । ଏ ସଂକ୍ରାନ୍ତରେ ମୋର ଦୃଢ଼ ମତ ହେଲା ଯେ ବିଶ୍ୱମାନବ ସମାଜକୁ ଖାଦ୍ୟ ଯୋଗାଇବାର ଦାୟିତ୍ୱ ରାଷ୍ଟ୍ରର ମୁଖ୍ୟମାନେ ନିଅନ୍ତୁ ନାହିଁ । ଏହି ଦାୟିତ୍ୱର ଯୋଜନା ୱାଶିଂଟନ, ଦିଲ୍ଲୀ ଅବା ଭୁବନେଶ୍ୱରରେ ନକରି ଗ୍ରାମପଞ୍ଚାୟତମାନଙ୍କୁ ଦେଇଦିଅନ୍ତୁ । ଏହି କାମ ବିଶ୍ୱବାଣିଜ୍ୟ ସଂଗଠନ କିମ୍ବା ଆମେରିକା ସରକାର କିମ୍ବା ଦିଲ୍ଲୀ ସରକାର ଦ୍ୱାରା କେନ୍ଦ୍ରୀୟ ସ୍ତରରେ ହୋଇପାରିବ ନାହିଁ । ଗ୍ରାମ କିମ୍ବା ଗ୍ରାମ ପଞ୍ଚାୟତ ସ୍ତରରେ ଏକ ବିକେନ୍ଦ୍ରିତ ସ୍ୱାବଲମ୍ବୀ ଅର୍ଥ ବ୍ୟବସ୍ଥାର ଜରିଆରେ ହିଁ ଏହା ସମ୍ଭବପର ହେବ । ସେ ସ୍ତରରେ ସଚେତ ଲୋକମାନେ ସେମାନଙ୍କର ଜନସଂଖ୍ୟାକୁ ଆଖି ଆଗରେ ରଖି ସେମାନଙ୍କର ଉତ୍ପାଦନର ଯୋଜନା କରିବେ । ସେହି ଅନୁସାରେ ସେମାନେ ନିଜର ଜନସଂଖ୍ୟାକୁ ସୀମିତ ରଖିବାର ଦାୟିତ୍ୱ ନେବେ । କେବଳ ଆକସ୍ମିକ ଆବଶ୍ୟକତା ପାଇଁ ସେମାନଙ୍କୁ ବାହାରୁ ସାହାଯ୍ୟ ମିଳିବାର ବ୍ୟବସ୍ଥା ରହିବ ।

ଏକ ବିକେନ୍ଦ୍ରିତ ସ୍ୱାବଲମ୍ବୀ ଅର୍ଥ ବ୍ୟବସ୍ଥାର ପ୍ରବର୍ତ୍ତନ ପାଇଁ ଏକ ନୂତନ ପ୍ରଯୁକ୍ତି

ବିଦ୍ୟାର ଆବଶ୍ୟକତା ହେବ । ଆମେରିକାର ଉପରାଷ୍ଟ୍ରପତି ଯେଉଁ ନୂଆ ପ୍ରଯୁକ୍ତି ବିଦ୍ୟାର ଉଲ୍ଲେଖ କରିଛନ୍ତି ତାହା ଆମପାଇଁ ପ୍ରାସଙ୍ଗିକ ନୁହେଁ । ଆମ ପାଇଁ ନୂତନ ପ୍ରଯୁକ୍ତି ବିଦ୍ୟାର ଅର୍ଥ ଭିନ୍ନ ହେବ । ଆଧୁନିକ ବିଜ୍ଞାନକୁ ଆମେ ଏଭଳି କାର୍ଯ୍ୟରେ ଲଗାଇବା ଯେ ଜିଲ୍ଲା, ପ୍ରଖଣ୍ଡ ଓ ଗ୍ରାମ ସ୍ତରରେ ଲୁଗା, ଖାଇବା ତେଲ, ଯୋତା, ସାବୁନ୍, ଔଷଧ ଆଦି ଭଳି ନିତ୍ୟ ବ୍ୟବହାର୍ଯ୍ୟ ଜିନିଷର ଉତ୍ପାଦନ ହୋଇପାରିବ । ସମାଜବାଦୀ ଦୃଷ୍ଟିରେ ନୂତନ ପ୍ରଯୁକ୍ତି ବିଦ୍ୟାର ପରିଭାଷା ହେଉଛି ଏଇଆ ।

ପୁଞ୍ଜିବାଦୀ ଅର୍ଥ ବ୍ୟବସ୍ଥାର ଏକ ସହାୟକତତ୍ତ୍ୱ ହେଉଛି ଉପଭୋକ୍ତା ବା ଭୋଗବାଦ । ଏହା ବିଳାସର ଏକ ସଂସ୍କରଣ । କିନ୍ତୁ ଯେଉଁ ଲୋକମାନେ ଉପଭୋକ୍ତାବାଦୀ ଜିନିଷ କିଣୁଛନ୍ତି ସେମାନଙ୍କୁ ବିଳାସୀ କୁହାଯାଇ ପାରିବ ନାହିଁ । ସେମାନେ ଅଧିକାଂଶ ମଧ୍ୟବିତ୍ତ ଶ୍ରେଣୀର ଲୋକ । ବଜାରକୁ ଏପରି କରିଦିଆ ଯାଉଛି ଯେ, ଏହିସବୁ ବସ୍ତୁକୁ କିଣିବା ପାଇଁ ଏହି ଶ୍ରେଣୀର ଲୋକ ବାଧ୍ୟ ହେଉଛନ୍ତି । ଏକ ସମତାମୂଳକ ସମାଜ ପ୍ରତିଷ୍ଠା କରିବାକୁ ହେଲେ ଏହି ଉପଭୋକ୍ତାବାଦ ବିରୁଦ୍ଧରେ ଏକ ସାଂସ୍କୃତିକ ଆନ୍ଦୋଳନ ଗଢ଼ି ତୋଳିବାକୁ ହେବ ।

ଉପରୋକ୍ତ ତତ୍ତ୍ୱ ଗୁଡ଼ିକୁ ସୂତ୍ରବଦ୍ଧ କଲେ ସମାଜବାଦୀ ଆନ୍ଦୋଳନର କାର୍ଯ୍ୟକ୍ରମ ସଂକ୍ରାନ୍ତୀୟ ଏକ ରୂପରେଖ ପ୍ରସ୍ତୁତ ହେବ । (୧) ସାମ୍ରାଜ୍ୟବାଦ ବିରୁଦ୍ଧରେ ଆନ୍ଦୋଳନ, ସାମ୍ରାଜ୍ୟବାଦୀ ବଜାର ସହ ସଂପର୍କ ସଂପୂର୍ଣ୍ଣ ଭାବେ ଛିନ୍ନ କରାଯିବ; (୨) ତୃତୀୟ ବିଶ୍ୱର ଦେଶମାନଙ୍କରେ ଏକ ସ୍ୱାବଲମ୍ବୀ ବିକେନ୍ଦ୍ରିତ ଅର୍ଥ ବ୍ୟବସ୍ଥାର ଆୟୋଜନ ଓ ଏଥି ସକାଶେ ଏକ ବିକଳ୍ପ ନୂତନ ପ୍ରଯୁକ୍ତି ବିଦ୍ୟାର ପ୍ରଚଳନ; (୩) ଉପଭୋକ୍ତାବାଦ ବିରୁଦ୍ଧରେ ସାଂସ୍କୃତିକ ଆନ୍ଦୋଳନ । ବର୍ତ୍ତମାନ ପରିପ୍ରେକ୍ଷୀରେ ଆମେ ଯେତେବେଳେ ସମାଜବାଦକୁ ଆଉ ଥରେ ପରିଭାଷିତ କରିବାକୁ ଯାଉଛୁ ଏହି ତିନୋଟି କାର୍ଯ୍ୟକ୍ରମ ପ୍ରାରମ୍ଭିକ ହେବ । ଆଜିର ଏ ସଂକଟ କାଳରେ ସମାଜବାଦର ଲକ୍ଷ୍ୟ କେବଳ ଏକ ସମତାମୂଳକ ବା ନ୍ୟାୟମୂଳକ ସମାଜ ସ୍ଥାପନାରେ ସୀମାବଦ୍ଧ ନୁହେଁ, ମାନବ ସମାଜକୁ ବଞ୍ଚାଇବା ପାଇଁ ସମାଜବାଦକୁ ଦାୟିତ୍ୱ ନେବାକୁ ହେବ ।

ଆଜିର ଏହି ଚର୍ଚ୍ଚାରେ ମୁଁ ଯେଉଁ ପ୍ରତିପାଦନ ଗୁଡ଼ିକୁ ଉପସ୍ଥାପିତ କରିଛି ତାହା ଶେଷ ବାକ୍ୟ ନୁହେଁ, ଶେଷ ନିଷ୍ପତ୍ତି ନୁହେଁ, ନୂଆ ବାଟ ଖୋଜିବା ଭିତରେ ମୁଁ ସେଗୁଡ଼ିକୁ ସୂତ୍ରବଦ୍ଧ କରିଛି । ମୋର ଏତିକି ବିଶ୍ୱାସ ଯେ ସେଗୁଡ଼ିକ ପ୍ରଣିଧାନଯୋଗ୍ୟ । ■

(୧୯୯୩, ନଭେମ୍ବର ୨୩ ତାରିଖରେ ଭୁବନେଶ୍ୱର ସୂଚନା ଭବନାଠାରେ ପ୍ରଦତ୍ତ ସ୍ମାରକୀ ବକ୍ତୃତା) ଏଇଟି ଲେଖକଙ୍କ "ଭାରତୀୟ ବୁଦ୍ଧିଜୀବୀର ସଙ୍କଟ ଓ ଅନ୍ୟାନ୍ୟ ପ୍ରବନ୍ଧ" ବହିରୁ ସଂଗୃହୀତ ।

# ଓଡ଼ିଶାର ଲୌହ ବିଜ୍ଞାନ :
# କୋଣାର୍କର ଲୌହକଡ଼ି

ପ୍ରଫେସର ଓଁକାରନାଥ ମହାନ୍ତି

ଭାରତବର୍ଷ ଅତୀତରେ ଯେ କେବଳ ଧର୍ମଶାସ୍ତ୍ର, ତର୍କଶାସ୍ତ୍ର, ସାହିତ୍ୟ ଓ ବ୍ୟାକରଣ, ରାଜନୀତି ବିଜ୍ଞାନ ତଥା ଦର୍ଶନଶାସ୍ତ୍ର ପରି କଳା ସମ୍ବନ୍ଧୀୟ ବିଦ୍ୟା ଆଦିରେ ଉତ୍କର୍ଷ ଲାଭ କରିଥିଲା ତାହା ନୁହେଁ, ଏ ଦେଶ ସ୍ଥାପତ୍ୟ, ମନ୍ଦିର ନିର୍ମାଣ କୌଶଳ, ଗଣିତ, କୃଷିବିଦ୍ୟା, ଜ୍ୟୋତିର୍ବିଦ୍ୟା, ମୃଣ୍ମୟପାତ୍ର ଗଠନ ପ୍ରଣାଳୀ, ଭେଷଜବିଜ୍ଞାନ ଓ ଶଲ୍ୟଚିକିତ୍ସା ଇତ୍ୟାଦି ବିଜ୍ଞାନ ଏବଂ ପ୍ରଯୁକ୍ତି ବିଦ୍ୟା ସମ୍ବନ୍ଧୀୟ ଶାସ୍ତ୍ରାଦିରେ ମଧ୍ୟ ଉଚ୍ଚ ପାରଦର୍ଶିତା ଲାଭ କରି ନିଜ ପାଇଁ ଏକ ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିପାରିଥିଲା । ଏ ସବୁର ନିଦର୍ଶନ ଭାରତବର୍ଷର ଅନେକ ସ୍ଥାନରେ ଦେଖିବାକୁ ମିଳିଥାଏ । ଉଦାହରଣ ସ୍ୱରୂପ ସିନ୍ଧୁ ଉପତ୍ୟକାରେ ପ୍ରତ୍ନତତ୍ତ୍ୱବିତ୍‌ମାନେ ଅନେକ ତଥ୍ୟ ଉଦ୍‌ଘାଟନ କରିପାରିଛନ୍ତି । ସେ ସମୟରେ ଥିବା ସହର ଯଥା ମେହେରଗଡ଼ ଖ୍ରୀ.ପୂ:- ୭୦୦୦-୩୩୦୦ମାନଙ୍କର ମାଟି ଇଟାର ଘର, ଶସ୍ୟାଗାର, ବିଭିନ୍ନ ପ୍ରକାର ଆୟୁଧ, ଧାତୁନିର୍ମିତ ସାମଗ୍ରୀ ଶୋଧିତ ଚମତ୍କାର ବସ୍ତୁ, ଇତ୍ୟାଦି ମାଟିତଳୁ ଉଦ୍ଧାର କରାଯାଇଛି । କୃଷିକ୍ଷେତ୍ରରେ ଖ୍ରୀ.ପୂ. ପଞ୍ଚମ ସହସ୍ରାବ୍ଦରୁ ଖ୍ରୀ.ପୂ ଚତୁର୍ଥ ସହସ୍ରାବ୍ଦ ମଧ୍ୟରେ କପାଚାଷର ପ୍ରଚଳନ ଭାରତବର୍ଷରେ ଆରମ୍ଭ ହୋଇଥିବାର ଜଣାପଡେ । ସେହିଭଳି ଆଖୁଚାଷର ମଧ୍ୟ ବହୁଳ ପ୍ରଚଳନ ଥିବାର ଜଣାଯାଇଥାଏ । ଆଶ୍ଚର୍ଯ୍ୟର କଥା, ସିନ୍ଧୁ ଉପତ୍ୟକାର ଅଧିବାସୀଙ୍କ ମଧ୍ୟରେ ମାନକୀକରଣ ବିଶେଷ କରି, ମାପ ଓ ଓଜନ ସଂପର୍କୀୟ ମାନକୀକରଣ ପ୍ରଚଳିତ ହୋଇସାରିଥିଲା ।

ସେହିପରି ଗଣିତ ବିଦ୍ୟାକ୍ଷେତ୍ରରେ ଭାରତୀୟମାନଙ୍କର ସବୁଠାରୁ ବଡ଼ ଅବଦାନ ହେଲା, "ଶୂନ" (୦)ର ସ୍ଥାନ ଏବଂ ବ୍ୟବହାର; ଦଶମିକ ପ୍ରଣାଳୀ ପ୍ରଚଳନ ଏବଂ ବିଯୁକ୍ତ ସଂଖ୍ୟା ବିଷୟରେ ଜ୍ଞାନ । ଏହି ପ୍ରତ୍ୟେକ ତଥ୍ୟ ମାନବ ସମାଜର ଅଗ୍ରଗତି ବୃଦ୍ଧି କରିବାରେ ସାହାଯ୍ୟ କରିଛି ।

ଜ୍ୟୋତିର୍ବିଜ୍ଞାନରେ ମଧ୍ୟ ଭାରତୀୟମାନେ ଅତୀତ କାଳରେ ସେମାନଙ୍କ ସମୟରେ ସବୁଠାରୁ ଆଗ ଧାଡ଼ିରେ ଥିଲେ (ଖ୍ରୀ: ଅ: ୪୦୦-୧୨୦୦) । ସେମାନଙ୍କ ମଧ୍ୟରେ ଆର୍ଯ୍ୟଭଟ୍ଟ,

ବ୍ରହ୍ମଗୁପ୍ତ ଏବଂ ଭାସ୍କର୨ ଅଗ୍ରଗଣ୍ୟ । ଆମ ଓଡ଼ିଶାରେ ଜ୍ୟୋତିର୍ବିଦ ପଠାଣି ସାମନ୍ତ ଚନ୍ଦ୍ରଶେଖରଙ୍କର ୨୫୦୦ ସଂସ୍କୃତ ଶ୍ଳୋକବିଶିଷ୍ଟ "ସିଦ୍ଧାନ୍ତ ଦର୍ପଣ' ଏବେ ମଧ୍ୟ ଏକ ବିଶିଷ୍ଟ ପୁସ୍ତକ ଭାବରେ ପରିଗଣିତ ବର୍ତ୍ତମାନ ଯୁଗରେ ବ୍ୟବହୃତ କୌଣସି ଦୂରବୀକ୍ଷଣ ଯନ୍ତ୍ର ବ୍ୟବହାର ନ କରି ସେ ଯେପରି ଭାବରେ ଗ୍ରହ, ନକ୍ଷତ୍ରମାନଙ୍କର ଗତିବିଧି ଲକ୍ଷ୍ୟ କରି ଗଣନା କରିପାରିଥିଲେ ଏବଂ ବିଶେଷ କରି ୧୮୭୪ ମସିହାର ଡିସେମ୍ବର ୯ ତାରିଖରେ "ଶୁକ୍ର" ଗ୍ରହର ସଞ୍ଚାରର ନିର୍ଭୁଲ ପ୍ରାକ୍-ଗଣନା କରିଥିଲେ; ତାହା ଜ୍ୟୋତିର୍ଗଣିତରେ ଥିବା ତାଙ୍କର ଉଚ୍ଚକୋଟୀର ଦକ୍ଷତାର ପରିଚୟ ଦେଇଥାଏ । ଏସବୁ ଓଡ଼ିଶାବାସୀଙ୍କ ପାଇଁ ଗର୍ବର କାରଣ ହୋଇ ରହିଥିବ ।

ଭାରତବର୍ଷର ବିଭିନ୍ନ ଧାତୁ ବିଶେଷ କରି ତମ୍ବା, ଦସ୍ତା, ପିତଳ, କଂସାର ବହୁଳ ବ୍ୟବହାର ଅନେକ ପ୍ରାଚୀନ ପରଂପରାର ଅନ୍ତର୍ଗତ । ଲୌହ ଏବଂ ଇସ୍ପାତ, ଯାହା ଆଧୁନିକ ଯୁଗରେ ଅଗ୍ରଗତିର ଏକ ମାପକାଠି ଭାବରେ ଜଣା, ତାହାର ବ୍ୟବହାର ମଧ୍ୟ ଭାରତବର୍ଷରେ ବହୁ ପୁରୁଣା । ବେଦ ଓ ପୁରାଣମାନଙ୍କରୁ ବିଭିନ୍ନ କିସମର ଲୁହାର ନାମକରଣ ଦେଖିବାକୁ ମିଳିଥାଏ । ଏଥିରୁ ସହଜରେ ଲୌହ ବ୍ୟବହାରର ଉତ୍କର୍ଷ ଓ ପ୍ରାଚୀନତା ସଂପର୍କରେ ଜାଣିହୁଏ । ବିଭିନ୍ନ ଆୟୁଧ, ସ୍ତମ୍ଭ ଏବଂ ମନ୍ଦିରମାନଙ୍କରେ ଥିବା କଡ଼ି ଓ ଖିଲାଣ ଲୁହାରେ ନିର୍ମାଣ କରାଯାଉଥିଲା । ଏହି ତାଲିକାରେ ସବୁଠାରୁ ପ୍ରସିଦ୍ଧି ଲାଭ କରିଥିଲା "ଡାମାସ୍କସ୍ ତରବାରି" । ଏହାର ନିର୍ମାଣ ଶୈଳୀ ପାଶ୍ଚାତ୍ୟ ଦେଶର ବୈଜ୍ଞାନିକମାନଙ୍କ ପାଇଁ ଏକ ପ୍ରକାର "ଆଶ୍ଚର୍ଯ୍ୟ" ଥିଲା । " ଉଟ୍ସ" (ଇସ୍ପାତ)ରୁ ତିଆରି ଏହି ତରବାରିରେ ଅଧିକ ଅଙ୍ଗାରକ (କାର୍ବନ୍) ଥିବା ସତ୍ତ୍ୱେ ଏହା କିପରି ଭାବରେ ଭଙ୍ଗୁରତାକୁ ପ୍ରତିରୋଧ କରିପାରୁଥିଲା -ତାହା ହିଁ ଏହାର ବିଶେଷତ୍ୱ ଥିଲା । ତା'ଛଡ଼ା ତରବାରି ଉପରେ ଅଙ୍କିତ, ତରଙ୍ଗାୟିତ ରେଖାଚିତ୍ର ମଧ୍ୟ ପାଶ୍ଚାତ୍ୟ ବିଜ୍ଞାନୀମାନଙ୍କ ପାଇଁ ରହସ୍ୟମୟ ଥିଲା । ଦୀର୍ଘ ଆଠଶହ ବର୍ଷର ଗବେଷଣା ପରେ ଏବେ ମାତ୍ର ଦଶବର୍ଷ ତଳେ ଏହି ବିଷୟରେ ମୋଟାମୋଟି ତଥ୍ୟ ଉଦ୍‌ଘାଟିତ ହୋଇପାରିଛି । ଏହି "ବିସ୍ମୟକର" ଇସ୍ପାତ୍ " ଉଟ୍ସ" ଏବଂ ଏଥିରୁ ତିଆରି "ଡାମାସ୍କସ" ତରବାରୀ ଭାରତୀୟ ପ୍ରଯୁକ୍ତି ବିଦ୍ୟାର ପରାକାଷ୍ଠାର ଏକ ଉଚ୍ଚକୋଟୀର ନିଦର୍ଶନ ଭାବରେ ସ୍ୱୀକୃତି ପାଇପାରିଛି । ସେଇଭଳି ଦିଲ୍ଲୀର କୁତବ୍‌ମିନାର ପରିସର ମଧ୍ୟରେ ଥିବା ଗୁପ୍ତଯୁଗର (୪୦୦ ଖ୍ରୀ:ଅ:) 'ଅଶୋକ ସ୍ତମ୍ଭ' ଲୁହାରୁ ତିଆରି ହୋଇଥିଲେ ମଧ୍ୟ ଗତ ୧୬୦୦ ବର୍ଷ ମଧ୍ୟରେ କିଭଳି ଭାବରେ କଳଙ୍କି ଲାଗିବା ପ୍ରତିରୋଧ କରିପାରିଛି, ତାହା ବିଶ୍ୱର ବୈଜ୍ଞାନିକମାନଙ୍କ ପାଖରେ ଅନେକ ଦିନ ପର୍ଯ୍ୟନ୍ତ ରହସ୍ୟାବୃତ ହୋଇ ରହିବା ପରେ ମାତ୍ର ଦଶ, ପନ୍ଦର ବର୍ଷ ତଳେ ସେ ବିଷୟରେ ତଥ୍ୟ ଜଣାପଡ଼ିଛି ।

ଲୁହା ଏବଂ ଇସ୍ପାତ୍ ବ୍ୟବହାରର ଏହି ଉଚ୍ଚକୋଟୀର ଉଦାହରଣ କ୍ରମରେ କୋଣାର୍କ ମନ୍ଦିର ପରିସର ମଧ୍ୟରେ ପଡ଼ିଥିବା ଲୁହାକଡ଼ି ମଧ୍ୟ ଆଉ ଏକ ଉନ୍ନତମାନର ଜ୍ଞାନର ନିଦର୍ଶନ ବୋଲି ଗଣା ଯାଇଥାଏ । କିନ୍ତୁ ଦୁଃଖର କଥା, କୋଣାର୍କ ଲୌହ କଡ଼ି ଗଠନ ପ୍ରଣାଳୀ ସଂପର୍କରେ ସେଭଳି ଉଚ୍ଚମାନର ଗବେଷଣା ହୋଇପାରିନାହିଁ । ତେଣୁ ସେ ସଂପର୍କରେ ଏପର୍ଯ୍ୟନ୍ତ ଯେଉଁ ତଥ୍ୟମାନ ରହିଛି, ତାହା ବିଶେଷ ଭାବରେ 'ମତାମତ' ପର୍ଯ୍ୟାୟଭୁକ୍ତ ବୋଲି କୁହାଯାଇପାରିବ । ଓଡ଼ିଶା ତଥା ଭାରତବର୍ଷର ମନ୍ଦିରମାନଙ୍କ ମଧ୍ୟରେ ଅତ୍ୟନ୍ତ ଉଚ୍ଚସ୍ଥାନ ପାଇଥିବା କୋଣାର୍କ ମନ୍ଦିର ସଂପର୍କରେ ମଧ୍ୟ ଏହି ଲୌହ କଡ଼ି ଆଲୋକପାତ କରିପାରନ୍ତା । ଏହିସବୁ ବିଶାଳ ଲୌହକଡ଼ିର ପ୍ରସ୍ତୁତିକୁ ଅନୁଧ୍ୟାନ କରିବା ପାଇଁ ତାତ୍କାଳିକ ଲୌହ ଏବଂ ଇସ୍ପାତ୍ ତିଆରି ପଦ୍ଧତି ସଂପର୍କରେ ସମ୍ୟକ୍ ଜ୍ଞାନ ସାହାଯ୍ୟ କରିବ ।

**ପ୍ରାଚୀନ ଭାରତରେ ଲୌହ ଉତ୍ପାଦନ ପ୍ରକ୍ରିୟା** - ପୃଥିବୀ ପୃଷ୍ଠରେ ଥିବା ପ୍ରାକୃତିକ ପଦାର୍ଥଗୁଡ଼ିକ ମଧ୍ୟରେ ଲୌହର ପରିମାଣ ପ୍ରାୟ ପାଞ୍ଚ ଶତାଂଶ; କିନ୍ତୁ ଏହା ଏକ ମୌଳିକ ପଦାର୍ଥ ଭାବରେ ନଥାଏ । ବିଶେଷ ଭାବରେ, ଅମ୍ଳଜାନ ସହିତ ଯୁକ୍ତ ହୋଇ ବିଭିନ୍ନ ପ୍ରକାରର ଲୌହ-ଅକ୍ସାଇଡ୍ ଭାବରେ ରହିଥାଏ । ପୁଣି ଲୌହ-ଅକ୍ସାଇଡ୍ ଅନ୍ୟ ଯୌଗିକ ବାଲୁକା ପଦାର୍ଥ, (ଯଥା ସିଲିକନ୍-ଅକ୍ସାଇଡ୍, ଆଲୁମିନିୟମ-ଅକ୍ସାଇଡ୍ ଇତ୍ୟାଦି) ଫସ୍‌ଫରସ୍, ଜଳକଣା ସହିତ ମିଶି ଖଣିଜ ପଦାର୍ଥ ଭାବରେ ଉପଲବ୍ଧ ହୁଏ। ଲୌହ ଖଣିରୁ ଉତ୍ତୋଳନ କରାଯାଇଥିବା ଲୌହ-ବାହକ ଖଣିଜ (ହେମାଟାଇଟ୍, ମାଗ୍ନେଟାଇଟ୍ ଇତ୍ୟାଦି)ରୁ ଶୁଦ୍ଧ ଲୁହା ଉଦ୍ଧାର କରିବାକୁ ହେଲେ ପ୍ରଥମେ ଏଥିରେ ମିଶି ଥିବା ବାଲୁକା ଇତ୍ୟାଦିକୁ ନିଷ୍କାସନ କରିବାକୁ ପଡ଼ିଥାଏ ।

ଶେଷରେ ଏକ ଭାଟି ମଧ୍ୟରେ ଶୋଧିତ ଖଣିଜ ପଦାର୍ଥ ସହିତ ଅଙ୍ଗାରକ (କାର୍ବନ) ମିଶ୍ରଣ କରି ଉତ୍ତାପ ଦିଆଯାଇଥାଏ । ଉତ୍ତାପ ୯୦୦° ସେଲ୍‌ସିଅସ୍ ଊର୍ଦ୍ଧ୍ୱକୁ ଉଠିବା ପରେ ଲୌହ ସହିତ ସଂଯୁକ୍ତ ଅମ୍ଳଜାନ ସେଥିରୁ ବାହାରିଯାଇ ଅଙ୍ଗାରକ ସହିତ ରାସାୟନିକ ପ୍ରକ୍ରିୟାରେ ଏକାଠି ହୁଏ । ଫଳରେ ଯୌଗିକ ଲୌହ-ଅକ୍ସାଇଡ୍ ଶୁଦ୍ଧ ଲୁହାରେ ପରିଣତ ହୁଏ; କିନ୍ତୁ ଉତ୍ତାପର ମାତ୍ରା ବିଶୁଦ୍ଧ ଲୌହର ତରଳାଙ୍କ (୧୫୩୬° ସେଲ୍‌ସିଅସ୍) ପର୍ଯ୍ୟନ୍ତ ନ ବଢିଲେ ଏହା ତରଳ ଅବସ୍ଥାକୁ ଆସି ନଥାଏ । ପ୍ରାଚୀନ ଭାରତରେ ଯେଉଁ ଲୌହ ଉତ୍ପାଦକ ଭାଟି ବ୍ୟବହୃତ ହେଉଥିଲା, ତାହା ସାଧାରଣ କାଦୁଅ-ମାଟିକୁ ଶୁଷ୍କ କରାଯାଇ ତିଆରି ହେଉଥିଲା । ଏହି ପଦାର୍ଥର ଉତ୍ତାପ ସହନ ଶକ୍ତି ୧୨୫୦-୧୩୦୦ ସେଲ୍‌ସିଅସ୍ ପର୍ଯ୍ୟନ୍ତ ସୀମିତ ଥିଲା । ଫଳତଃ ଆମ ଦେଶରେ ତରଳ ଲୁହାର ପ୍ରଚଳନ ଆନୁମାନିକ ୧୮୦୦ ଖ୍ରୀ.ପୂ. ପର୍ଯ୍ୟନ୍ତ ହୋଇନଥିଲା ବୋଲି ଅନେକ ବିଶେଷଜ୍ଞଙ୍କ ମତ । ଚୀନ୍ ଦେଶରେ ପ୍ରଥମେ

ଲୁହାକୁ ତରଳେଇବାର ପଦ୍ଧତି ବୋଧହୁଏ ଆରମ୍ଭ ହୋଇଥିଲା । ତା'ହେଲେ ଆମ ଦେଶରେ ଲୌହଭିତ୍ତିକ ବ୍ୟବହୃତ ବିଭିନ୍ନ ଆୟୁଧ, ଯନ୍ତ୍ରାଂଶ, କଡ଼ି ଇତ୍ୟାଦି କି ଉପାୟରେ ପ୍ରସ୍ତୁତ ହୋଇପାରୁଥିଲା ?

ଏଠାରେ ମନେ ରଖିବାକୁ ହେବ ଯେ ଶୁଦ୍ଧ ଲୁହାର ତରଳାଙ୍କର ମାତ୍ରା ଅତ୍ୟନ୍ତ ଅଧିକ ଥିଲାବେଳେ ଏଥିରେ ଅଙ୍ଗାରକ (କାର୍ବନ୍) ମିଶ୍ରଣ କଲେ, ତାହାର ତରଳାଙ୍କ ହ୍ରାସ ପାଇଥାଏ । (ଉଦାହରଣ ସ୍ୱରୂପ- ଲୁହା ସହିତ ୪.୨୬ ଶତାଂଶ ଅଙ୍ଗାରକ ଦ୍ରବୀଭୂତ ହେଲେ ତାହା ମାତ୍ର ୧୧୫୩° ସେଲ୍‌ସିଅସ୍‌ରେ ତରଳାବସ୍ଥାକୁ ଆସିଥାଏ ।) ଫଳରେ ଅଧିକ (୪ ଶତାଂଶ ବା ତହିଁରୁ ଅଧିକ) ଅଙ୍ଗାରକ ଥିବା ଲୁହା (ଯାହା ଢଳେଇ ଲୁହା ବା କଷ୍ଟ ଆଇରନ୍ ଭାବରେ ଜଣା) କମ୍ ଉତ୍ତାପ ସୃଷ୍ଟି କ୍ଷମତାସଂପନ୍ନ 'କ୍ୟୁ ପୋଲା'ରେ ମଧ୍ୟ ତରଳା ଯାଇପାରେ ଏବେ ପୁଣି ପ୍ରାଚୀନ ଯୁଗକୁ ଫେରିବା ।

ପୂର୍ବରୁ କୁହାଗଲା ଯେ ଲୁହା ସହିତ ଅଙ୍ଗାରକ ଦ୍ରବୀଭୂତ ହେଲେ, ତାହାର ତରଳାଙ୍କ ନିମ୍ନମୁଖୀ ହୋଇଥାଏ । ଅନ୍ୟ ପକ୍ଷରେ ଲୌହ ବାହକ ଖଣିଜ ପଦାର୍ଥ (ଯଥା ହେମାଟାଇଟ୍, ମାଗ୍ନେଟାଇଟ୍ ଇତ୍ୟାଦି) ରେ ଥିବା ବର୍ଜ୍ୟବସ୍ତୁଗୁଡ଼ିକୁ (ଯଥା ସିଲିକନ୍, ଅକସାଇଡ୍, ଆଲୁମିନିୟମ୍, ଫସ୍‌ଫରସ ଇତ୍ୟାଦି) ଲୌହ ଅକ୍‌ସାଇଡ୍ ସହିତ ମିଶି ଯେଉଁ ମଳ ବସ୍ତୁରେ ପରିବର୍ତ୍ତିତ ହୁଏ, ତାହାର ତରଳାଙ୍କ ୧୨୦୦-୧୨୫୦ ଡିଗ୍ରୀ ସେଲ୍‌ସିଅସ୍ ମଧ୍ୟରେ ସୀମିତ ରହେ । ଫଳ ସ୍ୱରୂପ ଯଦି ଲୌହବାହକ ଖଣିଜ ପଦାର୍ଥକୁ ଅଙ୍ଗାରକ-ବାହକ (ଯଥା କାଠ କୋଇଲା ) ସହିତ ଏକତ୍ର ମିଶ୍ରଣ କରି ଏକ ଭାଟିରେ ରଖି ଉତ୍ତାପ ଦିଆଯାଏ, ତେବେ ୧୨୦୦-୧୨୫୦ ଡିଗ୍ରୀ ସେଲ୍‌ସିଅସ୍‌ରେ ପହଞ୍ଚିଲାବେଳକୁ କଠିନ ଅବସ୍ଥାରେ ଥିବା ଲୌହ ଅମ୍ଳଜାନଠାରୁ ଅଲଗା ହୋଇ ସାରିଥାଏ । ପୁଣି ବର୍ଜ୍ୟବସ୍ତୁଗୁଡ଼ିକ ମଳ ଭାବରେ ତରଳ ଅବସ୍ଥାରେ ଥାଏ; ଅର୍ଥାତ୍ ଭାଟି ଭିତରେ ଥିବା ପାତ୍ରରେ ଏବେ ଏକ କଠିନ ବସ୍ତୁ (ଅମ୍ଳଜାନ ବିହୀନ ଲୌହ) ଏବଂ ତରଳ ପଦାର୍ଥ (ମଳ ବା ସ୍ଲାଗ୍) ମିଶ୍ରିତ ଅବସ୍ଥାରେ ଥାଆନ୍ତି । ଏହାକୁ ଯଦି ଏକ ହାତୁଡ଼ି ସାହାଯ୍ୟରେ ବାରମ୍ବାର ପ୍ରହାର କରାଯାଏ, ତେବେ ସେହି ତରଳ ମଳ ପଦାର୍ଥଗୁଡ଼ିକ ବାହାରିଯାଆନ୍ତି ଏବଂ ଶୁଦ୍ଧ ଲୌହ କଠିନ ଅବସ୍ଥାରେ ରହିଯାଏ । ଯେହେତୁ ଏହି ଲୁହା ହାତୁଡ଼ି ପ୍ରହାର ଦ୍ୱାରା ତିଆରି ହୋଇଥାଏ, ଏହାକୁ ପିଟା-ଲୁହା (ରଟ୍ ଆଇରନ୍)ର ଆଖ୍ୟା ଦିଆଯାଇଥାଏ । ଯେଉଁ ପୂର୍ବ ବର୍ଣ୍ଣିତ ପଦ୍ଧତିରେ ଏହି ଲୁହା ତିଆରି ହୋଇଥାଏ, ସେହି ପ୍ରକ୍ରିୟାକୁ 'ବ୍ଲୁମେରୀ' ଲୁହା ତିଆରି ପ୍ରକ୍ରିୟା ବୋଲି କୁହାଯାଇଥାଏ ।

ଏହି ପ୍ରକ୍ରିୟା ଆମେରିକା, ୟୁରୋପ ମହାଦେଶରେ ମଧ୍ୟ ପରବର୍ତ୍ତୀ ସମୟରେ ବ୍ୟବହାର କରାଯାଇଥିଲା । ଏଠାରେ ସୂଚାଇ ଦିଆଯାଇ ପାରେ ଯେ, ଏବର ଲୁହା ତରଳା

ଉଚ୍ଚ ଭାଟି (ବ୍ଲାଷ୍ଟ ଫର୍ଣ୍ଣେସ୍) ପ୍ରାୟ ସବୁ ଦେଶରେ ଦେଖିବାକୁ ମିଳେ ଏବଂ ପ୍ରାଚୀନ ସମୟର 'ବ୍ଲୁମେରୀ' ପ୍ରକ୍ରିୟାର ବ୍ୟବସାୟିକ ଭିତ୍ତିରେ ଏବେ ଆଉ ପ୍ରଚଳନ ନାହିଁ । ଲୁହା ତରଳା ଉଚ୍ଚ ଭାଟି ଏକ ନିରବଚ୍ଛିନ୍ନ ପ୍ରକ୍ରିୟା ହୋଇଥିବା ବେଳେ 'ବ୍ଲୁମେରୀ' ପଦ୍ଧତି ବିଚ୍ଛିନ୍ନ ପଦ୍ଧତି ଅଟେ । ଅର୍ଥାତ୍ ଏକ ପାତ୍ରରେ ଖଣିଜ ଲୁହା, କାଠ କୋଇଲା ଇତ୍ୟାଦି ସାମାନ୍ୟ ଗୁଣ୍ଡ କରାଯାଇ ରଖାଯାଇଥାଏ ଏବଂ ପାତ୍ରଟି ମୁଦ ଦିଆଯାଇ ଉଚ୍ଚତାପ ଭାଟି ଭିତରେ ରଖି ଦିଆଯାଏ । ନିର୍ଦ୍ଦିଷ୍ଟ ତାପମାନରେ ଏବଂ ନିର୍ଦ୍ଦିଷ୍ଟ ସମୟ ପରେ ପୁଣି ଏହି ପାତ୍ରଟିକୁ ବାହାରକୁ ଅଣାଯାଇଥାଏ । ସେଥିରୁ କଠିନ ଅବସ୍ଥାରେ ଥିବା ରନ୍ଧ୍ରଯୁକ୍ତ ଶୁଦ୍ଧ ଲୁହା (ଏବର ସ୍ପଞ୍ଜ ଆଇରନ୍ ସଙ୍ଗେ ତୁଳନୀୟ) ହାତୁଡ଼ିରେ ପିଟା ହେବା ପରେ ବାହାରେ । କିନ୍ତୁ ଉଚ୍ଚ ଭାଟି (ବ୍ଲାଷ୍ଟ ଫର୍ଣ୍ଣେସ୍)ରୁ ଅଧିକ ଅଙ୍ଗାରକଯୁକ୍ତ ତରଳ ଲୁହା ନିରବଚ୍ଛିନ୍ନ ଭାବେ ଉତ୍ପାଦନ କରାଯାଏ, ଯାହାର ବେଶି ଭାଗ ଆଧୁନିକ ଇସ୍ପାତ୍ ତିଆରି କାର୍ଯ୍ୟରେ ବ୍ୟବହୃତ ହୋଇଥାଏ ।

***କୋଣାର୍କ ମନ୍ଦିର୍ ଏବଂ ଏଠାରେ*** ବ୍ୟବହୃତ ଲୌହ କଡ଼ି- ପୁରୀଠାରୁ ପ୍ରାୟ ୩୨.କିମି. ଉତ୍ତର -ପୂର୍ବ ଦିଗରେ ତ୍ରୟୋଦଶ ଶତାବ୍ଦୀରେ ନିର୍ମିତ ପୃଥିବୀପ୍ରସିଦ୍ଧ କୋଣାର୍କ ସୂର୍ଯ୍ୟ ମନ୍ଦିର ଅବସ୍ଥିତ । ଏବେ ଏଠାରେ ଆମେ ଯାହା ଦେଖୁ ଏବଂ ଯାହା 'କଳା ପାଗୋଡ଼ା' ଭାବରେ ଖ୍ୟାତ, ତାହା କେବଳ ମୁଖଶାଳା (ଜଗମୋହନ) ମାତ୍ର । ପ୍ରଧାନ ମନ୍ଦିର ପ୍ରାୟ ସପ୍ତଦଶ ଶତାବ୍ଦୀରେ ଭାଙ୍ଗି ଯାଇଥିଲା ବୋଲି ଐତିହାସିକମାନେ ମତ ଦିଅନ୍ତି । ପ୍ରଧାନ ମନ୍ଦିରର ଉଚ୍ଚତା ୨୧୫ ଫୁଟ (୬୫ମି.) ବା ତତୋଧିକ ଥିଲା ବୋଲି ବିଭିନ୍ନ ଆକଳନରୁ ତଥା ଭ୍ରମଣ କାହାଣୀଗୁଡ଼ାକରୁ ଜଣାପଡ଼େ । ଗଙ୍ଗବଂଶର (ଲାଙ୍ଗୁଡ଼ା) ନରସିଂହ ଦେବଙ୍କର ଅମଳରେ (ଖ୍ରୀ: ଅ: ୧୨୩୮-୧୨୬୪) ଏହି ମନ୍ଦିର ସୂର୍ଯ୍ୟ ଉପାସନା ନିମନ୍ତେ (ଶାମ୍ବ ଉପାଖ୍ୟାନ ଭିତ୍ତିରେ) ତିଆରି ହୋଇଥିଲା । ମୁଖ୍ୟ ମନ୍ଦିର ସପ୍ତଦଶ ଶତାବ୍ଦୀରେ ଭାଙ୍ଗିଯିବା ପରେ ଏବେ ଯେଉଁ ମୁଖଶାଳା ଅଛି, ତାହାର ଉଚ୍ଚତା ପ୍ରାୟ ୧୨୮ ଫୁଟ (୩୯ମି.) । ଏଥିରେ କଳସ ଇତ୍ୟାଦି ମିଶିଲେ ଉଚ୍ଚତା ଆହୁରି ୨୫ ଫୁଟ ଯୋଡ଼ି ହୋଇଯିବ । କୋଣାର୍କ ମନ୍ଦିର ତିଆରି ପରେ ତାହାର ସୂକ୍ଷ୍ମ କାରୁକାର୍ଯ୍ୟ, ନିର୍ମାଣ ଶୈଳୀ, ବିଶାଳତା ଏବଂ (ଅର୍କ) କ୍ଷେତ୍ର ମାହାତ୍ମ୍ୟ ଲାଗି ପ୍ରସିଦ୍ଧି ଲାଭ କରିଥିଲା । ଏହି ମନ୍ଦିର ଉତ୍କଳୀୟ କାରିଗରମାନଙ୍କ ଶିଳ୍ପକଳା, ଭାସ୍କର୍ଯ୍ୟ ତଥା ସ୍ଥାପତ୍ୟର ପରାକାଷ୍ଠାର ଚରମ ନିଦର୍ଶନ ବୋଲି କୁହାଯାଇଥାଏ ।

ପ୍ରଧାନ ମନ୍ଦିର ରହିଥିବା ସମୟରେ ଯେଉଁମାନେ ତାହାକୁ ଦେଖିଥିଲେ, ସେମାନେ ଅନେକ ଏହାକୁ ଭାରତବର୍ଷର ସବୁଠାରୁ ବଡ଼ ଏବଂ ସୁନ୍ଦର ମନ୍ଦିର ବୋଲି ଅଭିହିତ କରିଥିଲେ । ସେମାନଙ୍କ ମଧ୍ୟରେ ଆକବରଙ୍କର ସଭା (କୋର୍ଟ)ରେ ଥିବା ପ୍ରସିଦ୍ଧ ଐତିହାସିକ ଏବଂ ଜୀବନୀ ଲେଖକ 'ଅବୁଲ୍ ଇଜଲ୍ (୧୫୫୧ -୧୬୦୬) ତାଙ୍କର ଆଇନ୍ -ଇ ଆକବରୀ

ପୁସ୍ତକରେ କୋଣାର୍କ ମନ୍ଦିର ସଂପର୍କରେ ନିଜର ଅନୁପମ ଅନୁଭୂତି ବର୍ଣ୍ଣନା କରିଛନ୍ତି । ଓଡ଼ିଶା ତଥା ଭାରତବର୍ଷର ଦୁର୍ଭାଗ୍ୟ ଯେ ଏହି ମୁଖ୍ୟ ମନ୍ଦିର ଆଉ ନାହିଁ । ହେଲେ ଯେଉଁ ଜଗମୋହନ, ନାଟ୍ୟ ମନ୍ଦିର ଇତ୍ୟାଦି ଏବେ ବିଦ୍ୟମାନ, ତାହା ମଧ୍ୟ ବିଶ୍ୱରେ ଆଲୋଡ଼ନ ସୃଷ୍ଟି କରିଛି । ଜଗମୋହନ ମନ୍ଦିରର ସୁରକ୍ଷା ନିମନ୍ତେ ବ୍ରିଟିଶ୍ ସରକାର ମନ୍ଦିରର ସବୁ ଦ୍ୱାରକୁ ବନ୍ଦ କରିଦେବାକୁ ଏବଂ ମନ୍ଦିରର ମଧ୍ୟଭାଗରେ ବାଲି ପୂର୍ଣ୍ଣ କରିବାର ନିଷ୍ପତ୍ତି ନେଲେ । ୧୯୦୧ ମସିହାରେ ଏହି କାର୍ଯ୍ୟ ଜଣେ ଇଞ୍ଜିନିୟର ଶ୍ରୀ କିଶନ୍ ସ୍ୱରୂପଙ୍କ ତତ୍ତ୍ୱାବଧାନରେ ଆରମ୍ଭ କରାଯାଇ ୧୯୦୪ ମସିହାରେ ସଂପୂର୍ଣ୍ଣ କରାଯାଇଥିଲା । ଏହାର କଳାତ୍ମକ ସୃଜନଶୀଳତାକୁ ଦୃଷ୍ଟିରେ ରଖି ଜାତିସଂଘର ଶିକ୍ଷା, ବିଜ୍ଞାନ ଏବଂ ସଂସ୍କୃତି ସଂସ୍ଥା (ଇଉନେସ୍କୋ) ୧୯୮୪ ମସିହାରେ କୋଣାର୍କ ମନ୍ଦିକୁ ଏକ ବିଶ୍ୱ ଐତିହ୍ୟ ସ୍ଥାନ'ର ମର୍ଯ୍ୟାଦା ଦେଇଛନ୍ତି ।

ଏବେ ମନ୍ଦିର ବେଢାର ଭାରତୀୟ ପ୍ରତ୍ନତତ୍ତ୍ୱ ବିଭାଗ ଦ୍ୱାରା ସଂଗୃହୀତ ହୋଇ ଅନେକଗୁଡ଼ିଏ କଡ଼ି ଉତ୍ତର-ପୂର୍ବ ଦିଗରେ ଏକ ସିମେଣ୍ଟ ଚଟାଣ ଉପରେ ଏକତ୍ର ରଖାଯାଇଛନ୍ତି । ଏଥିରେ ପ୍ରାୟ ୨୯ ଖଣ୍ଡ କଡ଼ି ଥିଲା ବୋଲି କିଛି ପୁସ୍ତକରେ (ଯଥା ପଣ୍ଡିତ କୃପାସିନ୍ଧୁ ମିଶ୍ରଙ୍କର 'କୋଣାର୍କ' (୧୯୧୯) ଉଲ୍ଲେଖ ଅଛି । ବର୍ତ୍ତମାନ ଗଚ୍ଛିତ ଥିବା କଢିମାନଙ୍କୁ ଦେଖିଲେ (ଚିତ୍ର ନଂ.୧) ମନେହେବ, ଏଗୁଡ଼ାକ ଭିତରୁ କିଛି ଖଣ୍ଡିତ ଅବସ୍ଥାରେ ହୁଏତ ଅଛି । ସ୍ଥାନାନ୍ତର ସମୟରେ ଏପରି ଘଟିଥିବାର ସମ୍ଭାବନା ।

'କୋଣାର୍କ' ପୁସ୍ତକ ଅନୁସାରେ ସବୁଠାରୁ ବଡ଼ କଡ଼ିଟିର ଲମ୍ବ ୩୫ ଫୁଟ ୯ଇଞ୍ଚ, ଉଚ୍ଚତା ଓ ବେଧ ଯଥାକ୍ରମେ ୧୦ ଇଞ୍ଚ ଓ ୮ଇଞ୍ଚ । ଏହା ଛଡ଼ା ଲକ୍ଷ୍ୟ କରିବା କଥା ଯେ ଅଧିକାଂଶ କଡ଼ିର ଉଚ୍ଚତା ଏବଂ ବେଧ ମଧ୍ୟ ସ୍ଥଳରେ ପ୍ରାନ୍ତ ଅପେକ୍ଷା ଏକରୁ ଦୁଇ ଇଞ୍ଚ ଅଧିକ । କୋଣାର୍କ ମନ୍ଦିର ଓ ଓଡ଼ିଶାର ଅନେକ ମନ୍ଦିର ଯଥା ଭୁବନେଶ୍ୱରର ଲିଙ୍ଗରାଜ, ମୁକ୍ତେଶ୍ୱର, ବ୍ରହ୍ମେଶ୍ୱର; ପୁରୀର ଶ୍ରୀଜଗନ୍ନାଥ ଏବଂ ଗୁଣ୍ଡିଚା ମନ୍ଦିରର ଅନେକ ସ୍ଥାନରେ ଲୁହାକଡ଼ିର ବ୍ୟବହାର ଦେଖିବାକୁ ମିଳେ । କୋଣାର୍କ ମନ୍ଦିରର ବିଭିନ୍ନ ସ୍ଥାନରେ ଲୁହାକଡ଼ି ବ୍ୟବହୃତ ହୋଇଥିଲା ବୋଲି ଜଣାଯାଏ । ସୂଚନାଯୋଗ୍ୟ ଯେ କୋଣାର୍କ ମନ୍ଦିରର ମୁଖଶାଳା ବା ଜଗମୋହନ (ଏବେ ଯାହା ଦେଖୁ) ଏକ 'ପୀଢ' ମନ୍ଦିର ଏବଂ ପ୍ରଧାନ ମନ୍ଦିର (ଯୋହା ଭୁଶୁଡ଼ି ପଡ଼ିବା ପରେ ଏବେ ପ୍ରାୟ ନିଶ୍ଚିହ୍ନ, ପଶ୍ଚିମପଟ ଏହି ମନ୍ଦିରର ଭଗ୍ନାବଶେଷ ଦେଖିବାକୁ ମିଳେ) ଏକ 'ରେଖ' ମନ୍ଦିର ଥିଲା । ଏହି 'ପୀଢ' ଏବଂ 'ରେଖ' ମନ୍ଦିରର ଛାତ ମୁଦ କରିବା ପାଇଁ ଲୁହା କଡ଼ି ପଡ଼ି ତାହା ଉପରେ ବେକି ଚକଡ଼ା ପଡ଼ିଥିଲା । ଉପଲବ୍ଧ ବିବରଣୀରୁ ଆହୁରି ମଧ୍ୟ ଜଣାଯାଏ ଯେ ଜଗମୋହନ ମୁଖ୍ୟ ଛାତ ତଳେ ଆଉ ଏକ 'ଶୂନ୍ୟ' ଛାତ ମଧ୍ୟ ଥିଲା । ଚାରୋଟି ବଡ଼ ବଡ଼ ଖମ୍ବ ଉପରେ ଲୁହା କଡ଼ି ରଖି ତା' ଉପରେ ଏହି ଛାତ ଗଠନ କରାଯାଇଥିଲା ।

କିଛି ବିବରଣୀରୁ ଜଣାପଡ଼େ ଯେ ପୂର୍ବପଟକୁ ମୁଖଶାଳା କାଛଠାରୁ ପ୍ରାୟ ୧୬ଫୁଟ ବାହାରକୁ ଦ୍ୱାର, ଖମ୍ବ ପ୍ରଭୃତି ବାହାରିଥିଲା । ଦୁଇଟି ଖମ୍ବ ଉପରେ ୨୧ ଫୁଟ ଲମ୍ବ, ୧ଫୁଟ ଉଚ୍ଚ, ୮ ଇଞ୍ଚ ଓସାରର ଗୋଟିଏ ଲୁହା କଡ଼ି ଥିଲା । ଏହି ଲୁହା କଡ଼ି ଉପରେ ପ୍ରସିଦ୍ଧ ନବଗ୍ରହ ପାଟ ସ୍ଥାପିତ ହୋଇଥିଲା । କଳା ମୁଗୁନି ପଥରର ଏହି ନଗଗ୍ରହ ପାଟର ଆୟତନ ଥିଲା ୧୯ ଫୁଟ ୧୦ ଇଞ୍ଚ ଲମ୍ବ, ୩ଫୁଟ ୯ଇଞ୍ଚ ଉଚ୍ଚ ଏବଂ ୪ ଫୁଟ ୯ଇଞ୍ଚ ମୋଟ । ଏହାର ଓଜନ ପ୍ରାୟ ୨୬ ଟନ୍ ବୋଲି ବିଶାରଦମାନେ ଆକଳନ କରିଛନ୍ତି । ଫର୍ଗୁସନ୍‌ଙ୍କର ଫଟୋଚିତ୍ରରୁ ଜଣାପଡ଼େ ଯେ ଏହି ନବଗ୍ରହ ପାଟ ଏବଂ ମୁଖଶାଳାର ପ୍ରଥମ ପୀଢ ମଧ୍ୟରେ ଆହୁରି ଅନେକ କାରୁକାର୍ଯ୍ୟ ହୋଇଥିଲା । ପରବର୍ତ୍ତୀ ସମୟ (ଯଥା ଶ୍ରୀ ରାଜେନ୍ଦ୍ର ଲାଲ ମିତ୍ରଙ୍କ ବହି -୧୮୮୦) ବେଳକୁ ଏ ସମସ୍ତ ଭାଙ୍ଗିଯାଇଥିଲା ଏବଂ ନବଗ୍ରହ ପାଟଟି ତଳକୁ ଖସିପଡ଼ିଥିଲା । ମୁଖଶାଳା ଦ୍ୱାର ମୁହଁରେ ଏହି ନବଗ୍ରହ ପାଟ ଅନେକ ବର୍ଷ ପଡିରହିବା ପରେ କଲିକତା ସଂଗ୍ରହାଳୟକୁ ଏହାକୁ ସ୍ଥାନାନ୍ତର କରିବାକୁ ସରକାର ବିଚାର କଲେ । ଏଥି ଲାଗି ଅର୍ଥ ମଧ୍ୟ ମଞ୍ଜୁର ହେଲା । ମାତ୍ର ଅଳ୍ପ ଦୂର ନେବା ପରେ ଏ ଯୋଜନା ବନ୍ଦ ହେଲା । ତା' ପରେ ୧୮୯୩ ମସିହାରେ ସଂପୂର୍ଣ୍ଣ ପାଟକୁ ତିନି ଭାଗରେ ଚିରି ଦିଆଯାଇ କେବଳ ମୂର୍ତ୍ତି ଥିବା ସାନ ପଥରଖଣ୍ଡକ ନେବାକୁ ଚେଷ୍ଟା କରାଗଲା; କିନ୍ତୁ ମାତ୍ର ଦୁଇ ଫର୍ଲଙ୍ଗ ନେବା ପରେ ଆଉ ନେଇପାରିଲେ ନାହିଁ । ଫଳରେ ସେଇଠି ନବଗ୍ରହ ମୂର୍ତ୍ତି ରହିଗଲେ । ପରେ ଏଠାରେ ଏକ ଘର ତିଆରି କରି ପଣ୍ଡାମାନେ ତାଙ୍କୁ ପୂଜା କରିବା ଆରମ୍ଭ କଲେ । ଏଠାରେ ଉପରୋକ୍ତ ବର୍ଣ୍ଣନାର ଉଲ୍ଲେଖ କରିବାର ଉଦ୍ଦେଶ୍ୟ ହେଉଛି ଯେ ଏତେ ବଡ଼ ବିଶାଳ ପଥର, ଯାହାକୁ ଖଣ୍ଡ କରିବା ସତ୍ତ୍ୱେ ସ୍ଥାନାନ୍ତର କରିବା ପ୍ରତାପୀ ବ୍ରିଟିଶ୍ ସରକାରଙ୍କ ପାଇଁ ସମ୍ଭବ ହୋଇପାରିଲା ନାହିଁ, ସେ ପଥର ମନ୍ଦିରରେ ଉପରକୁ ଟେକାଯାଇ ସେଠାରେ ଶୋଭା ପାଉଥିଲେ । ତା'ର ଗୋଟିଏ କାରଣ ହେଲା, ଉଚ୍ଚମାନର ଲୁହା କଡ଼ି (ତିଆରି କୌଶଳ) ବ୍ୟବହାର ସେତେବେଳେ ଜଣା ଥିଲା ।

ଲୁହା କଡ଼ିର ବିଶ୍ଳେଷଣ ଏବଂ ତିଆରି ପଦ୍ଧତି - କୋଣାର୍କ ମନ୍ଦିରର କାରିଗରମାନେ ବିଶାଳତା ଦୃଷ୍ଟିରୁ ଖିଲାଣ (ତୋରଣ ବା ଆର୍କ୍) ବ୍ୟବହାର ନ କରିଥିବାରୁ ସେମାନଙ୍କୁ କଡ଼ିର ବ୍ୟବହାର କରିବାକୁ ପଡ଼ିଥିଲା । ବଡ଼ ଲୁହା କଡ଼ିର ଓଜନ ପ୍ରାୟ ୬.୬ ଟନ୍‌ରୁ ଅଧିକ ବୋଲି ଆୟତନରୁ ହିସାବ କରାଯାଇଛି; ତୁଳନା ପାଇଁ ସୂଚନା ଯୋଗ୍ୟ ଯେ ଦିଲ୍ଲୀର କୁତବ୍ ମିନାର ପରିସରରେ ଥିବା ଲୌହ ଅଶୋକ ସ୍ତମ୍ଭର ଓଜନ ୬ ଟନ୍‌ରୁ ଊଣା । ଏହି ବିଶାଳ ଲୌହ କଡ଼ିରେ ଥିବା ପଦାର୍ଥମାନଙ୍କର ବିଶ୍ଳେଷଣ ତଥା ଏହାର ଉତ୍ପାଦନ ପ୍ରକ୍ରିୟା ଏବଂ ଏହାର ଗୁଣାତ୍ମକ ମାନ ବିଷୟରେ କିଛି ଆଲୋଚନା ଏଠାରେ ପ୍ରାସଙ୍ଗିକ ହେବ ।

ଟାଟା ଷ୍ଟିଲ୍ କମ୍ପାନୀର ଶ୍ରୀ ଏମ୍.କେ. ଘୋଷ ଏହି କଡ଼ିର କିଛି ଅଂଶ ନେଇ ତାହା ପରୀକ୍ଷା କରି ଫଳାଫଳ ୧୯୬୩ ମସିହାରେ ପ୍ରକାଶ କରିଥିଲେ । ସେଥିରୁ ଜଣାପଡ଼େ ଯେ ଅଙ୍ଗାରକର ପରିମାଣ ୦.୨୧ରୁ ୦.୪୫ ଶତାଂଶ; ସିଲିକନ୍ ୦.୦୫ରୁ ୦.୧୧ ଶତାଂଶ; ଗନ୍ଧକ (ସଲ୍‌ଫର) ୦.୦୦୬ରୁ ୦.୦୧୫ ଶତାଂଶ; ମାଙ୍ଗାନିଜ୍ ପ୍ରାୟ ଶୂନ୍ ଏବଂ ଫସ୍‌ଫରସର ପରିମାଣ ୦.୦୧୫ର ୦.୦୧୮ ଶତାଂଶ । ଏହି କାର୍ଯ୍ୟରୁ ଜଣାଗଲା ଯେ କଡ଼ିର ବିଭିନ୍ନ ସ୍ଥାନର ରାସାୟନିକ ବିଶ୍ଳେଷଣରେ ପାର୍ଥକ୍ୟ ଅଛି । ଏହା ଖଣିଜ ପଦାର୍ଥର ବିବିଧତା ମଧ୍ୟ ଦର୍ଶାଉଅଛି । ଦିଲ୍ଲୀର ଅଶୋକ ସ୍ତମ୍ଭରେ ଫସ୍‌ଫରସ୍‌ର ପରିମାଣ ପ୍ରାୟ ୦.୨ ଶତାଂଶ ଥିବା ବେଳେ, କୋଣାର୍କରେ ତାହା ଏକ ଦଶାଂଶ ପ୍ରାୟ । ସେହି କାରଣରୁ ଏଠାରେ କଳଙ୍କିରୋଧକ ଶକ୍ତି ଅପେକ୍ଷାକୃତ କମ୍ । ତା'ଛଡ଼ା ସାମୁଦ୍ରିକ ଜଳବାୟୁର ମଧ୍ୟ ଏହି କଡ଼ି ୮୦୦ ବର୍ଷରେ କିଛିମାତ୍ରାରେ କଳଙ୍କିଯୁକ୍ତ ହୋଇଅଛି । ୧୯୬୮ ମସିହାରେ ଡ: ଜୟନ୍ତ ମୁଖାର୍ଜୀ ଏବଂ ଅନ୍ୟମାନେ ଜାତୀୟ ଧାତୁ ଗବେଷଣାଗାର (ଏନ୍.ଏମ୍.ଏଲ୍.) ଜାମସେଦପୁରରେ କିଛି କଳିଙ୍କିର ବିଶ୍ଳେଷଣ କରାଇଥିଲେ ଏବଂ ସେଥିରେ ବିଭିନ୍ନ ଅକ୍‌ସାଇଡ୍ ଥିବା ଦର୍ଶାଇଥିଲେ । ୧୯୧୨ ମସିହାରେ ମନମୋହନ ଗାଙ୍ଗୁଲି ଲୁହା କଡ଼ିର ଓଜନ ବହନ କରିବାର ଶକ୍ତି ମାପ କରିବା ପାଇଁ ଭୁବନେଶ୍ୱରର ଏକ ମନ୍ଦିରରୁ ଛୋଟ ଅଂଶ ସଂଗ୍ରହ କରିଥିଲେ ଏବଂ ବେଙ୍ଗଲ୍ ଇଞ୍ଜିନିୟରିଂ କଲେଜରେ ତାହା ପରୀକ୍ଷା କରାଇଥିଲେ । ଏଥିରୁ ଏହାର ଶକ୍ତି ପ୍ରାୟ ୨୦ ଟନ୍ ପ୍ରତି ବର୍ଗ ଇଞ୍ଚ (ପ୍ରାୟ ୩୦୦ ମେଗା ପାସ୍କାଲ୍) ବୋଲି ଜଣାଗଲା । କୋଣାର୍କରେ ଥିବା ଲୁହା କଡ଼ି ଏହାଠାରୁ ଉନ୍ନତ ମାନର ବୋଲି ଜଣାଯାଏ । ଏହି ମାପ (ଅର୍ଥାତ୍ ୨୦ ଟନ୍ ପ୍ରତି ବର୍ଗଇଞ୍ଚ ବା ୩୦୦ ମେଗାପାସ୍କାଲ୍) ବର୍ତ୍ତମାନର ସାଧାରଣ ଲୁହାର ଶକ୍ତିଠାରୁ ସାମାନ୍ୟ ଅଧିକ ।

କୋଣାର୍କରେ ବ୍ୟବହୃତ ଲୁହା ଉତ୍ପାଦନର ପ୍ରଣାଳୀ ସେହି ସମୟରେ ଭାରତବର୍ଷର ଅନ୍ୟତ୍ର ତିଆରି ହେଉଥିବା ପଦ୍ଧତିଠାରୁ ବିଶେଷ ଅଲଗା ନୁହେଁ ବୋଲି ଜଣାପଡ଼େ । ଅର୍ଥାତ୍ ପୂର୍ବରୁ ଯେଉଳି କୁହାଯାଇଛି, ଲୌହ ବହନକାରୀ ଖଣିଜ ଏବଂ (ଜାଣେଣି କାଠରୁ ପ୍ରସ୍ତୁତ) କାଠକୋଇଲା ଏକାଠି କରି ଏକ ପାତ୍ରରେ ରଖି ତାହାକୁ ଭାଟି ମଧ୍ୟରେ ରଖି ଉତ୍ତାପ ଦେଲେ କ୍ରମଶଃ ବିଶୁଦ୍ଧ ଲୁହା ରାସାୟନିକ ପ୍ରକ୍ରିୟା ଫଳରେ ତିଆରି ହୁଏ ଏବଂ ତାହା କଠିନ ଅବସ୍ଥାରେ ଥାଏ । ଅନ୍ୟ ପକ୍ଷରେ ଖଣିଜ ପଦାର୍ଥରେ ଥିବା ମଳବସ୍ତୁ ତରଳ ଅବସ୍ଥାକୁ ଚାଲି ଆସିଥାଏ । ଏହିଭଳି ଭାବରେ କଠିନ ଲୁହା ଏବଂ ତରଳ ମଳବସ୍ତୁର ଏକ ମିଶ୍ରଣ ସୃଷ୍ଟି ହୋଇଥାଏ । ତାହାକୁ ବାହାରକୁ ଆଣି ହାତୁଡ଼ି ସାହାଯ୍ୟରେ ପ୍ରହାର କଲେ, ତରଳ ବସ୍ତୁଗୁଡ଼ିକ ବାହାରକୁ ନିଷ୍କାସିତ ହୋଇଯାଏ ଏବଂ ଶୁଦ୍ଧ କଠିନ ଲୁହା ପୃଥକ୍ ହୋଇ ରହେ । ଏହାକୁ ହାତୁଡ଼ି -ପ୍ରହାର ଦ୍ୱାରା ବିଭିନ୍ନ ଆକୃତି ଦିଆଯାଇଥାଏ । ସୂଚନାଯୋଗ୍ୟ ଯେ ମଳପଦାର୍ଥ

ସଂପୂର୍ଣ୍ଣ ଭାବରେ ନିଷ୍କାସିତ ହୋଇପାରେ ନାହିଁ । କିଛି ଅଂଶରେ ବଳକା ମଳ ଲୁହା ସହିତ ମିଶି ରହିଯାଇଥାଏ । ତେଣୁ ଅଣୁବୀକ୍ଷଣ ଯନ୍ତ୍ର ସାହାଯ୍ୟରେ ଲୁହାକୁ ନିରୀକ୍ଷଣ କଲେ ଏଥିରେ ରହିଯାଇଥିବା ଏହି (ମଳଅଂଶ ଦେଖିହୁଏ ଆଜିକାଲିକାର ପଦ୍ଧତିରେ ଲୁହା ତରଳ ହେଲା ପରେ ଏହାକୁ ପୃଥକ୍ କରାଯାଉଥିବାରୁ ଏଥିରେ ମଳ ପଦାର୍ଥ ମୋଟେ ନଥାଏ ।) କୋଣାର୍କ ଲୁହାରେ ମଧ୍ୟ ସାମାନ୍ୟ ମଳଅଂଶ ଦେଖିବାକୁ ମିଳେ। ଏଥିରୁ ଜଣାପଡ଼େ ଯେ ଲୁହା ଉତ୍ପାଦନ ଓଡ଼ିଶାରେ ମଧ୍ୟ ବ୍ଲୁମେରୀ ପଦ୍ଧତିରେ ହେଉଥିଲା ।

ଦିଲ୍ଲୀର ଅଶୋକ ସ୍ତମ୍ଭର (ଏବଂ ଅନୁରୂପ ସ୍ତମ୍ଭମାନଙ୍କର) ଗଠନ ପ୍ରଣାଳୀ ପରୀକ୍ଷା କରାଗଲା ପରେ ଜଣାପଡ଼ିଛି ଯେ ଏହା ସ୍ତର ସ୍ତର ହୋଇ ଗଢାହୋଇଛି । ଅର୍ଥାତ୍ ପୂର୍ବ ପଂକ୍ତିରେ ଯାହା ବର୍ଣ୍ଣିତ ହେଲା, ସେହି ପଦ୍ଧତିର ପୁନରାବୃତ୍ତି କରାଯାଇ ସ୍ତମ୍ଭଟିର ଉଚ୍ଚତା ସଂପୂର୍ଣ୍ଣ କରାଯାଇଛି; ମାତ୍ର କୋଣାର୍କର ଲୌହ କଡ଼ି ତିଆରି କରିବା ଲାଗି ସେକାଳର ଧାତୁବିତ୍‌ମାନେ ଏକ ଭିନ୍ନ ପଦ୍ଧତିର ଆଶ୍ରୟ ନେଇଥିଲେ । ତାହାହିଁ ଏହାର ବିଶେଷତ୍ୱ । ଏହାକୁ ପ୍ରାଞ୍ଜଳ ଭାବରେ ଐତିହାସିକ ପଣ୍ଡିତ କୃପାସିନ୍ଧୁ ତାଙ୍କର 'କୋଣାର୍କ' ପୁସ୍ତକରେ ନିମ୍ନମତେ ବର୍ଣ୍ଣନା କରିଛନ୍ତି, ଯାହା ଆର୍ଣ୍ଣଟଙ୍କର ପୁରୀ ଜିଲ୍ଲା ଗେଜେଟ୍‌ରୁ ଉଦ୍ଧୃତ :

"ପ୍ରଥମରେ ଏକ ବା ଦେଢ଼ଫୁଟ ଲମ୍ବା ଓ ଦୁଇ ତିନି ଇଞ୍ଚ ଚଉଡ଼ାରେ ଲୁହା ଗଢମାନ ତିଆରି କରାଯାଉଥିଲା । ତତ୍ପରେ କେତେଗୁଡ଼ିଏ ଗଢ ପରସ୍ପର ସହିତ ଏକତ୍ର କରାଇ କଡ଼ି ଯେତେ ଲମ୍ବ ଓ ମୋଟ୍ ହେବା ଦରକାର, ସେ ପର୍ଯ୍ୟନ୍ତ ଖଞ୍ଜାଇ ରଖାହେଉଥିଲା । ସେ ସମସ୍ତ ଉପରେ ତରଳ ଲୁହା ଢଳା ହେଉଥିଲା । ତାହାଦ୍ୱାରା ଗଢ଼ଗୁଡ଼ିକ ମଧ୍ୟରେ ଖଞ୍ଜାଇ ଫାଙ୍କମାନ ପୂର୍ଣ୍ଣ ହୋଇଯାଉଥିଲା ଏବଂ ଗଢ -ଗୁଡ଼ିକ ପରସ୍ପର ସହିତ ଜଡ଼ିତ ହୋଇଯିବାରୁ କଡି ସୁଦୃଢ ହେଉଥିଲା" ।

ବର୍ତ୍ତମାନ ଉପରୋକ୍ତ ବର୍ଣ୍ଣନାର ଆଲୋଚନା ଆବଶ୍ୟକ । ଯେଉଁ ସାନ ସାନ ଗଢମାନଙ୍କ କଥା କୁହାଗଲା, ତାହା ସହଜରେ ପ୍ରାନ୍ତ ଭାଗରୁ କଡ଼ିମାନଙ୍କୁ ଅନୁଧ୍ୟାନ କଲେ ବାରିହୁଏ କିନ୍ତୁ ପଣ୍ଡିତ କୃପାସିନ୍ଧୁଙ୍କର ଉପରୋକ୍ତ କଥିତ ତରଳ ଲୁହା କଥାଟିକୁ ସମର୍ଥନ କରିହେବ ନାହିଁ । ପ୍ରଥମତଃ ଆଗରୁ ପ୍ରମାଣିତ ହୋଇଛି ଯେ ତ୍ରୟୋଦଶ ଶତାବ୍ଦୀ ସମୟରେ 'ତରଳ' ଲୁହା ଉତ୍ପାଦନ କ୍ଷମତା ଭାରତ ବର୍ଷରେ ତଥା ଓଡ଼ିଶାରେ ନଥିଲା । ଦ୍ୱିତୀୟତଃ କେବଳ ତରଳ ଲୁହା ବ୍ୟବହୃତ ହୋଇଥିଲେ ଖଞ୍ଜା ହୋଇଥିବା ଗଢମାନଙ୍କ ମଧ୍ୟରେ ଏତେ ଫାଙ୍କ ନଥା'ନ୍ତା, ଯାହା ସହଜରେ ଦେଖିହେଉଛି । ତୃତୀୟତଃ ତରଳ ଲୁହା ଢାଳି ଗଢମାନଙ୍କୁ ଯୋଡ଼ିଥିଲେ କଢିର ଉପରସ୍ତରକୁ ହାତୁଡ଼ିରେ ପ୍ରହାର କରିବା ଅତ୍ୟନ୍ତ ଜରୁରୀ ହୋଇ ନଥା'ନ୍ତା; କିନ୍ତୁ କଡ଼ିମାନଙ୍କ ପୃଷ୍ଠସ୍ତରକୁ ନିରୀକ୍ଷଣ କଲେ ହାତୁଡ଼ିପିଟା ଦାଗ ସ୍ପଷ୍ଟ

ଦେଖିବାକୁ ମିଳେ । ତେଣୁ ସଂକ୍ଷେପରେ କହିଲେ ଗୁଡ଼ିଏ ପିଟାଲୁହା (ରଟ୍ ଆଇରନ୍) ଗଜମାନଙ୍କୁ ଏକାଠି କରି ତା' ଉପରେ ତତଲା ବ୍ଲୁମେରୀ ଲୁହା (ଯେଉଁଥିରେ ଶୁଦ୍ଧ ଲୁହା କଠିନ ବସ୍ତୁ ଭାବରେ ଓ ତରଳ ମଳ ବସ୍ତୁ ଥାଏ) ଢାଳି, ହାତୁଡ଼ି ପିଟା ହୋଇ ଏହି ବଡ଼ ବଡ଼ ଲୁହାକଡ଼ି ତିଆରି ହୋଇଥିଲା । ମେସିନ୍ ନ ଥିବାରୁ ହାତରେ ପିଟା ହେଉଥିବା ହାତୁଡ଼ିରେ ଅତ୍ୟନ୍ତ ଉଚ୍ଚମାନର ଚାପ ପ୍ରୟୋଗର କ୍ଷମତା ମିଳୁନଥିଲା । ତେଣୁ କଡ଼ିର ମଧ୍ୟଭାଗରେ ଠାଏ ଠାଏ (ଗଜମାନଙ୍କ ମଧ୍ୟରେ) ଅଯୋଡ଼ା ଅଂଶ ଦେଖିବାକୁ ମିଳେ ।

ବଡ଼କଥା ହେଲା ଯେଉଁ ପଦ୍ଧତିରେ କୋଣାର୍କର କଡ଼ି ତିଆରି ହେଉଥିଲା, ସେଥିରେ ଗୋଟିଏ କଡ଼ି ମଧ୍ୟରେ ଅନେକଗୁଡ଼ିଏ ଛୋଟ ଛୋଟ ଗଜର ବ୍ୟବହାର କରାଯାଇଥିଲା । ଏପରି ଗଠନକୁ ସଂମିଶ୍ରିତ ଗଠନ (କମ୍ପୋଜିଟ୍ ଷ୍ଟ୍ରକ୍‌ଚର) ବୋଲି କୁହାଯାଇଥାଏ । ଏହାର ବିଶେଷତ୍ୱ ହେଉଛି ଯେ କାର୍ଯ୍ୟରେ ବ୍ୟବହୃତ ହେବା ସମୟରେ ଏପରି ସଂମିଶ୍ରିତ ଗଠନର କଡ଼ିରେ ଯଦି କୌଣସି ସ୍ଥାନରେ ଅଧିକ ଚାପ ଯୋଗୁଁ ଫାଟ ସୃଷ୍ଟି ହୁଏ, ଏହି ଫାଟ କିଛି ଦୂର ଅଗ୍ରସର ହୋଇ ଆଉ ଏକ ପାର୍ଶ୍ୱବର୍ତ୍ତୀ ଗଜ ପାଖରେ ପହଞ୍ଚିଗଲେ ଅଟକି ଯାଇଥାଏ । ଅର୍ଥାତ୍ ଏଭଳି କଡ଼ି ଯେ କେବଳ ବିଶାଳ ଓଜନ ବହନ କରିବାରେ ସକ୍ଷମ ଥିଲା ତା' ନୁହେଁ, ଏହାର ବିଶେଷ ଗଠନ ପାଇଁ ଏହା ମଧ୍ୟରେ ଫାଟ ଅଗ୍ରସରତା ରୋଧକ ଶକ୍ତି ମଧ୍ୟ ନିହିତ ଥିଲା । ଏହା ଛଡ଼ା ଏହି କଡ଼ିଗୁଡ଼ିକ ବ୍ୟବହାର କ୍ଷେତ୍ର ଅନୁସାରେ ଅନେକ ସମୟରେ ମଧ୍ୟଭାଗରେ ପ୍ରାନ୍ତ ଅପେକ୍ଷା ଏକ, ଦୁଇ ଇଞ୍ଚ ଅଧିକ ହେବା ଫଳରେ ଅପରିବର୍ତ୍ତିତ ଗଠନବିଶିଷ୍ଟ କଡ଼ିଠାରୁ ଅଧିକ ଓଜନ ବହନ କ୍ଷମତାର ମଧ୍ୟ ଅଧିକାରୀ ଥିଲେ ।

### *ମନ୍ଦିର୍ ଲାଗି ଲୁହା ଉତ୍ପାଦନ ଏବଂ ଲୁହା କଡ଼ି ତିଆରି୍ କରିବା ସ୍ଥାନ*

ଓଡ଼ିଶାର ଅନେକ ସ୍ଥାନରେ ଅତୀତ କାଳରେ ଲୁହା ଉତ୍ପାଦିତ ହେଉଥିଲା ବୋଲି ବିଭିନ୍ନ ବିବରଣୀରୁ ଜଣାପଡ଼େ । ଯଥା ତାଳଚେର ଅଞ୍ଚଳ (ଯେଉଁଠାରେ ପଥର କୋଇଲାର ଖଣି ଏବେ କାର୍ଯ୍ୟକାରୀ); ଢେଙ୍କାନାଳର ରଙ୍ଗସ୍ଥଳୀ ଇତ୍ୟାଦି । ମୋଟ୍ ଉପରେ, ଜଙ୍ଗଲ ପାଖାପାଖି ଅଞ୍ଚଳରୁ କାଠ କୋଇଲା ପାଇଁ ଏବଂ ଲୁହା ଖଣିର ପାଖାପାଖି ଲୁହା ତିଆରି ହେବାର ସମ୍ଭାବନା ଉପରେ ଜଣେ ଗୁରୁତ୍ୱ ଦେବା ସ୍ୱାଭାବିକ । ମାତ୍ର ପଣ୍ଡିତ କୃପାସିନ୍ଧୁଙ୍କ ମତରେ କୋଣାର୍କ ମନ୍ଦିର ନିକଟବର୍ତ୍ତୀ ଅଞ୍ଚଳରେ ହିଁ ଲୁହା ଉତ୍ପାଦିତ ହୋଇ ସେହିଠାରେ ହିଁ କଡ଼ି ତିଆରି ହେଉଥିଲା । ଜଣେ ଯଦି ନକ୍‌ସା ଅନୁସାରେ ଗଢିଉଠୁଥିବା କୋଣାର୍କ ମନ୍ଦିର କଥା ଏବଂ ସେଥିରେ ପ୍ରୟୋଜନ ପଡୁଥିବା ଲୁହା କଢି କଥା ଚିନ୍ତା କରିବ, ତେବେ ସ୍ୱତଃ ଏହି ସିଦ୍ଧାନ୍ତରେ ହିଁ ଉପନୀତ ହେବ ଯେ ପଣ୍ଡିତ କୃପାସିନ୍ଧୁଙ୍କ ବିଶ୍ଳେଷଣ ହିଁ ଅଧିକ ବିଶ୍ୱାସଯୋଗ୍ୟ । କାରଣ କାରିଗର ଯୋଜନା ଅନୁସାରେ ହିଁ କଡ଼ିର ଆକାର ଗଠନ

କରାଯାଉଥିଲା । ଦ୍ୱିତୀୟରେ ବିଶାଳ କଡ଼ିସବୁ ଦୂରକୁ ଆଣିବା ଅପେକ୍ଷା ଲୌହ -ଖଣିଜକୁ ଅନ୍ୟ ଜାଗାରୁ ସଂଗ୍ରହ କରି, ନିକଟବର୍ତ୍ତୀ ଜଙ୍ଗଲରୁ କାଠ କୋଇଲା (ଜଙ୍ଗଲ କାଠ ପୋଡ଼ାଯାଇ ସେଥିରୁ ପ୍ରସ୍ତୁତ) ତିଆରି କରି ଲୁହା ଉତ୍ପାଦନ କରିବା ଏବଂ କଡ଼ି ତିଆରି କରିବା ଅପେକ୍ଷାକୃତ ସହଜ ଏବଂ ବୁଦ୍ଧିମାନର କାର୍ଯ୍ୟ; କିନ୍ତୁ କୋଣାର୍କ ନିକଟବର୍ତ୍ତୀ ଲୁହା ଉତ୍ପାଦନ କାର୍ଯ୍ୟ ଏ ପର୍ଯ୍ୟନ୍ତ ଆବିଷ୍କୃତ ହୋଇନାହିଁ । ଏ ସଂପର୍କରେ କିମ୍ବଦନ୍ତୀ ଅଛି ଏବଂ ସେଠାରେ ବସବାସ କରୁଥିବା ଲୋକମାନଙ୍କର ମଧ୍ୟରେ ଏହି ବିଶ୍ୱାସ ମଧ୍ୟ ପ୍ରଚଳିତ ।

## ଉପସଂହାର

କୋଣାର୍କ ମନ୍ଦିରରେ ବିଭିନ୍ନ ସ୍ଥାନରେ ଯେଉଁ ଲୁହାକଡ଼ି ବ୍ୟବହାର କରାଯାଇଥିଲା, ତାହା ଏକ ବିଶେଷ ଉପାୟ ଅବଲମ୍ବନ କରି ତିଆରି ହେଉଥିଲା । ପ୍ରଥମେ ଅନେକଗୁଡ଼ିଏ ଲୁହାଗଜକୁ ପାଖାପାଖି ରଖି ତା' ଉପରେ କଠିନ ଶୁଦ୍ଧ ଲୁହା ଏବଂ ତରଳ ମଳର ଏକ ମିଶ୍ରଣକୁ ଢାଳି, ତାକୁ ହାତୁଡ଼ି ସାହାଯ୍ୟରେ ପ୍ରହାର କରି ସମସ୍ତ ଗଜକୁ ଏବଂ ନୂତନ ଢଳା କରି ହୋଇଥିବା ମିଶ୍ରଣକୁ ସଂଯୋଜିତ କରି କଡ଼ି ତିଆରି ହେଉଥିଲା, ଯାହା ଏକ ସଂମିଶ୍ରିତ ଗଠନର (କେମ୍ପୋଜିଟ୍ ଷ୍ଟ୍ରକଚର) ପରିଚୟ ଦିଏ । ଏହି ଲୁହା କଡ଼ିଗୁଡ଼ିକର ଓଜନ ସହନକାରୀ କ୍ଷମତା ଏବଂ ଫାଟ ଅଗ୍ରସରତା ପ୍ରତିରୋଧକ ଶକ୍ତି - ଉଭୟ ଉଚ୍ଚମାନର ଥିଲା । ତା' ଛଡ଼ା ଏହି ଲୁହା କଡ଼ିମାନଙ୍କର କଳଙ୍କି ପ୍ରତିରୋଧକ ଶକ୍ତି ଦିଲ୍ଲୀ ଅଶୋକସ୍ତମ୍ଭର ସମକକ୍ଷ ନହେଲେ ମଧ୍ୟ, ସମୁଦ୍ରକୂଳର କ୍ଲୋରିନ୍‌ମିଶା ଜଳୀୟବାଷ୍ପ ଦ୍ୱାରା ହେଉଥିବା ତୀବ୍ର କଳଙ୍କିକରଣ ପ୍ରକ୍ରିୟାକୁ ଗୁଡ଼ିକ ପାଖାପାଖି ୮୦୦ ବର୍ଷ ଧରି ପ୍ରତିରୋଧ କରିଆସୁଛି ଏବଂ ଆମର ଗୌରବମୟ ଅତୀତକୁ ପୁଣି ଥରେ ମନେପକାଇ ଦେଉଛି ।

ଏସବୁ ସତ୍ତ୍ୱେ ଏବେ ମଧ୍ୟ ଅନେକ ଦିଗ ରହିଛି, ଯାହାକୁ ପୁଣି ଥରେ ବୈଜ୍ଞାନିକ ଉପାୟରେ ପରୀକ୍ଷା-ନିରୀକ୍ଷା କରିବାର ସମୟ ଆସିଛି । ଏସବୁ ଭିତରେ ଅଛି ଲୁହା କଡିଗୁଡ଼ିକର ପ୍ରକୃତ ରାସାୟନିକ ବିଶ୍ଳେଷଣ କୋଣାର୍କ ପାଖରେ ଥିବା ଲୁହା ତିଆରି ସ୍ଥାନମାନଙ୍କୁ ତନଖି ଦେଖିବା ଏବଂ ତାହା ଜରିଆରେ ସେତେବେଳର ଲୁହା ତିଆରି ପ୍ରକ୍ରିୟାକୁ ବିଶ୍ଳେଷଣ କରିବା ଇତ୍ୟାଦି । ଏସବୁ କଲେ ମନ୍ଦିରର ଲୁହା କଡ଼ି ସଂପର୍କୀୟ ସବୁ ରହସ୍ୟ ଉଦ୍‌ଘାଟିତ ହୋଇପାରିବ ଓ ତା' ସହିତ ଏ ଜାତିର ଗର୍ବ ଏବଂ ଗୌରବ କୋଣାର୍କର ସମୁଚିତ ମୂଲ୍ୟାୟନ ହୋଇ ପାରିବ । ■

(ଓଡ଼ିଆ ଅଧ୍ୟୟନ ଓ ଗବେଷଣା ସଂସ୍ଥା, ଭୁବନେଶ୍ୱର ପ୍ରସ୍ତୁତ 'ଜାତୀୟ ଭାଷା ସମ୍ମିଳନୀ ୨୦୧୪' ମୁଖପତ୍ରରୁ ସଂଗୃହୀତ) ।

# ଏକ ସ୍ମୃତିର ଆଲେଖ୍ୟ- ଅଧ୍ୟାପକ ଭୋଳାନାଥ

ଶ୍ରୀ ପଠାଣି ପଟ୍ଟନାୟକ

ଜୀବନର ସଂଧ୍ୟାକାଳରେ ବିସ୍ମୃତି ମନକୁ ଆବୋରି ବସିଲାଣି । କିନ୍ତୁ ଅଧ୍ୟାପକ ଜୀବନର ସେହି ପ୍ରଥମ କାଳରେ ଯେଉଁମାନଙ୍କର ସ୍ନେହ, ଶ୍ରଦ୍ଧା ଓ ଆନୁଗତ୍ୟ ଲାଭ କରି ଧନ୍ୟ ହୋଇଥିଲି, ଆଜି ପରିଣତ ବୟସରେ ସେମାନଙ୍କୁ ସ୍ମରଣ କରି ଅଶେଷ ଶାନ୍ତି ଓ ସୁଖ ଅନୁଭବ କରିଥାଏ । ସେହି ସ୍ମରଣୀୟ ଛାତ୍ରଗୋଷ୍ଠୀ ମଧ୍ୟରେ ଶ୍ରଦ୍ଧେୟ ଭୋଳାନାଥ ! ତୁମେ ଅଧିକ ମନେ ପଡ଼ । ତୁମର ସହଯୋଗୀ ସହପାଠୀ ବନ୍ଧୁମାନେ ଆନ୍ତରିକତାର ସହିତ ମୋପରି ତରୁଣ ଅଧ୍ୟାପକ ପ୍ରତି ଯେଉଁ ଆନୁଗତ୍ୟ ପ୍ରଦର୍ଶନ କରିଥିଲ, ଅଧ୍ୟାପକ ଜୀବନରେ ତାହା ଥିଲା ଏକ ସ୍ମରଣୀୟ ବିଭୂତି । ସତୀଚଉରାର ନିର୍ଜନ ପରିବେଶରେ ତୁମର ସହଯୋଗୀ ବନ୍ଧୁଗୋଷ୍ଠୀର ସହଯୋଗିତା ଓ ସାହିତ୍ୟ ଆଲୋଚନାରେ ଅଂଶଗ୍ରହଣ ଅତ୍ୟନ୍ତ ସ୍ମରଣୀୟ ହୋଇରହିଛି । "ମେହେର ଆଲୋକ", "ସାହିତ୍ୟରେ ରହସ୍ୟବାଦ" ଓ "ଓଡ଼ିଆ ଉପନ୍ୟାସ ସାହିତ୍ୟର ପରିଚୟ" ତୁମର ସାଙ୍ଗଠନିକ ସାଧନାର ନିର୍ମଳ ପରିଚୟ ପ୍ରଦାନ କରିଥାଏ ।

ଛାତ୍ର ଜୀବନର ଗୁରୁ, ଶିଷ୍ୟ ସଂପର୍କ ଅଳ୍ପକାଳ ସ୍ଥାୟୀ ହୋଇଥାଏ । ଶେଷ ପରୀକ୍ଷାର ସାର୍ଟିଫିକେଟ୍ ଗ୍ରହଣ କରି ସାରିଲା ପରେ ଛାତ୍ରମାନେ ଅଧ୍ୟାପକ ଜୀବନରୁ ବିସ୍ମୃତ ହୋଇଯାଆନ୍ତି । ଜୀବନର କର୍ମଜଞ୍ଜାଳରେ କିଏ କେଉଁ ଅବସ୍ଥାରେ ରୁହନ୍ତି ତାହାର ହିସାବ କେହି ରଖନ୍ତି ନାହିଁ କିନ୍ତୁ ଆଦରଣୀୟ ଭୋଳାନାଥ ଜୀବନର ଦୀର୍ଘପଥ ଅତିକ୍ରମ କଲାପରେ ସୁଦ୍ଧା ଆମେ କେହି କାହାକୁ ଭୁଲି ପାରିନାହେଁ । ଜୀବନର ଏହି ଅପ୍ରତିହତ ସଂପର୍କ ଆମର ଜୀବନକୁ ଅମୃତମୟ କରିଅଛି ।

ରୋଗ ଯନ୍ତ୍ରଣା ହେଉଛି ବୟସର ଏକ ଆହ୍ୱାନ । ବିସ୍ମୃତିର ଢେଉ ମଧ୍ୟରେ ଅତୀତ ଜୀବନର ଅନେକ ସଖ୍ୟ ସ୍ମୃତି ଓ ସୁଖ ଦୁଃଖର ଅନୁଭୂତି ଧୀରେ ଧୀରେ ମନରୁ ପୋଛି ହୋଇଯାଏ । କିନ୍ତୁ ଶ୍ରଦ୍ଧେୟ ଭୋଳାନାଥ ବାରମ୍ବାର ରୋଗ ଶଯ୍ୟାର ଆଲିଙ୍ଗନ ସତ୍ତ୍ୱେ ମୁଁ ତୁମକୁ ଭୁଲିପାରିନାହିଁ ।

ପ୍ରଭୁ ଶ୍ରୀ ଜଗନ୍ନାଥ ତୁମକୁ ସୁଖୀ କରନ୍ତୁ, ଶାନ୍ତିରେ ରଖନ୍ତୁ ଏବଂ ଅତୁଟ ସ୍ୱାସ୍ଥ୍ୟ ଭୋଗ କରିବା ପାଇଁ ଆଶୀର୍ବାଦ ଦିଅନ୍ତୁ । ଜୟ ଜଗନ୍ନାଥ ॥ ■

# ଶବ୍ଦ ହିଁ ପ୍ରତିଜ୍ଞା

ଡକ୍ଟର ପ୍ରତିଭା ରାୟ୍

ନମସ୍ୟ ଡକ୍ଟର ଭୋଳାନାଥ ରାଉତ ଆଦୌ ଭୋଳା ନୁହଁନ୍ତି । ସ୍ଥିରଚିତ୍ତରେ ଯେଉଁ ନିଷ୍ପତ୍ତି ନିଅନ୍ତି ତାହା ସେ ଭୁଲନ୍ତି ନାହିଁ । ଯେତେ କଷ୍ଟସାଧ୍ୟ ହେଲେ ମଧ୍ୟ କାର୍ଯ୍ୟରେ ପରିଣତ କରନ୍ତି । ସାହିତ୍ୟ ବିଷୟକୁ ନେଇ ଅଧ୍ୟାପନା କରୁକରୁ ସେ ବୁଝି ଯାଇଥିଲେ ଯେ ଜୀବନ ଗଣିତ ନୁହେଁ- ସାହିତ୍ୟ । ତେଣୁ ସାହିତ୍ୟ ତାଙ୍କର ଜୀବିକା ନଥିଲା , ସାହିତ୍ୟ ପାଲଟିଯାଇଥିଲା ତାଙ୍କର ଜୀବନ । କେବଳ ଜୀବିକା ନିର୍ବାହ ପାଇଁ ୧୯୬୩ ମସିହାରେ ଜଗତସିଂହପୁରର ସ୍ୱାମୀ ବିବେକାନନ୍ଦ ମହାବିଦ୍ୟାଳୟରୁ ସାହିତ୍ୟ ବିଷୟରେ ଅଧ୍ୟାପନା ଆରମ୍ଭ କରି ସେ ସନ୍ତୁଷ୍ଟ ନଥିଲେ । ତେଣୁ ସେ କର୍ମବ୍ୟସ୍ତତା ଭିତରେ ମଧ୍ୟ ସାହିତ୍ୟ ସମାଲୋଚନା, ସାହିତ୍ୟ ଓ ସଂସ୍କୃତି ସଂପର୍କରେ ଅଧ୍ୟୟନ, ଗବେଷଣା ଓ ପୁସ୍ତକ ରଚନା ସହ ଗଳ୍ପ, ଏକାଙ୍କିକା, କବିତା , ଉପନ୍ୟାସ ଆଦି ଅନେକ ପୁସ୍ତକର ସଂପାଦନା କରିଛନ୍ତି । କେବଳ ସଂପାଦନାରେ ତାଙ୍କର ସ୍ରଷ୍ଟାମାନସ ସନ୍ତୁଷ୍ଟ ନହୋଇ ସେ ସୃଷ୍ଟି କରିଛନ୍ତି ଅନେକ ଗଳ୍ପ ଓ ଏକାଙ୍କିକା ଗ୍ରନ୍ଥ । ଲେଖିଛନ୍ତି ଜୀବନୀ । ଓଡ଼ିଶାର ବିଶେଷକରି ଜଗତସିଂହପୁର ଅଞ୍ଚଳର ବରପୁତ୍ରମାନଙ୍କର ଜୀବନୀ, ସାହିତ୍ୟ ସମ୍ଭାରର ଆକଳନ ଏବଂ ସ୍ମରଣିକା ଆଦି ସଂପାଦନା କରିଛନ୍ତି । ପାଇଛନ୍ତି ଅନେକ ସମ୍ମାନ ଓ ସମ୍ବର୍ଦ୍ଧନା, ଯାହାର ତାଲିକା ତାଙ୍କର ଶୁଭେଚ୍ଛୁ ଓ ଶ୍ରଦ୍ଧାଭାଜନେଷୁମାନଙ୍କ ପାଖରେ ଅଛି ।

ତାଙ୍କର ସାଙ୍ଗଠନିକ ଦକ୍ଷତା ସଂପର୍କରେ ପ୍ରଶ୍ନ କରିବାର ନାହିଁ । ନିଖିଳ ଉତ୍କଳ ଶିକ୍ଷକ ମହାସଂଘର ପୂର୍ବତନ ସଭାପତି, ନିଖିଳ ଉତ୍କଳ ବେସରକାରୀ ଶିକ୍ଷକ ମହାସଂଘର ପୂର୍ବତନ ଯୁଗ୍ମ ସଂପାଦକ ଓ ସଭାପତି, ନିଖିଳ ଭାରତ ଓଡ଼ିଆ ଅଧ୍ୟାପକ ସମ୍ମେଳନର ପୂର୍ବତନ ସାଧାରଣ ସଂପାଦକ, କାର୍ଯ୍ୟକାରୀ ସଭାପତି ଓ ବର୍ତ୍ତମାନ ମଧ୍ୟ ସଭାପତି ପଦରେ ଅବସ୍ଥାପିତ ଅଛନ୍ତି । ଅଭ୍ୟୁଦୟ ସାହିତ୍ୟ ସମାଜର ପୂର୍ବତନ ସଂପାଦକ, ଜଗତସିଂହପୁର ଅଳକା କଳାମଣ୍ଡପର ପୂର୍ବତନ ସଂପାଦକ, ଉତ୍କଳ ବିଶ୍ୱବିଦ୍ୟାଳୟର ପୂର୍ବତନ ସିନେଟ୍ ସଭ୍ୟ ଇତ୍ୟାଦି ସେ ରହିଛନ୍ତି । ଆମେରିକାର ବାୟୋଗ୍ରାଫିକାଲ୍ ଇନ୍‌ଷ୍ଟିଚ୍ୟୁଟ୍‌ର ସେ ହେଉଛନ୍ତି

ଗବେଷଣା ମଣ୍ଡଳୀର ସମ୍ମାନିତ ସଦସ୍ୟ । କେବଳ ସେତିକିରେ ତାଙ୍କର କାର୍ଯ୍ୟ ସୀମିତ ନୁହେଁ । ସେ ମଧ୍ୟ ଜଣେ ସାହିତ୍ୟସେବୀ ଓ ସମାଜସେବୀ । ଓଡ଼ିଆ ସାହିତ୍ୟର ଜଣେ ପ୍ରତିଷ୍ଠିତ ସାହିତ୍ୟିକ ଓ ଲେଖକ, ଛାତ୍ରଜୀବନରୁ ତାଙ୍କର ଏହି ସ୍ୱପ୍ନ ଦେଖା ଆରମ୍ଭ ହୋଇଥିଲା । ଖ୍ରୀଷ୍ଟ କଲେଜରେ ଛାତ୍ର ଥିବାବେଳେ ଏକାଙ୍କିକା ରଚନା କରି ରାଷ୍ଟ୍ରୀୟ ବେତାର କେନ୍ଦ୍ର ଛୋଟ ଏକାଙ୍କିକା ପ୍ରତିଯୋଗିତାରେ ଦ୍ୱିତୀୟ ସ୍ଥାନ ଅଧିକାର କରିଥିଲେ । ଅନେକ ସାହିତ୍ୟ ଓ ଗବେଷଣା ଅନୁଷ୍ଠାନ ସହ ଜଡ଼ିତ ରହି ସେ କାର୍ଯ୍ୟରତ । ଜଗତସିଂହପୁର ଗବେଷଣା ପରିଷଦର ସେ ହେଉଛନ୍ତି ସଭାପତି । ଏହି ଗବେଷଣା ପରିଷଦ ମାଧ୍ୟମରେ ସେ ସାହିତ୍ୟ ସେବା କରନ୍ତି ଓ କବି ଲେଖକମାନଙ୍କର କୃତିକୁ ଆଲୋଚନା ମାଧ୍ୟମରେ ପ୍ରଚାରିତ କରିବାକୁ ପ୍ରତିଜ୍ଞାବଦ୍ଧ ରହିଛନ୍ତି ।

ଶବ୍ଦରେ ଗଢାହୁଏ ସାହିତ୍ୟ, ଶବ୍ଦରେ ଦୃଶ୍ୟ ହୁଏ ସ୍ୱପ୍ନ, ଶବ୍ଦରେ କାବ୍ୟ ହୁଏ ସଂଗୀତ, ଶବ୍ଦରେ ବୋଧ୍ୟହୁଏ ଜୀବନ, ଦର୍ଶନ, ଚିତ୍ରକଳା । ଶବ୍ଦରେ ଲିପିବଦ୍ଧ ହୁଏ ଇତିହାସ, ପରଂପରା, ସଂସ୍କୃତି । ଶବ୍ଦର ବେଦୀରେ ପ୍ରତିଷ୍ଠିତ ହୁଏ ମାନବସଭ୍ୟତା । ଶବ୍ଦର ଓଁକାର ଧ୍ୱନିରେ ଝଙ୍କୃତ ହୁଏ ବିଶ୍ୱସଂସ୍କୃତି । ଶବ୍ଦରୁ ଜନ୍ମନିଅନ୍ତି ସୂର୍ଯ୍ୟ, ଚନ୍ଦ୍ର, ଗ୍ରହ, ନକ୍ଷତ୍ର ଦେବଦେବୀ ଏବଂ ଅବଶେଷରେ ଈଶ୍ୱର । ଶବ୍ଦରେ ବ୍ରହ୍ମର ପରିକଳ୍ପନା ଭାରତୀୟ ଚିନ୍ତନର ସ୍ୱାତନ୍ତ୍ର୍ୟ । ଶବ୍ଦରେ ହିଁ ଦୃଶ୍ୟହୁଏ ବିଶ୍ୱରୂପ । ଲେଖାହୁଏ ଆସ୍ଥା ଓ ବିଶ୍ୱାସର ଜନ୍ମକୁଣ୍ଡଳୀ । ଶବ୍ଦ ହେଉଛି ସର୍ବଶକ୍ତିମାନ । ଶବ୍ଦ ହେଉଛି ପ୍ରତିଜ୍ଞା । ତେଣୁ ଡକ୍ଟର ଭୋଳାନାଥ ରାଉତ ଯାହାକୁ ଶବ୍ଦରେ ପ୍ରକାଶ କରନ୍ତି ତାହା କାର୍ଯ୍ୟରେ ପରିଣତ କରିବା ପାଇଁ ଜୀବନକୁ ବାଜି ରଖିପାରନ୍ତି ।

ମୋ ପାଇଁ ବ୍ୟକ୍ତିଗତ ହେଲେ ମଧ୍ୟ ତାଙ୍କ ପାଇଁ ସାର୍ବଜନୀନ- ଏମିତି ଏକ ସାହିତ୍ୟ ସେବାର ଏକ ଦୃଷ୍ଟାନ୍ତ ଦେବାର ପ୍ରବଣତାକୁ ଏଠାରେ ରୋକିପାରୁନାହିଁ । ତାଙ୍କର ଏହି କାର୍ଯ୍ୟପାଇଁ ସେ ମୋ ପାଖରେ ଚିରନମସ୍ୟ ଓ ଚିରସ୍ମରଣୀୟ ହୋଇରହିବେ । ଅବିଭକ୍ତ କଟକ ଜିଲ୍ଲା ଓ ସଂପ୍ରତି ଜଗତସିଂହପୁର ଜିଲ୍ଲାର କନ୍ୟା ହୋଇଥିବାରୁ ସେ ମତେ ଅନେକଥର ଜଗତସିଂହପୁରଠାରେ ସମ୍ମାନିତ କରିଛନ୍ତି । ଜଗତସିଂହପୁର ସାଂସ୍କୃତିକ ଇତିହାସ ଭଳି ଏକ କଠିନ କାର୍ଯ୍ୟ ହାତକୁ ନେଇ ମୋ'ଠାରୁ କାର୍ଯ୍ୟ ଆଦାୟ କରିଛନ୍ତି । ଏଭଳି ଏକ କାର୍ଯ୍ୟ ପାଇଁ ନିଜର ସ୍ୱାସ୍ଥ୍ୟକୁ ଅବହେଳା କରିବାର ମୁଁ ଜାଣେ । ଜଗତସିଂହପୁର ଗବେଷଣା ପରିଷଦ ତରଫରୁ ମୋ ରଚନା ସଂପର୍କରେ ଏକ ଉଚ୍ଚମାନର ଆଲୋଚନା ପୁସ୍ତକ ପ୍ରକାଶ କରିବା ପାଇଁ ସେ ପ୍ରତିଜ୍ଞା କଲେ । ଏହା ତାଙ୍କର ମୋ ପ୍ରତି ସ୍ନେହ ଏବଂ ଜନ୍ମମାଟି ଜଗତସିଂହପୁର ଜିଲ୍ଲା ପ୍ରତି ଋଣ ପରିଶୋଧ ବୋଲି ମୁଁ ଅନୁମାନ କରେ । ତେବେ ମୋ ପ୍ରତି

ତାଙ୍କର ସ୍ନେହ ଯୋଗୁ ସେ ମତେ ହିଁ ପ୍ରଥମେ ନିର୍ବାଚନ କଲେ । ସେଥିପାଇଁ ସେ ମୋ ସାହିତ୍ୟକୃତିର ସମସ୍ତ ବିଭାବରୁ ପ୍ରତିନିଧିମୂଳକ ପୁସ୍ତକ ନିର୍ବାଚନ କରି ଓଡ଼ିଶାର ସ୍ୱନାମଧନ୍ୟ ସାହିତ୍ୟ ସମାଲୋଚକଙ୍କୁ ଅନୁରୋଧ କରିଥିଲେ ଆଲୋଚନାମୂଳକ ଲେଖା ପାଇଁ ସମାଲୋଚନାଟିଏ ଲେଖିବା ଗୋଟିଏ ପୃଷ୍ଠାରେ ନିଜର ଆଇଡିଆକୁ ନେଇ କବିତାଟିଏ ଲେଖିଦେବା ଭଳି ନୁହେଁ ସମୁଦ୍ରମନ୍ଥନ କରି ସେଥିରୁ ବିଷ ଆଉ ଅମୃତ ଉଭୟକୁ ଆବିଷ୍କାର କରିବା ହେଉଛି ସାହିତ୍ୟ ସମାଲୋଚକର ସକାରାତ୍ମକ ସାରସ୍ୱତ କର୍ମ । ତେଣୁ ଏହା ଏତେ ସହଜସାଧ୍ୟ କାମ ନୁହେଁ ।

କିନ୍ତୁ ଭୋଳାନାଥ ରାଉତଙ୍କର ଅଟଳ ପ୍ରତିଜ୍ଞା ଯେ ପୁସ୍ତକଟି ପ୍ରକାଶିତ ହେବ । ଲେଖାଗୁଡ଼ିକ ସଂଗ୍ରହ କରିବା ପାଇଁ ତାଙ୍କୁ ଅନେକ ଶ୍ରମ ସ୍ୱୀକାର କରିବାକୁ ହେଉଛି । ସର୍ବମୋଟ ୨୧ଟି ସମାଲୋଚନା ସେ ସଂଗ୍ରହ କରିପାରିଥିଲେ । ପୁଣି ଏହି ଲେଖାଗୁଡ଼ିକ ସଂପାଦନା ଦାୟିତ୍ୱ ! ଏହା ଏକକ କାର୍ଯ୍ୟ ନୁହେଁ । ଗୋଟିଏ ସଶକ୍ତ ସଂପାଦନାମଣ୍ଡଳୀ ଗଠନ କରାଗଲା । ସେଥିରେ ମୁଖ୍ୟସଂପାଦକ ରହିଲେ ଡକ୍ଟର ଭୋଳାନାଥ ରାଉତ ଏବଂ ସଂପାଦନାମଣ୍ଡଳୀରେ ରହିଲେ ଶ୍ରୀ ମହେନ୍ଦ୍ର କୁମାର ଆଗ୍ରର୍ଯ୍ୟ, ଡକ୍ଟର ସନ୍ତୋଷ ତ୍ରିପାଠୀ , ଡକ୍ଟର ନିରଞ୍ଜନ ବିଶ୍ୱାଳ । ଏମାନେ ସମସ୍ତେ ଭୋଳାନାଥ ରାଉତଙ୍କ ନେତୃତ୍ୱରେ ବାରମ୍ବାର ଜଗତସିଂହପୁରରୁ ଭୁବନେଶ୍ୱର ଆସି 'ଆଖ୍ୟାୟିକା'ରେ ମତେ ଭେଟିଛନ୍ତି, ଆଲୋଚନା କରିଛନ୍ତି । ମୋ ତରଫରୁ କିଛି ବି ସାହାଯ୍ୟ ମୁଁ କରିପାରିନାହିଁ । ମୁଁ ଯେ ଆନନ୍ଦିତ ସେତିକି ହିଁ ମୋର ସହଯୋଗ ଥିଲା । ଶ୍ରୀଯୁକ୍ତ ରାୟ ପ୍ରଥମରୁ ଡକ୍ଟର ରାଉତଙ୍କୁ ପ୍ରଶ୍ନ କରିଥିଲେ । "ସାର୍ ! ଏତେବଡ଼ ପୁସ୍ତକ ଛାପିବାର ଖର୍ଚ୍ଚ କିଏ ବହନ କରିବ" ? ହୁଏତ ଶ୍ରୀଯୁକ୍ତ ରାୟ ଭାବିଥିବେ ଯେ ଏହି କାର୍ଯ୍ୟରେ ତାଙ୍କ ତରଫରୁ ଆଂଶିକ ଆର୍ଥିକ ସହଯୋଗ କଲେ ସେତୁବନ୍ଧରେ ଧୂଳିକଣା ପରି ହେବ । ମାତ୍ର ଡକ୍ଟର ରାଉତ ସହସା ଉତ୍ତରଦେଲେ "ଏହି ପୁସ୍ତକ ପ୍ରକାଶ ପାଇଁ ଆର୍ଥିକଭାର କିଏ ବହନ କରିବ ସେ ଚିନ୍ତା ଆପଣଙ୍କର ନୁହେଁ । ପୁସ୍ତକଟି ପ୍ରକାଶ ପାଇଲେ ଆପଣ ଖୁସି ହେବେ ସେତିକି ହେଉଛି ଆପଣଙ୍କର ସହଯୋଗ ।" ଡକ୍ଟର ରାଉତଙ୍କ ସ୍ୱରରେ ଯେଉଁ ଦୃଢ଼ତା ଓ ପ୍ରତିଜ୍ଞା ଥିଲା ତା'ପରେ ଶ୍ରୀଯୁକ୍ତ ରାୟ ଏ ସଂପର୍କରେ ଆଉ କିଛି ପ୍ରଶ୍ନ କରିନାହାନ୍ତି ।

ମୁଖ୍ୟସଂପାଦକ ଓ ସଂପାଦନା ମଣ୍ଡଳୀ ଲେଖାଗୁଡ଼ିକୁ ଯଥାର୍ଥ ଭାବରେ ସଂପାଦନା କଲେ । ତା' ପରେ ପ୍ରଶ୍ନ ଉଠିଲା ପୁସ୍ତକଟି କେଉଁଠି ଛପାହେବ ? ଡକ୍ଟର ଭୋଳାନାଥ ରାଉତ ଏହି ପୁସ୍ତକକୁ ଜଗତସିଂହପୁର କୌଣସି ପ୍ରେସ୍‌ରେ ଛାପିଥିଲେ ତାଙ୍କର ଶ୍ରମ ଊଣା ହୋଇଥାନ୍ତା

ଓ ଅପେକ୍ଷାକୃତ କମ୍ ଅର୍ଥ ଖର୍ଚ୍ଚ ହୋଇଥାନ୍ତା । କିନ୍ତୁ ସେ ସ୍ଥିର କଲେ ଯେ ଭୁବନେଶ୍ୱର ଅଶୋକନଗରର ମିଡ଼ିଆପ୍ରେସ୍ ଏହି ପୁସ୍ତକ ଛାପିବ । ପୁସ୍ତକଟି ଡିଟିପି ହେବାପରେ ଡକ୍ଟର ଭୋଳାନାଥ ରାଉତ ପ୍ରତିଦିନ ଏପ୍ରିଲ୍ -ମେ ମାସର ଧୁଧୁ ଖରାରେ ସକାଳୁ ଜଗତସିଂହପୁରରୁ ଆସି ମିଡ଼ିଆ ପ୍ରେସ୍‌ରେ ପହଞ୍ଚି ଯାଉଥିଲେ ଏବଂ ଦିନସାରା ବସି ମୁଦ୍ରଣ ତ୍ରୁଟି ସଂଶୋଧନ କରୁଥିଲେ । ଡକ୍ଟର ରାଉତ ମଧୁମେହ ରୋଗ ସତ୍ତ୍ୱେ ନିଜର ଖିଆପିଆକୁ ଗୁରୁତ୍ୱ ନଦେଇ ଅକ୍ଲାନ୍ତ ପରିଶ୍ରମ କରି ମିଡ଼ିଆପ୍ରେସ୍‌ରେ ବସି ରହୁଥିଲେ । ମୋର ଭୟ ହେଉଥିଲା ଯେ ଏହି ପୁସ୍ତକଟି ଡକ୍ଟର ରାଉତଙ୍କର ସ୍ୱାସ୍ଥ୍ୟାବସ୍ଥାର ଅବନତିର କାରଣ ହେବନାହିଁ ତ ? ଦିନେହେଲେ ଡକ୍ଟର ରାଉତ ବା ସଂପାଦନାମଣ୍ଡଳୀର ସଦସ୍ୟ ଶ୍ରୀ ମହେନ୍ଦ୍ର କୁମାର ଆଗ୍ରୱାଲ ବା ସନ୍ତୋଷ ତ୍ରିପାଠୀ ଆମଘରେ ଦିବାଭୋଜନ କରି ନାହାଁନ୍ତି । ଡକ୍ଟର ରାଉତଙ୍କ ଖାଦ୍ୟପେୟ ନେଇ ମୁଁ ବଡ଼ ଚିନ୍ତିତ ରହୁଥାଏ । ଏହି ସମୟରେ ସେ ସଂପାଦନା ମଣ୍ଡଳୀର ସଦସ୍ୟମାନଙ୍କ ସହ ଦିନସାକର ଅକ୍ଲାନ୍ତ ପରିଶ୍ରମ ପରେ ମୋ ଘରକୁ ଆସିଛନ୍ତି । କେବଳ ଗ୍ଲ ଜଳଖିଆ ବ୍ୟତୀତ କୌଣସିଦିନ ସେମାନଙ୍କୁ ରାତ୍ରିଭୋଜନ ବା ଦିବାଭୋଜନରେ ଆପାୟିତ କରିବାର ସୁଯୋଗ ସେ ମତେ ଦେଇନାହାଁନ୍ତି । ବାସ୍ତବରେ ସେଥିପାଇଁ ତାଙ୍କ ହାତରେ ସମୟ ନଥାଏ । ମୁଦ୍ରଣ ଏବଂ ସଂଶୋଧନ କାର୍ଯ୍ୟକୁ ଏଭଳି ଯତ୍ନସହକାରେ ଡକ୍ଟର ରାଉତ ନିର୍ବାହ କରୁଥିଲେ ଯେ ସଂପାଦନା ମଣ୍ଡଳୀ ମଧ୍ୟ ଅସ୍ତବ୍ୟସ୍ତ ହୋଇପଡ଼ିଲେ । କେତେଥର ସନ୍ତୋଷ ତ୍ରିପାଠୀ ମୋତେ କହିଛନ୍ତି " ସାର୍ ! ଭଲକାମ କରୁଛନ୍ତି । ସଂପାଦନା ଏହିଭଳି ହେବା ଆବଶ୍ୟକ । କିନ୍ତୁ ସାର୍‌ଙ୍କ ସ୍ୱାସ୍ଥ୍ୟବସ୍ଥା ଯେପରି ଅଛି ମତେ ଭୟ ଲାଗୁଛି ଯେ ଶେଷପର୍ଯ୍ୟନ୍ତ ପୁସ୍ତକଟି ପ୍ରକାଶ ପାଇବ ନା ନାହିଁ " ? ଯାହାହେଉ ପୁସ୍ତକର ସଂପାଦନା କାର୍ଯ୍ୟ ସରିଲା । ଏବେ ଡକ୍ଟର ରାଉତଙ୍କୁ ଘାରିଲା ପୁସ୍ତକର ନାମକରଣ ଓ ପ୍ରଚ୍ଛଦପଟ୍ଟର ଚିନ୍ତା ।

*ନାମକରଣ :-*

ଡକ୍ଟର ରାଉତ ମତେ କହିଲେ "ଆପଣଙ୍କ ପୁସ୍ତକମାନଙ୍କ ନାମକରଣ ଅତ୍ୟନ୍ତ ଅର୍ଥବାଚୀ ଓ ହୃଦ୍ୟ ହୋଇଥାଏ । ଏହି ପୁସ୍ତକ ପାଇଁ ଆପଣ ଗୋଟିଏ ନାମ ବାଛନ୍ତୁ ନା !"ମୁଁ ସହସା ଉତ୍ତର ଦେଲି "ସାର୍ ! ଏ ପୁସ୍ତକର ନାମକରଣ ମୋ ଦ୍ୱାରା ହେବନାହିଁ । ମୋର ନାମକରଣ ମୋ ବାପା କରିଥିଲେ, ମୁଁ ନୁହେଁ । ଆପଣମାନେ ଏହି ପୁସ୍ତକର ସ୍ରଷ୍ଟା । ଆପଣମାନେ ଯେଉଁ ନାମକରଣ କରିବେ ମୁଁ ସେଥିରେ ଖୁସିହେବି । "ଏହାପରେ ପୁସ୍ତକର ନାମକରଣ ସଂପର୍କରେ ଏକ ତାଲିକା ମୋ ପାଖକୁ ସାର୍ ପଠାଇଲେ । ତହିଁରୁ 'ମନସ୍ୱିନୀ ପ୍ରତିଭା ରାୟ' ନାମ ପାଖରେ ସାର୍ ଚିହ୍ନମାରି ଲେଖିଦେଇଥିଲେ ଯେ ଏହି ନାମକରଣ

ତାଙ୍କର ନିଜସ୍ୱ ଏବଂ ଏକରକମ ବୃତ୍ତାନ୍ତ । ସେ ସଂପର୍କରେ ମୋର ମତାମତ ଗ୍ରହିଁଥିଲେ । ମୁଁ ଉତ୍ତର ଦେଇଥିଲି "ମନସ୍ୱିନୀ ଶବ୍ଦର ଯଥାର୍ଥ ଅର୍ଥଟି କ'ଣ ପ୍ରତିଭା ରାୟ ନାମ ପାଇଁ ଯଥାର୍ଥ ହେଉଛି ? ଏହା ମୋର ବିଗ୍ରର ଉପରେ ନିର୍ଭର କରୁନାହିଁ, ଆପଣମାନଙ୍କ ବିଗ୍ରର ଉପରେ ନିର୍ଭର କରୁଛି । ଆପଣ ସମସ୍ତେ ସାହିତ୍ୟ ବିଭାଗର ପ୍ରବୀଣ ଅଧ୍ୟାପକ ।" ଡକ୍ଟର ଭୋଳାନାଥ ରାଉତ ସହସା ଉତ୍ତର ଦେଲେ "ଓଡ଼ିଆ, ହିନ୍ଦୀ, ବଙ୍ଗଳା, ସଂସ୍କୃତ ଅଭିଧାନରୁ ମନସ୍ୱିନୀର ଅର୍ଥ ଯାହା ବାହାରିଲା ତାହା ମୋ ମାଟିର କନ୍ୟା ପ୍ରତିଭା ରାୟ ପାଇଁ ହିଁ ପ୍ରଯୁଜ୍ୟ ହେବ ବୋଲି ଆମମାନଙ୍କର ବିଗ୍ରର । ପୁସ୍ତକର ଏହି ନାମଟିହିଁ ରହିବ ।" କିନ୍ତୁ ମୋ ଜାଣିବାରେ ଏହି ନାମଟି ରଖାଯିବ କି ନାହିଁ ଏ ସଂପର୍କରେ ପ୍ରଶ୍ନ ମଧ୍ୟ ଉଠିଥିଲା । ସେ ପ୍ରଶ୍ନକୁ ଯଥାର୍ଥ ଯୁକ୍ତିଯୁକ୍ତ ଭାବରେ ଖଣ୍ଡନ କରିଥିଲେ ଡକ୍ଟର ରାଉତ । ସଂପାଦକୀୟର କିୟଦଂଶ ଏଠାରେ ଉଦ୍ଧୃତ କରୁଛି- "ଏହି ସମୀକ୍ଷା ପୁସ୍ତକ ପ୍ରକାଶ କରିବାର ଉଦ୍ଦେଶ୍ୟ ହେଉଛି ଲେଖିକାଙ୍କର ସାରସ୍ୱତ ସୃଷ୍ଟି ସମ୍ଭାରକୁ ବୃହତ୍ତର ପାଠକ ସମାଜ ନିକଟରେ ପହଞ୍ଚାଇବା । ଜ୍ଞାନପୀଠ ପୁରସ୍କାର ଜାତୀୟସ୍ତରର ଏକ ସର୍ବଶ୍ରେଷ୍ଠ ପୁରସ୍କାର । ଏହି ପୁରସ୍କାର ପ୍ରାପ୍ତ ହେବା ପରେ "ଜଗତସିଂହପୁର ଗବେଷଣା ପରିଷଦ ' ପକ୍ଷରୁ ପ୍ରତିଭା ରାୟଙ୍କୁ ସମ୍ବର୍ଦ୍ଧିତ କରିବା ଅବକାଶରେ ଏହି ସମୀକ୍ଷା ପୁସ୍ତକ ପ୍ରକାଶ କରି ତାଙ୍କୁ ଅର୍ପଣ କରିବାକୁ କର୍ମକର୍ତ୍ତାମାନେ ସ୍ଥିର କରିଥିଲେ । ଏହି ସମୀକ୍ଷା ଗ୍ରନ୍ଥରେ ତାଙ୍କ ସାମଗ୍ରିକ କୃତିର କଳନା କରାଯାଇପାଇନାହିଁ । ମଗ୍ନମାଟି, ଯାଜ୍ଞସେନୀ, ଶିଳାପଦ୍ମ, ଉଲ୍ଲଂଘନ (ଗଳ୍ପ ସଂକଳନ), ଉତ୍ତରମାର୍ଗ, ମହାମୋହ, ଆଦିଭୂମି ଓ ମହାରାଣୀପୁତ୍ର ପ୍ରଭୃତି କେତୋଟି ପ୍ରସିଦ୍ଧ ଉପନ୍ୟାସ ସଂପର୍କରେ ଆଲୋଚନା କରାଯାଇଛି । ଆଶା କରୁଛି ଏହା ଗବେଷକ ତଥା ଆଲୋଚନାମାନଙ୍କ ଦୃଷ୍ଟି ଆକର୍ଷଣ କରିବ । ପ୍ରତିଭାପୂଜାର ପରଂପରା ଏ ମାଟି ଶିଖିଛି । ସେହି ପରଂପରାର ଦାୟାଦ ହିସାବରେ ଆମେ ଏଭଳି କାର୍ଯ୍ୟକାରି ନିଜକୁ ଗୌରବାନ୍ୱିତ ମନେ କରୁଅଛୁ ।"

*ପ୍ରଚ୍ଛଦପଟ :* ଶିଳ୍ପୀ ଶ୍ରୀ ଶିବ ପାଣିଗ୍ରାହୀ ମୋର ପ୍ରଥମ ଉପନ୍ୟାସ 'ବର୍ଷା ବସନ୍ତ ବୈଶାଖ'ର ପ୍ରଚ୍ଛଦପଟ୍ଟ ଶିଳ୍ପୀ ଥିଲେ । ତାଙ୍କରି ଦ୍ୱାରା ପ୍ରଚ୍ଛଦପଟ୍ଟ ହେଉ ବୋଲି ଡକ୍ଟର ରାଉତ ଇଚ୍ଛାପ୍ରକାଶ କଲେ । ମୁଁ ମଧ୍ୟ ଆନନ୍ଦିତ ହେଲି । ପ୍ରଚ୍ଛଦପଟ୍ଟ ଅଙ୍କନ ହେଲା ଏବଂ ଅନୁମୋଦନ କରିବା ପାଇଁ ଡକ୍ଟର ରାଉତ ମତେ କଟକର ଜଗନ୍ନାଥ ପ୍ରୋସେସ୍‌କୁ ଡକାଇଲେ । ସେଦିନ ଅବିଶ୍ରାନ୍ତ ବର୍ଷା । ମୁଁ ଭୁବନେଶ୍ୱରରୁ ଯାଇ କଟକରେ ପହଞ୍ଚିବା ବେଳକୁ ଡକ୍ଟର ରାଉତ ଓ ସଂପାଦନା ମଣ୍ଡଳୀ ସଦସ୍ୟ ଜଗତସିଂହପୁରରୁ ଆସି ଜଗନ୍ନାଥ ପ୍ରୋସେସ୍‌ରେ ମତେ ଅପେକ୍ଷା କରିଥିଲେ । ଶିଳ୍ପୀ ଶିବ ପାଣିଗ୍ରାହୀଙ୍କ ଉପସ୍ଥିତିରେ ସମସ୍ତଙ୍କର ପରିକଳ୍ପନା ସଂଯୋଗରେ 'ମନସ୍ୱିନୀ

ପ୍ରତିଭା ରାୟ୍‌' ପ୍ରଚ୍ଛଦପଟରେ ଶେଷ ସ୍ପର୍ଶ ରଖିଲେ ଶିଳ୍ପୀ ପାଣିଗ୍ରାହୀ । ପ୍ରଚ୍ଛଦପଟ୍ଟ ସମସ୍ତଙ୍କ ଦ୍ୱାରା ଆଦୃତ ହେଲା ।

*ସମ୍ବର୍ଦ୍ଧନା ଉତ୍ସବ ଓ ପୁସ୍ତକ ଲୋକାର୍ପଣ :* ମହାସମାରୋହରେ ଏହି ପୁସ୍ତକର ଲୋକାର୍ପଣ ଓ ଲେଖକ ସମ୍ବର୍ଦ୍ଧନା ଉତ୍ସବ ଜଗତସିଂହପୁର ଟାଉନ୍‌ହଲରେ ତା ୨୪.୦୮.୨୦୧୪ ତାରିଖରେ ଅନୁଷ୍ଠିତ ହେଲା । ଉତ୍ସବରେ ପୁସ୍ତକଟିର 'ମନସ୍ୱିନୀ ପ୍ରତିଭା ରାୟ୍‌' ନାମକରଣ ସଂପର୍କରେ ସାଙ୍କେତିକ ପ୍ରତିବାଦର ସ୍ୱର ଶୁଣିପାରିଲି । ଡକ୍ଟର ଭୋଳାନାଥ ରାଉତ ପ୍ରାଞ୍ଜଳ ଭାବରେ ନାମକରଣ ଯଥାର୍ଥତା ସଂପର୍କରେ ସ୍ପଷ୍ଟୀକରଣ ଦେଇ ଆନନ୍ଦପ୍ରକାଶ କରିଥିଲେ ଯେ ତାଙ୍କ ଜନ୍ମମାଟିର ପୂଜା ସେ କରିଛନ୍ତି 'ମନସ୍ୱିନୀ ପ୍ରତିଭା ରାୟ୍‌' ପୁସ୍ତକ ମାଧ୍ୟମରେ । ଜ୍ଞାନପୀଠ ବିଜେତା ଡକ୍ଟର ସୀତାକାନ୍ତ ମହାପାତ୍ର ଏହି ପୁସ୍ତକଟିକୁ ଲୋକାର୍ପଣ କରିବା ସମସ୍ତଙ୍କ ପାଇଁ ଆନନ୍ଦର ବିଷୟ ଥିଲା ।

ସାର୍ ତ ମାଟିର ଋଣ କିଞ୍ଚିତ ଭାବେ ଶୁଝିଲେ । କିନ୍ତୁ ମୁଁ ସାର୍ ଏବଂ ସଂପାଦନାମଣ୍ଡଳୀର ଋଣ ସାମାନ୍ୟତମ ଭାବରେ ବି ଶୁଝି ପାରିନାହିଁ ବା ପାରିବିନାହିଁ । କାରଣ ମୋ ସାମଗ୍ରିକ କୃତିକୁ ନେଇ ଏଭଳି ଏକ ସ୍ୱୟଂ ସଂପୂର୍ଣ୍ଣ ସମୀକ୍ଷା ପୁସ୍ତକ ଏହା ହିଁ ପ୍ରଥମ ଥିଲା । ଏ ଋଣ ଅଶୁଝା ରହିଗଲା । ବାସ୍ତବରେ ପୁସ୍ତକ ଉନ୍ମୋଚନ ପରେ ପରେ ସାର୍‌ଙ୍କ ସ୍ୱାସ୍ଥ୍ୟବସ୍ଥାର ଦ୍ରୁତ ଅବନତି ହେଲା ଏବଂ ସାର୍ ଶଯ୍ୟାଶାୟୀ ହୋଇପଡ଼ିଲେ । ବହୁଦିନ ଡାକ୍ତରଖାନାରେ ରହି ଚିକିତ୍ସା ହେଲେ ଏବଂ ଏବେ ମଧ୍ୟ ସାର୍ ସଂପୂର୍ଣ୍ଣ ସୁସ୍ଥ ହୋଇନାହାନ୍ତି । ଋଣ ଭାର ସହ ଗ୍ଲାନି ମିଶିଗଲା । ଏହି ପୁସ୍ତକଟି ପାଇଁ ଅକ୍ଳାନ୍ତ ପରିଶ୍ରମ ସାର୍‌ଙ୍କ ସ୍ୱାସ୍ଥ୍ୟ ଅବନତିର ଅନ୍ୟତମ କାରଣ ନୁହେଁ ତ ?

'ମନସ୍ୱିନୀ ପ୍ରତିଭା ରାୟ୍‌' ଛାତ୍ର, ସମାଲୋଚକ ଓ ବିଶ୍ୱବିଦ୍ୟାଳୟ ସ୍ତରରେ ଆଦୃତ ହୋଇଛି, ଏହା ହିଁ ଏହି ପୁସ୍ତକର ସଂପାଦକ ଡକ୍ଟର ଭୋଳାନାଥ ରାଉତଙ୍କର ଅନେକ ସାହିତ୍ୟକୃତି ମଧ୍ୟରେ ଅନ୍ୟତମ ଶ୍ରେଷ୍ଠକୃତି ବୋଲି ତାଙ୍କର ଛାତ୍ର-ଅଧ୍ୟାପକମାନେ ମନେ କରନ୍ତି । ଏତିକି ହିଁ ମୋ ପାଇଁ ସାନ୍ତ୍ୱନା । ଈଶ୍ୱରଙ୍କୁ ପ୍ରାର୍ଥନା କରୁଛି ସାର୍ ସଂପୂର୍ଣ୍ଣ ସୁସ୍ଥ ରୁହନ୍ତୁ ଏବଂ ତାଙ୍କ ସ୍ୱପ୍ନରେ ଲେଖାଥିବା ଏହିପରି ଆହୁରି କେତେକ ପୁସ୍ତକ ରଚନା କରିବାରେ ସମର୍ଥ ହୁଅନ୍ତୁ । ■

ତା ୧୬.୦୨.୨୦୧୬

ଆଖ୍ୟାୟିକା, ୨୭, ଗଜପତି ନଗର

ଭୁବନେଶ୍ୱର - ୭୫୧୦୦୫

# ଏକ ସ୍ମୃତି ଆଲେଖ୍ୟ : ତଲ୍ଲୀନ ଆତ୍ମୀୟତାର

ଡକ୍ଟର ରବୀନ୍ଦ୍ର କୁମାର ପ୍ରହରାଜ

୧୯୫୪ ମସିହା ଜୁଲାଇମାସ, ତାରିଖ ବୋଧହୁଏ ୩ କି ୪ ହେବ । ମୋର କଲେଜ ଶିକ୍ଷା ଜୀବନର ସେହି ଆଦ୍ୟଲଗ୍ନରେ ପ୍ରଥମ ବନ୍ଧୁ-ସତୀର୍ଥ ସହଧାୟୀ ହେଲେ ସେ । ପ୍ରଥମ ଦିନ ସାଙ୍ଗହୋଇ ରିକ୍‌ସାରେ କଲେଜ (ଖ୍ରୀଷ୍ଟ କଲେଜ)ରେ ପହଞ୍ଚି ଲଗାଲଗି ବସିଥିଲୁ ଆମେ ଦୁହେଁ । ସେହି ଦିନଠାରୁ ଆମର ନିବିଡ଼ ସଖ୍ୟ, ଆଜିକୁ ୬୧ବର୍ଷ ହେଲା ଧାରାବାହିକ ଭାବରେ ସେଦିନର ସ୍ମୃତିଗ୍ମରଣ କରିବାକୁ ଯାଇ ହୁଏତ କେତେ କଥା ମୁଁ ଛାଡ଼ିଯାଇପାରେ, ମୋଟାମୋଟି ମନେ ଅଛି ବହୁତ କିଛି ।

ପ୍ରଥମ ଦେଖାରେ ସେ ମୋଠାରୁ ଯଥେଷ୍ଟ ଉଦ୍ୟମଶୀଳ ମନେ ହୋଇଥିଲେ । କଟକ କଚେରିରେ ମୋହରିର ପିତାଙ୍କର ସେ ଥିଲେ ଜ୍ୟେଷ୍ଠପୁତ୍ର । ମୋର ଅନେକ ପୂର୍ବରୁ କଟକ ସହର ସହ ସେ ପରିଚିତ ଥିବାରୁ ସଦ୍ୟ ମଫସଲ ଆଗତ ମୋର ସେ ତତ୍‌କାଳୀନ ଦିଗ୍‌ଦର୍ଶକ ବନିଗଲେ । ଅଧିକାଂଶ ଦିନ ସାଙ୍ଗ ହୋଇ କଲେଜ ଯାଉଥିଲୁ । ଦିନେ କଲେଜ ଫେରନ୍ତି ମୋ ସାଇକେଲ ପଛରେ ତାଙ୍କୁ ବସାଇ ମୁଁ ଆସୁଥାଏ । ଭକ୍ତମଧୁ ବିଦ୍ୟାପୀଠ ସନ୍ନିକଟ ରୋଭର୍ସ ଷ୍ଟ୍ରୀଟ୍‌ରେ ଗୋଟାଏ ଖାଲିପଡ଼ିଆ, ପୋଲିସ୍ ଅଟକାଇ ଆମ ନାଆଁ ପଚାରିଲା । ମୁଁ ଡରରେ ଛାନିଆ ହେଲା ବେଳକୁ ଭୋଳାନାଥ ବଡ଼ ହେମତ ଦେଖେଇ ଭୁଲ ନାଆଁ କହିଦେଲେ । ମୁଁ ଥଙ୍ଗେଇ ଥଙ୍ଗେଇ ମୋ ନାଆଁ ବି ଭୁଲ ବଖାଣିଲି । ସେ ପୁଲିସ୍‌ବାଲା ଏ କଥା ଜାଣିଗଲା କି କ'ଣ ଡବଲରାଇଡିଙ୍ଗ୍ ଅପରାଧରେ ଆମକୁ ଜୋରିମାନା କରିବ, କହିଲା । ଭୋଳାନାଥ ଏମିତି କଥା କହି ତା' ମନ ମୋହିନେଲେ ଯେ ସେ ଅଳ୍ପ ହସି ଆମକୁ ସାବଧାନ କରାଇ ଛାଡ଼ିଦେବା କଥା ମୁଁ ଏ ପର୍ଯ୍ୟନ୍ତ ଭୁଲିନାହିଁ ।

ଏମିତି ଏମିତି ଆଇ.ଏ ପରୀକ୍ଷା ପାଖ ଧରିଲା । ଦୁଇମାସ ମାତ୍ର ଥାଏ । ଏବେ ତ ମୋର ସବୁ ବହି ନଥାଏ ସେଥିରେ ଯେଉଁ ବସାରେ ମୁଁ ଥାଏ, ସେଠାରେ ଏତେ କୋଳାହଳ ଲାଗି ରହୁଥିଲା ଯେ ମନଧ୍ୟାନ ଦେଇ ପଢିବା ଏକ ପ୍ରକାର ଅସମ୍ଭବ ହେବାରୁ ମୁଁ ଭୋଳାନାଥଙ୍କ ଶରଣାପନ୍ନ ହେଲି । ସେ ମଧ୍ୟ ଏହା ବୁଝୁଥିବାରୁ ଝୋଲାସାହିର ବରଗଛ ମୂଳ ହୋଟେଲ୍

ପାଖ କୋଠରିଟିରେ ଆମେ ଏକାଠି ପଢ଼ି ବସିଲୁ । ଆମ ସାଙ୍ଗଙ୍କୁ ଆସି ଜୁଟିଲା ଅନ୍ୟ ଜଣେ ଭଲ ସାଙ୍ଗ ବିଶ୍ୱନାଥ ମହାପାତ୍ର । ଏବକୁ ସେ ମୋର ଜଣେ ପୁତୁରାର ଶଶୁର, ଗେଜେଟେଡ୍ ବୃତ୍ତିରୁ ଅବସରପ୍ରାପ୍ତ; ଘର କରିଛି ପିଠାପୁର ମୁକାମରେ । କଥାବାର୍ତ୍ତାରେ ବେଶ୍ ରହସିଆ । ଆମର ପରୀକ୍ଷା ପ୍ରସ୍ତୁତି ପାଇଁ ଜୋର୍‌ସୋର ସକାଳୁ ରାତି ଯାଏ ପଢ଼ାଚାଲିଥାଏ । ପରୀକ୍ଷା ସମ୍ମୁଖୀନ ହେବାଲାଗି ମୋର ଆତ୍ମପ୍ରତ୍ୟୟ କ୍ରମଶଃ ବଢ଼ି ଉଠୁଥିଲା ବେଳେ ସୀମା ଆନ୍ଦୋଳନ ଚାଲିଲା । କଟକ ରେଡିଓଷ୍ଟେସନ୍ ଆଗରେ ସୁନୀଲ ଦେ ଓ ପୁରୀ ରେଳଷ୍ଟେସନ୍ ମୁକାମରେ ବେଙ୍କପାଣିଆ ସହିଦ ହୋଇଥାଆନ୍ତି । ସେଦିନ ସକାଳେ ଆମେ ପଢ଼ିବସିଛୁ, ଭୋଳାନାଥ ସମ୍ବାଦ ଦେଲେ ଆମ କଲେଜ ୟୁନିଅନ୍ ସଭାପତିଙ୍କ ସମେତ କଟକର ସବୁ ମୁଖଣ୍ଡ ଛାତ୍ରନେତା ଏକତ୍ର ସଭା କରୁଥିଲା ବେଳେ ବାରବାଟୀ ଦୁର୍ଗ ଭିତରୁ ସମସ୍ତଙ୍କୁ ଗିରଫ କରିନେବାକୁ ପୋଲିସ୍ ପ୍ରସ୍ତୁତ ହେଲାଣି, ଏହାର ବିରୋଧ କରିବାକୁ ହେବ । ପରୀକ୍ଷା ତ ହେବନାହିଁ, ଅତଏବ ବର୍ତ୍ତମାନ ପଢ଼ିବା ନିରର୍ଥକ । ଏପରି ଉତ୍ତେଜନାତ୍ମକ ଭାବରେ ଭୋଳାନାଥ ଉଦ୍‌ବୋଧନ ଦେଲେ ଯେ ମୁଁ ଓ ବିଶ୍ୱନାଥ ଏକାବେଳକେ ଜାତୀୟ ଚେତନାରେ ମାତି ଉଠିଲୁ ଏବଂ ତତ୍‌କ୍ଷଣାତ୍ ଦୁଇଟି ସାଇକେଲ୍‌ରେ ଛୁଟିଲୁ ବାରବାଟୀ ଦୁର୍ଗ ଦ୍ୱାରକୁ । ମୋର ମନେ ପଡୁଥାଏ ଅମର କବି ଗୋଦାବରୀଶ ମହାପାତ୍ରଙ୍କର 'ଉଠ କଙ୍କାଳ ଛିଡୁ ଶୃଙ୍ଖଳ ଜାଗ ଦୁର୍ବଳ ଆଜି/ ଉଠୁ ଗତ ଗୌରବ ହୃତ ଗୌରବ ମୃତ ଗୋରବରାଜି/ପୃଥ୍ୱୀ ବିଦାରି ବାରବାଟୀ ମଡ଼ା ଉଠ ଉଠ ଚଞ୍ଚଳ/ଖୋରଧାର ଶତ ସରଦାର ଶିର କର ଉନ୍ନତତର ।'' ଭୋଳାନାଥ ଆମର ନେତା, ମାର୍ଗଦର୍ଶକ । ତାଙ୍କରି ନିର୍ଦ୍ଦେଶରେ ଦୁର୍ଗଦ୍ୱାର ମୁହଁରେ ଚେକାମାଲି ପକାଇ ବସିଗଲୁ । ଆମ ଆଗରେ ପଛରେ ଶହେରୁ ଅଧିକ କଲେଜ ଛାତ୍ରଛାତ୍ରୀ । ଛାତ୍ରୀମାନେ ୧୦/୧୨ଜଣ ବସିଥାଆନ୍ତି ସବା ଆଗରେ । ଆହ୍ୱାନ ଚାଲିଥାଏ, ଅଦୂରରେ ପୋଲିସ୍ ଭ୍ୟାନ୍‌ରେ ଆମ ନେତାମାନେ ବସିଥିବା ଦୃଶ୍ୟ ହେଉଥାଏ । ପୋଲିସ ଅଫିସରଙ୍କର ବକ୍ତୃତା ଚେତାବନି ସବୁ ନିଷ୍ଫଳ । ଦୁର୍ଗଦ୍ୱାର ରୋଧକରି ଆମେ ବସି ଥିବାରୁ ପୋଲିସ ଗାଡ଼ି ବାହାରକୁ ବାହାରିବା ରାସ୍ତା ବନ୍ଦ । ଶୁଣିଲୁ ଟିଅର୍ ଗ୍ୟାସ୍ ଫାଟିବ । ଭୋଳାନାଥ କହିଲେ, ରୁମାଲ୍‌ରେ ବା ଲୁଗା କାନିରେ ଆଖିକୁ ଚାପିଦେଇ ନଇଁ ପଡ଼ିବାକୁ । ତାହା ପାଳନ କଲୁ । ଅବଶେଷରେ ଫୁଟିଲା ଟିଅର ଗ୍ୟାସ୍ ଆମ ଆଗରେ । ମୋତେ ଲାଗିଲା ଯେମିତି ଜଳନ୍ତା ନିଆଁରେ ମୋତେ କିଏ ପକାଇ ଦେଲା । ଝିଅ ପିଲା ଜଣେ ଦିଜଣ ଆକଟାମାକଟା ହେଲାବେଳକୁ ଆମ ନେତା ଯାଇ ସେମାନଙ୍କୁ ସାନ୍ତ୍ୱନା କରୁଥିବା ମୁଁ ଆଖି ଫିଟାଇଲା ବେଳକୁ ଦେଖିଥିଲି । ଏତିକିବେଳେ ପଛରୁ ଛୁଟି ଆସିଲେ ଦଳେ ଗୁର୍ଖା ପୋଲିସ । ହାତରେ ବ୍ୟାଟନ୍, ନିର୍ମମ ଭାବରେ ପିଟି

ଦେଇଗଲେ ଆମ୍ଭମାନଙ୍କୁ । ଗ୍ୱଁ ଗ୍ୱଁ ଲାଗୁଥାଏ । ଆମେ ଭାଙ୍ଗିଗଲୁ । ଭୋଳାନାଥ ମାଡ଼ଖାଇ ଗଡ଼ି ପଡ଼ିଲେ ମୋ ଡାହାଣ ପଟରେ ଟିକେ ଦୂରରେ । ଆମେ ଉଠି ଦୌଡିବା ପୂର୍ବରୁ ପୋଲିସ୍ ଗାଡ଼ିଟା ସାଏଁ କିନା ବାହାରି ଗ୍ୱଲିଗଲା । ଆଉ ଅପେକ୍ଷା ନକରି ଆସିଲୁ ବାହାରକୁ । ବାହାରେ ୮୦ ରୁ ଅଧିକ ଲୋକ ଘେରି ଥାଆନ୍ତି ମାଜିଷ୍ଟ୍ରେଟ୍‌ଙ୍କୁ । କିଏ ଗୋଟାଏ ଜୋତା ଫୋପାଡ଼ିଲା ତାଙ୍କ ଉପରକୁ । ପୁଣି ମାଡ଼ି ଆସିଲେ ଗୁର୍ଖା ପୋଲିସ୍ । ପ୍ରାଣ ବିକଳରେ ଦଉଡି ଯାଇ ସାଇକେଲ ଧରି ଆମେ ଫେରିଲୁ ଆମ ପଢା ଘରକୁ । ଉତ୍ତେଜନାରେ ଦେହମୁଣ୍ଡ ତାତିଥାଏ । ଅନ୍ୟକିଛି କରିବାର ନଥିଲା । ଫେରିଲୁ ଯେ ଯାହା ବସାଘରକୁ । ସଂଧ୍ୟାକୁ ମ୍ୟୁନିସିପାଲିଟି ପଡ଼ିଆରେ ବସିଥିଲା ସଭା । ଚିନ୍ତାମଣି ଆଗ୍ୱର୍ଯ୍ୟ, ଗୋଦାବରୀଶ ମିଶ୍ର ଓ ଯଦୁମଣି ଗଙ୍ଗରାଜ ଥିଲେ ସଭାମଣ୍ଡପରେ । ଅନ୍ୟ କାହାରି ବକ୍ତୃତା ମୋର ମନେ ନାହିଁ, କେବଳ ମନେ ଅଛନ୍ତି ଯଦୁମଣି ମଙ୍ଗରାଜ । ତେଜୀୟାନ୍ ଆଖି ବିଶିଷ୍ଟ କୃଷ୍ଣକାୟ ସେ ବ୍ୟକ୍ତିଙ୍କର କି ଅପୂର୍ବ ବାଙ୍‌ମୟ ବିସ୍ଫୋରଣ । ବେଳେ ବେଳେ ସେ ଆଖିରୁ ନିଆଁ ବାହାରୁ ଥାଏ । ଯେପରି କଥା କଥାକେ ଆଖିରୁ ଲୁହ ଝରୁଥାଏ ସେହିପରି କି ଆକର୍ଷଣ କି ସମ୍ମୋହନ ଥିଲା ସେ ଉଦ୍‌ବୋଧନରେ । ସେ କହୁଥାନ୍ତି ଲୁଗା ଅଞ୍ଚି ପ୍ରସାରି, 'ଦିଅ ଦିଅ ଯାହା ଅଛି ଦିଅ, ଦେଶ ମାତୃକା ଆଜି ମାଗୁଛି ସବୁକିଛି ଧନ, ଜନ, ଜୀବନ । ଆସ ଆସ, ଦେଶହିତୈଷୀଗଣ, ଆସ ଆସ ଦିଅ ଦିଅ ସେ କହୁଥାଆନ୍ତି, ତାଙ୍କ ଉପରକୁ ବୃଷ୍ଟି ହେଉଥାଏ ଟଙ୍କା, ଆଠଣି, ଗ୍ୱରଣି । ସେ ଟଙ୍କା କିଏ ନେଲା, କ'ଣ ହେଲା ଜାଣିବାର ଆଗ୍ରହ ଥିଲେହେଁ ଜାଣି ହେଲା ନାହିଁ । ମୁଁ ଦେଶପ୍ରେମରେ ଘାରିହେଲା ବେଳକୁ ଜର ଆସିଗଲା ଦେହରେ । ବାପା ଆସିଥାଆନ୍ତି ମୋ ସାନ ଭଉଣୀର ପ୍ରଥମ ବେଭାରି ସଜ କିଣିବା ପାଇଁ । ମୋ ଅବସ୍ଥା ଦେଖି ମୋର ଉତ୍ତେଜନା ଭରା କଥା ଶୁଣି ସେ ଡରିଗଲେ କି କ'ଣ ପରଦିନ ଜବ୍‌ରଦସ୍ତି କରି ଗାଆଁକୁ ଧରି ଆସିଲେ, କଟକ ମୋଟର ଆସୋସିଏସନ୍‌ର ଦିଆସିଲି ଖୋଳ' ବସ୍‌ରେ । ଆଠଦିନ ଗାଁରେ ରହି କଟକ ଫେରିଲା ବେଳକୁ ପରୀକ୍ଷା ତାରିଖ ଘୁଞ୍ଚି ଯାଇଥାଏ । ହାତଗଣତି ଅଳ୍ପଦିନ ଥାଏ ପରୀକ୍ଷାକୁ । ପୁଣି ସେହି ଭଡ଼ାଘରେ ଆମେ ପୂର୍ବପରି ଏକାଠି ହୋଇ ପାଠ ଅଭ୍ୟାସ ଚଳାଇଲୁ । ମୋର ଦିନବେଳା ଭାତଖିଆ ଭୋଳାନାଥଙ୍କ ମାର୍ଫତରେ ସେହି ପାଖ ହୋଟେଲ୍‌ରେ । ମୋତେ ପଇସା ଦେବାକୁ ଦୁଏ ନାହିଁ, ସେଥିପାଇଁ ସେ ନନା ଆଉ ଯାହା ଯେପରି ରାନ୍ଧୁ ନା କାହିଁକି ତାର ସେ ବିଲାତିବାଇଗଣ ଖଟାକୁ ନା ମୁଁ ଭୁଲିଛି, ନା ସ୍ୱୟଂ ଭୋଳାନାଥ । ଏବେ ସେ କଥା ମନେ ପକାଇ ଆମେ ବହୁ ରଙ୍ଗ ରହସ୍ୟ କରିଥାଉ ।

ସେ ଯାହାହେଉ, ନେତୃତ୍ୱ ମନସ୍କ ଭୋଳାନାଥ ଆମ ସାଙ୍ଗରେ ଆଇ.ଏ ପରୀକ୍ଷା

ବୈତରଣୀ ପାରି ନହୋଇ ପଛରେ ରହିଗଲେ । ମଝିରେ ମଝିରେ ଆମର ବରାବର ଭାବ ଆଦାନପ୍ରଦାନ ଗ୍ଲିଥାଏ । ମୋର ଅନର୍ସ ଚତୁର୍ଥ ବର୍ଷବେଳକୁ ସେ ଆସିଲେ କଲେଜକୁ ଅନର୍ସ ତୃତୀୟ ବର୍ଷପାଇଁ । ଲକ୍ଷ୍ୟ କରିଛି ସେ ବରାବର କଲେଜ ୟୁନିଅନ୍ କିମ୍ବା ନାଟ୍ୟ ସଂସଦ କେଉଁଥିନା କେଉଁଥିରେ ବ୍ୟାପୃତ ଥାଆନ୍ତି । ଅଧ୍ୟାପକମାନଙ୍କ ଆଗରେ ଠିଆ ହୋଇ କଥା ହେବା ଦୂରେ ଥାଉ, ମୁଁ 'ଶତହସ୍ତେନ ବାଜିନଂ' ନୀତିରେ ଥିବାରୁ ଅଦୂରରୁ ଭୋଳାନାଥଙ୍କର ଅଧ୍ୟାପକମାନଙ୍କ ସହ ନିର୍ବାଧ କଥାବାର୍ତ୍ତା ଦୃଶ୍ୟ ଦେଖିଲେ କିଛି ଚମତ୍କୃତ ବୋଧ କରୁଥିଲି ।

ମୁଁ ୧୯୫୮ରେ ଓଡ଼ିଆ ଅନର୍ସ ପାଇ ବି.ଏ ପାସ୍ କରିବା ପରେ ପରେ ଗାଁ ପାଖ ତିରଣ ଜଗନ୍ନାଥପୁର ହାଇସ୍କୁଲରେ ଅଣତାଲିମ୍ ପ୍ରାପ୍ତ ସହକାରୀ ଶିକ୍ଷକ ଭାବରେ ମାସିକ ଟ ୮୫/- ଦରମାରେ ନିଯୁକ୍ତି ପାଇ ଦୁଇବର୍ଷ ରହିବା ପରେ ୧୯୬୦ରେ ଷ୍ଟାଇପେଣ୍ଡ୍ ପାଇ ରାଧାନାଥ ଟ୍ରେନିଂ କଲେଜରେ ବି.ଇଡି ପଢ଼ିଲି । ସେତେବେଳକୁ ଭୋଳାନାଥ ଥାଆନ୍ତି ରେଭେନ୍ସା ଓଡ଼ିଆ ଏମ୍.ଏ ବାର୍ଷିକ ଶ୍ରେଣୀର ଛାତ୍ର । ଆମର ମୌଖିକ ଯୋଗାଯୋଗ ଥିଲା ଅବ୍ୟାହତ, ଅକ୍ଷୁଣ୍ଣ । ବି.ଏଡି ପରେ ୧୯୬୧ ଅଗଷ୍ଟ ପହିଲାରୁ ମୁଁ ରାଣୀହାଟ ହାଇସ୍କୁଲରେ ସହକାରୀ ଶିକ୍ଷକ ନିଯୁକ୍ତି ହେଲି । ପ୍ରଧାନ ଉଦ୍ଦେଶ୍ୟ ଥିଲା ଘରୋଇ ଭାବରେ ଏମ୍.ଏ ପରୀକ୍ଷା ଦେଇ ଅଧ୍ୟାପକ ହେବା । ସେଥିପାଇଁ ଏମ୍.ଏ. ପାଠ୍ୟକ୍ରମର ଅନୁସରଣରେ ଅଧ୍ୟୟନ ଅଗ୍ରଗତି ପାଇଁ ମୁଁ ଭୋଳାନାଥ ଓ ନିତ୍ୟାନନ୍ଦ ଶତପଥୀଙ୍କୁ ସାକ୍ଷାତ୍ କରିବାକୁ ଲାଗୁଥିଲି । କିଞ୍ଚିତ୍ ହେଲେ ମଧ୍ୟ ଦୁହିଁଙ୍କ ଠାରୁ ସାହାଯ୍ୟ ପାଇଥିଲି ।

ଇତି ମଧ୍ୟରେ ଘଟଣାକ୍ରମେ ମୋର ବିବାହ ଅନୁଷ୍ଠିତ ହେଲା ୧୬ ଏପ୍ରିଲ୍ ୧୯୬୨ରେ । ଭୋଳାନାଥ ଏ ସଂପର୍କରେ ସବିଶେଷ ଅବଗତି ଥିଲେ । ସେ ବରଯାତ୍ରୀ ମେଳରେ ଆସିଥିଲେ କି ନାହିଁ, ମୁଁ ଦେଖି ପାରି ନଥିଲି । ବୋଧହୁଏ ଆସିପାରି ନଥିବାରୁ ସେ ବିବାହ ପରଦିନ ମୋତେ ଭେଟିବାକୁ ଆସି ଶ୍ୱଶୁରଙ୍କର ମହମ୍ମଦିୟା ବଜାର ଛକମୁଣ୍ଡ ଘରେ ପହଞ୍ଚିଲେ । ଖାଲି ପହଞ୍ଚିଲେ ବୋଲି ନୁହେଁ, ମୋତେ ଏକ ବଡ଼ ଚିନ୍ତା ସଂକଟରୁ ମୁକ୍ତ କଲେ ବୋଲି ସେ ଘଟଣା ଏବେ ବି ଜୀବନ୍ତ ଅଛି ମୋ ମାନସ ପଟରେ । ଆଜି ଭଳି ସେତେବେଳେବି ବାହାର ଜଗତ ସଂପର୍କରେ ମୋର ଧାରଣା ନଦାରଦ ଥିଲା । କାରଣ ବ୍ୟକ୍ତିଗତ ସାଂସାରିକ ଜୀବନର ଦୁର୍ଭାର ବହନ କରି ମୋତେ ଏକାକୀ ପଥ ଅତିକ୍ରମ କରିବାକୁ ହେଉଥିଲା । ପ୍ରସଙ୍ଗଟି ଥିଲା କନ୍ୟାକୁ ସାଙ୍ଗରେ ଧରି ତା ପରଦିନ ଗାଁକୁ ଯିବା, ଯେଉଁଥିପାଇଁ ଶ୍ୱଶୁର ଘରେ ସେଭଳି କିଛି ଆୟୋଜନ ମୁଁ ଲକ୍ଷ୍ୟ କରୁନଥିଲି । ସମସ୍ୟାଟି ଶୁଣିବା ମାତ୍ରେ ଅଭୟ ଦେଲେ ଭୋଳାନାଥ, "ମୁଁ କାଲି ଦିନ ୮.୩୦ସୁଦ୍ଧା ଟ୍ୟାକ୍ସି ଆଣି ପହଞ୍ଚିବି, ନିଶ୍ଚିନ୍ତ ରହ ।"

ତାହାହିଁ କରିଥିଲେ ସେ । ସେ ତତ୍‌କାଳୀନ ତତ୍ପରତା ସଂପର୍କ ସହାୟତା ମୋ ପାଇଁ କେତେ ଯେ ମହାର୍ଘ ଥିଲା, ଆଜି ଚିନ୍ତା କରି ହେବନାହିଁ । ଷ୍ଟେଟ୍‌ରୋଡ ଟ୍ରାନ୍‌ସପୋର୍ଟର ଟ୍ୟାକ୍ସି, ମାତ୍ର ଟ୮୦-ମୂଲ୍ୟରେ ପାଇ ମୁଁ ଦିନ ୧୨ଟା ସୁଦ୍ଧା ଗାଆଁ ଘରେ ନିର୍ବିଘ୍ନରେ ସପତ୍ନୀକ ପ୍ରବେଶ କରି ପାରିଥିଲି ତାଙ୍କରି ଯୋଗେ ।

ଏଥି ମଧ୍ୟରେ ଭୋଳାନାଥ ନିଜ ଉଦ୍ୟମରେ ଆରମ୍ଭ କରି ଥାଆନ୍ତି 'ଅଭ୍ୟୁଦୟ ସାହିତ୍ୟ ସମାଜ' । ଅଧିବେଶନମାନଙ୍କୁ ଗପ କବିତା ଯାହା ହେଲେ ନେଇ ହାଜର ଦେବାକୁ ସନିର୍ବନ୍ଧ ନିର୍ଦ୍ଦେଶ ଥାଏ ବନ୍ଧୁଙ୍କର । ଅଳ୍ପ କେତେକ ଅଧିବେଶନ ପରେ ଆମର ମାନନୀୟ ଅଧ୍ୟାପକ ପଠାଣି ପଟ୍ଟନାୟକଙ୍କ ସଭାପତିତ୍ୱ ଓ ଭୋଳାନାଥଙ୍କ ସାଂପାଦକତ୍ୱରେ ବିଧିବଦ୍ଧ ଭାବରେ ଅନୁଷ୍ଠାନଟି ସଂଗଠିତ ହେଲା । ୧୯୬୨ରେ 'ଅଭ୍ୟୁଦୟ ସାହିତ୍ୟ ସମାଜ' ପ୍ରକାଶ କଲା 'ସାହିତ୍ୟରେ ରହସ୍ୟବାଦ' ଶୀର୍ଷକ କ୍ଷୁଦ୍ରାବୟବର ଗ୍ରନ୍ଥଟିଏ । ଲେଖା ଯୋଗାଡ଼ କରିଥିଲେ ଭୋଳାନାଥ ଛପେଇ, ବନ୍ଧେଇ ସବୁ କିଛିରେ ଥିଲା ତାଙ୍କର ପ୍ରତ୍ୟକ୍ଷ ସଂପର୍କ ଓ ଯୋଗାଯୋଗ । ସେଥିରେ ମୁଁ ତାଙ୍କୁ କିଛି ଆନ୍ତରିକ ସହଯୋଗ ଦେଇଥିବାରୁ ସେ ମୋତେ ସହ ସଂପାଦକ କରିଦେଲେ । ଅନୁଷ୍ଠାନ ପକ୍ଷରୁ 'ମେହେର ଆଲୋକ' ଶୀର୍ଷକ ପୁସ୍ତକ ପ୍ରକାଶ ପାଇବା ସଙ୍ଗେ ସଙ୍ଗେ ଏହାର ଉଦ୍‌ଘାଟନୀ ଉତ୍ସବ କଟକ ଶ୍ରୀରାମଚନ୍ଦ୍ର ଭବନରେ ଡକ୍ଟର ମହତାବଙ୍କ ହସ୍ତରେ ଘଟାଇଲେ ଏକାଏକା ଏଇ ଭୋଳାନାଥ । ସେଥିରେ ମୋର ସହଯୋଗ ତାଙ୍କର ମନଃପୁତ ହେବାରୁ ପରବର୍ତ୍ତୀ ଅଧିବେଶନରେ ମୋତେ ସଂପାଦକ କରାଇଲେ ସେ । ସେ ଅନୁଷ୍ଠାନର ଅବଧି ବିଧିବଦ୍ଧ ବିଲୟ ଘଟି ନଥିବାରୁ ଏବେ ମଧ୍ୟ ପଠାଣି ସାର୍ ଓ ମୁଁ ଯଥାକ୍ରମେ ସଭାପତି ଓ ସଂପାଦକ ରହିଛୁ ।

ସେ ଯାହାହେଉ ସାର୍‌ଙ୍କ ପରାମର୍ଶ ଓ ନିର୍ଦ୍ଦେଶ କ୍ରମେ ଆମେ ଲାଗିଲୁ ଏକ ବୃହତ୍ତର ଉଦ୍ୟମରେ । ପରିକଳ୍ପନାଟି ହେଲା 'ଓଡ଼ିଆ ଉପନ୍ୟାସ ପରିଚୟ' । ଉଦ୍ଦେଶ୍ୟ ଥିଲା, ଏପରି ଗ୍ରନ୍ଥଟିଏ ପ୍ରସ୍ତୁତ କରିବା , ଯେଉଁଥିରୁ ପାଠକେ ଔପନ୍ୟାସିକ ତଥା ତାଙ୍କର ପ୍ରତ୍ୟେକଟି ଉପନ୍ୟାସର ସ୍ଥୂଳ ପରିଚୟ ପାଇପାରିବେ । ବସ୍ତୁତଃ ତାହା ଆଂଶିକ ସଫଳ ହୋଇଥିବା ଏବେ ମଧ୍ୟ ଓଡ଼ିଆ ବୁକ୍‌ଷ୍ଟୋରରେ ଥିବା ଗ୍ରନ୍ଥରୁ ପ୍ରତିପନ୍ନ ହୋଇ ପାରିବ । ଏହା ଆଦୌ ସହଜସାଧ୍ୟ ଉଦ୍ୟମ ନଥିଲା । ଭୋଳାନାଥ ମୁଁ ଏଥିପାଇଁ ଗଳଦ୍‌ଘର୍ମ ହୋଇ ଲାଗି ପଡ଼ିଥିଲୁ । ପ୍ରାୟ ପ୍ରତିଦିନ ୨/୪ଖଣ୍ଡ କାର୍ଡ ଚିଠି ଲେଖକମାନଙ୍କୁ ଶୀଘ୍ର ଲେଖା ପଠାଇବାକୁ ଅନୁରୋଧ ଅନୁନୟ ବିନୟ ଓ ଅଭିମାନ ପ୍ରକାଶ ପୂର୍ବକ ଲେଖିବାକୁ ହୋଇଥିଲା ମୋତେ । ସେଥିରେ ଏକାଧିକ ପ୍ରାସଙ୍ଗିକ ଲେଖା ଅଛି ମୋର ଓ ପଠାଣି ସାର୍‌ଙ୍କର । ଅବଶେଷରେ ଦୀର୍ଘ ପାଞ୍ଚ/

ଛଅ ବର୍ଷର ଉଦ୍ୟମ ଫଳବତୀ ହେଲା । ବହିଟି ପ୍ରକାଶନର ସମସ୍ତ ଶ୍ରେୟ ଯେ ଭୋଳାନାଥଙ୍କର, ଏହା ପ୍ରକାଶ କରିବାରେ ମୋର ସାମାନ୍ୟତମ ଦ୍ୱିଧାବୋଧ ନାହିଁ । 'ଅଭ୍ୟୁଦୟ ସାହିତ୍ୟ ସମାଜ'ର ସମସ୍ତ ସଭ୍ୟଙ୍କର ଫଟୋସହ ମୋର ସୂଚନା ଭୋଳାନାଥଙ୍କର ଆତ୍ମକଥନ ଓ ପଠାଣିସାରଙ୍କ ଉପନ୍ୟାସ ସାହିତ୍ୟର ଏକ ଦୀର୍ଘ ଉପାଦେୟ ଅଗ୍ରଲେଖ ସମ୍ବନ୍ଧୀୟ ଗ୍ରନ୍ଥାବଳୀ ସଂକାଶ ଗ୍ରନ୍ଥଟି 'ଓଡ଼ିଆ ଉପନ୍ୟାସ ପରିଚୟ ୧୯୭୦ ସୁଦ୍ଧା ଆମ୍ଭ ପ୍ରକାଶ କଲୁ । ଏ ସଂପର୍କୀୟ ସର୍ବପ୍ରଥମ ଆଲୋଚନା ଗ୍ରନ୍ଥ ଭାବରେ । ମୁଁ ସେତେବେଳକୁ ଯାଜପୁର ଏନ.ସି କଲେଜରୁ ରେଭେନ୍ସା ସାନ୍ଧ୍ୟ କଲେଜକୁ ସ୍ଥାନାନ୍ତରିତ ହୋଇଥାଏ । ମୁଁ ରେଭେନ୍ସା ସାନ୍ଧ୍ୟ କଲେଜରେ ଯୋଗଦେବା ବେଳକୁ ଭୋଳାନାଥ ସଦ୍ୟ ପ୍ରତିଷ୍ଠିତ ଜଗତସିଂହପୁର କଲେଜର ଓଡ଼ିଆ ବିଭାଗରେ ଅଧ୍ୟାପକ ହୋଇଥିଲେ ଏବଂ ମୋତେ 'କଳା ପାଇଁ କଳା' ଶୀର୍ଷକ ଆଲୋଚନା ଚକ୍ରରେ ବକ୍ତା ଭାବରେ ଲୋଡ଼ିଥିଲେ ତାଙ୍କ କଲେଜକୁ । ଆମର ପତ୍ରାଳାପ ଥିଲା ସାମୟିକ ।

ଅବଶ୍ୟ 'ଅଭ୍ୟୁଦୟ ସାହିତ୍ୟ ସମାଜ' ପାଇଁ ତାଙ୍କର ଅନ୍ୟ ଯେତେ ସବୁ ପରିକଳ୍ପନା ଥିଲା ତା'କୁ ସାକାର କରିବା କାର୍ଯ୍ୟ ସମ୍ଭବ ହୋଇ ପାରିଲା ନାହିଁ ଶେଷ ପର୍ଯ୍ୟନ୍ତ । ଅଧିବେଶନ ଲାଗି ଦିନବାର ସମୟ ସ୍ଥାନ ବାରମ୍ବାର ସ୍ଥିର କରି କରି ଆମେ ତିନିଜଣ (ପଠାଣି ସାର୍ ଭୋଳାନାଥ ଓ ମୁଁ) ଶେଷରେ ନିରସ୍ତ ରହିବାକୁ ବାଧ୍ୟ ହେଲୁ । ଏକେ ସ୍ଥାନାନ୍ତର ଯୋଗୁ ସଂସ୍ଥାନଗତ ନୈକଟ୍ୟ ରହିଲା ନାହିଁ, ଦୁଜେ ସାଂସାରିକ ତଥା ବୃତିଗତ ଦାୟ ଓ ଦାୟିତ୍ୱ ଥିଲା କ୍ରମବର୍ଦ୍ଧିଷ୍ୟମାଣ । ଏହି ସଂଗ୍ରାମଶୀଳ ଜୀବନରେ ତାଙ୍କର ମୋର ଦେଖା-ସାକ୍ଷାତ ସମ୍ଭବପର ନଥିଲେ ହେଁ ଆମେ ପରସ୍ପରର ଠାବ ରଖିଥିଲୁ । ସେ ଜଗତସିଂହପୁର କଲେଜ ପ୍ରଶାସନ ସହ ଜଡ଼ିତ ହେବା ସହିତ ପ୍ରଖ୍ୟାତ ଶିକ୍ଷାବିତ୍ ଅଧ୍ୟାପକ ଅବନୀ ବରାଳଙ୍କର ଦୃଢ଼ ସହଯୋଗୀ ସମର୍ଥକ ଓ ସହଚର ହୋଇ ଶିକ୍ଷକ ଅଧ୍ୟାପକ ଆନ୍ଦୋଳନରେ ଅନ୍ୟତମ ପ୍ରମୁଖ ଭୂମିକା ନିର୍ବାହ କରୁଥିଲେ ଏବଂ ବେଳେବେଳେ ପତ୍ର ପତ୍ରିକାରେ ତାଙ୍କର ପ୍ରବନ୍ଧ - ଗଳ୍ପ- ଏକାଙ୍କିକା- ପ୍ରକାଶ ପାଉଥିବାରୁ ସେ କାର୍ଯ୍ୟବ୍ୟାପୃତି ମଧ୍ୟରେ ଲେଖନୀ ଗ୍ଚାଳନା କରୁଥିବା ଇତ୍ୟାଦି ସମ୍ବାଦ ମୋର ଅଗୋଚର ନଥିଲା ।

ସମୟ ଓ ଘଟଣା-ସ୍ରୋତରେ ଭାସିଭାସି ମୁଁ ଶ୍ରୀକ୍ଷେତ୍ରରୁ ଆସି ଏକାମ୍ରକ୍ଷେତ୍ରରେ ଲାଗିଥାଏ । ବି.ଜେ.ବି ଫ୍ଲାଟ୍ ଡି/୭୦ରେ ବସାବାନ୍ଧି ରହିଥାଏ । ଦିନେ ଭୋଳାନାଥ ସସ୍ତ୍ରୀକ ଆସି ମୋର ଅତିଥି ହେଲେ । ତାଙ୍କର ଓ ତାଙ୍କ ପତ୍ନୀଙ୍କର ଶାରୀରିକ ଅସୁସ୍ଥତା ହେତୁକ ଚିକିତ୍ସା ଥିଲା ଜରୁରି । ମୁଁ ଓ ମୋ ପରିବାର ଯଥାସାଧ୍ୟ ତାଙ୍କର ଆପ୍ୟାୟନ କରିଥିଲୁ ।

ଅନୁଭୂତି- ଅଭିଜ୍ଞତାକୁ ବାଣ୍ଟିଥିଲୁ ଦୁହେଁ । ପରେ ମୋର ରାଉରକେଲା ସ୍ଥାନାନ୍ତର ଓ ସେଠାରେ ଅବସ୍ଥାପନ କାଳରେ ମୁଁ ଜାଣିଲି, ସେ ହେଉଛନ୍ତି ତିର୍ତ୍ତୋଲ ଆଦିକବି ସାରଳା ଦାସ ମହାବିଦ୍ୟାଳୟର ଅଧ୍ୟକ୍ଷ । ଜଗତସିଂହପୁର ଦୁର୍ଗାବଜାରରେ ଘର କରି ରହୁଛନ୍ତି । ବାସ୍ ଏତିକି.... ୧୯୯୬ରେ ମୁଁ 'ରମାଦେବୀ'ରୁ ଅବସର ନେବା ପରେ ଭୁବନେଶ୍ୱର ବମିଖାଲ ଅଞ୍ଚଳସ୍ଥ ଏକ ନବବସତି ଜୟଦୁର୍ଗାନଗରରେ ଘରଟିଏ କରି ଫୋନ୍ ବ୍ୟବହାର କରି ସୁବ୍ୟବସ୍ଥିତ ହେବାପରେ ଆମର ଦୂରଭାଷ ଯୋଗେ ସମ୍ପର୍କ -ସୂତ୍ର ପୂର୍ବ ନିବିଡ଼ତା ଫେରି ଆସିଥିଲା । ଏହାଛଡ଼ା ସେ ଓ ମୁଁ କାର୍ଯ୍ୟନିବନ୍ଧନ ଉଭୟଙ୍କ ଘରେ ସମୟବିଶେଷରେ ଏକତ୍ର ଭେଟିବାକୁ ଲାଗିଲୁ ।

ଏହାପରେ ମୋ'ଠାରେ ତାଙ୍କର ଜବରଦସ୍ତ ଦାବି ସେ ପ୍ରକାଶ କଲେ । ଏ ଦାବି ଅନ୍ୟ କିଛି ନୁହେଁ, କେବଳ ଥିଲା ଲେଖାପାଇଁ । ହଠାତ୍ ଗୋଟାଏ ଶୀର୍ଷକ ସ୍ଥିର କରି ସେ କହିବେ ନିଶ୍ଚୟ ଲେଖି ପଠାଇବା ପାଇଁ । ମୁଁ ପ୍ରଥମେ ପ୍ରବଳ ପ୍ରତିବାଦ କରିବି; (କାରଣ ଏକ ନିର୍ଦ୍ଦିଷ୍ଟ ମନଃସ୍ଥିତିରୁ ଅନ୍ୟଗୋଟିକୁ ଲଂଫଦେବା ଯେ ସୁସାଧ୍ୟ ନୁହେଁ, ଏହା ଯେ କେହି ଲେଖକ ଅବଶ୍ୟ ସ୍ୱୀକାର କରିବେ ) । ଭୋଳାନାଥ କିନ୍ତୁ ଛାଡ଼ିବା ଲୋକ ନୁହଁନ୍ତି । କିଛି କିଛି ଦିନ ବ୍ୟବଧାନରେ ଘନଘନ ଫୋନ୍ 'କ'ଣ ଲେଖା ସରିଲା ? ଜଲ୍‌ଦି ପଠାଅ ନହେଲେ ପତ୍ରିକା କାମ ଅଟକିଲା । କିଛି ଗୋଟାଏ ଅସାଡ଼ ପରିସ୍ଥିତି ଘଟିବାକୁ ଯାଉଛି,' ଏମିତି କେତେ କ'ଣ ପେଖନା ଥିବ ସେ ଅନୁରୋଧ ନୁହେଁ ଅନୁଯୋଗରେ । ମୁଁ ମନେମନେ କେବଳ ଖୁସି ହୁଏନାହିଁ, ତାଙ୍କର ଏହି ଉଚ୍ଛୁଡ଼ା ପଣରେ ଭାରି ଆମୋଦିତ ହୁଏ, ଫୋନ୍‌ରେ କେତେ କ'ଣ ପରିହାସ ଜଣାଏ । ସମସ୍ତ (୧୯୯୮ ଓ ତା'ର ପରବର୍ତ୍ତୀ) ଭବ୍ୟ ପତ୍ରିକାଗୁଡ଼ିକରେ ମୋର ଯେତେ ସବୁ ଲେଖା ପ୍ରକାଶ ପାଉଛି, ସେଗୁଡ଼ିକର ପୃଷ୍ଠଭୂମିରେ ରହିଛି ଉଭୟ ବନ୍ଧୁଙ୍କର ପରିହାସ- ପ୍ରତିବାଦ- ଅନୁଯୋଗର ବ୍ୟଙ୍ଗ-ଭାଷଣ ସମ୍ବଳିତ ବାଗ୍‌ବିଳାସ । ସେ ଜାଣିଥିଲେ , ଯେତେ ଯାହା ହେଲେ ବି ମୁଁ ତାଙ୍କ ପାଇଁ ଲେଖିବି ଓ ତାଙ୍କ ମନକୁ ପାଇଲା ଭଳି ଲେଖିବି, ମୁଁ ଜାଣିଥିଲି ତାଙ୍କର ବରାଦ ମୋର ଅବଶ୍ୟ ମେଣ୍ଟଣୀୟ କର୍ତ୍ତବ୍ୟ । ବେଳେବେଳେ ଭାବେ ଏହି ବନ୍ଧୁ କେତେ ଦୁଷ୍ପ୍ରାପ୍ୟ ସତେ !

ଯେଉଁ ଦିନ ବୋଧହୁଏ ୨୦୦୪ ହେବ । ସେ ଫୋନ୍ ଯୋଗେ ଜଗତସିଂହପୁର ସଂପର୍କିତ ବିଭିନ୍ନ ଦୃଷ୍ଟିରୁ ଏକ ପ୍ରାମାଣିକ ତଥ୍ୟ ସମ୍ବଳିତ ଗ୍ରନ୍ଥ ରଚନାର ପରିକଳ୍ପନା ମୋତେ ଜଣାଇଲେ । ମୁଁ ପ୍ରଥମେ ହଡ଼ବଡ଼େଇ ଗଲି । ଏତେ ବିରାଟ ଯୋଜନା ସାଙ୍ଗୋପାଙ୍ଗ ସମାହିତ ହୋଇପାରିବ ତ ! ପର ମୁହୂର୍ତ୍ତରେ ଭୋଳାନାଥଙ୍କର ଅତୀତରେ ମୋର ଗ୍ରନ୍ଥକ ଅଦମ୍ୟଶୀଳତା

ବିଷୟ ମନକୁ ଆସିବାରୁ ପ୍ରତ୍ୟୟ ଆସିଲା, ସଙ୍ଗେ ସଙ୍ଗେ ସହଯୋଗର ହାତ ବଢାଇଦେଲି । ବରାଦ ହେଲା,"ଜଗତସିଂହପୁର ଆସ, କ୍ଷେତ୍ରାଧ୍ୟୟନରେ ଯିବ, ରହିବା ଖାଇବାର ସବୁ ବନ୍ଦୋବସ୍ତ କରାଯାଇଛି, ଦିନ ନିର୍ଦ୍ଦିଷ୍ଟ ଥିବାରୁ ମୋର ତାଙ୍କ ଦୁର୍ଗା ବଜାରସ୍ଥ ଗୃହରେ ଯଥା ସମୟରେ ଉପସ୍ଥିତ ହେବାରେ ବିଳମ୍ବ ଘଟି ନଥିଲା । ଅନ୍ୟ ସହଯୋଗୀ ବନ୍ଧୁ କେହି ନପହଞ୍ଚି ଥିଲେ ବି ସଙ୍ଗେ ସଙ୍ଗେ ତାଙ୍କର ଜାମାତା ସୌଜନ୍ୟ ସ୍ନିଗଧ ଅଧ୍ୟାପକ ନିରଞ୍ଜନ ବିଶ୍ୱାଳ ମୋତେ ତାଙ୍କ ସ୍କୁଟର ଯୋଗେ ଘେନିଗଲେ ଏକ ଦେବୀ (ଶାକ୍ତପୀଠ) ମନ୍ଦିରକୁ । କିଛି ତଥ୍ୟ ସଂଗୃହୀତ ହେଲା । ଉତ୍ତୀର୍ଣ୍ଣ ମଧ୍ୟାହ୍ନରେ ଫେରି ତାଙ୍କ ଘରେ ମଧ୍ୟାହ୍ନ ଭୋଜନ ଅନ୍ତେ ପାଖଆଖ କେତେକ ମନ୍ଦିର ଚତ୍ୱର ପରିକ୍ରମା ପୂର୍ବକ ଫେରିବାକୁ ହେଲା ସର୍କିଟ୍‌ହାଉସ୍‌କୁ । ଆହାର ଆପ୍ୟାୟନ କାଳରେ କାର୍ଯ୍ୟକ୍ରମ ଜଣାଇ ଦେଲେ ଭୋଳାନାଥ । କାର୍ ବାହିତ ହୋଇ ଦିନ ୮ଟାରୁ ଆମକୁ ଜିଲ୍ଲା ପରିକ୍ରମା କରିବାକୁ ହେବ । ପରଦିନ ନିର୍ଦ୍ଧାରିତ ସମୟରେ ବିପୁଳ ଇଡ଼ଲି ଆଦି ଜଳଯୋଗ (ରେସ୍ତୋରାଁରେ) ପରେ ଚାଲିଲା ଆମର ନିରବଚ୍ଛିନ୍ନ ଯାତ୍ରା । ସାଙ୍ଗରେ ବରାବର ଥାଆନ୍ତି ସେ । ମୁଁ ନୋଟ୍ କରି ଚାଲିଥାଏ । ସଂଗୃହୀତ ସନ୍ଦର୍ଶିତ ତଥ୍ୟ, କିଂବଦନ୍ତୀ ଓ ଦୃଶ୍ୟବଳିର ବିବରଣୀ ସବୁ । ବାଟରେ କେତେ ମଠ, କେତେ ମନ୍ଦିର, କେତେ ମନୋରମ ଜନପଦ ଯେ ଆମେ ଅତିକ୍ରମ କଲୁ, କହିବାର ନାହିଁ । ମୁଁ ପ୍ରାୟ ଅଭିଭୂତ ଅବସ୍ଥାରେ ଥାଏ । ଆମ ଜଗତସିଂହପୁର ଗୌରବମୟ ଅତୀତ ଏତେ ବିପୁଳ- ବିଚିତ୍ର - ପ୍ରକ୍ଷିପ୍ତ ଥିବ । ପ୍ରତ୍ୟକ୍ଷ କରିବାର ମହାର୍ଘ ସୁଯୋଗ ମୋତେ ପ୍ରାପ୍ତ ହୋଇଥିଲା ତାଙ୍କରି ଯୋଗେ । କେଉଁ କେଉଁ କିସମର ମଠରେ ଆମକୁ ମଧ୍ୟାହ୍ନ ଭୋଜନ ଯୋଗାଇ ଚାଲିଥିଲେ ସେ, ମୁଁ ବିସ୍ମିତ ହେଉଥିଲି ତାଙ୍କ ଆୟୋଜନ- ନିୟୋଜନ ଦେଖି । ଜଗତସିଂହପୁର ଉତ୍ତର ଦକ୍ଷିଣ, ପୂର୍ବ ପଶ୍ଚିମ ସୀମାନ୍ତ ପର୍ଯ୍ୟନ୍ତ ଦୁଇଦିନ ଧରି ବୁଲାଇ ଆଣିଲେ ସେ । ଯାହା ନୋଟ୍ ଧରି ପ୍ରତ୍ୟକ୍ଷ ଅବଧାରଣାକୁ ମନରେ ଗଣ୍ଠିଲି କରି ଫେରିବା ପରେ ଲେଖା ଆରମ୍ଭ କଲୁ । ମୁଁ ଲେଖିଲି 'ତନ୍ତ୍ର ପରଂପରା ଓ ଜଗତସିଂହପୁର ଜନପଦ' । ପ୍ରବନ୍ଧଟି ପଠାଇ ଦେଲି ପ୍ରାୟ ୧୫ ଦିନପରେ ଭୋଳାନାଥ ଫୋନ୍ କଲେ, କ'ଣ ଏତିକି ଲେଖିଦେଇ ବସିଗଲ ? ଅଗତ୍ୟା ପୁଣି ଲାଗିଲି ଅଧ୍ୟୟନାନ୍ତ ଲିଖନରେ । ପ୍ରବନ୍ଧଟି ତାଙ୍କର ମନଃପୂତ ହୋଇଥିବା ବିଷୟ ଜଣାଇ ପୁଣି ବରାଦ, "ଜଗତସିଂହପୁରର ରବୀନ୍ଦ୍ରନାଥ" ଲେଖା ଲେଖିବାକୁ ହେବ । ସ୍ଥାନୀୟ ବିବେକାନନ୍ଦ ଲାଇବ୍ରେରୀରେ ସଂରକ୍ଷିତ ରବୀନ୍ଦ୍ର ରଚନାବଳି ଘାଣ୍ଟି ଇପ୍‌ସିତ ପ୍ରସଙ୍ଗର ସନ୍ଧାନ କଲି । ପ୍ରବନ୍ଧଟି ପ୍ରକାଶ ପାଇଲା ୨ୟ ଖଣ୍ଡ ଗ୍ରନ୍ଥରେ ।

'ଜଗତସିଂହପୁର ଅତୀତ ଓ ବର୍ତ୍ତମାନ' ବିପୁଳକାୟ ଗ୍ରନ୍ଥ । ତୃତୀୟର ସଂପ୍ରତି ପ୍ରକାଶମାନ ସ୍ୱରୂପ ଦେଖିଲେ (ନ ପଢି କେବଳ ସୂଚୀପତ୍ର ଅନୁଧ୍ୟାନ କଲେ) ଯେ କେହି

ଡକ୍ଟର ଭୋଳାନାଥ ରାଉତଙ୍କର ସଂକଳକୀୟ ଶକ୍ତି- ବୁଦ୍ଧି- ଶ୍ରମର କଳନା କଲେ ଅବଶ୍ୟ ବିସ୍ମିତ ହେବ, ଏହା ଦ୍ୱିଧାରହିତ । ଏହା କେବଳ ଜଗତସିଂହପୁର ନୁହେଁ ସମଗ୍ର ରାଜ୍ୟର ଯେ ଏକ ସର୍ବକାଳୀନ ତଥ୍ୟ ସମ୍ଭାର ସମୃଦ୍ଧି ସାରସ୍ୱତ ସଦୁଦ୍ୟମ ଏହା ମୁକ୍ତ କଣ୍ଠରେ ସ୍ୱୀକାର କରିବାକୁ ହୁଏ । ସେଥିପାଇଁ ମୋର ଏ ପ୍ରିୟ ବନ୍ଧୁଦର୍ଶନ ତାଙ୍କ ଉପାଦେୟ ଦୀର୍ଘ ମୁଖବନ୍ଧ (ଜ.ଅ.ବ ୧ମ ଖଣ୍ଡ)ରେ ଯେଉଁ ତନ-ମନ-ଧନ କ୍ଷୟକାରୀ ପ୍ରବଣତାକୁ ତାଙ୍କ ପରିବାର ସଦସ୍ୟଗଣ ସହିନେଇଥିବା କଥା କହିଛନ୍ତି, ତାହା କେବଳ କଥାର କଥା ନହୋଇ ବାସ୍ତବ ପ୍ରତିଫଳନରେ ଘଟିଛି । ଏହା ମୁଁ ସେତିକିବେଳେ ଅନୁଭବରେ ଆଣିଛି ଯେତେବେଳେ ଗଭୀର ବିମର୍ଷତାର ସହ ଲକ୍ଷ୍ୟ କରିଛି ବନ୍ଧୁଙ୍କର ରୋଗ ଜର୍ଜର ଅବସ୍ଥାକୁ ।

ଲକ୍ଷ୍ୟ କରିବାର ବିଷୟ ହେଉଛି, ଭୋଳାନାଥ କେବଳ ମାତ୍ର ବିଭିନ୍ନ କୃତବିଦ୍ୟବ୍ୟକ୍ତିଙ୍କ ଠାରୁ ଲେଖା ସଂଗ୍ରହ କରି ନାହାଁନ୍ତି, ଯେଉଁ ଯେଉଁ ସ୍ଥଳରେ ତାଙ୍କର ପରିକଳ୍ପିତ ବିଷୟ ସଂକ୍ରାନ୍ତୀୟ ଲେଖା ମିଳିନାହିଁ ସେ କ୍ଷେତ୍ରରେ ସେ ନିଜେ ଲେଖନୀ ଗ୍ଳନା କରି ୧ମ ଖଣ୍ଡରେ ୪ଟି ଓ ୨ୟ ଖଣ୍ଡରେ ୩ଟି, ତୃତୀୟ ଖଣ୍ଡରେ ଅବଶିଷ୍ଟ କେତେକ ତଥ୍ୟସମ୍ବଳିତ ଲେଖା ପ୍ରକାଶ କରିଛନ୍ତି ।ବ୍ୟାପକ ତଥା ବିବିଧ ପ୍ରେକ୍ଷାପଟରୁ ଏକ ଭୂମ୍ୟାଞ୍ଚଳକୁ ସୂଚିହ୍ନିତ କରିବା ଓ ସମଗ୍ର ଓଡ଼ିଶାରେ ତାଙ୍କର ସର୍ବପ୍ରଥମ ଅନବଦ୍ୟ ଉଦ୍ୟମ ଅନ୍ୟ ଜିଲ୍ଲାପାଇଁ ଆହ୍ୱାନ ସୃଷ୍ଟି କରିଛି । ଗ୍ରନ୍ଥଟିରେ ସେ ସଂଯୋଜନ କରିଥିବା ସାରଳାଦାସଙ୍କ ଚିତ୍ର-ପ୍ରତିମା ସେ କେଉଁ ସୂତ୍ରରୁ ଆହରଣ କରିଛନ୍ତି ଜଣାଇ ନଥିଲେ ବି ଓଡ଼ିଆ ଜାତି ସମ୍ମୁଖରେ ତା'ର ଆଦି ସାରସ୍ୱତ ପୁରୁଷର ଏକ ସ୍ୱରୂପ ଉପସ୍ଥାପନ କରିଥିବାରୁ ଧନ୍ୟବାଦର ପାତ୍ର ।

ମୋ ଦୃଷ୍ଟିରେ ଭୋଳାନାଥଙ୍କର ସାରସ୍ୱତ ଉଦ୍ୟମଶୀଳତା ଯଥାର୍ଥରେ ଅନନ୍ୟସାଧାରଣ । ଗୋଟିକ ପରେ ଗୋଟିଏ କରି କେତେ ଯେ ପରିକଳ୍ପନା ତାଙ୍କର ମାପି ପାରେ ନାହିଁ ମୁଁ । ବାରମ୍ବାର ଶୁଣି ଆସିଥିଲି ତାଙ୍କଠାରୁ ସେ ତାଙ୍କର ସମସ୍ତ ସମୟ ଓ ଶ୍ରମ ଏଭଳି ମାତ୍ରାଧିକ ବିନିଦ୍ର ଶ୍ରମଘର୍ମ ସଂକୁଳ କୃଚ୍ଛ୍ରସାଧନାର ଭାର ସମ୍ଭାଳି ପାରିନାହାଁନ୍ତି । ଅନେକ ଅନେକ କିଛି କରିବାକୁ ବାକି ପଡ଼ିଛି । ସଂପ୍ରତି ସେ ବ୍ୟାଧିସହ ସଂଗ୍ରାମରତ ଅଛନ୍ତି ବୋଲି ଶୁଣି ଆସୁଛି । ତାଙ୍କୁ ଦେଖିବାକୁ ଇଚ୍ଛା ପ୍ରବଳ; ମାତ୍ର ବୟୋବୃଦ୍ଧି ଜନିତ ଦୁର୍ବଳତା ହେତୁକ ସାମର୍ଥ୍ୟ ଜୁଟାଇ ପାରିନାହିଁ ।

ତଥାପି, ହେ ମୋର ପ୍ରିୟ ସୁହୃଦ, ତୁମେ ଯେଉଁଠାରେ ଯେଉଁ ଅବସ୍ଥାରେ ଥାଅ ନା କାହିଁକି, ମୋର ସ୍ମୃତି-ସତେଜ ମନଶ୍ଚକ୍ଷୁ ତୁମ ଚତୁପାର୍ଶ୍ୱ ଅବଶ୍ୟ ପରିକ୍ରମା କରୁଥିବ । ■

୧୯ସି 'କୈବଲ୍ୟ'

ଜୟଦୁର୍ଗା ନଗର, ଭୁବନେଶ୍ୱର

# ସାରସ୍ୱତ ସାଧକ, ଜଗତସିଂହପୁର ଐତିହାସିକ, ଭୋଳାନାଥ

ଡକ୍ଟର ବିଭୂତି ପଟ୍ଟନାୟକ

ଭୋଳାନାଥ ମୋ ଠାରୁ ବୟସରେ ଦୁଇବର୍ଷ ସାନ; ଏଇ ଗୋଟିଏ ଅମେଳ ବ୍ୟତୀତ ଆମ ଦୁହିଁଙ୍କ ମଧ୍ୟରେ ମେଳ ଅନେକ । ଆମେ ଦୁହେଁ ଜଗତସିଂହପୁର ଲୋକ, ମୁଁ କଟକ ଖ୍ରୀଷ୍ଟ କଲେଜରୁ ବି.ଏ. ପାସ୍‌କରି ରେଭେନ୍‌ସାରେ ଏମ୍.ଏ. ପଢିଥିଲି । ଭୋଳାନାଥ ମଧ୍ୟ ଖ୍ରୀଷ୍ଟ କଲେଜରୁ ସ୍ନାତକ ହୋଇ ରେଭେନ୍‌ସା କଲେଜରେ ସ୍ନାତକୋତ୍ତର ଡିଗ୍ରୀ ହାସଲ କରିଥିଲେ । ଆମେ ଦୁଇଜଣ ପରବର୍ତ୍ତୀ କାଳରେ ଓଡ଼ିଆ ଭାଷା ସାହିତ୍ୟ ଅଧ୍ୟାପନାକୁ ଜୀବନର ବୃତ୍ତିଭାବରେ ଗ୍ରହଣ କରିଥିଲୁ । ମୁଁ ଏକ ଶ୍ରେଣୀହୀନ, ଶୋଷଣହୀନ ସାମ୍ୟବାଦୀ ସମାଜ ଗଠନ ପାଇଁ ସମାଜବାଦୀ ଆନ୍ଦୋଳନରେ ଯୋଗ ଦେଇଥିଲି । ଦିନେ ଭୋଳାନାଥ ଘରୋଇ କଲେଜର ଅଧ୍ୟାପକ, ଅଧ୍ୟାପିକାମାନଙ୍କୁ ସରକାରୀ କଲେଜ ଶିକ୍ଷକମାନଙ୍କ ସହିତ ସମାନ ସୁଯୋଗ ଓ ସମ୍ମାନ ଦେବାପାଇଁ ଶିକ୍ଷକ ଆନ୍ଦୋଳନର ନେତୃତ୍ୱ ନେଇଥିଲେ ।

ଆମ ଦୁଇଜଣଙ୍କ ମଧ୍ୟରେ ଆଉ ଗୋଟିଏ ବିଷୟରେ ଅପୂର୍ବ ମେଳଥିଲା । ଆମେ ଦୁହେଁ ଆମ ଜନ୍ମଭୂମି, କର୍ମଭୂମି, ଜଗତସିଂହପୁରକୁ ଜନନୀ ଭଳି ଭଲ ପାଇଥିଲୁ । ଜଗତସିଂହପୁର ଫିରିଙ୍ଗକୁଦ, ଅଳକାନଦୀ, ଶ୍ରୀକୃଷ୍ଣ ଏକାଡେମୀର ବାଲିକୁଦ, ନିମଗଛ, ନିମଫୁଲର ବାସ୍ନା ଯେପରି ମୋର ଅନ୍ୟ ଅନେକ ଗଳ୍ପ ଉପନ୍ୟାସର ପୃଷ୍ଠାକୁ ବାସ୍ନାୟିତ କରାଏ, ଭୋଳାନାଥ ସେହିପରି ଜଗତସିଂହପୁରର ଅତୀତ ଓ ବର୍ତ୍ତମାନର ଇତିହାସକୁ ତିନି ଭାଗରେ ବିଶାଳକାୟ ଗ୍ରନ୍ଥରେ ସଂକଳନ କରି ଅସାଧ୍ୟ ସାଧନ କରିଛନ୍ତି ।

ମୁଁ ଓଡ଼ିଆ ଭାଷା ସାହିତ୍ୟର ଶିକ୍ଷକ କିନ୍ତୁ ପ୍ରଥମେ ଏମ୍.ଏ.ରେ ମୋର ବିଷୟ ଥିଲା ଇତିହାସ । ଭୋଳାନାଥ ରାଉତ ରେଭେନ୍‌ସାରେ ଓଡ଼ିଆ ଭାଷା ସାହିତ୍ୟରେ ଛାତ୍ର, କିନ୍ତୁ ଜଗତସିଂହପୁର ସାହିତ୍ୟ ସଂସ୍କୃତି, ରାଜନୀତି, ଶିକ୍ଷାଧର୍ମ, ଅର୍ଥନୀତିର ସେ ହେଉଛନ୍ତି ଐତିହାସିକ ।

ଓଡ଼ିଆ ସାହିତ୍ୟର ଆଦିକବି ସାରଳାଦାସ ଏହି ଜଗତସିଂହପୁର ମାଟିରୁ ଜନ୍ମ ହୋଇଥିଲେ । ଜଗତସିଂହପୁର ଥିଲା ସ୍ୱାଧୀନତା ଓ ସମାଜବାଦୀ ଆନ୍ଦୋଳନର ଅନ୍ତୁଡ଼ିଶାଳ ।

କଟକର ସ୍ୱରାଜଆଶ୍ରମ ଯେପରି ଜଗତସିଂହପୁର ଅଳକାଶ୍ରମ ଥିଲା ଗତ ଶତାବ୍ଦୀର ଦ୍ୱିତୀୟ ଦଶକର କଂଗ୍ରେସ ଆନ୍ଦୋନଳନର ସ୍ନାୟୁକେନ୍ଦ୍ର । ୧୯୩୩ ମସିହାରେ ତରିକୁନ୍ଦ ଠାରେ ସାମ୍ୟବାଦୀ କର୍ମୀସଂଘ ଗଠନ ସେହିପରି ଥିଲା ଓଡ଼ିଶାରେ ସମାଜବାଦୀ ଆନ୍ଦୋଳନର ଆଦ୍ୟ ପ୍ରାଣକେନ୍ଦ୍ର । ଗୋପବନ୍ଧୁ ଚୌଧୁରୀ, ପ୍ରାଣକୃଷ୍ଣ ପଢିହାରୀ, ଭାଗୀରଥୀ ମହାପାତ୍ର, ଜାତୀୟ କବି ବୀର କିଶୋର ଦାସ, ରମାଦେବୀ ଓ ସରଳାଦେବୀ ପ୍ରମୁଖ କଂଗ୍ରେସ ନେତା ଯେପରି ଥିଲେ କଂଗ୍ରେସର କର୍ଣ୍ଣଧାର ସେହିପରି ନବକୃଷ୍ଣ ଚୌଧୁରୀ, ଗୌରାଙ୍ଗ ଚରଣ ଦାସ, ମାଳତୀ ଚୌଧୁରୀ, ଏବଂ ନିଶାମଣି ଖୁଣ୍ଟିଆ ପ୍ରମୁଖ ଥିଲେ ଓଡ଼ିଶାରେ ପ୍ରଥମ ସମାଜବାଦୀ ଆନ୍ଦୋଳନର ସୂତ୍ରଧର । ଗୋଟିଏ କଥାରେ କହିବାକୁ ଗଲେ ଜଗତସିଂହପୁର ସ୍ୱାଧୀନତା ଓ ସମାଜବାଦୀ ଆନ୍ଦୋଳନର ଇତିହାସ ଥିଲା ଏକ ପ୍ରକାର । ଓଡ଼ିଶାର ସ୍ୱାଧୀନତା ସଂଗ୍ରାମର ଇତିହାସ, ଶିକ୍ଷା, ସାହିତ୍ୟ, ସଂସ୍କୃତି, କ୍ଷେତ୍ରରେ ମଧ୍ୟ ଜଗତସିଂହପୁର ଏକ ଅଗ୍ରଣୀ ଭୂମିକା ଗ୍ରହଣ କରିଥିଲା । ବୈଜ୍ଞାନିକ ପ୍ରାଣକୃଷ୍ଣ ପରିଜା, ରାଜନୀତି ବିଜ୍ଞାନୀ ପ୍ରଫେସର ଶ୍ରୀରାମ ଦାଶ ଏବଂ ଦାର୍ଶନିକ ହୃଦାନନ୍ଦ ରାୟଙ୍କ ଠାରୁ ଆରମ୍ଭ କରି ନାଟ୍ୟକାର ବାଳକୃଷ୍ଣ ମହାନ୍ତି, ଗୋପାଳ ଛୋଟରାଏ, ଶିଶୁ ସାହିତ୍ୟିକ ଉଦୟନାଥ ଷଡ଼ଙ୍ଗୀ ପ୍ରମୁଖ ଏହି ଜଗତସିଂହପୁର ମାଟିରେ ଭୂମିଷ୍ଠ ହୋଇ ଥିଲେ ମଧ୍ୟ ସମଗ୍ର ଓଡ଼ିଶାର ଓ ସାହିତ୍ୟ ଜଗତକୁ ସେମାନଙ୍କର ଅବଦାନ ପ୍ରବାଦରେ ପରିଣତ ହୋଇଛି ।

କିନ୍ତୁ ଓଡ଼ିଶାକୁ ଜଗତସିଂହପୁରର ଅବଦାନ ସାଧାରଣ ଲୋକ ଦୃଷ୍ଟିର ଅନ୍ତରାଳରେ ରହିଯାଇଥିଲା । ଐତିହ୍ୟ ସଂପନ୍ନ ଏକ ଜନପଦ ଭୌଗୋଳିକ, ଐତିହାସିକ, ରାଜନୈତିକ, ସାହିତ୍ୟିକ ଏବଂ ସାଂସ୍କୃତିକ ବିଭବର ଆକଳନ ତଥ୍ୟ ସମୃଦ୍ଧ ଗବେଷଣାମୂଳକ ନିବନ୍ଧ ଆକାରରେ ଉପସ୍ଥାପିତ କରିବା ପାଇଁ ଡକ୍ଟର ରାଉତ ଗତ ଶତାବ୍ଦୀର ଅଷ୍ଟମ ଦଶକରୁ ଉଦ୍ୟମ ଆରମ୍ଭ କରିଥିଲେ । ଏଥିପାଇଁ ସେ ଜଗତସିଂହପୁର ବିଭିନ୍ନ ବିଭାଗ ସଂପର୍କରେ ଯେଉଁମାନଙ୍କ ବିଶେଷ ଜ୍ଞାନ ଓ ଅନୁଭୂତି ଅଛି, ସେମାନଙ୍କୁ ସେହି ବିଷୟରେ ପ୍ରବନ୍ଧ ଲେଖିବାକୁ ଅନୁରୋଧ କରିଥିଲେ । ମତେ ବରାଦ କରିଥିଲେ "ଜଗତସିଂହପୁର ଜିଲ୍ଲାରେ ସମାଜବାଦୀ ଆନ୍ଦୋଳନ" ସଂପର୍କରେ ଏକ ପ୍ରବନ୍ଧ ଲେଖି ଦେବାପାଇଁ । ଲେଖାଟି ଭୋଳାନାଥ ବାବୁଙ୍କୁ ହସ୍ତାନ୍ତରିତ କରି ସାରିଲା ପରେ ପୁସ୍ତକ ଆକାରରେ ପ୍ରକାଶିତ ହେବ ସେ ବିଷୟରେ ସନ୍ଦେହ ଥିଲା । କାରଣ ଯେପରି ଭାବରେ ସେ ଜଗତସିଂହପୁରରେ ଜ୍ୟୋତିଷ ଚର୍ଚ୍ଚାଠାରୁ ଆରମ୍ଭ କରି ପ୍ରତ୍ନତାତ୍ତ୍ୱିକ କୀର୍ତ୍ତି ପର୍ଯ୍ୟନ୍ତ ସବୁ ବିଷୟରେ ଦୀର୍ଘ ପ୍ରବନ୍ଧମାନ ଲେଖାଇ ନେଇଥିଲେ- ବହି ଆକାରରେ ରୟାଲ୍ ସାଇଜିର ଦୁଇହଜାର ପୃଷ୍ଠାରୁ ଅଧିକ ହେବାର ଆଶଙ୍କା ଦେଖାଯାଉଥିଲା । ବହି କାଗଜରେ,

ଯଥାସମ୍ଭବ ନିର୍ଭୁଲ ଭାବରେ ଛାପି ପୁସ୍ତକ ଆକାରରେ ପ୍ରକାଶ କରିବା ପାଇଁ ଯେଉଁ ବିପୁଳ ପରିଶ୍ରମ ଓ ଅର୍ଥର ପ୍ରୟୋଜନ, ସେହି ଅର୍ଥ ବିନିଯୋଗ କରିବା ପାଇଁ କୌଣସି ଘରୋଇ ପୁସ୍ତକ ପ୍ରକାଶକ ଯେପରି ରାଜି ହେବା ସମ୍ଭବ ନଥିଲା । ନିଜେ ଛାପି ପ୍ରକାଶନ କରିବା ପାଇଁ ସେ ଆର୍ଥିକ ସମ୍ବଳ ତାଙ୍କ ନିଜ ପାଖରେ ମଧ୍ୟ ନଥିଲା କିନ୍ତୁ କାଣ୍ଟଛାଟ କରି ଜଗତସିଂହପୁର ଅତୀତ ବର୍ତ୍ତମାନର ଇତିହାସକୁ ଯେନତେନ ପ୍ରକାରେ ଛାପି ପ୍ରକାଶ କରିବା ସପକ୍ଷରେ ସେ ନଥିଲେ ।

ଯେଉଁମାନଙ୍କୁ ଯେଉଁ ବିଷୟରେ ସେ ଲେଖିବାକୁ ଦେଇଥିଲେ ସେମାନେ ସମସ୍ତେ ହାତରୁ ଖାଇ ଘୋଡ଼ା ଆଗରେ ଡେଇଁବାକୁ ରାଜି ହୋଇନଥିଲେ, କିନ୍ତୁ ଯେଉଁ ବିଷୟରେ ସେମାନଙ୍କୁ ଲେଖିବାକୁ ଦେଇଥିଲେ ସେମାନେ ନଲେଖିଲେ ବୋଲି ସେ ବିଷୟ ସଂକଳନରୁ ବାଦ ଦେବାକୁ ମଧ୍ୟ ଭୋଳାନାଥ ରାଜି ନଥିଲେ, ସେଥିପାଇଁ ତାଙ୍କ ମନକୁ ଅପୂର୍ବ ନଅଟି ପ୍ରବନ୍ଧ ଲେଖିବାକୁ ହୋଇଥିଲା । ତେଣୁ ସେ କେବଳ ଐତିହାସିକ ଗ୍ରନ୍ଥଦ୍ୱୟର ସଂକଳକ ଏବଂ ସଂପାଦକ ନୁହଁନ୍ତି ନଅଟି ପ୍ରବନ୍ଧର ଲେଖକ ମଧ୍ୟ ।

ପାଣ୍ଡୁଲିପି ପ୍ରସ୍ତୁତିରେ ଭୋଳାନାଥ ଦୁଇଲକ୍ଷରୁ ଅଧିକ ଅର୍ଥ ଖର୍ଚ୍ଚ କରିଛନ୍ତି, ପ୍ରାୟ ଦଶବର୍ଷରୁ ଅଧିକ କାଳ ନିଷ୍ଠାର ସହିତ ସଂପାଦନା କାର୍ଯ୍ୟ ସଂପନ୍ନ କରିଛନ୍ତି । କିନ୍ତୁ ଏହି ଗ୍ରନ୍ଥ ପ୍ରକାଶ କରିବା ପାଇଁ କୌଣସି ଧନାଢ୍ୟ ବ୍ୟକ୍ତି କିମ୍ବା ପୁସ୍ତକ ପ୍ରକାଶକ ଆଗେଇ ଆସିନାହାଁନ୍ତି । ଏ ଗ୍ରନ୍ଥ ପ୍ରକାଶିତ ହେବାର ଆଶା ଏକପ୍ରକାର ମୁଁ ଛାଡ଼ିଦେଇ ବସିଥିବା ବେଳେ ଦଶବର୍ଷ ତଳେ ହଠାତ୍ ଜଗତସିଂହପୁରର ତତ୍କାଳୀନ ଜିଲ୍ଲାପାଳ ସତ୍ୟବ୍ରତ ସାହୁଙ୍କ ଠାରୁ ଖଣ୍ଡେ ଚିଠି ପାଇଲି । "ଜଗତସିଂହପୁର: ଅତୀତ, ବର୍ତ୍ତମାନ" ତିନିଖଣ୍ଡ ପଢି ଏହା ତ୍ରୁଟିହୀନ, ତଥ୍ୟନିଷ୍ଠ ରଚନା ସଂଗ୍ରହ ବୋଲି ମୁଁ ସୁପାରିଶ କଲେ ଓଡ଼ିଶା ସରକାରଙ୍କ ଅର୍ଥରେ ଜିଲ୍ଲା ସଂସ୍କୃତି ପରିଷଦ ଏହାକୁ ଛାପି ପ୍ରକାଶ କରିବେ । ବହି ପଢି ମନ୍ତବ୍ୟ ଲେଖିଥିଲେ ବିଳମ୍ବ ଘଟିବ ବୋଲି ଭୋଳାନାଥ ବାବୁ ଚିନ୍ତା ବ୍ୟକ୍ତି କରିବାରୁ ମୁଁ କେବଳ ବହିର ଶିରୋନାମା ଉପରେ ଆଖି ବୁଲେଇ ଦେଇ ଜିଲ୍ଲାପାଳଙ୍କୁ ଗ୍ରନ୍ଥତ୍ରୟି ଛାପିବାକୁ ଅନୁରୋଧ କରିଥିଲି ।

ଭୋଳାନାଥ ବାବୁଙ୍କର ଦୁଇଦଶକ ବ୍ୟାପୀ ଶ୍ରମ ଓ ସାଧନାର ଫଳ "ଜଗତସିଂହପୁର: ଅତୀତ ଓ ବର୍ତ୍ତମାନ" ତିନିଭାଗରେ ବିଭକ୍ତ ପ୍ରାମାଣିକ ଐତିହାସିକ ଗ୍ରନ୍ଥ । ଜଣେ ଛାତ୍ରବତ୍ସଳ ଅଧ୍ୟାପକ, ଶିକ୍ଷକ ଆନ୍ଦୋଳନର ଅଭିଭାବକ, ପ୍ରାବନ୍ଧିକ ଭାବରେ ଡକ୍ଟର ଭୋଳାନାଥ ରାଉତ ଓ ଖ୍ୟାତ ଓ ସମ୍ବର୍ଦ୍ଧିତ । କିନ୍ତୁ ଜଗତସିଂହପୁର ଜିଲ୍ଲାର ଐତିହାସିକ ଭାବରେ ସେ ଆମ ପାଖରେ ଜଣେ ସ୍ମରଣୀୟ ବ୍ୟକ୍ତି, ସାରସ୍ୱତ ସାଧକ । ■

# ଆରେ ମୋର ବାଇଆ ରଜା

ଡକ୍ଟର ମହେଶ୍ୱର ମହାନ୍ତି

"ଆରେ ମୋର ବାଇଆ ରଜା, ଦେ' ମୋତେ ବାଇଆ କରି ।"

ଭଗବାନଙ୍କ ଉଦ୍ଦେଶ୍ୟରେ ଏହା ହେଉଛି ଜଣେ ଭକ୍ତର ନିବେଦନ । ଭଗବାନଙ୍କ ପାଇଁ ଭକ୍ତ ଯେପରି ପାଗଳ, ଭକ୍ତ ନିମନ୍ତେ ଭଗବାନ ମଧ୍ୟ ସେଇଭଳି ପାଗଳ । ଭଗବାନ କିନ୍ତୁ ହେଉଛନ୍ତି ସେଇ ପାଗଳମାନଙ୍କ ରାଜା । ଭକ୍ତ କହିଲା । ହେ, ପାଗଳମାନଙ୍କର ରାଜା, ମୋତେ ତୁ ପାଗଳ କରି ଦେ' । ମୁଁ କେବଳ ଦିନରାତି ତୋହରି ନାମ ଗାନକରି ନାଚିବି ।

ଏଠି ପାଗଳ ବା ବାଇଆର ଅର୍ଥ ହେଉଛି ନିଜ କାର୍ଯ୍ୟରେ ଅତ୍ୟଧିକ ନିଷ୍ଠା, ଆଗ୍ରହ ବା ନିଜର କର୍ମ, କର୍ତ୍ତବ୍ୟ ପ୍ରତି ଏକ ସମର୍ପିତ ଭାବ । ଜଣେ ପାଗଳ ନହେଲେ ବଡ଼ ବଡ଼ କାର୍ଯ୍ୟ ହୋଇପାରେ ନାହିଁ । ସଂସାରରେ ଅନେକ ଅସମ୍ଭବ କାର୍ଯ୍ୟ ସମ୍ଭବ ହେଇଛି ଏଇ ପାଗଳାମିରୁ । ମନ୍ତ୍ରୀ ଶିବେଇ ସାଆନ୍ତରା ରାଜା ନରସିଂହ ଦେବଙ୍କ ଆଦେଶରେ କୋଣାର୍କ ମନ୍ଦିର ପାଇଁ ଚନ୍ଦ୍ରଭାଗା ମୁହାଣରେ ନିଅଁ ପକାଇବାବେଳେ ଏମିତି ପାଗଳ ହୋଇଯାଇଥିଲେ । ସେଇ ପାଗଳାମିରୁ ଯୁଗ ଯୁଗ ପାଇଁ ଠିଆ ହୋଇଗଲା ଏଡ଼େ ବଡ଼ ମନ୍ଦିର । ଇଂରାଜୀରେ କୁହାଯାଇଛି "All genius are mad." ସଂସାରର ଯେତେ ପ୍ରତିଭାବାନ ମଣିଷ ସେମାନେ ସମସ୍ତେ ନିଜ ନିଜ କର୍ମରେ ଜଣେ ଜଣେ ପାଗଳ । ଅର୍ଥାତ୍ ବହିର୍ଜଗତକୁ ଭୁଲି ଆପଣା କର୍ମରେ ବା ସାଧନାରେ ଏଭଳି ଅଭିନିବିଷ୍ଟ ହୋଇଯାଇଛନ୍ତି ଯେ ଲୋକ ତାଙ୍କୁ ସେତେବେଳେ ପାଗଳ ବୋଲି କହିଛନ୍ତି ।

ଆଜି ଭୋଳିବାବୁଙ୍କ ସମ୍ବନ୍ଧରେ ଏଇଭଳି କଥା ମନକୁ ଆସୁଛି । ଭୋଳିବାବୁ କାଗଜପତ୍ର ହିସାବରେ ମୋଠାରୁ ଦୁଇବର୍ଷ ବଡ଼ । ମୋର ବଡ଼ ଭାଇ । ପିଲାଦିନେ ପରସ୍ପର ପରିଚୟ ନଥିଲେ ମଧ୍ୟ ଆମେ ଗୋଟିଏ ଅଞ୍ଚଳର ବାସିନ୍ଦା । ମୁଁ ରେଭେନ୍‌ସା କଲେଜରେ ବି.ଏ ଶ୍ରେଣୀରେ ଛାତ୍ର ଥିବାବେଳେ ସେ ଏମ୍.ଏ. ଶ୍ରେଣୀର ଛାତ୍ର, ସେ ଯେଉଁ କଲେଜରେ ବି.ଏ. ପଢୁଥିଲେ (ଖ୍ରୀଷ୍ଟ କଲେଜ)ପରେ ମୁଁ ସେଇ କଲେଜରେ ହେଲି ଅଧ୍ୟାପକ । ସେତେବେଳକୁ ପରସ୍ପର ପରିଚୟ ହୋଇଗଲାଣି । ଛାତ୍ର ଜୀବନରୁ ସେ ସଂଗଠନ ପ୍ରିୟ । ମୋର ମନେହେଉଛି

ରେଭେନ୍ସା କଲେଜର ଓଡ଼ିଆ ସାହିତ୍ୟ ସମାଜର ସେ ଜଣେ କର୍ମକର୍ତ୍ତା ଥିଲେ । ପ୍ରଥମେ ସେଇଠି ତାଙ୍କୁ ଦେଖିଥିଲି, କିନ୍ତୁ ବ୍ୟକ୍ତିଗତ ଭାବେ ସେ ଯାଏ ପରିଚୟ ହୋଇ ନଥିଲା ।

ଆଜିକୁ ପ୍ରାୟ ୫୦ ବର୍ଷ ତଳେ ସେ ଏମିତି ଥରେ ପାଗଳ ହୋଇ ଯାଇଥିଲେ, ନିଜର ସଂଗଠନ ପ୍ରିୟତା କାରଣରୁ । କେତେଜଣ ସହପାଠୀଙ୍କୁ ନେଇ ଗଢ଼ିଥିଲେ 'ଅଭ୍ୟୁଦୟ ସାହିତ୍ୟ ସମାଜ' ନାମରେ ଗୋଟିଏ ଅନୁଷ୍ଠାନ । ମୁରବି ଥିଲେ ତାଙ୍କ ଶିକ୍ଷାଗୁରୁ ଅଧ୍ୟାପକ ପଠାଣି ପଟ୍ଟନାୟକ । ସେଇ ସମୟରେ ପରିକଳ୍ପନା କରାଯାଇ ଥିଲା ଓଡ଼ିଆ ଉପନ୍ୟାସ ସାହିତ୍ୟର ପରିଚୟ ନାମରେ ଗୋଟିଏ ସଂକଳନ ପାଇଁ । ସଂପୂର୍ଣ୍ଣ ଅଭିନବ ଉଦ୍ୟମ ଏବଂ ଏକ ଦୁଃସାହାସିକ କାର୍ଯ୍ୟ । ଓଡ଼ିଆ ଉପନ୍ୟାସର ଆଦିକାଳରୁ ଆରମ୍ଭ କରି ସେ ସମୟ ପର୍ଯ୍ୟନ୍ତ ସମସ୍ତ ପ୍ରଖ୍ୟାତ ଔପନ୍ୟାସିକମାନଙ୍କର କୃତି ଓ କୀର୍ତ୍ତି ସଂପର୍କରେ ବିସ୍ତୃତ ଆଲୋଚନା ଭିନ୍ନ ଭିନ୍ନ ଆଲୋଚକଙ୍କ ଠାରୁ ଲେଖା ସଂଗ୍ରହ କରିବାକୁ ହେବ । ତାକୁ ଏକାଠି କରି ଛାପିବାକୁ ହେବ । ମୁଁ ମଧ୍ୟ ଏଥିରେ ଗୋଟିଏ ଲେଖା ଦେଇଥିଲି ।

ଏଇ ଗ୍ରନ୍ଥଟି ପାଇଁ ସବୁଠାରୁ ଅଧିକ ବାଇଆ ହୋଇଥିଲେ ଅଧ୍ୟାପକ ଭୋଳାନାଥ ରାଉତ । ସେ ଥିଲେ ସଂକଳକ , ସଂପାଦକ, ମୁଦ୍ରାକର ସବୁକିଛି । ନୂଆକରି ମୁହଁ କାଢ଼ିଥିବା ଜଗତସିଂହପୁର କଲେଜରେ ସେ ସେତେବେଳକୁ ଅଧ୍ୟାପକ । କଟକରୁ ଲେଖା ସଂଗ୍ରହ କରି ନିଆଯିବ ଏବଂ ଛପାଯିବ ତାଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଜଗତସିଂହପୁର ତାଙ୍କ ନିଜ ପ୍ରେସରେ । ୫୦ ବର୍ଷ ତଳେ ପୁଣି ଜଗତସିଂହପୁର ଭଳି ଏକ ମଫସଲି ଜାଗାରେ ଛାପାଖାନା ? ସେତେବେଳେ ଜିଲ୍ଲାତ ଦୂରର କଥା ଜଗତସିଂହପୁର ଏକ ସ୍ୱତନ୍ତ୍ର ସବ୍-ଡିଭିଜନ ମଧ୍ୟ ହୋଇ ନଥିଲା । ମନେହେଉଛି ୧୯୬୫ ବେଳକୁ ଜଗତସିଂହପୁର ଗୋଟିଏ ନୂତନ ସବ୍‌ଡିଭିଜନ ହେଲା ।

ସେତେବେଳେ ଛାପାଖାନାରେ ସୀସା ଅକ୍ଷରକୁ ଖଞ୍ଜି ଗୋଟିଏ ଫର୍ମାରେ ବାନ୍ଧି ମେସିନ୍‌ରେ ଛପା ହେଉଥିଲା । ଅତ୍ୟନ୍ତ ଶ୍ରମ ଏବଂ ସମୟ ସାପେକ୍ଷ ବ୍ୟାପାର । ଭୋଳିବାବୁ ଏଇ ବହିଟି ପାଇଁ ଯେଉଁ ଶ୍ରମ ସ୍ୱୀକାର କରିଛନ୍ତି ଏବଂ ଯେତେ ସମସ୍ୟାର ସମ୍ମୁଖୀନ ହୋଇଛନ୍ତି ତାହା ମୁଁ ଦେଖିଛି ଏବଂ ଜାଣିଛି । ଶେଷରେ ୧୯୬୯ ବେଳକୁ ପ୍ରକାଶ ପାଇଲା ବହିଟି । ରୟାଲ୍ ସାଇଜରେ ୭୦୦ ପୃଷ୍ଠାରୁ ଅଧିକ । ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଏକ ଉଲ୍ଲେଖନୀୟ କୃତି । ବର୍ତ୍ତମାନ କାଳରେ ସେଭଳି ଖଣ୍ଡିଏ ପୁସ୍ତକ ଛାପିବାକୁ କୌଣସି ପ୍ରତିଷ୍ଠିତ ପ୍ରକାଶକ ମଧ୍ୟ ସାହସ କରିପାରିବେ ନାହିଁ ।

ଭୋଳିବାବୁ ପୁଣି ଥରେ ବାଇଆ ହେଲେ ୧୦/୧୨ ବର୍ଷ ତଳେ । ଜଗତସିଂହପୁର ଇତିହାସ ସଂକଳନ କରାଯିବ । ସେଇଭଳି ନିଷ୍ଠା, ସଂକଳ୍ପ ଏବଂ ସମର୍ପଣ ଭାବ ନ ରହିଲେ

ଏ କାର୍ଯ୍ୟ ସହଜ ନୁହେଁ । ଡବଲ ଡିମାଇ ସାଇଜ୍‌ରେ ତିନି ଖଣ୍ଡରେ ପ୍ରାୟ ଦେଢ଼ ହଜାର ପୃଷ୍ଠାର ଗ୍ରନ୍ଥ । ଗାଆଁ ଗାଆଁ ବୁଲି ସେ ତଥ୍ୟ ସଂଗ୍ରହ କରିଛନ୍ତି । ସାଧୁ, ସନ୍ଥ, ମଠ ବାଡ଼ି ମନ୍ଦିର ଇତ୍ୟାଦିର ଫଟୋ ଆଣିଛନ୍ତି । ଜଗତସିଂହପୁର ଜିଲ୍ଲାର ଇତିହାସ ଭୂଗୋଳ, ଶିକ୍ଷା ସାହିତ୍ୟ କଳା ସଂସ୍କୃତି ଇତ୍ୟାଦିର ଏହା ଏକ ପୂର୍ଣ୍ଣାଙ୍ଗ ପରିଚୟ । ପ୍ରତ୍ୟେକ ବିଷୟକୁ ନେଇ ଜଣେ ଜଣେ ଲେଖକ । ଭିନ୍ନ ଭିନ୍ନ ବର୍ଗର ଲେଖକଙ୍କୁ ଲେଖାଇବା ଏବଂ ସେମାନଙ୍କଠାରୁ ଲେଖା ସଂଗ୍ରହ କରି ଆଣି ଛାପିବା କିଭଳି ଯେ ଏକ କଷ୍ଟକର ବ୍ୟାପାର ଏବଂ ଏଥିପାଇଁ କେତେ ଧୈର୍ଯ୍ୟର ଆବଶ୍ୟକ, ସେ କଥା ଅନୁଭବୀ ଜାଣନ୍ତି । ତାଙ୍କ ଉଦ୍ୟମ ସଫଳ ହେଲା ଏବଂ ଏଇଟି ଗୋଟିଏ କାଳଜୟୀ କୃତିର ମର୍ଯ୍ୟାଦା ଲାଭ କଲା ।

ଡକ୍ଟର ଭୋଳାନାଥ ରାଉତ ଏକା ଧାରରେ ଜଣେ ଲେଖକ, ଗବେଷକ, ସଂଗଠକ, ଶିକ୍ଷକ, ନେତା ନାଟ୍ୟକାର ଏବଂ କଲେଜ ଜୀବନରେ ଜଣେ ଅଭିନେତା ମଧ୍ୟ । ଏବେ ବି ଖ୍ରୀଷ୍ଟ କଲେଜର ନାଟ୍ୟୋତ୍ସବରେ ମଞ୍ଚ ଉପରେ ଦୁର୍ଦ୍ଧାନ୍ତ ଗବରଂ ସିଂ ମନେହୁଏ ଯେମିତି ତାଙ୍କୁ ଅପେକ୍ଷା କରି ରହିଛି ଏବଂ ଅପେକ୍ଷା କରି ରହିଛନ୍ତି ଶହ ଶହ ଛାତ୍ର ଏବଂ ଅଧ୍ୟାପକ ହର୍ଷୋଲ୍ଲାସରେ କରତାଳି ଦେବାକୁ ।

ସେ ଦୀର୍ଘଜୀବୀ ହୁଅନ୍ତୁ, ତାଙ୍କ ଜନ୍ମ ଜୟନ୍ତୀ ଅବସରରେ ମୋର ପ୍ରଣାମ । ■

କେନ୍ଦୁଝର କଲୋନି, କଟକ-୮

# ସତୀର୍ଥ ସୁହୃଦ ପ୍ରଫେସର ଭୋଳାନାଥ ରାଉତ

ଡକ୍ଟର୍ ନଗେନ୍ଦ୍ରନାଥ ପ୍ରଧାନ

ପ୍ରାଧ୍ୟାପକ ଡକ୍ଟର ଭୋଳାନାଥ ରାଉତଙ୍କ ସହିତ ମୋର ପ୍ରଥମ ପରିଚୟ ହୁଏ କଟକ ଖ୍ରୀଷ୍ଟ ମହାବିଦ୍ୟାଳୟରେ ୧୯୫୯ ସାଲରେ ଓଡ଼ିଆ ଅନର୍ସ ଶ୍ରେଣୀରେ ଏକତ୍ର ଅଧ୍ୟୟନ ସମୟରେ । ସେତେବେଳେ କଟକରେ ରେଭେନ୍ସା ଓ ଖ୍ରୀଷ୍ଟ ମହାବିଦ୍ୟାଳୟରେ କେବଳ ଓଡ଼ିଆ ଅନର୍ସ ପାଠ୍ୟ ବିଷୟ ଥାଏ । ସେ ସମୟରେ ସିଭିଲ୍ ସର୍ଭିସ୍‌ରେ ଯୋଗ ଦେବାର ଅଭିଳାଷ ରଖି ବିଦ୍ୟାର୍ଥୀମାନେ ଇତିହାସ, ଅର୍ଥନୀତି, ଇଂରାଜୀ ପ୍ରଭୃତି ବିଷୟରେ ଅନର୍ସ ସହିତ ଅଧ୍ୟୟନ କରିବାକୁ ପସନ୍ଦ କରୁଥିଲେ । ଯେହେତୁ ଓଡ଼ିଆ ଭାଷା ସାହିତ୍ୟ, ସିଭିଲ୍ ସର୍ଭିସ୍ ପରୀକ୍ଷାପାଇଁ ବିଷୟ ତାଲିକା ଭୁକ୍ତ ନଥିଲା (ପରେ ତାହା ଅନ୍ତର୍ଭୁକ୍ତ ହେଲା) । ତେଣୁ ଯେଉଁମାନେ ପୂର୍ବୋକ୍ତ ବିଷୟରେ ଅନର୍ସ ସୁଯୋଗ ପାଉ ନଥିଲେ ଅଥବା ଯେଉଁମାନଙ୍କର ଓଡ଼ିଆ ଭାଷା ସାହିତ୍ୟ ଅଧ୍ୟୟନ ପ୍ରତି ଶ୍ରଦ୍ଧା ଓ ରୁଚିଥିଲା ସେମାନେ ଅନର୍ସ ରଖି ଅଧ୍ୟୟନ କରୁଥିଲେ । ଭୋଳାନାଥ ବାବୁଙ୍କର ଓଡ଼ିଆ ଅନର୍ସ ନେଇ ଅଧ୍ୟୟନ କରିବାର କାରଣଥିଲା ଓଡ଼ିଆ ଭାଷା ସାହିତ୍ୟ ପ୍ରତି ଶ୍ରଦ୍ଧା ଓ ରୁଚି ।

ମୁଁ ରେଭେନ୍ସାରେ ବିଜ୍ଞାନ ଶ୍ରେଣୀରେ ଅଧ୍ୟୟନ କଲାବେଳେ କେନ୍ଦ୍ରସରକାରଙ୍କ ଡାକ ଓ ତାର ବିଭାଗରେ ଆକର୍ଷଣୀୟ ବେତନଥିବା ଏକ ବୃତ୍ତି ମିଳିଯିବାରୁ ବିଜ୍ଞାନରେ ଉଚ୍ଚ ଅଧ୍ୟୟନ ଅଭିଳାଷର ବିଲୟ ଘଟିଲା । କାରଣ ଥିଲା ଆମପରି କୃଷକ ପରିବାରର ସହଜାତ ଦାରିଦ୍ର୍ୟ ଓ ଆର୍ଥିକ ଅନଟନ । ତେଣୁ ବୃତ୍ତି ନିର୍ଦ୍ଦିଷ୍ଟ ଥାଇ ଖ୍ରୀଷ୍ଟ ମହାବିଦ୍ୟାଳୟରେ ଓଡ଼ିଆ ସମ୍ମାନ ସହିତ ସ୍ନାତକ ଶ୍ରେଣୀରେ ଯୋଗଦେଲି । ଖ୍ରୀଷ୍ଟ ମହାବିଦ୍ୟାଳୟ ସକାଳ ବେଳା ଖୋଲୁଥିଲା ବିଜ୍ଞାନଶିକ୍ଷା ପ୍ରବର୍ତ୍ତନ ହୋଇ ନଥିଲା । ଭୋଳିବାବୁ ଏବଂ ମୁଁ ସକାଳୁ ସକାଳୁ ସାଇକେଲରେ କଲେଜ ଯାଉ । ମାତ୍ର ସାତ ଆଠ ଜଣ ଆମେ ଓଡ଼ିଆ ଅନର୍ସ ଶ୍ରେଣୀରେ ଦିନ ବାରଟା ବା ଗୋଟେ ପର୍ଯ୍ୟନ୍ତ ଅଧ୍ୟୟନ କରୁ । ଆମ ସୀମିତ ସଂଖ୍ୟକ ସହପାଠୀଙ୍କ ମଧ୍ୟରେ ନିବିଡ଼ ବନ୍ଧୁତା ବୃଦ୍ଧି ପାଇଲା । ଆମ ପ୍ରିୟ ପୂଜ୍ୟ ଅଧ୍ୟାପକ ଗଣ ଓଡ଼ିଆ ଭାଷା ସାହିତ୍ୟର ସମୃଦ୍ଧ ଅଭିଜାତ ଓ ପରଂପରା ସମ୍ବନ୍ଧରେ ପ୍ରାଞ୍ଜଳ ଭାଷଣ ଦେଇ

ଆମକୁ ଉଦ୍‌ବୁଦ୍ଧ କରାଇ ଆମ ଭିତରେ ସାହିତ୍ୟ ପ୍ରତି ଗଭୀର ଅନୁରାଗ ଓ ଶ୍ରଦ୍ଧା ସଂଗ୍ରହ କରାଉଥିଲେ ।

ଭୋଳିବାବୁ ଓ ମୁଁ ପାଖାପାଖି ରହୁଥିବାରୁ ଅଧିକାଂଶ ଦିନ ଉପରବେଳା ଆମେ ଏକତ୍ର ହୋଇ ସାହିତ୍ୟ ଚର୍ଚ୍ଚା କରୁ । ଖ୍ରୀଷ୍ଟ ମହାବିଦ୍ୟାଳୟର ଛାତ୍ରମାନଙ୍କୁ ନେଇ ଏକ ସଂଗଠନ ଗଢିବାର କଳ୍ପନା କରୁ କିନ୍ତୁ ଆମମାନଙ୍କ ମଧ୍ୟରୁ ଅଧିକାଂଶ ସରକାରୀ ବା ବେସରକାରୀ ବୃତ୍ତିରେ ନିଯୁକ୍ତ ଥିବାରୁ ଦୈନିକ କଲେଜରେ ପାଠପଢା ଶେଷ ହେବା ସଂଗେ ସଂଗେ ନିଜ ନିଜ ବୃତ୍ତିରେ ବ୍ୟସ୍ତ ରହୁଥିଲେ । ତେଣୁ ସାହିତ୍ୟ ପ୍ରତି ରୁଚି ରହିଥିଲେ ମଧ୍ୟ ଏଦିଗରେ କିଛି ମାତ୍ର କରିପାରନ୍ତି ନାହିଁ । କାହାରି ସହଯୋଗ ନପାଇ ଆମେ ଦୁଇଜଣ କେବଳ କଳ୍ପନା ପ୍ରବଣ ହୋଇ ରହିଯାଉ । ଶେଷରେ ଏକାଠି ମିଶି ଏକ ସାହିତ୍ୟ ପତ୍ରିକା ସଂପାଦନ କରି ତାହା ମାଧ୍ୟମରେ ସାହିତ୍ୟିକମାନଙ୍କୁ ପରବର୍ତ୍ତୀ ସ୍ତରରେ ସଂଗଠିତ କରିବାର ବିଗ୍ରହ କଲୁ । କିନ୍ତୁ ସାହିତ୍ୟ ପତ୍ରିକା ପ୍ରକାଶ ନିଶାରେ କେତେକ ଲୋକ କିଭଳି ସର୍ବସ୍ୱାନ୍ତ ଓ ଅବସାଦ ଗ୍ରସ୍ତ ହୋଇ ଯାଇଛନ୍ତି, ସେ ସମ୍ବନ୍ଧରେ ମୋ ପାଖରେ ରହୁଥିବା ଜଣେ ଅଭିବାବକ ତୁଲ୍ୟ ବ୍ୟକ୍ତି ସ୍ୱର୍ଗତ ନଟବର ପରିଜା (ସଂପାଦକ ନିଖିଳ ଉତ୍କଳ ପ୍ରାଥମିକ ଶିକ୍ଷକ ସଂଘ) ମୋତେ ଦୃଷ୍ଟାନ୍ତ ନେଇ ଦୃଢଭାବେ ପରାମର୍ଶ ଦେବାରୁ ସଂଗଠନ ନିର୍ମାଣ ଆଶା ପରି ପତ୍ରିକା ପ୍ରକାଶନର ନିଶାମଧ୍ୟ କ୍ରମ ବିଲୟ ଭଜିଲା । ଛୋଟ ମୋଟ ଚାକିରି କରି ଗ୍ରାସାଚ୍ଛଦନ ସମସ୍ୟା ଦୂର ହେଉଥିବାରୁ ତରୁଣ ସୁଲଭ ନାନା ଉଚ୍ଚ କଳ୍ପନା ମନରେ ଉଙ୍କି ମାରୁଥିଲେ ମଧ୍ୟ ଆମ ପରିବାର ମାନଙ୍କରେ ଅଭାବ ଅନଟନର ବିକଟ ମୂର୍ତ୍ତିରେ ଆତଙ୍କିତ ମାନସରୁ ସବୁ କଳ୍ପନା ଛାଏଁ ଛାଏଁ ବିଲୀନ ହୋଇ ଯାଉଥିଲା । ତେଣୁ ଦୁଇବନ୍ଧୁ ଏକମାତ୍ର ପାଠ ପଢାରେ ମନୋନିବେଶ କରି ଆମ ସ୍ୱପ୍ନ ସବୁକୁ ଭବିଷ୍ୟରରେ କାର୍ଯ୍ୟକାରୀ କରିବାର ଆଶ୍ୱାସନା ଦ୍ୱାରା ନୈରାଶ୍ୟ ପୀଡ଼ନରୁ ଉପଶମ ଲାଭ କରୁଥିଲୁ ।

ଓଡ଼ିଆରେ ସମ୍ମାନ ସହିତ ସ୍ନାତକ ଶ୍ରେଣୀ ଉତୀର୍ଣ୍ଣ ହେବା ପରେ ପରେ ଆମେ ରେଭେନ୍‌ସା କଲେଜରେ ସ୍ନାତକୋତ୍ତର ଓଡ଼ିଆ ଶ୍ରେଣୀରେ ଅଧ୍ୟୟନ କଲୁ । ସେଠାରେ ଓଡ଼ିଶାର ବିଭିନ୍ନ ମହାବିଦ୍ୟାଳୟରୁ ବିଦ୍ୟାର୍ଥୀମାନେ ଆସି ଅଧ୍ୟୟନ କରୁଥିଲେ ମଧ୍ୟ, ସାମ୍ମାନ ସହିତ ସ୍ନାତକ ଉପାଧିଧାରୀ ଆମେ କେବଳ ଖ୍ରୀଷ୍ଟ ଓ ରେଭେନ୍‌ସା ମହାବିଦ୍ୟାଳୟରୁ ଆସିଥିଲୁ । ଏହି ଦୁଇ ମହାବିଦ୍ୟାଳୟର ବିଦ୍ୟାର୍ଥୀ ମାନଙ୍କ ମଧ୍ୟରେ ପରୀକ୍ଷାରେ ଶ୍ରେଷ୍ଠସ୍ଥାନ ଅଧିକାର ପାଇଁ ପ୍ରାୟ ଏକ ପ୍ରକାର ନିରବ ପ୍ରତିଦ୍ୱନ୍ଦ୍ୱିତା ଲାଗି ରହୁଥିଲା । ଏପରି ପ୍ରତିଦ୍ୱନ୍ଦ୍ୱିତା ଅନ୍ୟ କ୍ଷେତ୍ରକୁ ମଧ୍ୟ ପ୍ରଭାବିତ କରୁଥିଲା । ଖ୍ରୀଷ୍ଟ ମହାବିଦ୍ୟାଳୟ ଗୋଷ୍ଠୀରେ ଅଗ୍ରଣୀ

ଥିଲେ ଭୋଳିବାବୁ । ସେହିବର୍ଷ ଯାଜପୁର ଅଞ୍ଚଳରେ ପ୍ରବଳ ବନ୍ୟା ବିପ୍ଳାତ ହୋଇଥିବାରୁ ବନ୍ୟା ସାହାଯ୍ୟ ପାଇଁ ରେଭେନ୍‌ସା ଗୋଷ୍ଠୀ ବ୍ୟବସାୟୀମାନଙ୍କ ଠାରୁ ପାଣ୍ଠି ସଂଗ୍ରହ କରିଥିବା ବେଳେ ଭୋଳିବାବୁଙ୍କ ଉଦ୍ୟମରେ ଅନ୍ନପୂର୍ଣ୍ଣା ରଙ୍ଗମଞ୍ଚରେ ବିଦ୍ୟାର୍ଥୀ ଓ ହେମନ୍ତ ଦାସଙ୍କ ପରି କଳାକାରମାନଙ୍କ ଦ୍ୱାରା ଏକ ପ୍ରଦର୍ଶନୀ ନାଟକ ପରିବେଷିତ ହୋଇ ପାଣ୍ଠି ସଂଗୃହୀତ ହୋଇଥିଲା । ଉଭୟ ଗୋଷ୍ଠୀଙ୍କ ଦ୍ୱାରା ବନ୍ୟାଞ୍ଚଳରେ ସାହାଯ୍ୟ ବିତରଣ କରାଯାଇ ଥିଲା । ଭୋଳିବାବୁ ନାଟକ ଓ ଅଭିନୟରେ ଅଂଶଗ୍ରହଣ କରୁଥିଲେ । ତାଙ୍କ ରଚିତ କେତେକ କ୍ଷୁଦ୍ର ନାଟକ ବେତାର କେନ୍ଦ୍ର ଦ୍ୱାରା ପରିବେଷିତ ହୋଇଥିଲା ସେ ମଧ୍ୟ ଛାତ୍ର ଜୀବନ ପରେ ନାଟକ ରଚନା ରଙ୍ଗମଞ୍ଚରେ ପରିବେଷଣ ଓ ଅଭିନୟରେ କୃତିତ୍ୱ ପ୍ରଦର୍ଶନ କରି ପ୍ରଶଂସିତ ହୋଇଥିଲେ ।

ରେଭେନ୍‌ସା ମହାବିଦ୍ୟାଳୟରେ ଅଧ୍ୟୟନ କାଳରେ ହିଁ ଆମର ପ୍ରିୟ ପୂଜ୍ୟ ଅଧ୍ୟାପକ ଯଶସ୍ୱୀ ସାହିତ୍ୟିକ ଶ୍ରୀଯୁକ୍ତ ପଠାଣି ପଟ୍ଟନାୟକଙ୍କ ଅଧ୍ୟକ୍ଷତାରେ "ଅଭ୍ୟୁଦୟ ସାହିତ୍ୟ ସମାଜ" ନାମରେ ସାହିତ୍ୟିକ ସଂଗଠନ ଗଠନ କଲୁ । ଶ୍ରୀଯୁକ୍ତ ଭୋଳିବାବୁ ରହିଲେ ସାଧାରଣ ସଂପାଦକ ଏବଂ ମୁଁ ରହିଥିଲି ତାଙ୍କ ସହିତ ସହସଂପାଦକ । ସେତେବେଳେ ଓଡ଼ିଆ ସମାଲୋଚନା ସାହିତ୍ୟ ଅତି ଶୈଶବ ଅବସ୍ଥାରେ ଥିଲା । ସାହିତ୍ୟ ସମାଲୋଚକଙ୍କ ସଂଖ୍ୟା ଥିଲା ଅଙ୍ଗୁଳିମେୟ । ବିଶେଷତଃ ପ୍ରାଚୀନ ଓ ମଧ୍ୟଯୁଗର ଓଡ଼ିଆ ସାହିତ୍ୟର ଆଦ୍ୟ ପର୍ଯ୍ୟାୟର ଧର୍ମଦର୍ଶନ ପ୍ରଧାନ ଏବଂ ଦୁର୍ବୋଧ୍ୟ ପ୍ରାୟ ରହସ୍ୟଧର୍ମୀ ଥିବାରୁ ପ୍ରଥମେ "ସାହିତ୍ୟରେ ରହସ୍ୟବାଦ" ଶିରୋନାମାରେ ତଦ୍‌ବିତ ସାହିତ୍ୟିକ ମାନଙ୍କଠାରୁ ଆଲୋଚନା ମୂଳ ପ୍ରବନ୍ଧ ସଂଗ୍ରହ କରି ଗ୍ରନ୍ଥରେ ସଂକଳିତ କଲୁ । ଏହି ସାନ ଗ୍ରନ୍ଥଟି ଏବେ ମଧ୍ୟ ଓଡ଼ିଆରେ ରହସ୍ୟବାଦ ସମ୍ବନ୍ଧୀୟ ଏକାମାତ୍ର ଆଲୋଚନାଗ୍ରନ୍ଥ । ସଂଗୃହୀତ ପ୍ରବନ୍ଧଗୁଡ଼ିକୁ ପାଠକରି ସଂକଳିତ କରିବା ଅବସରରେ ଏହି ଲେଖକ ମଧ୍ୟ ରହସ୍ୟବାଦ ପିଣ୍ଡିତ ଏକ ନିବନ୍ଧ ରଚନା ପାଇଁ ଅନୁପ୍ରେରିତ ହୋଇଥିଲା । ପ୍ରାଚୀନ ସାହିତ୍ୟରେ ନିହିତ ରହିଥିବା ଗମ୍ଭୀର ନିଗୂଢ଼ତତ୍ତ୍ୱର ରହସ୍ୟ ଉନ୍ମୋଚନ କରି ଡକ୍ଟରେଟ୍ ଡିଗ୍ରୀ ପାଇଁ ଗବେଷଣା କାର୍ଯ୍ୟରେ ମାର୍ଗ ଦର୍ଶନ କରିବା ପାଇଁ ମାର୍ଗଦର୍ଶକ ଗଣ ଅସାମର୍ଥ୍ୟ ପ୍ରକାଶ କରିବାରୁ ନୈରାଶ୍ୟ ଓ ଅସହାୟତା ମଧ୍ୟରେ ଏହି ଲେଖକ ଶକ୍ତି ଆହରଣ କରି ସ୍ୱାଧୀନ ଭାବେ ନିବନ୍ଧ ରଚନା କରି ସର୍ବନିମ୍ନ ଆଠବର୍ଷ ଅଧ୍ୟାପନା ସମାପ୍ତ ହେବାମାତ୍ରେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ଡିଲିଟି ଡିଗ୍ରୀ ପ୍ରାପ୍ତ ହୋଇଥିଲା । ଏଣୁ ଆମ ଅନୁଭବରେ ଅଭ୍ୟୁଦୟ ସାହିତ୍ୟ ସମାଜ ଦ୍ୱାରା ପ୍ରକାଶିତ ପ୍ରଥମ ଗ୍ରନ୍ଥ ସାହିତ୍ୟର ରହସ୍ୟବାଦ ଏକ ଅପୂର୍ବ କୃତି । ୧୯୬୨-୬୩ ସାଲରେ ଗଙ୍ଗାଧର ମେହେରଙ୍କ ଜନ୍ମ ଶତବାର୍ଷିକୀ ପାଳନ

ଅବସରରେ ମେହେର ଆଲୋଚନା ଗ୍ରନ୍ଥ ମଧ୍ୟ ପ୍ରକାଶ ପାଇଲା । ଏହାର ସଂକଳନ ଓ ପ୍ରକାଶନ କାର୍ଯ୍ୟରେ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ ଡକ୍ଟର ଭୋଳାନାଥ ରାଉତ । ଯେତେବେଳେ ଆଧୁନିକ ଓଡ଼ିଆ ସାହିତ୍ୟର ଯୁଗ ସମ୍ବନ୍ଧରେ ବିଶେଷତଃ ସ୍ୱଭାବ କବି ମେହେରଙ୍କ ସାହିତ୍ୟ ସମ୍ବନ୍ଧରେ କୌଣସି ଆଲୋଚନା ଗ୍ରନ୍ଥ ନଥିବା ବେଳେ 'ଅଭ୍ୟୁଦୟ ସାହିତ୍ୟ ସମାଜ'ରେ ପ୍ରକାଶିତ ଗ୍ରନ୍ଥ ଉପାଦେୟ ବୋଲି ବିବେଚିତ ହୋଇଥିଲା । ଅଭ୍ୟୁଦୟ ସାହିତ୍ୟ ସମାଜର ନିୟମିତ ସାହିତ୍ୟ ସଭାମାନଙ୍କରେ ସାହିତ୍ୟିକମାନଙ୍କ ଦ୍ୱାରା ସ୍ୱରଚିତ କବିତା ଗଳ୍ପ ପ୍ରବନ୍ଧାଦି ପଠନ ଓ ସେ ସବୁରେ ଆଲୋଚନା ହେଉଥିଲା । ବାର୍ଷିକ ସାଧାରଣସଭା ମଧ୍ୟ ଅନୁଷ୍ଠିତ ହେଉଥିଲା । ଅଧ୍ୟକ୍ଷ ପ୍ରଫେସର ପଠାଣି ପଟ୍ଟନାୟକଙ୍କ ପରାମର୍ଶ କ୍ରମେ "ଓଡ଼ିଆ ଉପନ୍ୟାସ ସାହିତ୍ୟ" କ୍ରମିକ ଇତିହାସ ସମ୍ବଳିତ ଏକ ଗ୍ରନ୍ଥ ପ୍ରକାଶନ ପାଇଁ ନିଷ୍ପତ୍ତି ଗୃହୀତ ହେଲା ।

ଏହି ନିଷ୍ପତ୍ତିକୁ କ୍ରିୟାନ୍ୱୟ କରିବା ଦିଗରେ ସଂପାଦକ ଅଧ୍ୟାପକ ଭୋଳାନାଥ ରାଉତ ଅବିରତ ଉଦ୍ୟମ କରିଥିଲେ । ସାହିତ୍ୟିକମାନଙ୍କ ଦ୍ୱାରା ଆଲୋଚନାତ୍ମକ ପ୍ରବନ୍ଧମାନ ରଚନା କରାଇ ସେ ସବୁକୁ ଏକତ୍ର କରାଇବା ଅତୀବ କଠିନ କାର୍ଯ୍ୟ । ଲେଖକମାନଙ୍କୁ ବାରମ୍ବାର ଅନୁରୋଧ କରି ସେମାନଙ୍କୁ ସାକ୍ଷାତ କରି ଉତ୍ସାହିତ କରିବା, ବିଳମ୍ବହେତୁ ବାରମ୍ବାର ସ୍ମରଣ ପକାଇବା ପ୍ରଭୃତି କାର୍ଯ୍ୟ ପ୍ରଭୃତ ଧୈର୍ଯ୍ୟ ସାପେକ୍ଷ, କିନ୍ତୁ ଭୋଳାନାଥ ବାବୁଙ୍କର ଅସୀମ ଧୈର୍ଯ୍ୟ, ନିଷ୍ଠା, ବ୍ୟବହାରରେ ଅକୃତ୍ରିମ ସୌଜନ୍ୟ ଉଦ୍ୟମକୁ ସଫଳ କରାଇବା ପାଇଁ କୌଶଳ ପ୍ରୟୋଗରେ ଧୂରୀଣ ହେତୁ "ଓଡ଼ିଆ ଉପନ୍ୟାସ ସାହିତ୍ୟ ପରିଚୟ" ପରି ବୃହତକାୟ ଅତିଗୁରୁତ୍ୱପୂର୍ଣ୍ଣ ଅପୂର୍ବଗ୍ରନ୍ଥ ପ୍ରକାଶନ ସମ୍ଭବ ହୋଇ ପାରିଥିଲା । ଏହି ଗ୍ରନ୍ଥ ପ୍ରକାଶନ ଦିଗରେ କେତେକ ସୂତ୍ରରୁ ଯେଉଁ ଆର୍ଥିକ ସହାୟତା ମିଳିଥିଲା ତାହା ଥିଲା ସମୁଦ୍ରକୁ ଶଙ୍ଖେ ଭଳି । ମୁଦ୍ରଣ ଖର୍ଚ୍ଚରେ ଭୋଳିବାବୁଙ୍କ ସହାୟତା ପ୍ରାପ୍ତ ହୋଇ ନଥିଲେ ଏହା ସାକାର ହେବା ହୁଏତ ବିଳମ୍ବିତ ହୋଇଥାନ୍ତା ।

ଓଡ଼ିଆ ଉପନ୍ୟାସ ସାହିତ୍ୟର ପରିଚୟ ପରି ଅତୁଳନୀୟ ଗୁରୁତ୍ୱପୂର୍ଣ୍ଣ ସଂକଳନ ଗ୍ରନ୍ଥରେ ତଦବଧି ଓଡ଼ିଆ ଉପନ୍ୟାସ ସାହିତ୍ୟର ପ୍ରାୟ ସମସ୍ତ ସ୍ରଷ୍ଟାଙ୍କ କୃତି ଉପରେ ପ୍ରାୟ ଅର୍ଦ୍ଧଶତ ପ୍ରବୀଣ ଆଲୋଚକଙ୍କର ଆଲୋଚନା ସ୍ଥାନିତ ହୋଇଅଛି । ଏହାର ରୂପରେଖ ପରିକଳ୍ପନାରେ ପୂଜ୍ୟ ଅଧ୍ୟକ୍ଷ ମହୋଦୟଙ୍କ ଦିଗ୍‌ଦର୍ଶନ ଓ ସାହିତ୍ୟ ସମାଜର ସଭ୍ୟମାନଙ୍କ ପରାମର୍ଶ ଗୃହୀତ ହୋଇଥିଲା । ଲେଖକମାନଙ୍କୁ ପୁନଃ ଲେଖନ ସ୍ମରଣ ଏବଂ ସାକ୍ଷାତ କରି ନିର୍ଦ୍ଧାରିତ ସମୟରେ ଲେଖା ଆଣିବା ଦିଗରେ ଭୋଳିବାବୁଙ୍କ ଭୂମିକା ଗୁରୁତ୍ୱପୂର୍ଣ୍ଣ ଥିଲା । ଭୁବନେଶ୍ୱରରେ ରହୁଥିବାରୁ ବାରମ୍ବାର ସାହିତ୍ୟ ଏକାଡେମୀର କର୍ମକର୍ତ୍ତାଙ୍କୁ ସାକ୍ଷାତ ଓ

ନିବେଦନ କରି ଆର୍ଥିକ ଅନୁଦାନ ସହାୟତା ପ୍ରାପ୍ତ କରାଇବା ଦାୟିତ୍ୱ ଏହି ଲେଖକ ସଂପାଦନ କରିଥିଲା । ତେବେ ସମଗ୍ର କାର୍ଯ୍ୟ ନିର୍ବାହର କେନ୍ଦ୍ରରେ ରହିଥିଲେ ସଂପାଦକ ଅଧ୍ୟାପକ ଭୋଳାନାଥ ରାଉତ । ମୁଦ୍ରିତ ଲେଖାମାନଙ୍କୁ ଗ୍ରନ୍ଥ ରୂପ ଦାନ ଓ ବିପଣନ ଦାୟିତ୍ୱ ଦିଆଯାଇଥିଲା ବିଖ୍ୟାତ ପ୍ରକାଶନ ସଂସ୍ଥା ବାଲୁବଜାରର "ଓଡ଼ିଶା ବୁକ୍‌ଷ୍ଟୋର" ମାଲିକଙ୍କୁ ।

ଅଧ୍ୟାପକ ରବୀନ୍ଦ୍ରକୁମାର ପ୍ରହରାଜ, ସ୍ୱର୍ଗତ ଅଧ୍ୟାପକ ଡକ୍ଟର ବାସୁଦେବ ସାହୁ ସଂପାଦକ ଡକ୍ଟର ଭୋଳାନାଥ ରାଉତଙ୍କ ଏକ ଅବସରରେ ଉକ୍ତ ଗ୍ରନ୍ଥକୁ ଉନ୍ମୋଚିତ କରାଇ ଲୋକାର୍ପଣ କରାଇବାକୁ ନିଷ୍ପତ୍ତି ହେଲା । ନିଷ୍ପତ୍ତି ଅନୁସାରେ ଡକ୍ଟର ହରେକୃଷ୍ଣ ମହତାବ ଏବଂ ପ୍ରଫେସର ବିଧୁ ଭୂଷଣ ଦାସଙ୍କୁ ପୁସ୍ତକ ଉନ୍ମୋଚନ ଉତ୍ସବରେ ଅତିଥି ଭାବେ ଯୋଗଦେବାକୁ ନିମନ୍ତ୍ରଣ କରିବାକୁ ମୋ ଉପରେ ଦାୟିତ୍ୱ ନ୍ୟସ୍ତ ହେଲା । ଉତ୍କଳ ସାହିତ୍ୟ ସମାଜର ସଭାଗୃହ ଶ୍ରୀରାମଚନ୍ଦ୍ର ଭବନର ସକାଳ ବେଳା ସଦସ୍ୟ ମାନଙ୍କର ସାଙ୍ଗଠନିକ ବୈଠକ ଏବଂ ସନ୍ଧ୍ୟାର ସାଧାରଣ ସଭାରେ ପୁସ୍ତକ ଉନ୍ମୋଚନର କାର୍ଯ୍ୟକ୍ରମ ସ୍ଥିର ହେଲା । ମାତ୍ର ପାରସ୍ପରିକ ମତମତାନ୍ତର ହେତୁ ସେଦିନ ପୁସ୍ତକ ଉନ୍ମୋଚନ ହୋଇପାରିନଥିଲା । ଦୁଇ ମହାନ ଅତିଥି ବାହୁଡ଼ି ଯାଇଥିଲେ । ଏହି ଅଭିଜ୍ଞତା ଏହି ଲେଖକକୁ ଏପରି ଭାବେ ଭଗ୍ନ ମନୋରଥ କରିଦେଲା । ସେହି ସମୟରୁ ଦୃଢ ପ୍ରତିଜ୍ଞା ହୋଇ ଓଡ଼ିଶାର କୌଣସି ସାହିତ୍ୟ ସଂଗଠନ ସାହିତ୍ୟ ସଭାରେ ଯୋଗ ନଦେବା ପାଇଁ ସ୍ଥିର କରିନେଲି । ଅବଶ୍ୟ ବହୁଦିନ ପରେ ଅଖିଳ ଭାରତୀୟ ସାହିତ୍ୟ ପରିଷଦ ପରି ଭାରତର ସର୍ବବୃହତ ସାହିତ୍ୟ ସଂଗଠନର ସର୍ବ ସମ୍ମତିରେ ଅର୍ପିତ ରାଷ୍ଟ୍ରୀୟ ସ୍ତରର ପଦପଦବୀରେ ନରହି ଉତ୍କଳ ପ୍ରାନ୍ତୀୟ ଶାଖାର ଅଧ୍ୟକ୍ଷ ଭାବେ ନିଷ୍ଠାର ସହିତ କାର୍ଯ୍ୟ ସଂପାଦନ କରି ଆସୁଛି । ଯେକୌଣସି ସଂଗଠନର ଜୀବନ୍ତ ଚଳମାନତା ଏହାର କାର୍ଯ୍ୟକର୍ତ୍ତାମାନଙ୍କ ଦୂରଦୃଷ୍ଟିକୋଣ, ନିରଳସ କର୍ମ ତତ୍ପରତା ଓ ନିଷ୍ଠା ନିର୍ଭରଶୀଳ । ଏଥିରୁ ସଂଗଠନର ଅସ୍ମିତା, ଅସ୍ତିତ୍ୱ ଓ କୃତିତ୍ୱ ପ୍ରମାଣିତ ହୁଏ । ସାଂଗଠନିକ କୃତିତ୍ୱ ସମ୍ମିଳିତ ସହଯୋଗିତାରେ ସମ୍ଭବ ହୁଏ । କୃତିତ୍ୱ ପାଇଁ ଶ୍ରେୟ ଅଧିକ ନିଷ୍ଠାବାନ କର୍ମକର୍ତ୍ତାଙ୍କୁ ସାଧାରଣ ଜନତା ଦେଇ ପାରନ୍ତି କର୍ମକର୍ତ୍ତାମାନେ ଶ୍ରେୟ ଦାବି କଲେ ଅଥବା ପାରସ୍ପରିକ ଅବିଶ୍ୱାସ ଦେଖାଦେଲେ ସଂଗଠନର ଅଗ୍ରଗତି ଯେ ପ୍ରତିହତ ହୁଏ ଏହା ଆମର ଅଙ୍ଗେଲିଭା ଅନୁଭବ ।

ଅଭ୍ୟୁଦୟ ସାହିତ୍ୟ ସମାଜପରି କମ ଉତ୍‌ଥାନଶୀଳ ଅଭିଜ୍ଞାତ ସାହିତ୍ୟ ସଂଗଠନର ଅଭ୍ୟୁଦୟ ପୂର୍ବରୁ ଅକାଳ ବିଲୟର ଗାଥା ଏକାନ୍ତ ମର୍ମନ୍ତୁଦ । ବିଲୟର ବିସ୍ତାରିତ କାରଣ ଉଲ୍ଲେଖ ନକରିବା ଶ୍ରେୟସ୍କର ।

ଅଧ୍ୟାପକ ଭୋଳାନାଥ ରାଉତ କେବଳ ଜଣେ ସାହିତ୍ୟ ସଂଗଠକ ନଥିଲେ, ନିଖିଳ ଉତ୍କଳ ଶିକ୍ଷକ ମହାସଂଘ, ନିଖିଳ ଉତ୍କଳ ବେସରକାରୀ ମହାବିଦ୍ୟାଳୟ ଶିକ୍ଷକ ସଂଘ, ନିଖିଳ ଭାରତ ଓଡ଼ିଆ ଅଧ୍ୟାପକ ସମ୍ମେଳନ ପ୍ରଭୃତି ସଂଗଠନରେ ଗୁରୁତ୍ୱପୂର୍ଣ୍ଣ ପଦପଦବୀରେ କାର୍ଯ୍ୟକର୍ତ୍ତା ଭାବେ ଦାୟିତ୍ୱନିର୍ବାହ କରିଛନ୍ତି । ତାଙ୍କର ସଂଗଠନ ଦକ୍ଷତା ହେତୁ ସେ ତାଙ୍କର ନିଜର ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରି ପାରିଛନ୍ତି ଏବଂ ତାଙ୍କର ଏହି ସାଂଗଠନିକ ସାମର୍ଥ୍ୟ ପାଇଁ ବହୁ ଅନୁଷ୍ଠାନ ଦ୍ୱାରା ସେ ସମ୍ମାନିତ ଓ ସମ୍ବର୍ଦ୍ଧିତ ହୋଇଛନ୍ତି ।

ସାହିତ୍ୟିକ ସମାଲୋଚନା, କାବ୍ୟ ଓ କବି, ଲେଖା ଓ ଲେଖକ ଓଡ଼ିଶାର ରାଜନୈତିକ ସାମାଜିକ ଓ ସାଂସ୍କୃତିକ ଇତିହାସ ପ୍ରଭୃତି ନିଜସ୍ୱ ସୃଷ୍ଟି ଦ୍ୱାରା ସେ ଓଡ଼ିଆ ଆଲୋଚନା ସାହିତ୍ୟକୁ ସମୃଦ୍ଧ କରି ପାରିଛନ୍ତି । ଶତାବ୍ଦୀର ସ୍ୱପ୍ନପରି କ୍ଷୁଦ୍ର ନାଟକ, ଅନୁଗ୍ରହିତ ସ୍ୱର ପରି ଗଳ୍ପ ସଂକଳନ ତାଙ୍କର ମୌଳିକ ରଚନା ।

କିନ୍ତୁ ଅନ୍ୟ ଲେଖକମାନଙ୍କ କୃତିମାନଙ୍କୁ ଏକତ୍ର ସଂପାଦନା କରି ସେମାନଙ୍କ ମଧ୍ୟରେ ଲେଖା ମାଧ୍ୟମରେ ସାରସ୍ୱତ ସଂପର୍କ ସୃଷ୍ଟି କରାଇବା ତାଙ୍କର ଏକ ପ୍ରିୟ କାର୍ଯ୍ୟ । ତାଙ୍କ ଦ୍ୱାରା ସଂକଳିତ 'ପ୍ରବନ୍ଧ ସେ ଯୁଗ ଏଯୁଗ' ଗଳ୍ପ ସମାରୋହ', ଏକାଙ୍କିକା ସୌରଭ, କବିତା ସେ ଯୁଗ ଏଯୁଗ ଦ୍ୱାରା ପାଠକମାନେ ପ୍ରତ୍ୟେକ ସଂକଳନରୁ ସୃଷ୍ଟି ଗୁଡ଼ିକର ବିଶେଷ କୃତିମାନଙ୍କୁ ପାଠ କରିବାର ସହଜ ସୁଯୋଗ ପାଇଛନ୍ତି । ଏକାଧିକ ଲେଖକଙ୍କୁ ସଂପାଦନା କାର୍ଯ୍ୟରେ ନିୟୋଜନ କରିବା ତାଙ୍କର ସାହିତ୍ୟ ଦୃଷ୍ଟିର ପରିଚୟ ମିଳେ । ଜଣେ କୁଶଳୀଗ୍ରନ୍ଥ ସଂପାଦକ ଭାବେ ତାଙ୍କର ଦକ୍ଷତା ହେତୁ ଜଗତସିଂହପୁରର ସୁଯୋଗ୍ୟ ସନ୍ତାନ, ଜାତୀୟ କବି ବୀରକିଶୋର ଦାସ, ସଂଗ୍ରାମୀ ପ୍ରିୟଦା, ବିପ୍ଳବିଣୀ ମାଳତୀ ଚୌଧୁରୀ ବିଶ୍ୱମ୍ଭର ପରିଡ଼ା, ଲୋକପ୍ରିୟ ଡାକ୍ତର କଳ୍ପତରୁ ବିଶ୍ୱାଳ ପ୍ରଭୃତି କୃତିତ୍ୱ ସମ୍ବଳିତ ଗୁଣଗ୍ରାହୀ ଲେଖକମାନଙ୍କ ଲେଖାମାନଙ୍କୁ ସଂପାଦିତ କରିବାର ସୁଯୋଗ ପାଇ ସେସବୁ ସ୍ମରଣିକାମାନଙ୍କୁଗ୍ରନ୍ଥରୂପ ଦେବା ଶ୍ରେୟର ଅଧିକାରୀ ହେଉଛନ୍ତି ଭୋଳାନାଥ ରାଉତ ।

ତାଙ୍କର ଏହି ସଂପାଦନ କାର୍ଯ୍ୟର ଶ୍ରେଷ୍ଠ ନିଦର୍ଶନ ହେଉଛି ବୃହତ ତିନିଖଣ୍ଡରେ ପ୍ରକାଶିତ "ଜଗତସିଂହପୁର: ଅତୀତ ଓ ବର୍ତ୍ତମାନ" ଓଡ଼ିଶାର ରାଜନୈତିକ, ସାଂସ୍କୃତିକ ଓ ସାମାଜିକ ଇତିହାସ ହେଉଛି ଓଡ଼ିଶାର ଇତିହାସ । ଓଡ଼ିଶାକୁ ସାମଗ୍ରିକ ଭାବରେ ସଂସ୍କୃତି ଓ ସଭ୍ୟତାର ଆଲୋକ ଦେବାରେ ତଥା କୃଷି ଏବଂ ବାଣିଜ୍ୟ ମାଧ୍ୟମରେ ଓଡ଼ିଶାର ଅର୍ଥନୈତିକ ସମୃଦ୍ଧିକୁ ତ୍ୱରାନ୍ୱିତ କରିବାରେ ଜଗତସିଂହପୁରର ଭୂମିକା ଅତୁଳନୀୟ । ଓଡ଼ିଶାବାସୀଙ୍କ ମଧ୍ୟରେ ନବଜାଗରଣ, ସ୍ୱରାଷ୍ଟ୍ର ଚେତନା ସଂଗ୍ରର ସହିତ ସ୍ୱାଧୀନତା ପ୍ରାପ୍ତିପାଇଁ ସଂଗ୍ରାମ

ତ୍ୱରାନ୍ୱିତ କରିବାରେ ମଧ୍ୟ ଜଗତସିଂହପୁରର ଭୂମିକା ଅତି ଗୁରୁତ୍ୱପୂର୍ଣ୍ଣ । ଜଗତସିଂହପୁର ସମ୍ବନ୍ଧରେ ବହୁ ଅଭିଜ୍ଞ ତତ୍‌ବିତ୍ ଲେଖକ ଓ ଗବେଷକମାନଙ୍କ ଦ୍ୱାରା ରଚିତ ମୌଳିକ ଗବେଷଣାମୂଳକ ପ୍ରବନ୍ଧଗୁଡ଼ିକୁ ସଂଗ୍ରହ, ସଂପାଦନ ଓ ସଂକଳନ କରି ସୀମିତ ସମୟ ମଧ୍ୟରେ ପ୍ରକାଶିତ କରାଇବାରେ ଭୋଳିବାବୁଙ୍କ ଅସୀମ ଧୈର୍ଯ୍ୟ ନିରଳସ ଉଦ୍ୟମ ଓ କଠିନ ପରିଶ୍ରମ ତାଙ୍କୁ ଚିରକାଳ ଅମରତ୍ୱର ଗୌରବ ଦାନକରିବ । ଏହି ଅମୂଲ୍ୟ ଗ୍ରନ୍ଥ ଓଡ଼ିଶାର ପୂର୍ଣ୍ଣାଙ୍ଗ ଇତିହାସ ରଚନା ପାଇଁ ପ୍ରଭୂତ ମୌଳିକ ଉପାଦାନ ଉପସ୍ଥାପିତ କରେ । ତାଙ୍କର ସାରସ୍ୱତ ସାଧନାର ଅମୃତ ଫଳ ହେଉଛି ଜଗତସିଂହପୁର: ଅତୀତ ଓ ସାଂପ୍ରତିକ ଇତିହାସ" ସମ୍ବଳିତ ପୂର୍ଣ୍ଣାଙ୍ଗ ଏହି ଗ୍ରନ୍ଥ । ସେହିପରି "ଜଗତସିଂହପୁର ଜିଲ୍ଲା ସାଂସ୍କୃତିକ ପରିଷଦ ଆନୁକୂଲ୍ୟରେ ପ୍ରକାଶିତ ଓ ତାଙ୍କ ଦ୍ୱାରା ସଂପାଦିତ ବାର୍ଷିକ ମୁଖପତ୍ର 'ଆଦିପତ୍ର ' ହେଉଛି ତାଙ୍କର ପରିକଳ୍ପନାରୁ ସୃଷ୍ଟ ଗବେଷଣାଧର୍ମୀ ଏକ ଏକ ଅପୂର୍ବ ଗ୍ରନ୍ଥ ତୁଲ୍ୟ ।

ଭୋଳିବାବୁ ଜଣେ ନୀତିନିଷ୍ଠ ନିଷ୍କଳଙ୍କ ବ୍ୟକ୍ତି ସାଧାରଣ ସ୍ୱାର୍ଥଭିତ୍ତିକ ସାଂଗଠନିକ ବା ସାରସ୍ୱତ କାର୍ଯ୍ୟ କରିବା ଶୈଳୀର ବିଶେଷତ୍ୱ ହେଉଛି ତାଙ୍କର ବନ୍ଧୁ ବତ୍ସଳତା, ନମ୍ରତା, ଭଦ୍ରତା, ସାଧୁତା, କର୍ତ୍ତବ୍ୟ ପରାୟଣତା, ସହନ ଶୀଳତା ମୂଲ୍ୟବୋଧ ସଚେତନତା ଓ ନିରପେକ୍ଷତା । ଏହିସବୁ ସୁଗୁଣ ତାଙ୍କୁ ସର୍ବସାଧାରଣରେ ନିଷ୍କଳଙ୍କ ଭାବମୂର୍ତ୍ତି ପ୍ରଦାନ କରିଛି । ତାଙ୍କର ପ୍ରିୟ ଜନ୍ମସ୍ଥଳୀ ଜଗତସିଂହପୁର ଜିଲ୍ଲା ପ୍ରତି ତାଙ୍କର ଅସୀମ ଶ୍ରଦ୍ଧା ହେତୁ ଜିଲ୍ଲାର ପ୍ରତିକୋଣ ଅନୁକୋଣ ସମ୍ବନ୍ଧରେ ସେ ଉତ୍ତମ ଅବଗତ ।

ସେ ଜଣେ ସଂସ୍କୃତି ପ୍ରେମୀ, ସୁଲେଖକ ଓ ସୁସଂଗଠକ ଭାବେ ସାଧାରଣ ବୁଦ୍ଧିଜୀବୀ ଅଧ୍ୟାପକ ସ୍ତରରୁ ବହୁ ଉଚ୍ଚକୁ ଉଠି ଅସାଧାରଣ ଭାବେ ପ୍ରତିଭାତ ହୁଅନ୍ତି । ଆମେ ତାଙ୍କର ସୁସ୍ଥ ନିରୁପଦ୍ରବ ଦୀର୍ଘ ଜୀବନ କାମନା କରୁ । ■

ପ୍ରତିଷ୍ଠାତା ପ୍ରାକ୍ତନ ଅଧ୍ୟକ୍ଷ
ଶିକ୍ଷା ବିକାଶ ସମିତି, ଓଡ଼ିଶା
ରାଷ୍ଟ୍ରୀୟ ପ୍ରାକ୍ତନ ଉପାଧ୍ୟକ୍ଷ, ବିଦ୍ୟାଭାରତୀ ଅଖିଳ ଭାରତୀୟ ଶିକ୍ଷା ସଂସ୍ଥାନ
ଅଧ୍ୟକ୍ଷ- ଅଖିଳ ଭାରତୀୟ ସାହିତ୍ୟ ପରିଷଦ, ଉତ୍କଳ ପ୍ରଦେଶ

# ବଂଧୁ ଭୋଳାନାଥ

ପ୍ରଫେସର ନିତ୍ୟାନନ୍ଦ ଶତପଥୀ

ଆମର ଜଣାଶୁଣା ଆରମ୍ଭ ହୁଏ ରେଭେନ୍‌ସା କଲେଜ ଓଡ଼ିଆ ଏମ୍.ଏ. ଶ୍ରେଣୀରେ । ଆମେ ପାଞ୍ଚଜଣ ଛାତ୍ର ରେଭେନ୍‌ସା କଲେଜରୁ ବି.ଏ. (ଓଡ଼ିଆ ଅନର୍ସ)ରୁ ଆସିଥାଉ ଓ ଆଉ କିଛି ଆସିଥାନ୍ତି ବି.ଏ. ପାଶ୍ ଶ୍ରେଣୀରୁ । ମୁଁ ସେ ବର୍ଷ (୧୯୬୦) ଅନର୍ସ ଓଡ଼ିଆରେ ସର୍ବୋଚ୍ଚ ନମ୍ବର ରଖି ମଧୁସୂଦନରାଓ ଗୋଲ୍‌ଡ ମେଡାଲ ପାଇଥାଏ । ଏ ମେଡ଼ାଲ୍ ସେ ପର୍ଯ୍ୟନ୍ତ କୌଣସି ବି.ଏ. ଅନର୍ସ ଛାତ୍ର ପାଇନଥାନ୍ତି । କାରଣ ଏ ମେଡ଼ାଲ୍‌ର ସର୍ତ୍ତହେଲା ଯେଉଁ ଛାତ୍ର ବା ଛାତ୍ରୀ ଏମ୍.ଏ. (ଓଡ଼ିଆ ଓ ବି.ଏ.(ଓଡ଼ିଆ ଅନର୍ସ)ରେ ସର୍ବୋଚ୍ଚ ଶତକଡ଼ା ହାରରେ ଅଧିକ ମାର୍କ ରଖିଥିବେ ସେହିଁ ଏ ମେଡାଲ୍ ପାଇବେ । ପ୍ରତିବର୍ଷ ଏମ୍.ଏ. ଓଡ଼ିଆରେ ୬୦ ଶତକଡ଼ା ବା ତହିଁରୁ ଉର୍ଦ୍ଧ୍ୱ ନମ୍ବର ରଖି କେହିନା କେହି ଏ ମେଡାଲ୍ ପାଇଥିଲେ । କେବଳ ଏଇ ୧୯୬୦ ମସିହାରେ ହେଲା ବ୍ୟକ୍ତିକ୍ରମ । ମୁଁ ଏକନମ୍ବର ପାଇଁ ପ୍ରଥମ ଶ୍ରେଣୀ ହରାଇଲି ଅର୍ଥାତ୍ ୩୫୯ ନମ୍ବର ରଖି ଉତ୍ତୀର୍ଣ୍ଣ ହେଲି । ସେ ବର୍ଷ କୌଣସି ଛାତ୍ର ଏମ୍.ଏ. ଓଡ଼ିଆରେ ପ୍ରଥମ ଶ୍ରେଣୀ ପାଇଲେ ନାହିଁ । ଶତକଡ଼ା ହିସାବରେ ମଧ୍ୟ ମୋ ଠାରୁ କମ୍ ନମ୍ବର ରଖିଲେ । ତେଣୁ ମୋତେ ଏ ମେଡାଲଟି ମିଳିଲା । ମୋ ପରବର୍ତ୍ତୀ ବର୍ଷ ଅର୍ଥାତ୍ ୧୯୬୧ରେ ମଧ୍ୟ ପରୀକ୍ଷାରେ ଏହାହିଁ ପୁନରାବୃତ୍ତି ହେଲା । ବି.ଏ. ଓ ଅନର୍ସରେ ଶତକଡ଼ା ହାରରେ ଅଧିକ ନମ୍ବର ରଖି ସୌଭାଗ୍ୟ କୁମାର ମିଶ୍ର ଏ ମେଡାଲ୍ ପାଇଲେ । ସେ ପରେ ଇଂରାଜୀରେ ଏମ୍.ଏ. ଅଧ୍ୟୟନ କଲେ । ଏମ୍.ଏ. (ଓଡ଼ିଆ)ରେ କେହି କେହି ପ୍ରଥମ ଶ୍ରେଣୀ ପାଉ ଥିଲେବି ଓଡ଼ିଆ ଅନର୍ସରେ କେହିବି ୧ମ ଶ୍ରେଣୀ ପାଉନଥିଲେ । ଆଜିକାଲି ଜଣେ ଛାତ୍ର ପ୍ରଥମଶ୍ରେଣୀ ପାଇଁ ୪ନମ୍ବର କମ୍ ରଖିଥିଲେ ତାଙ୍କୁ ପ୍ରଥମ ଶ୍ରେଣୀବୋଲି ଘୋଷଣା କରାଯାଉଛି । କାରଣ ୪ନମ୍ବର ଗ୍ରେସ୍‌ମାର୍କ ଦେବା ବ୍ୟବସ୍ଥା ଉତ୍କଳ ବିଶ୍ୱବିଦ୍ୟାଳୟରେ ପ୍ରଚଳିତ ହୋଇଛି । ତେଣୁ ବର୍ଷେ ବର୍ଷେ ୫ରୁ ୧୦ଜଣ ମଧ୍ୟ ଅନର୍ସରେ ପ୍ରଥମଶ୍ରେଣୀ ପାଇ ପାରୁଛନ୍ତି । ଏମ୍.ଏ. ପାଇଁ ମଧ୍ୟ ଏହିପରି ଗ୍ରେସ୍ ମାର୍କ ଦେବା ଯଥା ପ୍ରଚଳିତ ହୋଇଛି ।

ମୁଁ ସିନା ମେଡାଲ୍ ପାଇଥିବାରୁ ସ୍ୱାଭାବିକ ଭାବେ ଏମ୍.ଏ. ଶ୍ରେଣୀରେ ଛାତ୍ର ଓ ଛାତ୍ରୀଙ୍କ ଦୃଷ୍ଟି ଆକର୍ଷଣ କରୁଥିଲି । ଏପରିକି ମୁଁ ୫ମ ବାର୍ଷିକ ଛାତ୍ର ହେଲେବି ଷଷ୍ଠ ବାର୍ଷିକ ଛାତ୍ର ଆଶୁତୋଷ ପଟ୍ଟନାୟକଙ୍କ ସହିତ ପାଠଚକ୍ର ସଂପାଦକ ପଦବୀ ପାଇଁ ପ୍ରତିଯୋଗିତା କରି ଅଧିକ ଭୋଟ୍‌ରେ ସଂପାଦକ ଭାବେ ମନୋନୀତ ହୋଇଥିଲି । ତେବେ ମୁଁ ମୋ ଶ୍ରେଣୀର ଛାତ୍ରବନ୍ଧୁମାନଙ୍କ ଅପେକ୍ଷା ଷଷ୍ଠ ବାର୍ଷିକ ଛାତ୍ର ଛାତ୍ରୀଙ୍କ ଠାରୁ ଅଧିକ ଭୋଟ୍ ପାଇଁ ମନୋନୀତ ହେବା ମଧ୍ୟ ନୂଆ ପରଂପରା ସୃଷ୍ଟି କରିଥିଲା । ମୋ ହାତରେ ସ୍ୱାଭାବିକ ଭାବେ ସେମିନାର୍ ଲାଇବ୍ରେରୀର ଗ୍ଚାବି ରହିଲା ଓ ମୁଁ ଅଧିକ ଭାବେ ସେମିନାର ପୁସ୍ତକମାନଙ୍କ ଉପଯୋଗ କରିପାରିଲି ।

ପରେ ଦେଖାଗଲା ମୋ କ୍ଲାସର ଯେଉଁ ବଂଧୁମାନେ ମୋତେ ଏ ପଦବୀ ପାଇଁ ବିରୋଧ କରୁଥିଲେ ସେମାନେ ଅଧିକାଂଶ ଥିଲେ କ୍ରାଏଷ୍ଟ କଲେଜର ଛାତ୍ର । ବଂଧୁ ଭୋଳାନାଥ ସେମାନଙ୍କ ନେତୃତ୍ୱ ନେଉଥିଲେ । ଆମେ ୧୯୬୨ ମସିହା ଏମ୍.ଏ. ପରୀକ୍ଷାରେ ଯେଉଁମାନେ ପାଶ୍ କରିଥିଲୁ ପ୍ରାୟ ସମସ୍ତେ ସେତେବେଳେ ସରକାରୀ, ବେସରକାରୀ ବା ବିଶ୍ୱବିଦ୍ୟାଳୟ ନୈଶ୍ୟ ବିଭାଗରେ ଅଧ୍ୟାପକ ପଦବୀ ପାଇଥିଲୁ । ମୁଁ ଲକ୍ଷ୍ୟ କରୁଥିଲି ଭୋଳାନାଥଙ୍କ ନେତୃତ୍ୱ ନେବାପାଇଁ ବା ସଂଗଠନ ପାଇଁ ଅଧିକ ଧ୍ୟାନ ରହୁଥିଲା । ଏଇ ବେସରକାରୀ କଲେଜର ଅଧ୍ୟାପକମାନଙ୍କୁ ସେମାନଙ୍କ ଦାବି ହାସଲ ପାଇଁ ଦୀର୍ଘ କାଳଧରି ସଂଘର୍ଷ କରିବାକୁ ହେଉଥିଲା । ସେମାନଙ୍କୁ ସରକାର ଭାଗ ଭାଗ କରିରଖିଥିଲେ । ଶେଷକୁ ହାଇସ୍କୁଲର ଶିକ୍ଷକମାନଙ୍କ ସହିତ ମିଶି ସେମାନେ ଯେଉଁ ମହାସଂଘ ଗଠନ କଲେ ସରକାର ବାଧ୍ୟହେଲେ ସେମାନଙ୍କୁ ସ୍ୱୀକୃତି ଦେବାପାଇଁ । ମହାନ୍ ଶିକ୍ଷକନେତା ଅଧ୍ୟାପକ ଅବନୀ କୁମାର ବରାଳଙ୍କ ସହକର୍ମୀ ଭାବେ ଖୁବ୍ ପରିଚିତ ଥିଲେ । କଟକର ରାଉସାପାଟଣାରେ ତାଙ୍କ ପୈତୃକ ଭିଟ୍ଟାଭୂଇଁ ଥିଲେବି ଅନେକ ବ୍ୟକ୍ତିଗତ କାରଣ ଯୋଗୁ ସେ କଟକ ଛାଡ଼ି ଜଗତସିଂହପୁର ଠାରେ ସ୍ଥାୟୀଭାବେ ରହିବାକୁ ଇଚ୍ଛା କରିଥିଲେ । ଜଗତସିଂହପୁର ଥିଲା ତାଙ୍କର କର୍ମଭୂମି ।

ପରେ ପ୍ରବୃଦ୍ଧ ବୟସରେ ସେ ଜଗତସିଂହପୁର ଇତିହାସ, ସଂସ୍କୃତି, ସାହିତ୍ୟ, ଅର୍ଥନୀତି ଓ ନାନାଦି ସମ୍ଭାବନାକୁ ନେଇ ଯେଉଁ ଐତିହାସିକ କାର୍ଯ୍ୟରେ ମନଯୋଗ ଦେଲେ ତାର ଫଳଶ୍ରୁତି ଥିଲା ତିନୋଟି ପ୍ରଭାଗରେ ପ୍ରାୟ ୨୦୦୦ ପୃଷ୍ଠାର ତିନୋଟି ରୟାଲ୍ ସାଇଜ୍ ପୁସ୍ତକର ସଂକଳନ । ସେତେବେଳେ ମୋତେ ସେ ଜଗତସିଂହପୁର କବିମାନଙ୍କ ଉପରେ ଲେଖିବାକୁ ବାରମ୍ବାର ଫୋନ୍ ଯୋଗେ ଅନୁରୋଧ କରିଥିଲେ ଓ ମୋର ସମ୍ମତି ପରେ ଖୁବ୍ ଆଶ୍ୱସ୍ତ ହୋଇଥିଲେ । ବରାବର ଫୋନ୍ କରି ମୋର ଲେଖାଲେଖି କେତେଦୂର ଅଗ୍ରସର

ହେଉଥିଲା ତା' ବୁଝୁଥିଲେ । ସେତେବେଳେ ମୁଁ ଅନୁଭବ କରୁଥିଲି ମୁଁ ବା ଆଉ କେହି ଯେଉଁ ଜଟିଳ କାମଟି କେବେବି କରି ପାରିନଥାନ୍ତୁତା ସେ ଖୁବ୍ ଧୈର୍ଯ୍ୟ ଓ ବିଶ୍ୱାସର ସହ ସଂପାଦନ କରି ପାରିଛନ୍ତି । ପୁସ୍ତକନାମ ରଖିଛନ୍ତି - ଜଗତସିଂହପୁରଃ ଅତୀତ ଓ ବର୍ତ୍ତମାନ । ତାଙ୍କର ତିନି ଆତ୍ମୀୟ ସହଯୋଗୀ ଅଧ୍ୟାପକ କୁଳମଣି ଦାଶ, ମହେନ୍ଦ୍ର କୁମାର ଆଗ୍ରର୍ଯ୍ୟ, ଅଧ୍ୟାପକ ନିରଞ୍ଜନ ବିଶ୍ୱାଳ ଏ ମହାନ କାର୍ଯ୍ୟରେ ବର୍ଷ ବର୍ଷ ଧରି ତାଙ୍କୁ ସହଯୋଗ କରିନଥିଲେ ଏତେବଡ଼ କାମଟିଏ ସମ୍ଭବ ହୋଇ ପାରିନଥାନ୍ତା । ଏ ଜିଲ୍ଲାର ଆରାଧ୍ୟ ଦେବାଦେବୀଙ୍କ ମୂର୍ତ୍ତି ଓ ମନ୍ଦିରର ଅନେକ ଫଟୋ ସଂଗ୍ରହ କରି ୧ମ ଖଣ୍ଡର କଳେବର ଚିତ୍ରାୟିତ କରିଛନ୍ତି । ଏତେ ଲେଖକଙ୍କ ସହିତ ଯୋଗାଯୋଗ ସ୍ଥାପନ କରି ଏ ଜିଲ୍ଲାର ଇତିହାସ, ଭୂଗୋଳ, ପ୍ରତ୍ନତତ୍ତ୍ୱ ମୂର୍ତ୍ତି, ମନ୍ଦିର ଏସବୁ ବିଷୟରେ ଏକ ପ୍ରାମାଣିକ ଗ୍ରନ୍ଥ ସଂକଳନ କରିବା ଖୁବ ବଡ଼ ଦୁରୂହ କାମ ହେଲେବି ସେ ଅଭୂତପୂର୍ବ ଧୈର୍ଯ୍ୟର ସହିତ ଏସବୁ ସଂପାଦନ କରିପାରିଛନ୍ତି ।

ଖାଲି ମନ୍ଦିର ନୁହେଁ, ଏ ଜିଲ୍ଲାର ମୁସ୍‌ଲିମ୍ ବହୁଳ ଗ୍ରାମ ମାନଙ୍କରେ ଥିବା ମସ୍‌ଜିଦ୍‌ମାନଙ୍କୁ ମଧ୍ୟ ସେ ବାଦ୍ ନେଇ ନାହାଁନ୍ତି । ଏହାହିଁ ତାଙ୍କ ଚିନ୍ତା ଓ ଚେତନାର ସମନ୍ୱୟଧର୍ମୀ ଆଭିମୁଖ୍ୟ ।

ଦ୍ୱିତୀୟ ଖଣ୍ଡରେ ୩୫ଜଣ ଲେଖକ ଏ ଜିଲ୍ଲାର ଧର୍ମ ସଂସ୍କୃତି, ଯାନିଯାତ୍ରା, ଲୋକନାଟକ, ବୈଦିକ ସଂସ୍କାର ଓ ଲୋକାଗ୍ରର ବିଷୟରେ ସୁଚିନ୍ତିତ ପ୍ରବନ୍ଧମାନ ଲେଖିଛନ୍ତି । ଏପରିକି ଜିଲ୍ଲାର ସମ୍ବାଦପତ୍ର । ପତ୍ରିକା ପୁସ୍ତକ (ପୁରାତନ ଓ ନୂତନ), କବି, ଲେଖକ, ନାଟ୍ୟକାର କେହି ବାଦ୍ ପଡ଼ିନାହାନ୍ତି । ମୁଁ ଆଷ୍ଟର୍ଯ୍ୟ ହେଲି ଯେତେବେଳେ ମୁଦ୍ରଣ ପୂର୍ବରୁ ଏ ଗ୍ରନ୍ଥ ଗୁଡ଼ିକ ସମ୍ବନ୍ଧରେ ଅଭିମତ ପ୍ରଦାନ କରିବା ପାଇଁ ଜିଲ୍ଲା ମାଜିଷ୍ଟ୍ରେଟ୍‌ଙ୍କ ଠାରୁ ମୁଁ ପତ୍ରଟିଏ ପାଇଲି । ମୋ ସହିତ ଆଉ ଗ୍ରରି ଜଣ ବିଶିଷ୍ଟ ବ୍ୟକ୍ତି ମଧ୍ୟ ଏ ଦାୟିତ୍ୱ ବହନ କରିଥିଲେ ମଁ ମନ୍ତବ୍ୟ ଦେଇଥିଲି - "ମୋ ଜାଣିବାରେ ଜିଲ୍ଲା ଗେଜେଟିଅର ଛାଡ଼ିଦେଲେ ଏହା ଏକ ମୂଲ୍ୟବାନ ଏକକ ଉଦ୍ୟମ ଭାବେ ସୁଧୀ ସମାଜର ଦୃଷ୍ଟି ଆକର୍ଷଣ କରିବ ଓ ଅନ୍ୟାନ୍ୟ ଜିଲ୍ଲାରେ ସମଧାରାର ଉଦ୍ୟମ ପାଇଁ ପଥପ୍ରଦର୍ଶକ ହେବ । ଜଗତସିଂହପୁର ହେରିଟେଜ୍‌କୁ ପ୍ରତିପନ୍ନ କରିବାରେ ଏହା ଏକ ଅଭିନବ ଓ ସାର୍ଥକ ଉଦ୍ୟମ । ■

# ଓଡ଼ିଆ ଅଧ୍ୟାପକଙ୍କ ନେତା

ଡକ୍ଟର ନଟବର ଶତପଥୀ

ଡକ୍ଟର ଭୋଳାନାଥ ରାଉତ ମୋ ପାଇଁ ଯେ କଣ ତାହା କହିବା ସମ୍ଭବ ନୁହେଁ । କାରଣ ଗୋଟିଏ ଭାବ ବା ଆଦର୍ଶକୁ ବୁଝେଇ ହୁଏ ବୋଲି ମୁଁ ବିଶ୍ୱାସ କରେନା । କାମରେ ଯାହାକୁ ଦେଖାଯାଏ ତାର ପ୍ରମାଣ ଫଟୋରେ ସାଇତିହୁଏ । ମାତ୍ର ଫଟୋ ଉଠେ ବିଶେଷ କେତୋଟି ମୁହୂର୍ତ୍ତରେ, ଏକ ଉଲ୍ଲାସ ଭିତରେ, ଆଉ ଏକ ସମୟରେ ମନେ ପକାଇବା ପାଇଁ । ଫଟୋ ଏଥିପାଇଁ ସ୍ମୃତିର ଏକ ସ୍ପନ୍ଦନ । ଖୁବ୍ କମ୍ ସମୟ ଓ ସ୍ଥାନର ସ୍ମୃତି ମାତ୍ର । ଏହାଠାରୁ ଆହୁରି ଦୂରରେ ମନ ଓ ହୃଦୟରେ ଯେଉଁ ଉଲ୍ଲାସ ଚିତ୍ତ ରାଜ୍ୟକୁ ଆରୋହଣ କରେ ତାକୁ ଦେଖେଇବା କେତେ ଯେ କଷ୍ଟ ତାହା ଅନୁଭବୀ ମାତ୍ର ଜାଣେ । ଆଜି ଯେତେବେଳେ ସବୁ କୃତ୍ରିମ ଓ ମୁହଁଦେଖା ସଂପର୍କରେ ଦର୍ପଣ, ସେତେବେଳେ ସହୃଦୟତାର କଥା କିଏ ବା ବୁଝିବ ? ଭୋଳାନାଥ ପ୍ରକୃତରେ ଭୋଳାନାଥ ନୁହଁନ୍ତି; ସେ ସ୍ଥିରଚିତ୍ତ, ଦୃଢଚିତ୍ତ, ପୁଣି ପ୍ରଚଣ୍ଡ ପଣ ଓ ପ୍ରତିଜ୍ଞାର ପୁରୁଷ । ସେ ବେସରକାରୀ କଲେଜ୍ ଶିକ୍ଷକ ସଂଘର ଜଣେ କର୍ମୀ ଓ ନେତା । ଏ ଲେଖକ ସରକାରୀ କଲେଜ ଶିକ୍ଷକ ସଂଘର । ମାତ୍ର ବୃତ୍ତି ଓ ପ୍ରବୃତ୍ତିରେ ସରକାରୀ ବେସରକାରୀ ଫରକ ନଥାଏ । ଏଇଠି ହୃଦୟର ଆବେଗ ଯେତେ ଚଞ୍ଚଳ ଓ ଗତିଶୀଳ ହୁଏ ସଖ୍ୟ ଓ ସହୃଦୟତା କର୍ମାନୁସାରେ ଦୃଢ଼ ହୁଏ । ମୁଁ ଏହିପରି ଏକ ଆବେଗମୟ ମୁହୂର୍ତ୍ତର ଦାସ ହୋଇ ଡକ୍ଟର ରାଉତଙ୍କ ସାନ୍ନିଧ୍ୟ ପାଇଥିଲି ।

୧୯୯୭ ମସିହା ଅକ୍ଟୋବର ମାସ । ବାଣୀବିହାର ଓଡ଼ିଆ ବିଭାଗର ହଲରେ ଖାତା ଦେଖା ଚାଲିଥାଏ । ଡକ୍ଟର ରାଉତଙ୍କୁ ମୁଁ ଜାଣିଥାଏ । ସତେ ଯେମିତି ଧୀର ମନ୍ଥର ଓ ଦୃଢପାଦରେ ଶିଶୁ ହାତୀଟିଏ ଆଗ୍ରହର ଥୋଡ଼ପାହାର ଝୁଲେଇ ଝୁଲେଇ ଆସୁଛି । ସ୍ଥାନାରୁଣର ଗୋଟିଏ ଉଜ୍ଜ୍ୱଳ ଝଲକ ତାଙ୍କର ଆଖି ଉପର ଚଷମା ବିକିରଣ କରୁଛି ଦୃଢ଼ ପ୍ରତ୍ୟୟର; ନିଶ୍ଚିତ ଏକ ଆଶାର ସଙ୍କେତ ସେ ଦୁଇଟି ଆଖି । କ'ଣ ସେ କହିଲେ ଆଜି ମନେ ପଡୁନାହିଁ । ମତେ ବା କାହିଁକି କହିଲେ ଆଜି ଭାବି ହେଉନାହିଁ, କିନ୍ତୁ ଏତିକି ମନେ ଅଛି ଯେ ଯାହା କହିଲେ ମୁଁ ସବୁଥିରେ ହଁ ମାରିଥିଲି । ମୁଁ ହଁର ଏକ ବାରୁଦଗଦା । ସେଥିରେ ଟିକେ ଝୁଲ

ପଢ଼ିବା ଦରକାର । ଝୁଲ ପକାଇବା ଲୋକ ମୁଁ ଦେଖି ନଥିଲି । ସେଦିନ ଦେଖିଲି । ସ୍ୱୟଂ ଭୋଳାନାଥ ଝୁଲଟିଏ । ସେ କଣ ଜାଣିଥିଲେ ବାରୁଦ ବୋଲି ଭୟଙ୍କର ବସ୍ତୁଟିଏ ଅଛି ମୋ ଭିତରେ ? ଜାଣିଥିବେ ସେ କଥା ସେ କହିବେ । କିନ୍ତୁ ମୁଁ ଜାଣେ, ଥରେ ମତେ ବୋଧ ଦେଲେ ମୁଁ ହୃଦୟ ଦିଏ । ସେ ହୃଦୟ କାପୁରୁଷ ପରି ଛଳନା କରେନା, ମଠେଇ ମାଡେଇ ଯାଏନା । ପଣର ଅର୍ଥ ପଣ, ପ୍ରତିଜ୍ଞାର ଭିନ୍ନରୂପ ନଥାଏ । ସେଦିନ ସେ ଏଇଆ କହିଥିବେ, "ଓଡ଼ିଆ ଅଧ୍ୟାପକମାନେ କ'ଣ ଅସମର୍ଥ ନିଜ ଭିତରେ ମେଳି ହୋଇ ନିଜ ବୃତ୍ତି ବିଷୟରେ ଚିନ୍ତାକରିବାକୁ ? ହୋଇପାରିବନି ଓଡ଼ିଆ ଅଧ୍ୟାପକମାନଙ୍କର ଏକ ସମ୍ମିଳନୀ ?" ଏମିତି କିଛି ମନକୁ ବାଧିବା ପରି । ସେଉଠୁ ଉଠିଥିବ ପ୍ରଶାନ୍ତ ସମୁଦ୍ର ଭିତରେ ଅଶାନ୍ତ ଲହରୀ । କାହିଁକି ନୁହେଁ ? ।

ସେ ଶାନ୍ତ ପଡ଼ିଥିବେ । ଭରସା ଆସିଥିବ । ହଁ ଏଇଠି ଅଛି ଜଣେ ତାଗଡ଼ା ଖୋଜୁଥିଲି ପାଇଥିଲି । ସତରେ ସେ ଖୋଜୁଥିଲେ । ତାଙ୍କର ଆଖି ଦୁଇଟା ସବୁବେଳେ ଖୋଜିଲା ଖୋଜିଲା । ସେ ଖୋଜିଛନ୍ତି କେଉଁ ଆଶାମୟୀ ପୁଲକ ଦାୟିନୀ ବିଶୀର୍ଣ୍ଣ ବନସ୍ତର କଣ୍ଟକିତ ପଥରେ । ଅଧ୍ୟାପକମାନେ ବିଛିନ୍ନ ପରସ୍ପର ଠାରୁ । ଅତୀତରେ କେବେ ଗୋଟାଏ ଦଉଡ଼ି ଥିଲା; ମାତ୍ର ଦୁଇତିନିବର୍ଷ ଲମ୍ବା । ଥିଲେ ପ୍ରଫେସର ଧଳ, ପ୍ରଫେସର କାହ୍ନୁ ଚରଣ ମିଶ୍ର । ସର୍ବାଗ୍ରେ ବହୁ ପ୍ରତିଶ୍ରୁତିଧର ଅବନୀ ବରାଳ । ଓଡ଼ିଆ ଅଧ୍ୟାପକ ସମ୍ମେଳନ ଗଢିଥିଲେ ୧୯୭୧-୭୨ରେ, ପୁଣି କେବେ ୧୯୭୪ରେ । ଦୀର୍ଘ ୧୨ବର୍ଷ ପରେ ଖ୍ରୀଷ୍ଟ କଲେଜରେ ତାର ପୁନରୁତ୍‌ଥାନ ହୋଇଥିଲା ୧୯୮୬ରେ । ତାପରେ ଦୀପ ଦପ୍ । ସମ୍ମେଳନର ସଂଯାତ୍ରିକ ଡକ୍ଟର ରାଉତ ପକ୍ଷହୀନ ଜଟାୟୁ ପରି ଭୋଗୁଥିଲେ ବେଦନା । କାହାର ଆଗମନ ହେବ ତାଙ୍କର ଅପେକ୍ଷା ପଥରେ ?

ସେଦିନ ସେଇଠି ସ୍ଥିର ହେଲା ପୁଣି ଗଢିଉଠିବ ସଂଗଠନ, ଜଳିବ ନିଭିପଡ଼ିଥିବା ସଳିତା ଦୀପର ଗର୍ଭ ଭିତରେ । ପ୍ରଫେସର ଆଶୁତୋଷ ପଟ୍ଟନାୟକ (ବାଣୀ ବିହାର)ଙ୍କୁ ସଭାପତି କରି ଗଢାଗଲା ନୂଆ କମିଟି, ଡକ୍ଟର ଉମାଚରଣ ପୂଜାରୀ ଉପସଭାପତି, ଡକ୍ଟର ରାଉତ ସାଧାରଣ ସଂପାଦକ, ଅଧ୍ୟାପକ ନିତ୍ୟାନନ୍ଦ ସାହୁ କୋଷାଧ୍ୟକ୍ଷ । ଡକ୍ଟର ନିତ୍ୟାନନ୍ଦ ନାୟକ ଓ ଡକ୍ଟର ନଟବର ଶତପଥୀ ସଂପାଦକ । ଏହି କମିଟିର ଉଦ୍ୟମରେ ମେ ମାସ ୨୪ ଓ ୨୫, ୧୯୯୮ରେ ଦୁଇଦିନିଆ ଅଧ୍ୟାପକ ସମ୍ମେଳନ, କଟକର ଇନ୍ଦିରା ଗାନ୍ଧୀ କଲେଜରେ । ଅଧ୍ୟାପକ ପୂର୍ଣ୍ଣଚନ୍ଦ୍ର କାନୁଗୋ ଥିଲେ ଅଧ୍ୟକ୍ଷ ଏହି କଲେଜରେ । ଅତି ଉତ୍ସାହୀ ଲୋକ । ସେ ଏକରକମ ଜିଦିଆ । ପ୍ରତିଶ୍ରୁତିରୁ ଓହ୍ଲାଇବା ପରି ନରମ ମିଜାଜି ନୁହଁନ୍ତି ।

ମେ ମାସର ଖରା ପ୍ରଚଣ୍ଡ ଭାବର ପ୍ରତ୍ୟୟ ଘୋଷଣା କରିବା ପରି ସେ ଦୁଇଦିନ ଅଧ୍ୟାପକଙ୍କ ଭିତରେ ଆଣିଥିଲା ଜାଗରଣ । ବହୁ ଅବସରପ୍ରାପ୍ତ ଅଧାପକ ବୟସ୍କ ମଧ୍ୟ ସେଦିନ ଦର୍ଶକ ବା ସମ୍ବର୍ଦ୍ଧିତ ପ୍ରତିଭା ଭାବେ ସଭାମଣ୍ଡନ କରିଥିଲେ । ସଭିଙ୍କ ମୁହଁରେ ଇତିହାସର ଦର୍ପଣ, ଉତ୍ସାହ ଦାନର ଆଶିଷ, ସମ୍ଭାବନାର ପ୍ରତ୍ୟୟ । ହଁ ଓଡ଼ିଆ ଅଧ୍ୟାପକ କେବେ ଆଉ ବିଚ୍ଛିନ୍ନ ହେବେ ନାହିଁ । ଅତୀତର ଇତିହାସରୁ ପାଞ୍ଜି ଦେଖିବା ପରି ବିଜ୍ଞ ଓ ବରିଷ୍ଠ ଅଧ୍ୟାପକମାନେ ଗଣନା କଲେ ୧୯୯୮ ମେ ମାସର ଏଇ ଅଧିବେଶନ କ୍ରମ ହେବ ପଞ୍ଚମ । ତାହାହିଁ ଘୋଷଣା କରାଗଲା । ଏଣିକି ଷଷ୍ଠ ବର୍ଷର ଷଠିଘର ।

ପରବର୍ତ୍ତୀ କାଳର ଅଭ୍ୟୁଦୟ ପାଇଁ ଆବଶ୍ୟକ ମନେହେଲା ଏକ ନୂତନ ଓ ସମ୍ବିଧାନ ସ୍ୱୀକୃତ କମିଟି । ଉପସ୍ଥିତ ବିଜ୍ଞମାନଙ୍କ ପରାମର୍ଶ କ୍ରମେ ବିଧିବଦ୍ଧ ଭାବେ ଗଠିତ ହେଲା କାର୍ଯ୍ୟକାରିଣୀ ସମିତି । ସଭାପତି ଡକ୍ଟର (ପଦ୍ମଶ୍ରୀ) ଦେବୀ ପ୍ରସନ୍ନ ପଟ୍ଟନାୟକ, କାର୍ଯ୍ୟକାରୀ ସଭାପତି ଡକ୍ଟର ଭୋଳାନାଥ ରାଉତ, ଉପସଭାପତି ଡକ୍ଟର ଉମାଚରଣ ପୂଜାରୀ, ଡକ୍ଟର ବୈଷ୍ଣବ ଚରଣ ସାମଲ । ପ୍ରଫେସର ଗଗନେନ୍ଦ୍ରନାଥ ଦାଶ ଓ ପ୍ରଫେସର ବୈରାଗୀ ଚରଣ ଜେନା । ସାଧାରଣ ସଂପାଦକ ଡକ୍ଟର ନଟବର ଶତ୍‌ପଥୀ ଯୁଗ୍ମ ସଂପାଦକ ଡକ୍ଟର ପୂର୍ଣ୍ଣଚନ୍ଦ୍ର କାନୁଗୋ, କୋଷାଧ୍ୟକ୍ଷ ଅଧ୍ୟାପକ ନିତ୍ୟାନନ୍ଦ ସାହୁ । ଏହି କମିଟି ଲଗାତର ଦୁଇଟି ସମ୍ମିଳନୀ କରିଥିଲା ୧୯୯୯ ଫେବୃଆରୀ ୨୦ ଓ ୨୧ରେ ଟିଟିଲାଗଡ଼ରେ, ୨୦୦୦ଜାନୁୟାରୀ ୨୨ ଓ ୨୩ରେ ସୋନପୁରରେ । ଡକ୍ଟର ଉପେନ୍ଦ୍ରନାଥ ମହାନ୍ତି ଓ ଡକ୍ଟର ସୁଧାକର ଦାସ ଥିଲେ ଯଥାକ୍ରମେ ଆୟୋଜକ । ଟିଟିଲାଗଡ଼ ଅଧିବେଶନରେ ମୁଖ୍ୟ ଅତିଥି ଥିଲେ ସମ୍ବଲପୁର ବିଶ୍ୱ ବିଦ୍ୟାଳୟର କୁଳପତି ପ୍ରଫେସର ଧ୍ରୁବରାଜ ନାୟକ ଏବଂ ସୋନପୁରରେ ପ୍ରଫେସର ପବିତ୍ର ମୋହନ ନାୟକ । ଏଥିରେ କବି ଭୀମଭୋଇଙ୍କ ସଂପର୍କରେ ପାଠଚକ୍ର ସମାହିତ ହୋଇଥିଲା ।

ଏହା ବ୍ୟତୀତ ସେଇ ୧୯୯୯ ମାର୍ଚ୍ଚ ୧୩,୧୪,୧୫ ତିନିଦିନ ଧରି ଅନୁଷ୍ଠିତ ହୋଇଥିଲା ଏକ କର୍ମଶାଳା, 'ଭାଷା ଏକ ମାଧ୍ୟମ' ଓ 'ଭାଷା ଏକ ବିଷୟ' ସଂପର୍କରେ । ସଭାପତି ଡକ୍ଟର ପଟ୍ଟନାୟକଙ୍କ ଉଦ୍ୟମରେ NCERT ସମସ୍ତ ବ୍ୟୟଭାର ଗ୍ରହଣ କରିଥିଲା । ସୋନପୁର ଅଧିବେଶନ ଥିଲା ଏକ ଭିନ୍ନ ସମୟର କ୍ରୂରତାର ସଙ୍କେତ । ଅଭିଯୋଗ ହେଲା ମୁଁ ବିନା ପରାମର୍ଶରେ ଅନେକ କାର୍ଯ୍ୟ କରିଛି, ସଂଗଠନର ଶୃଙ୍ଖଳା ଲଂଘନ କରିଛି । ଏହାର ପ୍ରତିବାଦ କରିଥିଲେ ଡକ୍ଟର ରାଉତ । ସେ ଜାଣନ୍ତି ତାଙ୍କ ବିନା ପରାମର୍ଶରେ କୌଣସି କାର୍ଯ୍ୟ ସଂପାଦନ ହୋଇନାହିଁ । ତାଙ୍କ ନଜରକୁ ନିଶ୍ଚୟ ଆଣିଥିବି । ଅଧିକନ୍ତୁ ମୋର କୌଣସି

କାମ ଅସାମ୍ବିଧାନିକ ବା ବ୍ୟକ୍ତିଗତ ସ୍ୱାର୍ଥପରକ ନଥିଲା । ମୋ ନେଇ ଅଭିଯୋଗରେ ବଡ଼ ଚିନ୍ତିତ ହୋଇପଡ଼ିଲେ ଡକ୍ଟର ରାଉତ । ମତେ ପରାମର୍ଶ ଦେଲେ ସେ ସବୁ ପ୍ରତି ଭ୍ରୂକ୍ଷେପ ନ କରିବାକୁ । ମାତ୍ର ନିର୍ବାଚନ ପ୍ରକ୍ରିୟାରେ ମୁଁ ଭାଗନେଲି ନାହିଁ । ଏଥିରେ ଡକ୍ଟର ଉପେନ୍ଦ୍ରନାଥ ମହାନ୍ତି ଓ ଡକ୍ଟର ମନୋରଞ୍ଜନ ମହାନ୍ତି ନିର୍ବାଚିତ ହେଲେ ସାଧାରଣ ସଂପାଦକ ଓ ଯୁଗ୍ମ ସଂପାଦକ ଭାବେ ।

ଏହି ନିଷ୍ପତ୍ତି ଥିଲା ଏକ ବିରାଟ ଭୁଲ୍, ମୋର ହେଉ ବା ଅନ୍ୟ ଅଧ୍ୟାପକଙ୍କର । କାରଣ ନିର୍ବାଚିତ ଦୁଇ ବ୍ୟକ୍ତି ମୋ ପରି ସକ୍ରିୟ ଓ ପ୍ରତିଜ୍ଞାପନ୍ନ ନଥିଲେ । ଡକ୍ଟର ରାଉତ ସେଦିନ ଦୁଃଖରେ ଅନାହର ରହିଲେ, ମୋ ଉପରେ ରାଗିଲେ ନାହିଁ । ଅଭିମାନର ଗୋଟିଏ ସିନ୍ଦୁକ ଭିତରେ ତାଙ୍କର ଦୀର୍ଘଶ୍ୱାସ ଦାଉଁଦାଉଁ ଉଠପଡ଼ରେ ଗ୍ଭଲିଥିଲା । ମୁଁ ଜାଣିଥିଲି ସଂଗଠନ ପୁଣି ଝୁଞ୍ଜିବ । ମାତ୍ର ଝୁଞ୍ଜି ନଥିଲେ ଭୋଳାନାଥ ବାବୁ ସେ ବରାବର ମୋ ସହ ସଂପର୍କ ରଖି କାମ କରିବାକୁ ପରାମର୍ଶ ଦେଉଥିଲେ । କିନ୍ତୁ ଉପେନ୍ଦ୍ରନାଥ ବାବୁ ବା ମନୋରଞ୍ଜନ ବାବୁ ସହଜରେ ଧରାଦେବା ପରି ଲୋକ ନଥିଲେ । ଦୀର୍ଘସୂତ୍ରୀତା ଓ ଆଳସ୍ୟ ଏବଂ ଅନ୍ୟ ନିର୍ଭରତା ସେମାନଙ୍କୁ କାବୁ କରି ରଖିଲା । ମୁକ୍ତଭାବେ କାମ କରିବା କିମ୍ବା ଅନ୍ୟକୁ ନେଇ କରିବାର ସାମର୍ଥ୍ୟ ନଥିଲା । ଉପେନ୍ଦ୍ରବାବୁ ଜଣେ କର୍ମୀ, କିନ୍ତୁ ସେ କର୍କଟ ରୋଗରେ ପୀଡ଼ିତ ହୋଇ ପଡ଼ିଥିଲେ । ଆକସ୍ମିକ ଭାବେ ଉଣାଗଲା । ମନୋରଞ୍ଜନଙ୍କର ଇଚ୍ଛାଶକ୍ତି ଦୁର୍ବଳ । ଏମିତି ଗଡିଗଲା ତିନିବର୍ଷ ।

ଭୋଳାନାଥ ବାବୁ ଅସ୍ଥିର, ଅଥୟ । ବହୁବ୍ୟକ୍ତିଙ୍କୁ ଯୋଗାଯୋଗ କରିଛନ୍ତି, ଫୋନ୍ କରିଛନ୍ତି, ଅନେକଙ୍କୁ ଭେଟିଛନ୍ତି । କିନ୍ତୁ ଓଡ଼ିଆ ଅଧ୍ୟାପକଙ୍କର ଚେତନାର ଉଦ୍ରେକ ହୋଇନାହିଁ । ଓଡ଼ିଆ ଭାଷାର କର୍ମୀସ୍ୱରୂପ ଯେଉଁ ଅଧ୍ୟାପକମାନେ ଜାତି ଉଦ୍ଦେଶ୍ୟରେ ଏକପ୍ରାଣ ହେବା କଥା ତାହା ହୋଇନାହିଁ । ଅବଶ୍ୟ ୨୦୦୪ରେ ରେଭେନ୍‌ସାରେ ମୁଁ ଏକ ଅଧିବେଶନ କରାଇଛି, ୨୦୦୭ରେ ରାଜଧାନୀରେ ହୋଇଛି କିନ୍ତୁ ଶିଥିଳତା ଭାଙ୍ଗିନାହିଁ । ପରେ ଖ୍ରୀଷ୍ଟ ଓ ବେତନଟୀରେ ଦୁଇଟି ଅଧିବେଶନ ହୋଇଛି, ରାଉରକେଲାରେ ହୋଇଛି ତାର ବିବରଣୀ ଦେବା ଦରକାର ପଡୁନାହିଁ । କାରଣ ରାଉରକେଲା ଅଧିବେଶନକୁ ଯିବା ତାଙ୍କ ପକ୍ଷେ ସମ୍ଭବ ହୋଇ ନଥିଲା । ଏଠାର ଅଧିବେଶନ ଖୁବ୍ ଜାକଜମକରେ ହେଲା । ସେ ଅଞ୍ଚଳର ବହୁ ଅଧ୍ୟାପକ ଯୋଗ ଦେଲେ । କିନ୍ତୁ ଉପକୂଳ ଅଞ୍ଚଳ କଲେଜର ଅଧ୍ୟାପକ ଯୋଗଦେଲେ ବହୁତ କମ ସଂଖ୍ୟାରେ ।

ଓଡ଼ିଆ ଅଧ୍ୟାପକ ସମ୍ମେଳନ ଏକ ରେଜେଷ୍ଟ୍ରିଭୁକ୍ତ ସଂଗଠନ । ସ୍ୱର୍ଗତ ଅବନୀ ବରାଳଙ୍କ

ନେତୃତ୍ୱରେ ମାତ୍ର ଦୁଇଟି ସମ୍ମିଳନୀ ହୋଇଥିଲା । ଡକ୍ଟର ରାଉତଙ୍କ ନେତୃତ୍ୱରେ ଓ ସାଙ୍ଗଠନିକ ଦକ୍ଷତାର ସ୍ୱାକ୍ଷରରେ ୮ଟି ଅଧିବେଶନ ସଂପାଦିତ ହୋଇଛି । ପ୍ରତ୍ୟେକ ଅଧିବେଶନରେ ସ୍ମରଣିକା ପ୍ରକାଶ ପାଇବ, କୃତୀ ଅବସର ପ୍ରାପ୍ତ ଅଧ୍ୟାପକଙ୍କୁ ସମ୍ବର୍ଦ୍ଧନା ଦିଆଯିବ, ପ୍ରକାଶକଙ୍କୁ ଉତ୍ସାହ ସ୍ୱରୂପ ମାନପତ୍ର ଦିଆଯିବ, ନୂଆ ସଭ୍ୟ ସଂଗ୍ରହ ହେବ, ସ୍ଥାନୀୟ ସାହିତ୍ୟିକମାନଙ୍କୁ ନେଇ ସାହିତ୍ୟ ସଂଗଠନର ଭଲମନ୍ଦ ବିଗ୍ରହ ହେବ । ଏସବୁ ତାଙ୍କ ଚିନ୍ତାର ଗୋଟିଏ ଗୋଟିଏ ଝଲକ । ଓଡ଼ିଆ ଅଧ୍ୟାପକ ସମ୍ମେଳନ ଓଡ଼ିଆ ଭାଷା ସାହିତ୍ୟର ସମସ୍ୟା, ପାଠପଢ଼ାର ସମସ୍ୟା, ଗବେଷଣା, ପତ୍ର ପତ୍ରିକା ପ୍ରକାଶନର ନାନା ପ୍ରତିବନ୍ଧକ ନେଇ ବିଗ୍ରହ ବିତର୍କ ହେବ । ସାହିତ୍ୟ ଓ ଭାଷା କ୍ଷେତ୍ରରେ ସମସ୍ୟା ଦୂରହେବ । ଗୋଟିଏ ବିରାଟ ଆଶା ନେଇ ସେ ବାହାରିଥିଲେ । ଅନେକ କାମ ନିଜେ କରିଛନ୍ତି । ସଂକଳନ ଓ ସଂପାଦନ କ୍ଷେତ୍ରରେ ସେ ଅଗ୍ରଗଣ୍ୟ । ଜଗତସିଂହପୁର ଭାଷା ସାହିତ୍ୟ ଇତିହାସକୁ ନେଇ ଓ ସରଳା ଦେବୀଙ୍କ ସଂପର୍କରେ ତାଙ୍କର ଗ୍ରନ୍ଥ ପ୍ରସ୍ତୁତି ଏ କ୍ଷେତ୍ରରେ ସ୍ମରଣୀୟ । ଶେଷ ଗ୍ରନ୍ଥଟି ଏ ଯାଏ ପ୍ରକାଶ ପାଇଲା ନାହିଁ; ଦୁଃଖ ରହିଗଲା । କାରଣ ଦୀର୍ଘ ଏକ ବର୍ଷରୁ ବେଶି କାଳ ହେବ ସେ ଶଯ୍ୟାଶାୟୀ । ଏହି ଗ୍ରନ୍ଥରେ ଅନ୍ୟତ୍ର ତାଙ୍କର କୃତିତ୍ୱ ସଂଯୁକ୍ତ ହୋଇଛି, ଏଣୁ ତାର ପୁନରୁଲ୍ଲିଖନ ଦରକାର ନାହିଁ ।

ଆମ ସମୟର ସେ ଲଢୁଆ ଓ ଅନନ୍ୟ ସଂଗ୍ରାମୀ ପୁରୁଷ । ବାର୍ଦ୍ଧକ୍ୟର ଶିଥିଳତା ତାଙ୍କୁ ଛୁଇଁ ପାରିନାହିଁ । ଅର୍ଥ ଅଭାବରୁ ସେ ପଛେଇ ନାହାଁନ୍ତି । ସଂଗଠନର ଗୋଟିଏ ଅସୁବିଧା ଅର୍ଥ ଅଭାବ । ମାତ୍ର ସେ ଏ ଅଭାବକୁ କେମିତି ପୂରଣ କରନ୍ତି ସେହିଁ ଜାଣନ୍ତି । କେବେ ତାହା ଅଗ୍ରଗତିରେ ବାଧକ ହୋଇନାହିଁ । ତାଙ୍କର କହିବା ଅନୁସାରେ କେତେ ଶୁଭେଚ୍ଛୁ, କେତେ ପ୍ରକାଶକ, ବ୍ୟବସାୟୀ ସହଯୋଗ କରିଛନ୍ତି, ଯାହା ଆମ ମଧ୍ୟରୁ ଅନେକଙ୍କ ପକ୍ଷରେ ସମ୍ଭବ ହୋଇନାହିଁ । ଗୋଟିଏ ବ୍ୟକ୍ତି କେତେ ଉଦାର ଓ ସ୍ୱପ୍ନଦ୍ରଷ୍ଟା ହେଲେ ସଂଗଠନ କରିହୁଏ, ଗୋଟିଏ ଉତ୍ସାହ ଦୀପ୍ତ ବ୍ୟକ୍ତିତ୍ୱ କେତେ ଅକୁତୋଭୟ ହେଲେ ପ୍ରତ୍ୟେକ କାର୍ଯ୍ୟ ସୁଖ ସଂପାଦିତ ହୁଏ, ଗୋଟିଏ ଲକ୍ଷ୍ୟ କେତେ ସ୍ଥିର ଓ ଦୃଢ଼ ହେଲେ ସାଧନ ଓ ସଫଳତା ମିଳେ ତାହା ଭୋଳାନାଥ ବାବୁଙ୍କ ଆଚରଣରୁ ଜଣାପଡ଼େ । ତାଙ୍କ ସହ କାମ ନ କରିଥିବା ଲୋକ ଏ ବ୍ୟକ୍ତିର ଗୁଣ ବୁଝିପାରିବେ ନାହିଁ । ସେ କେବଳ ନେତା ନୁହଁନ୍ତି, ଏକ କ୍ରାନ୍ତିର ଆଲୋକ । ■

ସି୧୧୬୭, ସେକ୍ଟର-୬ ,
ସିଡିଏ, କଟକ

# ଡକ୍ଟର ଭୋଳାନାଥ ରାଉତ
# ଏକ ନିଆରା ବ୍ୟକ୍ତିତ୍ୱ

ପ୍ରଫେସର ଆଶୁତୋଷ ପଟ୍ଟନାୟକ

ଡକ୍ଟର ଭୋଳାନାଥ ରାଉତ ଏକ ବର୍ଣ୍ଣାଢ୍ୟ ଚରିତ୍ର । ରେଭେନ୍‌ସା କଲେଜରେ ସେ ଆମ ତଳବର୍ଷ ଶ୍ରେଣୀରେ ସ୍ନାତକୋତ୍ତର (ଓଡ଼ିଆ) ବିଭାଗର ବିଦ୍ୟାର୍ଥୀ ଥିଲେ । ସେତିକିବେଳୁ ତାଙ୍କ ସହିତ ମୋର ପରିଚୟ । ମୋର ନିରପେକ୍ଷ ଦୃଷ୍ଟିରେ ସେ ଥିଲେ ଏକ ଅଜାତଶତ୍ରୁ ବ୍ୟକ୍ତି । ଗୀତା ବାକ୍ୟ ଅନୁଯାୟୀ ସେ ଥିଲେ "ତୁଲ୍ୟ ନିନ୍ଦାମ୍ ସଂସ୍ତୁତି ସନ୍ତୁଷ୍ଟୋ ଯେନ କେନ ଚିତ୍" ତାଙ୍କର ବହୁମୁଖୀ ପ୍ରତିଭା ତାଙ୍କୁ ଏକ ସ୍ୱତନ୍ତ୍ର ଆସନରେ ଆସୀନ କରିଛି ।

ଛାତ୍ରାବସ୍ଥାରୁ ସେ ବହୁ ଗଳ୍ପ ପ୍ରବନ୍ଧ ଏକାଙ୍କିକା ଓ ନାଟକ ପ୍ରଭୃତି ଲେଖି ସାରସ୍ୱତ ସାଧନା ଜଗତର ପରିସରକୁ ଆସିଛନ୍ତି । ଜଗତସିଂହପୁର ସେ ଏକ ଗୌରବ । ଜଗତସିଂହପୁର ତାଙ୍କର ପ୍ରାଣ । ଜଗତସିଂହପୁର ସ୍ୱାମୀ ବିବେକାନନ୍ଦ ମହାବିଦ୍ୟାଳୟରେ ସେ ଓଡ଼ିଆ ବିଭାଗ ମୁଖ୍ୟ ଥିଲେ । ସେ ଯେପରି ସୁଦକ୍ଷ ଅଧ୍ୟାପକ ଥିଲେ, ସେହିପରି ଅତ୍ୟନ୍ତ ଛାତ୍ରବତ୍ସଳ ଥିଲେ । ଛାତ୍ରମାନଙ୍କୁ ସେ ନିଜର ଅନ୍ତରଙ୍ଗ ବନ୍ଧୁ ଭଳି ଭଲ ପାଉଥିଲେ । ଓଡ଼ିଆ ବିଭାଗର ପ୍ରତ୍ୟେକ ଅଧ୍ୟାପକ ଅଧ୍ୟାପିକାଙ୍କୁ ସେ ସବୁବେଳେ ଆଦର ଭଦ୍ର ବ୍ୟବହାର ପ୍ରଦର୍ଶନ କରିଛନ୍ତି । କୌଣସି ସହକର୍ମୀ ତାଙ୍କୁ ସମାଲୋଚନା କରୁଥିଲେ , ସେ ତାଙ୍କର ସହନଶୀଳତା ଦ୍ୱାରା ତାଙ୍କୁ ନିଜର କରି ନେଉଥିଲେ । ଏହାଦ୍ୱାରା ସେ ବିଭାଗୀୟ ମୁଖ୍ୟ ଭାବେ ତାଙ୍କର ଏକ ଗୌରବ ମଣ୍ଡିତ ସ୍ଥାନ ରଖିଛନ୍ତି । ଡକ୍ଟର ରାଉତ ଯେପରି ସାହିତ୍ୟପ୍ରେମୀ ଥିଲେ ଉଚ୍ଚକୋଟୀର ଗବେଷକ ଥିଲେ । ଉତ୍କଳ ବିଶ୍ୱବିଦ୍ୟାଳୟ ଓଡ଼ିଆ ସ୍ନାତକୋତ୍ତର ବିଭାଗରେ ସେ ଡକ୍ଟର କୃଷ୍ଣଚନ୍ଦ୍ର ସାହୁଙ୍କ ତତ୍ତ୍ୱାବଧାନରେ "ବଳରାମଦାସଙ୍କ ଦାଣ୍ଡିରାମାୟଣ" ରେ ଗବେଷଣା କରୁଥିଲେ ତାଙ୍କର ଗବେଷଣାତ୍ମକ ନିବନ୍ଧ ଉଚ୍ଚକୋଟୀର ଥିଲା । ସେ ଏଥିରେ ତନ୍ନ ତନ୍ନ କରି ଦାଣ୍ଡିରାମାୟଣରେ ପ୍ରତିଫଳିତ ଧର୍ମଚେତନା, ସମାଜଚିତ୍ର ଓ ଓଡ଼ିଶାର ସଂସ୍କୃତିକୁ ନିରପେକ୍ଷ ଭାବରେ ବିଶ୍ଳେଷଣ କରିଛନ୍ତି ତାଙ୍କ ନିବନ୍ଧରେ ଗବେଷଣାର ନିୟମ ସର୍ବତୋଭାବେ ସୁରକ୍ଷିତ ହୋଇଥିବାରୁ ଏହା ଉଚ୍ଚକୋଟୀର ଗବେଷଣାତ୍ମକ ନିବନ୍ଧ ରୂପେ

ବିବେଚିତ । ଏହି ନିବନ୍ଧରେ ଥିବା ନୂତନ ତଥ୍ୟର ବୈଜ୍ଞାନିକ ବିଶ୍ଳେଷଣ ହୋଇଥିବାରୁ ତାହା ପରବର୍ତ୍ତୀ ଗବେଷକ ମାନଙ୍କୁ ପଥପ୍ରଦର୍ଶନ କରିଥାଏ । ତାଙ୍କର ଗବେଷଣାତ୍ମକ ନିବନ୍ଧର ତତ୍ତ୍ୱାବଧାରକ ଡକ୍ଟର କୃଷ୍ଣଚରଣଙ୍କ ମୁହଁରୁ ତାଙ୍କ ନିବନ୍ଧର ଉଚ୍ଛ୍ୱସିତ ପ୍ରଶଂସା ଶୁଣିଛି ଏବଂ ମୁଁ ଏହି ନିବନ୍ଧର ମହତ୍ତ୍ୱକୁ ବିଶେଷ ଭାବରେ ଉପଲବ୍ଧି କରିଛି ।

ଡକ୍ଟର ରାଉତ ଜଣେ ନିଷ୍ଠାପର ସାରସ୍ୱତ ସାଧକ, ଛାତ୍ରାବସ୍ଥାରୁ ଆଜୀବନ ସେ ସାହିତ୍ୟ ସେବାରେ ନିଜକୁ ନିଯୁକ୍ତ କରିଛନ୍ତି । ଏଠାରେ ବିସ୍ତୃତ ଭାବରେ ନହେଲେ ମଧ୍ୟ ସଂକ୍ଷେପରେ ତାଙ୍କର ସାହିତ୍ୟ କୃତି ମାନଙ୍କର ପରିଚୟ ଦେବା ସମୀଚୀନ ମନେ କରୁଛି ।

ନାଟ୍ୟ ସାହିତ୍ୟରଚନାରେ ତାଙ୍କର ବିଶେଷ ଆଗ୍ରହ ଥିଲା । ତେଣୁ ଜଣେ ସଫଳ ନାଟ୍ୟକାର ହୋଇ ପାରିଥିଲେ । ମନୋରଞ୍ଜନ ଦାସଙ୍କର ନବନାଟ୍ୟ ଆନ୍ଦୋଳନ ତାଙ୍କୁ ବିଶେଷ ଭାବରେ ଅନୁପ୍ରାଣିତ କରିଥିଲା । ଏଥିପାଇଁ ସେ ନିଜ ନାଟକରେ ପ୍ରତୀକଧର୍ମୀ ସଂଳାପ ଓ ଚରିତ୍ରମାନଙ୍କୁ ସ୍ଥାନ ଦେଇଛନ୍ତି । ନାଟକ ରଚନାରେ ସେ ନିଜର ପାରଦର୍ଶିତା ପ୍ରଦର୍ଶନ କରିବାର କାରଣ ହେଉଛି ସେ ଜଣେ କୁଶଳୀ ଅଭିନେତା ଓ ନିର୍ଦ୍ଦେଶକ ଥିଲେ । ତାଙ୍କ ଦ୍ୱାରା ରଚିତ ନାଟକଗୁଡ଼ିକ ହେଉଛି "ଅବ୍ୟକ୍ତ ଅପରାହ୍ଣ" "ଆଗନ୍ତୁକ" ଓ "ଅସମାପ୍ତ ସଂଳାପ" ।

ନାଟକ ରଚନା ଛଡ଼ା ସେ ମଧ୍ୟ ଏକାଙ୍କିକା ରଚନାରେ ସିଦ୍ଧ ହସ୍ତତା ପ୍ରଦର୍ଶନ କରିଛନ୍ତି । ସେ ଏକାଙ୍କିକା ରଚନା ବେଳେ ଏକାଙ୍କିକାର ଐକତ୍ରୟୀ (ସମୟ, ସ୍ଥାନ ଓ କାର୍ଯ୍ୟର ସୁସମନ୍ୱୟ) ସମ୍ବନ୍ଧରେ ସେ ବିଶେଷ ସଚେତନ ଥିଲେ । ଏହାଛଡ଼ା ଏକାଙ୍କିକାରେ ଘଟଣା ପ୍ରବାହର ଦ୍ରୁତଗତି, ଦର୍ଶକ ମନରେ 'ସନ୍ଦେହ ଓ ଉତ୍କଣ୍ଠା ସୃଷ୍ଟି ଦ୍ୱନ୍ଦ୍ୱ ପରିବେଷଣ ଓ ଦ୍ୱନ୍ଦର ପରିସମାପ୍ତି ପ୍ରତୀକଧର୍ମୀ ସଂକ୍ଷିପ୍ତ ସଂଳାପ ଇତ୍ୟାଦିର ଯଥାର୍ଥ ଉପସ୍ଥାପନା ପ୍ରତି ସେ ବିଶେଷ ଯତ୍ନଶୀଳ ଥିଲେ ଏଥିପାଇଁ ତାଙ୍କୁ ସଫଳ ଏକାଙ୍କିକା ରଚୟିତାର ସମ୍ମାନ ଦେବା ଅପ୍ରାସଙ୍ଗିକ ନୁହେଁ । ତାଙ୍କ ଦ୍ୱାରା ରଚିତ ଓଡ଼ିଆ ଉପନ୍ୟାସ ସାହିତ୍ୟର ପରିଚୟ, ସମାଲୋଚକ, ପାଠକ ଓ ଗବେଷକମାନଙ୍କୁ ପଥ ପ୍ରଦର୍ଶନ କରିଥାଏ, ଏହା ତାଙ୍କର ଏକ ଅନନ୍ୟ ସଫଳ କୃତି ।

ଏହା ଛଡ଼ା ସେ ଅନେକ ତଥ୍ୟମୂଳକ ସମାଲୋଚନା ଗ୍ରନ୍ଥ ରଚନା କରି ଓଡ଼ିଆ ସମାଲୋଚନା ସାହିତ୍ୟ ଭଣ୍ଡାରକୁ ସମୃଦ୍ଧ କରିଛନ୍ତି । ଏଗୁଡ଼ିକରେ ତାଙ୍କର ବିଦ୍‌ବତ୍ତା ଓ ଅନୁସନ୍ଧିତ୍ସା ମନୋବୃତ୍ତିର ପ୍ରତିଫଳନ ଘଟିଛି । ତାଙ୍କ ଦ୍ୱାରା ରଚିତ ସମାଲୋଚନାତ୍ମକ ଗ୍ରନ୍ଥ ଗୁଡ଼ିକ ହେଲା- ସାହିତ୍ୟିକ ସମାଲୋଚନା, କାବ୍ୟ ଓ କବି, ଓଡ଼ିଆ ସାହିତ୍ୟର ତତ୍ତ୍ୱ ଓ ତଥ୍ୟ,

ଲେଖା ଓ ଲେଖକ, ଓଡ଼ିଶାର ସାଂସ୍କୃତିକ, ସାମାଜିକ ଓ ରାଜନୈତିକ ଇତିହାସ ଓ ବୈଦିକ ସାହିତ୍ୟ ଓ ସଂସ୍କୃତି ।

ଚିନ୍ତାମୂଳକ ଓ ତଥ୍ୟମୂଳକ ପ୍ରବନ୍ଧ ରଚନାରେ ଶ୍ରୀରାଉତଙ୍କର କୁଶଳତା ବିଶେଷ ଭାବରେ ପରିଲକ୍ଷିତ ହୋଇଥାଏ । ଏ ପ୍ରକାରର ପ୍ରବନ୍ଧ ତାଙ୍କ ଦ୍ୱାରା ସଂକଳିତ "ଜଗତସିଂହପୁର: ଅତୀତ ଓ ବର୍ତ୍ତମାନ" ତିନିଖଣ୍ଡ ବିପୁଳକାୟ ପ୍ରବନ୍ଧ ସଂକଳନରେ ପ୍ରକାଶ ପାଇଛି । ସଂକ୍ଷେପରେ ସେ ଗୁଡ଼ିକ ହେଉଛି ୧- ଓଡ଼ିଆ ପର୍ଯ୍ୟଟନ ଓ ଅନୁବାଦ ସାହିତ୍ୟକୁ ଜଗତସିଂହପୁରର ଅବଦାନ (୨ୟ ଖଣ୍ଡରେ) ୨ ସାରଳାରୁ ସତ୍ୟବାଦୀ ବାକ୍ୟ ପରମ୍ପରା ଓ ଜଗତସିଂହପୁର (ଡକ୍ଟର ଗୌରାଙ୍ଗ ଚରଣ ରାୟଙ୍କ ସହିତ ଯୁଗ୍ମ ଲେଖକ ଭାବେ ଏହା ରଚିତ ହୋଇଛି । ୩- ଜଗତସିଂହପୁର ନାମକରଣର ଐତିହାସିକତା ଓ ଧାର୍ମିକ ପ୍ରଚ୍ଛଦ, (୧ମ ଖଣ୍ଡ) ୪-ସମଗ୍ର ବିଶ୍ୱରେ ଗଣପତି ଉପାସନା ( ୧ମ ଖଣ୍ଡ) ୫- ଜଗତସିଂହପୁର ଜିଲ୍ଲାର ପ୍ରମୁଖ ସ୍ୱାଧୀନତା ସଂଗ୍ରାମୀ (୧ମ ଖଣ୍ଡ) ଡକ୍ଟର ଭୋଳାନାଥ ରାଉତଙ୍କ ଭଳି ଅକ୍ଳାନ୍ତ ପରିଶ୍ରମୀ, ଲକ୍ଷ୍ୟ ହାସଲରେ ଏକାଗ୍ରଚିତ୍ତ ଏବଂ ଏକ ବିଶିଷ୍ଟ ସଂଗଠକ ଜଗତସିଂହପୁରରେ କ୍ୱଚିତ ଅଛନ୍ତି । ସେ କେବେ ପୁରସ୍କାର ଓ ମାନସମ୍ମାନରେ ଅପେକ୍ଷା ନରଖି ତାଙ୍କ ଲକ୍ଷରେ ଆଗେଇ ଚାଲନ୍ତି । ଏଠାରେ ଶ୍ରୀମଦ୍‌ଭାଗବତ ଗୀତାରୁ ଗୋଟିଏ ଶ୍ଳୋକ ମୁଁ ଉଲ୍ଲେଖ କରୁଛି । ଯାହା ତାଙ୍କପାଇଁ ସଂପୂର୍ଣ୍ଣ ପ୍ରଯୁଜ୍ୟ ।

"ତୁଲ୍ୟ ନିନ୍ଦା ପ୍ରଶଂସାସୁ ସନ୍ତୁଷ୍ଟଃ ଯେନ କେନ ଚିତ୍" ତାଙ୍କର ବେଶ ପୋଷାକରେ ଆଡମ୍ବରତା ନାହିଁ । ତାଙ୍କର ସର୍ବଦା ହସହସମୁଖ ମଣ୍ଡଳକୁ ଦେଖିଲେ ତାଙ୍କ ପାଖରେ ସବୁ ଅଭିମାନ ଚୂନା ହୋଇଯାଏ । ସେ ଗୋଟିଏ ଉନ୍ନତ ବ୍ୟକ୍ତିତ୍ୱ ସଂପନ୍ନ ବ୍ୟକ୍ତି । ଜଗତସିଂହପୁର ଅଞ୍ଚଳକୁ ସେ ମା' ଭଳି ଭଲ ପାଉଥିଲେ ।

ସେ ଲେଖିଛନ୍ତି - 'ମା'ର ଶକ୍ତି ଓ ମାତୃଭୂମିର ଇତିହାସକୁ ଆକଳନ କରିବା ଯେପରି କାହା ପକ୍ଷରେ ସମ୍ଭବ ନୁହେଁ, ସେହିପରି କୌଣସି ଜାତି ବା ସ୍ଥାନର ଇତିହାସ ଲେଖିବା ବା ସଂକଳନ କରିବା ଅତ୍ୟନ୍ତ କଷ୍ଟସାଧ୍ୟ ବ୍ୟାପାର । କେଜାଣି କାହିଁକି ଏଭଳି ବିସ୍ମୟକର ଭାବ ମୋ ମନରେ 'ଜାଗ୍ରତ ହୋଇଥିଲା ।' (ଗ୍ରନ୍ଥର ପ୍ରଥମ ଖଣ୍ଡ ମୁଖବନ୍ଧ)

ଅନେକ ବନ୍ଧୁଙ୍କ ସହିତ ଆଲୋଚନା କରିଛି, ଏ ଜିଲ୍ଲାର ଶାସ୍ତ୍ରବିତ ଐତିହାସିକ, ଗବେଷକମାନଙ୍କୁ ଏକତ୍ର କରି ଯୋଜନାବଦ୍ଧ ଭାବରେ ଏ କାର୍ଯ୍ୟକୁ ପରିଚାଳନା ଓ ସଂପାଦନା କରିବା ପାଇଁ ମନସ୍ଥ କରି ୧.୧.୨୦୦୩ ମସିହାରେ ଏ କାର୍ଯ୍ୟର ଶୁଭାରମ୍ଭ କରିଥିଲି । (ପ୍ରଥମଖଣ୍ଡ ମୁଖବନ୍ଧ)

ଗ୍ରନ୍ଥଟି ପ୍ରସ୍ତୁତ କଲାବେଳେ ଅନେକ ସମସ୍ୟାର ସମ୍ମୁଖୀନ ହୋଇଛି । ଭବିଷ୍ୟତ ପାଇଁ ଏଗ୍ରନ୍ଥକୁ ଏକ ଦସ୍ତାବିଜ୍ (document) ଭାବେ ପ୍ରସ୍ତୁତ କରିବାକୁ ଉଦ୍ଦେଶ୍ୟ ରଖି ମୁଖ୍ୟତଃ ବୈଜ୍ଞାନିକ ପ୍ରତ୍ନତାତ୍ତ୍ୱିକ ଓ ଐତିହାସିକ ଦୃଷ୍ଟିକୋଣରୁ ଚେଷ୍ଟା କରାଯାଇଛି । (ପ୍ରଥମଖଣ୍ଡ ମୁଖବନ୍ଧ)

ବିଶେଷକରି ଏହି ପୁସ୍ତକ ସଂକଳନ ପାଇଁ ସମସ୍ତ ଆଞ୍ଚଳିକ ତଥ୍ୟ ସଂଗ୍ରହ ନିମନ୍ତେ ବିଶେଷଜ୍ଞଙ୍କ ସହିତ କୋଣାନୁ କୋଣକୁ ବାରମ୍ବାର ଗ୍ରସ୍ତ କରିଛି । (ପ୍ରଥମ ଖଣ୍ଡ ମୁଖବନ୍ଧ) ମୁଁ ଅବସର ଗ୍ରହଣ ପରେ ମୋ ନିଜର ବାସଭବନରେ ବସିଥାଏ । ଏହି ସମୟରେ ହଠାତ୍ ଭୋଳିବାବୁ ଆସି ପହଞ୍ଚିଲେ । ମୁଁ ଆସିବାର କାରଣ ପଚ୍ଚାରିବାରୁ ସେ କହିଥିଲେ ତମେ ବୈଷ୍ଣବଧର୍ମ ଓ ଓଡ଼ିଶାର ବିଭିନ୍ନ ଧର୍ମଧାରା ଉପରେ ଅଧ୍ୟୟନ କରିଛ । ଆମେ "ଜଗତସିଂହପୁର ଅତୀତ: ଓ ବର୍ତ୍ତମାନ" ଶୀର୍ଷକ ତତ୍ତ୍ୱମୂଳକ ପ୍ରାମାଣିକ ଗ୍ରନ୍ଥ ରଚନା କରିବାକୁ ଯୋଜନା କରିଛୁ । ତମେ ଜଗତସିଂହପୁର ବିଭିନ୍ନ ଧର୍ମପୀଠ ମଠ ଓ ଧର୍ମ ସାହିତ୍ୟ ପ୍ରଭୃତିର ସଂଗ୍ରହ କାର୍ଯ୍ୟରେ ଆମକୁ ସହଯୋଗ କରିବ ।

ମୁଁ କିଛି ପଚ୍ଚାରିବା ପୂର୍ବରୁ ସେ କହିଥିଲେ ତମ ସହିତ ମୁଁ ନିରଞ୍ଜନ (ତାଙ୍କ ଭାଇ) ରବୀନ୍ଦ୍ର କୁମାର ପ୍ରହରାଜ ଗୋଟିଏ ଗାଡ଼ିରେ ଯାଇଁ ତଥ୍ୟ ସଂଗ୍ରହ କରିବେ । ମୁଁ ଅତ୍ୟନ୍ତ ଆନନ୍ଦ ବିହ୍ୱଳ ହୋଇ ତାଙ୍କ ଯୋଜନାବଦ୍ଧ ଉଦ୍ୟମରେ ଅନ୍ତର୍ଭୁକ୍ତ ହେଲି, ମୋର ମନେ ପଡୁଛି- ୨୦୦୩ ମସିହାର ପ୍ରାୟ ମାର୍ଚ୍ଚ କିମ୍ବା ଏପ୍ରିଲ୍ ମାସର ସକାଳୁ ସକାଳୁ ଆମେ ବାହାରି ପଡ଼ିଲୁ । ମୁଁ ସାଙ୍ଗରେ ମୋର ଗବେଷଣା ସହାୟକ ଅରବିନ୍ଦ ପ୍ରଧାନକୁ ନେଇଥିଲି । ଆମର ତଥ୍ୟ ସଂଗ୍ରହ ଅଭିଯାନ କଇଞ୍ଚଙ୍ଗାରୁ ଆରମ୍ଭ ହୋଇ ହାଜିପୁର, ବିରିତି, ଅକ୍ଷଶମ୍ଭୁ ଧ୍ୟାନକୁଦ, ବାଗଲପୁର ପ୍ରଭୃତି ସ୍ଥାନ ଗସ୍ତକରି ବାଲିଆରେ ପହଞ୍ଚି ଥିଲା । ଏହା ମଧ୍ୟରେ ଆମେ ବିଭିନ୍ନ ମନ୍ଦିରକୁ ଯାଇ ତଥ୍ୟ ସଂଗ୍ରହ କରିଥିଲୁ । ଯେଉଁ ମନ୍ଦିର ଗୁଡ଼ିକ ସମ୍ବନ୍ଧରେ ସବିଶେଷ ତଥ୍ୟ କରାଯାଇଥିଲା, ସେଗୁଡ଼ିକରୁ ଅଧିକ ଶିବମନ୍ଦିର, ଶକ୍ତିମନ୍ଦିର, ବିଷ୍ଣୁମନ୍ଦିର ପ୍ରଭୃତି ଥିଲା । ଦ୍ୱିତୀୟ ଦିନ ବାଲିଆ ଠାରୁ ହରିଶପୁର, ମରୀଚପୁର ପର୍ଯ୍ୟନ୍ତ ଯାଇ ଗତିପଥରେ ଥିବା ବିଭିନ୍ନ ମନ୍ଦିର ଗୁଡ଼ିକର ତଥ୍ୟ ସଂଗ୍ରହ କରାଯାଇଥିଲା ।

ତୃତୀୟ ଦିନର ଯାତ୍ରା ଜଗତସିଂହପୁର ଆରମ୍ଭ ହୋଇ ପୁରୋହିତପୁର ମୁଦୁପୁର, ମହିଳୋ ତୁଳସୀଗାଦି ପ୍ରଭୃତି ବାଟଦେଇ ବାଲିକୁଦା ପର୍ଯ୍ୟନ୍ତ ଯାଇଥିଲା । ଏହି ଯାତ୍ରାପଥରେ ଥିବା ବୌଦ୍ଧଧର୍ମ ଓ ଜୈନଧର୍ମର ମନ୍ଦିରଗୁଡ଼ିକର ବହୁକିଛି ତଥ୍ୟମିଳିଥିଲା ବାଲିକୁଦାରୁ ଗୋଡ଼ା ପଞ୍ଚପଲ୍ଲୀ ପ୍ରଭୃତି ଦେଇ ତଥ୍ୟ ସନ୍ଧାନ କାର୍ଯ୍ୟ କୁଜଙ୍ଗ ପର୍ଯ୍ୟନ୍ତ ଯାଇଥିଲା ।

ଏହା ପରେ ମୋ ପାଇଁ ଏକ ଦୁର୍ଭାଗ୍ୟର ଦିନ ଆସିଥିଲା ମୋର ହଠାତ୍ ହୃତ୍‌ଘାତ ହେଲା ସେଥିପାଇଁ ବାଙ୍ଗାଲୋର ଯାଇ ଅପରେସନ୍ କରିବାକୁ ପଡ଼ିଥିଲା । ମୋର ଏହି ଆକସ୍ମିତ ଦୁର୍ଘଟଣା ମୋତେ ମୋ ଅଞ୍ଚଳର ଧର୍ମମୟ ମହତ୍ତ୍ୱ ତଥ୍ୟ ସଂଗ୍ରହକରିବାରେ ପ୍ରତିବନ୍ଧକ ସୃଷ୍ଟିକରିଥିଲା ।

ଭୋଳିବାବୁଙ୍କ ପ୍ରରୋଚନା ଯୋଗେ ଯେ ଏତେ ବଡ଼ କ୍ଷେତ୍ର ଅଧ୍ୟୟନ ହୋଇପାରିଲା ଏବଂ ମୁଁ ଏହାର ସୁଯୋଗ ନେଇ ପାରିଲି ସେଥିପାଇଁ ମୁଁ ତାଙ୍କ ପାଖରେ ଚିରଋଣୀ ।

ଭୋଳିବାବୁଙ୍କ ତଥ୍ୟ ସଂଗ୍ରହ ନିଶା ଓ ସଂକଳନର କୁଶଳତାର ପଟାନ୍ତର ନାହିଁ । ଜଗତସିଂହପୁର କୋଣ ବିକୋଣରେ ବିଛେଇ ପଡ଼ିଥିବା ପ୍ରତ୍ନତାତ୍ତ୍ୱିକ କୀର୍ତ୍ତିରାଜି, ଧର୍ମୀୟ ପରଂପରା ଐତିହାସିକ ଘଟଣାବଳୀ, ଶୈଳ୍ପିକ ମହତ୍ତ୍ୱ, ସାଂସ୍କୃତିକ ମହତ୍ତ୍ୱ, ସେ ଯେପରି ଲୋକ ଲୋଚନକୁ ଆଣିଛନ୍ତି ଓଡ଼ିଶାର ଇତିହାସ ପୃଷ୍ଠାରେ ତାହା ନିଶ୍ଚୟ ଏକ ଗୌରବାବହ ସ୍ଥାନ ଦେବ । ତାଙ୍କର ଏହି ପ୍ରଚଣ୍ଡ ପ୍ରତିଭା ନିକଟରେ ମୋ ମସ୍ତକ ସ୍ୱତଃ ନତ ହୋଇଯାଉଛି । ତାଙ୍କର ଏହି ମହନୀୟ କୀର୍ତ୍ତି ପାଇଁ ସେ ଚିରଞ୍ଜୀବୀ ହୋଇ ରହିବେ । ଜଗତସିଂହପୁର ଚିରସ୍ମରଣୀୟ ବରପୁତ୍ର ମାନଙ୍କ ମଧ୍ୟରେ ତାଙ୍କର ସ୍ଥାନ ବହୁ ଉଚ୍ଚରେ । ଏଭଳି ବ୍ୟକ୍ତି ସବୁଦିନେ ଚିରନମସ୍ୟ, ତାଙ୍କର କୀର୍ତ୍ତି ଅମ୍ଳାନ, ଠିକ୍ କାରୁକାର୍ଯ୍ୟ ଖଚିତ କୋଣାର୍କ ଭଳି । ମୁଁ ଶୁଣି ବିଶେଷ ମର୍ମାହତ, ତାଙ୍କର ଦେହ ବହୁତ ଅସୁସ୍ଥ । ସେଥିପାଇଁ ଈଶ୍ୱରଙ୍କୁ ପ୍ରାର୍ଥନା କରୁଛି ଆଶୁ ଆରୋଗ୍ୟ ଲାଭ କରି ସେ ଏହିଭଳି ମହାନ୍ କାର୍ଯ୍ୟକରି ଜଗତସିଂହପୁର ଅଞ୍ଚଳ ପାଇଁ ଏକ ଆଲୋକସ୍ତମ୍ଭ ହୋଇ ରହନ୍ତୁ । ପ୍ରବନ୍ଧଟିକୁ ଶେଷ କରିବା ପୂର୍ବରୁ ଦିପଦ ଲେଖୁଛି ।

'ସ ଜାଣେ ଯେନ ଜାତେନ – ଜାତିବଂଶ ସମୁନ୍ନତ୍ତ'



ଭୁବନେଶ୍ୱର

# ଓଡ଼ିଆ ଅଧ୍ୟାପକ ସମ୍ମେଳନ ଓ ଡକ୍ଟର ରାଉତ

ଡକ୍ଟର ପୂର୍ଣ୍ଣଚନ୍ଦ୍ର କାନୁନଗୋ

ଅତି ଅଳ୍ପ ସମୟର ପରିଚୟ । ମ୧୯୮୪ରେ ମୁଁ ଏସ୍.ଭି.ଏମ୍ କଲେଜରେ ଓଡ଼ିଆ ବିଭାଗରେ ପ୍ରାଧ୍ୟାପକ ଭାବେ ଯୋଗଦେବା ପରେ ଡକ୍ଟର ରାଉତଙ୍କ ନାମ ଓ ତାଙ୍କ କାର୍ଯ୍ୟାବଳୀ ସଂପର୍କରେ ଅନେକ କଥା ଶୁଣିବାକୁ ପାଇଥିଲି । କିନ୍ତୁ ଦୁଃଖର କଥା ମୋର ଏହି ଅନୁଷ୍ଠାନରେ ଆଠବର୍ଷକାଳ ରହଣି କାଳରେ ତାଙ୍କ ସହିତ ଦେଖାହେବାର ସୁଯୋଗ ମିଳିନଥିଲା । ଏହାପରେ ମୋର କିଶୋରନଗର କଲେଜକୁ ଅଧ୍ୟକ୍ଷଭାବରେ ବଦଳି ଦେବା ସମୟରେ ମୋତେ ତାଙ୍କଠାରୁହିଁ ଦାୟିତ୍ୱ ନେବାକୁ ପଡ଼ିଥିଲା । ସେହି ଦିନେ ଦୁଇଦିନ ମଧ୍ୟରେ ସେ ମୋତେ କଲେଜ ସଂପର୍କରେ ଅନେକ କଥା ସୂଚାଇଥିଲେ ବଡ଼ଭାଇ ଭଳି କିଛି ଉପଦେଶ ମଧ୍ୟ ଦେଇଥିଲେ, ଯାହାକୁ ଆଧାର କରି ମୁଁ ସେଠାରେ କାର୍ଯ୍ୟ କରିଥିଲି । ତା'ପରେ ଅଧ୍ୟକ୍ଷ ଭାବେ ବଦଳି ହେଲା କଟକର ଇନ୍ଦିରା ଗାନ୍ଧୀ ମହିଳା ମହାବିଦ୍ୟାଳୟକୁ । ଦୀର୍ଘ ଛଅବର୍ଷ ପରେ ପୁଣି ଥରେ ଏହି ମହାବିଦ୍ୟାଳୟରେ କାର୍ଯ୍ୟରତ ଅବସ୍ଥାରେ ଦେଖାହେଲା ଉଭୟଙ୍କ ମଧ୍ୟରେ । ଅନେକ ଅତୀତର କାର୍ଯ୍ୟାବଳି ଉପରେ ଆଲୋଚନା ପରେ ସେ ମହାଶୟ ମୋତେ ଏକ ପ୍ରଶ୍ନ କଲେ । ତାଙ୍କର ପ୍ରଶ୍ନଟି ଥିଲା, ମୁଁ ଆପଣଙ୍କୁ ଯେଉଁ ବିଷୟରେ ଅନୁରୋଧ କରିବି ଆପଣ ହଁ କରିବେ । ମୁଁ କହିଲି ଭାଇ ଏହାତ ସମ୍ଭବ ନୁହେଁ । ଆପଣଙ୍କ କଥାଟା ସିନା ମୁଁ କରିପାରିଲେ ହଁ କହିବି । ଯାହାହେଉ ତା'ପରେ ସେ ଆରମ୍ଭ କଲେ 'ପୂର୍ଣ୍ଣବାବୁ ! ଓଡ଼ିଆ ଭାଷା ସାହିତ୍ୟର ଉନ୍ନତି ତଥା ଓଡ଼ିଆ ଅଧ୍ୟାପକମାନଙ୍କର ଉନ୍ନତିକଳ୍ପେ ଆପଣଙ୍କୁ କିଛି କାର୍ଯ୍ୟ କରିବାକୁ ପଡ଼ିବ'। ଏତିକି ଶୁଣି ମୁଁ ହଁ କରିବି କହିବା ପରେ ସେ କହିଲେ ଦୀର୍ଘ ପନ୍ଦରବର୍ଷ ଧରି ଓଡ଼ିଆ ଅଧ୍ୟାପକ ସମ୍ମେଳନ ହୋଇପାରିନାହିଁ । ଏହା ମୃତବତ୍ ହୋଇ ପଡ଼ିଛି । ଏହାର ପୁନରୁଦ୍ଧାର ପାଇଁ ମୁଁ ବିଶେଷ ଚିନ୍ତିତ । ତେଣୁ ଆପଣ ଆୟୋଜନକଲେ ମୁଁ ଆପଣଙ୍କୁ ସବୁ କ୍ଷେତ୍ରରେ ସାହାଯ୍ୟ ସହଯୋଗ କରିବି । ଏଭଳି ମହତ କାର୍ଯ୍ୟରେ । ଆପଣଭାଗ ନେଲେ ଭଗବାନ ଆପଣଙ୍କର ଅଶେଷ ମଙ୍ଗଳ କରିବେ । ପ୍ରଥମେ ମୁଁ ଟିକେ ବିଚଳିତ ହୋଇ ପଡ଼ିଲି କିନ୍ତୁ ପରେ ସେ ବାରମ୍ବାର ମୋ ନିକଟକୁ ଆସି ଏହି ସମ୍ମେଳନର ଆୟୋଜନ ଓ ସୁଚାରୁରୂପେ ସଂପାଦନ ଲାଗି ଯେଉଁ ପ୍ରକାର ଉଦ୍ୟମ କରିଥିଲେ ତାହା

ଭୁଲିହେବନାହିଁ । ଏହି ଛୋଟ ଅନୁଷ୍ଠାନଟିରେ ବହୁ ବାଧାବିଘ୍ନସତ୍ତ୍ୱେ ଦୁଇଶହ ଅଠସ୍ତରି ଅଧ୍ୟାପକ ଅଧ୍ୟାପିକାଙ୍କ ଉପସ୍ଥିତିରେ ଯେଉଁଭଳି ମନୋରମ ପରିବେଶରେ ଓ ଶାନ୍ତି ଶୃଙ୍ଖଳାର ସହିତ ଏହି ଓଡ଼ିଆ ଅଧ୍ୟାପକ ସମ୍ମେଳନ ସମାପ୍ତ ହୋଇଥିଲା ତାହାହିଁ ଆମ ଉଭୟଙ୍କ ମଧ୍ୟରେ ବନ୍ଧୁତ୍ୱର ଭାବକୁ ଦୃଢ଼କରିଥିଲା ।

ତା'ପରେ ପୁଣି ବର୍ଷକ ପରେ ଏହା କେଉଁଠି କରାଯିବ, ସେଥିପାଇଁ ତାଙ୍କର ଚେଷ୍ଟା ଚାଲିଲା । ଏ ସଂପର୍କରେ ପୂର୍ବରୁ ଗଠନ ହୋଇଥିବା କମିଟିର ସଦସ୍ୟମାନଙ୍କ ଆଲୋଚନା ହୋଇ ସ୍ଥିର 'କରାଗଲାକି ଏହି ସମ୍ମେଳନ ଡି.ଏ.ଭି କଲେଜ ଟିଟିଲାଗଡ଼ରେ ହେବ ଓ ସେତେବେଳେ ମୋର ବନ୍ଧୁ ସ୍ୱର୍ଗତ ଡକ୍ଟର ଉପେନ୍ଦ୍ର ମହାନ୍ତି ସେହି କଲେଜରେ ଅଧ୍ୟକ୍ଷଭାବେ କାର୍ଯ୍ୟ କରୁଥିଲେ । ସେଠାରେ ମଧ୍ୟ ଡକ୍ଟର ରାଉତ ଓ ଅନ୍ୟାନ୍ୟ ବହୁ ବନ୍ଧୁ ଏ କ୍ଷେତ୍ରରେ ସହାୟତା କରି ଏହି ଓଡ଼ିଆ ଅଧ୍ୟାପକ ସମ୍ମେଳନକୁ ବେଶ ସୁନ୍ଦର ଭାବରେ ପରିଚାଳିତ କରିଥିଲେ । ତା'ପରେ ମଧ୍ୟ ଓଡ଼ିଶା କୃଷି ବିଶ୍ୱବିଦ୍ୟାଳୟ ପରିସରରେ ଡକ୍ଟର ବିକାଶ ପଣ୍ଡାଙ୍କ ପରିଚାଳନାରେ ଓ ଭୁବନେଶ୍ୱରର ରାଜଧାନୀ କଲେଜ ପରିସରରେ ଏହି ସମ୍ମେଳନ ଅନୁଷ୍ଠିତ ହୋଇଛି । ଏ ସମସ୍ତ ସ୍ଥାନରେ ଡକ୍ଟର ରାଉତ ଯେଉଁଭଳି ଭାବରେ କାର୍ଯ୍ୟ କରିଛନ୍ତି ତାହା କୌଣସି ଓଡ଼ିଆ ଅଧ୍ୟାପକ ଭୁଲିବେ ନାହିଁ ।

ତାଙ୍କ ସଂପର୍କରେ ଲେଖିବାକୁ ହେଲେ ଓ ତାଙ୍କର ଅନ୍ୟାନ୍ୟ, କାର୍ଯ୍ୟାବଳୀ ସଂପର୍କରେ ଲେଖିଲେ ଏହା ଅତ୍ୟନ୍ତ ଦୀର୍ଘହେବ । ସେ ଜଣେ ସୁସାହିତ୍ୟିକ ଓ ଓଡ଼ିଆ ସାହିତ୍ୟର ବିଭିନ୍ନ ବିଭାଗରେ ଲେଖନୀ ଚାଳନା କରିଛନ୍ତି । ତାଙ୍କର ଏହି ପ୍ରତିଭା ପାଇଁ ସେ ମଧ୍ୟ ବହୁ ଅନୁଷ୍ଠାନରୁ ମାନପତ୍ର ଓ ସଂବର୍ଦ୍ଧନା ପାଇଛନ୍ତି । ଜଣେ ପ୍ରାବନ୍ଧିକ, ସମାଲୋଚକ ଗାଳ୍ପିକ, ନାଟ୍ୟକାର ଓ ଐତିହାସିକ ଭାବେ ଓଡ଼ିଆ ସାହିତ୍ୟ ଜଗତରେ ସେ ନିଜର ଚିନ୍ତାଧାରାକୁ ପ୍ରତିଫଳିତ କରିଛନ୍ତି । ବିଭିନ୍ନ ଅନୁଷ୍ଠାନ ସହିତ ଜଡ଼ିତହୋଇ ନିପୁଣତାର ସହିତ କାର୍ଯ୍ୟକରି ବେଶ୍ ସମ୍ମାନର ପାତ୍ର ହୋଇପାରିଛନ୍ତି । ଦୀର୍ଘଦିନ ଧରି ନିଖିଳ ଉତ୍କଳ ଶିକ୍ଷକ ମହାସଂଘର ସଭାପତି ଓ ଯୁଗ୍ମ ସଂପାଦକ ଭାବେ କାର୍ଯ୍ୟକରି ସାରା ଓଡ଼ିଶାରେ ଶିକ୍ଷକ ତଥା ଅଧ୍ୟାପକ ସଂଗଠନକୁ ଦୃଢ଼କରିବାରେ ସେ ଅଗ୍ରଣୀ ଭୂମିକା ବହନ କରିଥିଲେ । ଦୀର୍ଘଦିନଧରି ରାଜ୍ୟ ଶିକ୍ଷକ ମହାସଂଘର ସଂପାଦକ ତଥା କର୍ଣ୍ଣଧାର ସ୍ୱର୍ଗତ ଅବନୀ କୁମାର ବରାଳଙ୍କର ସେ ଥିଲେ ଅତି ଅନ୍ତରଙ୍ଗ ବନ୍ଧୁ । ଏଭଳି ଏକ କର୍ମନିଷ୍ଠ ବ୍ୟକ୍ତି ଦୀର୍ଘ ଏକବର୍ଷ ହେବ ରୋଗଶଯ୍ୟାରେ ପଡ଼ି ମଧ୍ୟ ନିଜର କର୍ତ୍ତବ୍ୟପଥରୁ ବିରତ ହୋଇନାହାଁନ୍ତି । ତାଙ୍କର ସାହିତ୍ୟ ସାଧନା ଓ ସାଙ୍ଗଠନିକ ଦକ୍ଷତା ବଳରେ ଓଡ଼ିଆ ଭାଷା ସାହିତ୍ୟ ଆଜି ସିଦ୍ଧିବନ୍ତ ହୋଇପାରିଛି । ■

ପଞ୍ଚମୁଖୀ ହନୁମାନ ମନ୍ଦିର, ତୁଳସୀପୁର, କଟକ

# ଡକ୍ଟର ଭୋଳାନାଥ ରାଉତ, ଜଣେ ସମର୍ପିତ ବ୍ୟକ୍ତିତ୍ୱ

ଅଧ୍ୟାପକ ଭଗବାନ ଜେନା

ଏକ ସମର୍ପିତ ବ୍ୟକ୍ତିରୂପେ ଜୀବନ ସାରା ସାହିତ୍ୟ ତଥା ଶିକ୍ଷକ ମହାସଂଘର ନେତା ରୂପେ ଜୀବନ ବିତାଇ ଏକ ବର୍ଷକାଳ ଶଯ୍ୟାଶାୟୀ ହୋଇପଡ଼ିଛନ୍ତି ଡକ୍ଟର ଭୋଳାନାଥ ରାଉତ । ଓଡ଼ିଆ ଭାଷା ଉପରେ ଗବେଷଣାରତ ପ୍ରଖ୍ୟାତ ଗବେଷକ ଡକ୍ଟର ନଟବର ଶତପଥୀ ଭୋଳିବାବୁଙ୍କ ଉଦ୍ଦେଶ୍ୟରେ ଏକ ଅଭିନନ୍ଦନିକା ପାଇଁ ଲେଖା ପଠାଇବାକୁ ଅନୁରୋଧ କରିଥିଲେ । ମୋର ଅସୁସ୍ଥତା ସତ୍ତ୍ୱେ ମୁଁ ଥରେ ଉଦ୍ୟମ କରି ବିଫଳ ହୋଇଥିଲି । ଏବେ ଭୋଳିବାବୁଙ୍କୁ ଫୋନ୍‌କରି ଏକଥା ବୁଝୁଥିଲା ସମୟରେ ରାତିରେ ତାଙ୍କ ସହିତ ଦିବଂଗତ ବ୍ରହ୍ମାନନ୍ଦ ଦାସ ଓ ଗୁରୁରତ୍ନ ହରେକୃଷ୍ଣ ଶତପଥୀଙ୍କ କଥା ଏକ ସଙ୍ଗେ ମନକୁ ଆସୁଛି । ହରିବାବୁ ପ୍ରଖ୍ୟାତ ଶିକ୍ଷକ ନେତା, ଦକ୍ଷ ପ୍ରଧାନ ଶିକ୍ଷକ ରୂପେ କାର୍ଯ୍ୟକରି ଏବେ ଦୀର୍ଘକାଳ ଧରି ରୋଗଗ୍ରସ୍ତ । ନଟବାବୁ ତାଙ୍କ ସାନ ଭାଇ, ଚିରକାଳ ମୋର ଛାତ୍ର ଥିଲେ । ଏମାନେ ସମସ୍ତେ ରାଜ୍ୟର ଶିକ୍ଷକ ଅଧ୍ୟାପକ ନେତା ଏବଂ ଓଡ଼ିଆ ଭାଷାର ଅଭିବୃଦ୍ଧି ପାଇଁ ଜୀବନର ପ୍ରମୁଖ କାଳ କଟାଇଛନ୍ତି । କବି ବ୍ରହ୍ମାନନ୍ଦ ସାହିତ୍ୟ ସେବା କରୁ କରୁ ଅକାଳରେ ଜୀବନ ତ୍ୟାଗ କଲେ । ତାଙ୍କ ପ୍ରତିଷ୍ଠିତ କେନ୍ଦ୍ରାପଡ଼ା ସାହିତ୍ୟ ସଂସଦ ମାଧ୍ୟମରେ ଓଡ଼ିଆ ସାହିତ୍ୟର ଅଭିବୃଦ୍ଧି ପାଇଁ ଉଦ୍ୟମ କରିଥିଲେ । ଏବେ ଭୋଳିବାବୁ ଓ ହରିବାବୁ ଦୀର୍ଘକାଳ ରୋଗଗ୍ରସ୍ତ । ମୁଁ ଇଂରାଜୀ ଅଧ୍ୟାପକ ହେଲେ ମଧ୍ୟ ଓଡ଼ିଆ ସାହିତ୍ୟ ସହ ସଂପର୍କିତ । ଚିଲିକାକୂଳର ବାଲୁଗାଁରୁ ଆରମ୍ଭ କରି କେତେକ ବିପ୍ଲବୀ ଯୁବକ ଓଡ଼ିଆ ସାହିତ୍ୟରେ ଏକ ବିପ୍ଲବୀ ମୋଡ଼ଦେବାକୁ ଉଦ୍ୟମ କରିଥିଲେ । ଶଯ୍ୟାଶାୟୀ ବିପ୍ଲବୀ କବି ରବି ସିଂ ଏ ଆନ୍ଦୋଳନକୁ ସମୃଦ୍ଧ କରିଥିଲେ । ଭୋଳିବାବୁଙ୍କ କଥା ମନକୁ ଆସିଲେ ମୋର ଏମାନଙ୍କ କଥା ମନେପଡ଼େ ।

ଅଧ୍ୟାପକ ଅବନୀ ବରାଳ ଜାତୀୟ ସ୍ତରରେ ଐକ୍ୟବଦ୍ଧ ହୋଇ ଓଡ଼ିଆ ଭାଷାକୁ ସମୃଦ୍ଧ କରିବା ପାଇଁ ଉଦ୍ୟମ କରିଥିଲେ । ତାହା ପରେ ଏକ୍ଷେତ୍ରରେ ଶୂନ୍ୟତା ଦେଖାଦେଲା କିଛିକାଳ । ପରେ ଡଃ ନଟବର ଶତପଥୀ ଏବଂ ଭୋଳିବାବୁ ଉଦ୍ୟମ କରିଥିଲେ । ସେମାନେ

ଜାତୀୟ ସ୍ତରରେ ଓଡ଼ିଆ ଅଧ୍ୟାପକ ସମ୍ମିଳନୀ ପ୍ରତିଷ୍ଠା କରିଥିଲେ । ଭୋଳିବାବୁ ମୋର ସହପାଠୀ ଥିଲେ ରେଭେନ୍ସା କଲେଜର । ମୁଁ ସେ ସମୟରୁ ଲକ୍ଷ୍ୟ କରିଛି ସେ ଓଡ଼ିଆ ଭାଷା ଓ ସାହିତ୍ୟକୁ ସମୃଦ୍ଧ କରିବା ପାଇଁ ସର୍ବଦା ଉଦ୍ୟମ କରୁଥିଲେ । ଡକ୍ଟର ମାୟାଧର ମାନସିଂ ଓଡ଼ିଆ ଅଧ୍ୟାପକ ମାନଙ୍କ ଦକ୍ଷତା ଉପରେ କିଛି ପ୍ରତିକୂଳ ମତ ପ୍ରକାଶ କରିବାରୁ ସର୍ବଭାରତୀୟ ପ୍ରତିକ୍ରିୟା ପ୍ରକାଶିତ ହୋଇଥିଲା । ତାଙ୍କଠୁ କମ୍ ଅଧ୍ୟାପକ ଏହି ପ୍ରତିକୂଳ ମତକୁ ଖଣ୍ଡନ କରିବାକୁ ନିଜ ବୃଦ୍ଧିଦିଗରେ କାମ କରିଥିଲେ । ଯେଉଁମାନେ ଉଦ୍ୟମ କରିଥିଲେ ଓଡ଼ିଶାରେ ଓଡ଼ିଆ ଅଧ୍ୟାପକମାନେ ଦକ୍ଷ ଶିକ୍ଷକ ହୁଅନ୍ତୁ ଏବଂ ନିଜର ଚମତ୍କାରିତା ପ୍ରଦର୍ଶନ କରନ୍ତୁ । ସେମାନଙ୍କ ମଧ୍ୟରେ ଅଧ୍ୟାପକ ପଠାଣି ପଟ୍ଟନାୟକ, ଅବନୀ ବରାଳ, ଡକ୍ଟର ନଟବର ଶତପଥୀ, ଅଧ୍ୟାପକ ଡକ୍ଟର ଭୋଳାନାଥ ରାଉତ, ଡକ୍ଟର ପୂର୍ଣ୍ଣଚନ୍ଦ୍ର ରାଉତ ପ୍ରମୁଖ ଥିଲେ । ବିଭିନ୍ନ ସ୍ତରରେ ଦୀର୍ଘ ଉଦ୍ୟମ ପରେ ଓଡ଼ିଆ ଭାଷାକୁ ଶାସ୍ତ୍ରୀୟମାନ୍ୟତା ମିଳିଛି । ଜାତୀୟ ସ୍ତରରେ ପ୍ରଖ୍ୟାତ ଭାଷାବିତ୍ ଡକ୍ଟର ଦେବୀ ପ୍ରସନ୍ନ ପଟ୍ଟନାୟକ, ଡକ୍ଟର ନଟବର ଶତପଥୀ, ରାଜନୀତିକ ସ୍ତରରେ ସାଂସଦ ବୈଷ୍ଣବ ପରିଡ଼ା ଓ ସାଂସଦ ରାମଚନ୍ଦ୍ର ଖୁଣ୍ଟିଆ ଉଦ୍ୟମ କରିବା ଗଣାଗୁଣା ।

ଭୋଳିବାବୁ ଜଣେ ଦକ୍ଷ ଅଧ୍ୟାପକ ଥିଲେ । ସେ ଦୀର୍ଘବର୍ଷ ସ୍ୱାମୀ ବିବେକାନନ୍ଦ ସ୍ମାରକ ମହାବିଦ୍ୟାଳୟରେ ଅଧ୍ୟାପନା କରିଥିଲେ । ରାଜନୈତିକ ଘଟଣା କ୍ରମରେ ତାଙ୍କୁ ଶେଷରେ ତିର୍ତ୍ତୋଲ, ପରେ କେନ୍ଦ୍ରାପଡ଼ା କଲେଜକୁ ବଦଳି ହୋଇଥିଲା । ସେଠାରେ ସହକର୍ମୀ ଏବଂ କଲେଜ ଶିକ୍ଷକ ସଂଘର ନେତାରୂପେ ଆମର ସଂପର୍କ ଅନ୍ତରଙ୍ଗ ଥିଲା । ନିଜର ସୁଦକ୍ଷ ଅଧ୍ୟାପନା ଏବଂ କଲେଜର ଭାଇସ୍ ପ୍ରିନ୍ସିପାଲ୍ ରୂପେ କାର୍ଯ୍ୟକଇବା ସହିତ ନିଜର ଛାତ୍ର ବତ୍ସଳତାର ପ୍ରମାଣ କରିଥିଲେ । ଶିକ୍ଷକ ମହାସଂଘ ସହିତ ଅନ୍ୟ କେତେକ ଅନୁଷ୍ଠାନ ଦ୍ୱାରା ସେ ସମ୍ବର୍ଦ୍ଧିତ ହୋଇଥିଲେ । ଅଧ୍ୟାପନାରେ ତାଙ୍କର ସୁଦୀର୍ଘ କାର୍ଯ୍ୟକାଳ ସେ ସର୍ବତ୍ର ଲୋକପ୍ରିୟ ଥିଲେ । ସମସ୍ତେ ତାଙ୍କର ସଫଳତା ପାଇଁ ଆମେ ଗର୍ବିତ । ତାଙ୍କର ଦୀର୍ଘ ଅସୁସ୍ଥତା ଉପଶମ ହେଉ, ଏହାହିଁ ଈଶ୍ୱରଙ୍କ ନିକଟରେ ମୋର ବିଶେଷ ପ୍ରାର୍ଥନା । ■

# ସାରସ୍ୱତ ସାଧକ- ଡକ୍ଟର ଭୋଳାନାଥ ରାଉତ

ଡକ୍ଟର ସୁଲୋଚନା ଦାସ

ଆଲ୍‌ବର୍ଟ ଆଇନଷ୍ଟାଇନ କହିଥିଲେ -" Try not to become a man of cuccess, but rather try to become a man of value. To succeed in your mission, you must have single minded devotion to your goal." ଜଣେ ପ୍ରଖ୍ୟାତ ବୈଜ୍ଞାନିକଙ୍କ ବକ୍ତବ୍ୟକୁ ଉଦ୍ଧାର କରି କହୁଛି, ଡକ୍ଟର ଭୋଳାନାଥ ରାଉତ ହେଉଛନ୍ତି ଏଭଳି ଏକ ମନୁଷ୍ୟ ଯିଏ ମୂଲ୍ୟବୋଧରେ ବିଶ୍ୱାସ କରନ୍ତି । ତାଙ୍କ ସମଗ୍ର ଜୀବନନର ଆଦର୍ଶ ଥିଲା ଅଧ୍ୟୟନ, ଅଧ୍ୟାପନା ଓ ଶବ୍ଦବ୍ରହ୍ମଙ୍କର ନିରାଜନା । ଶବ୍ଦହିଁ ତାଙ୍କ ଉପାସନା । ଶବ୍ଦର ଗୋଟିଏ ଗୋଟିଏ ପାହାଚରେ ପାଦ ଥାପି ସେ ଜୀବନର ପ୍ରତ୍ୟେକଟି ସୋପାନ ଆରୋହଣ କରିଗ୍ଲିଛନ୍ତି । ସମୟର ଦ୍ରୁତ ପ୍ରବହମାନ ନଦୀକୁ ଅତିକ୍ରମ କରି ଗ୍ଲିଛନ୍ତି । ଲକ୍ଷ୍ୟ ଏକ । ସାହିତ୍ୟ ସାଧନା ।

ଜଣେ ନିଷ୍ଠାପର ଶିକ୍ଷକ ଭାବରେ ଶ୍ରମଶୀଳତା ସ୍ୱପ୍ନ ଓ ସଂକଳ୍ପ ହେଉଛି ତାଙ୍କ ସାଧନାର ମନ୍ତ୍ରପାଠ । ଛାତ୍ରବତ୍ସଳ, ଦରଦୀ, ବନ୍ଧୁପ୍ରେମୀ । ଓଡ଼ିଆ ଭାଷା ସାହିତ୍ୟ ପ୍ରତି ଗଭୀର ଅନୁରକ୍ତି । ଏଠାରେ ଉଲ୍ଲେଖ କରିବାକୁ ଗ୍ହେଁ, ଅଧ୍ୟାପନ କ୍ଷେତ୍ରରେ ତାଙ୍କର ବିଦ୍‌ବତ୍ତା ଓ ପାଣ୍ଡିତ୍ୟ ତାଙ୍କୁ ଛାତ୍ରମହଲରେ ଅନନ୍ୟ ସମ୍ମାନ ଓ ଭକ୍ତିର ଅଧିକାରୀ କରି ପାରିଥିଲା । ଜଗତସିଂହପୁର ସ୍ୱାମୀ ବିବେକାନନ୍ଦ ସ୍ମାରକ ମହାବିଦ୍ୟାଳୟରୁ ସେ ଆରମ୍ଭ କରନ୍ତି ତାଙ୍କ ବୃତ୍ତିଗତ ଜୀବନ । ବୃତ୍ତି ସହିତ ପ୍ରବୃତ୍ତିର ମହାମିଳନ ଘଟେ । ଅଧ୍ୟାପକ, ପ୍ରାଧ୍ୟାପକ, ଉପାଧ୍ୟକ୍ଷ ଓ ଅଧ୍ୟକ୍ଷ ଭାବରେ ସେ ସାଉଁଟିଛନ୍ତି ଉପଲବ୍ଧିର ମହାର୍ଘ ମଣିମୁକ୍ତା । ବିଭିନ୍ନ ମହାବିଦ୍ୟାଳୟ ହୋଇଛି ତାଙ୍କ ଅନୁଭବର ମନୋଭୂମି । ସେ ଅକାତରେ ନିଜକୁ ଜାଣିଛନ୍ତି ଯେପରି, ଆହରଣ କରିଛନ୍ତି ଅଜସ୍ର ଭଲପାଇବା, ଶ୍ରଦ୍ଧା ଓ ସଦିଚ୍ଛା । ପ୍ରାୟ ତିରିଶ ଖଣ୍ଡ ପୁସ୍ତକ ରଚନା ଓ ସଂପାଦନା କରି ସେ ଓଡ଼ିଆ ସାରସ୍ୱତ ଭଣ୍ଡାରକୁ ସମୃଦ୍ଧ କରି ପାରିଛନ୍ତି । ବ୍ୟକ୍ତିଗତ ଜୀବନର ସଫଳତା ବିଫଳତା ଅପେକ୍ଷା ତାଙ୍କ ସୃଜନ ମନୀଷାକୁ ଆକଳନ କରିବ ମହାକାଳ । ମହାକାଳର କଷଟିରେ ପରୀକ୍ଷିତ ହୋଇ ତାଙ୍କ ସୃଷ୍ଟି ସମୂହ ଅନାଗତ ଭବିଷ୍ୟତର ସ୍ୱପ୍ନିଳ ଦିଗନ୍ତ ଆଡ଼କୁ ପ୍ରସରିଯିବେ । ଏହାହିଁ ତ ଜଣେ ସ୍ରଷ୍ଟାଙ୍କର ଜୀବନବ୍ୟାପୀ ସାଧନାର

ଫଳଶ୍ରୁତି । ସମୟକୁ ଉତ୍ତୀର୍ଣ୍ଣ ହୋଇଯିବାର ନୀରବ ଇଂଗିତ ବହନ କରିଥାଏ ସୃଜନଶୀଳତାର ନିଦାପଣକୁ ।

ପ୍ରାଚ୍ୟ ଜୀବନଦର୍ଶନରେ ସେ ବିଶ୍ୱାସୀ । ଏ ବିଶ୍ୱାସ ପୁଣି ଅତଳତଳ ସ୍ପର୍ଶୀ । " ବୈଦିକ ସମାଜ, ଓ ସଂସ୍କୃତି ଗ୍ରନ୍ଥଟି ଅଧ୍ୟୟନ କଲେ ଏହି ସତ୍ୟ ଉଦ୍‌ଘାଟିତ ହୋଇଥାଏ । " ଦାଣ୍ଡି ରାମାୟଣରେ ଓଡ଼ିଶାର ଲୋକସଂସ୍କୃତି" ଗ୍ରନ୍ଥଟି ଅଧ୍ୟୟନ କଲେ ତାଙ୍କ ମନନଶୀଳତା ବାରି ହୋଇପଡ଼େ । ଗ୍ରନ୍ଥଟିର ମୂଳ ସୌନ୍ଦର୍ଯ୍ୟକୁ ପାଠକମାନଙ୍କ ନିକଟରେ ଉପସ୍ଥାପନା କରିବା ହେଉଛି ତାଙ୍କ ଶାଶ୍ୱତ ଅଭୀପ୍‌ସା । "ସାହିତ୍ୟିକ ସମାଲୋଚନା", "କାବ୍ୟ ଓ କବି", "ଲେଖା ଓ ଲେଖକ", "ଓଡ଼ିଆ ସାହିତ୍ୟରେ ତତ୍ତ୍ୱ ଓ ତଥ୍ୟ" ପ୍ରଭୃତି ବହୁ ସମାଲୋଚନାତ୍ମକ ନିବନ୍ଧ ମାଧ୍ୟମରେ ସେ ଅତୀତ ସହିତ ବର୍ତ୍ତମାନକୁ ଓ ବର୍ତ୍ତମାନ ସହିତ ଭବିଷ୍ୟତକୁ ଗୁନ୍ଥିବାର ପ୍ରୟାସ କରିଛନ୍ତି । ଏ ଜାତିର ଉତ୍ତରପୁରୁଷମାନଙ୍କୁ ଓଡ଼ିଆ ପ୍ରାଚୀନ ସାହିତ୍ୟ ସହିତ ପରିଚିତ କରିବାକୁ ସେ ପ୍ରୟତ୍ନ କରିଛନ୍ତି ।

ଏସବୁ ବ୍ୟତୀତ ସାଂପ୍ରତିକ କାଳର ସାମାଜିକ ବିଧିବ୍ୟବସ୍ଥା ଓ ସମସ୍ୟାଗୁଡ଼ିକ ପ୍ରତି ସେ ବ୍ୟଞ୍ଜନାତ୍ମକ ଦୃଷ୍ଟି ନିକ୍ଷେପ କରିଛନ୍ତି । ତାଙ୍କ ଦ୍ୱାରା ରଚିତ "ଓଡ଼ିଆ ରାଜନୈତିକ, ସାମାଜିକ ଓ ସାଂସ୍କୃତିକ ଇତିହାସ' ଗ୍ରନ୍ଥଟି ତାଙ୍କ ସାମାଜିକ ଅଙ୍ଗୀକାରର ଅନ୍ୟତମ ଉଦାହରଣ । ତାଙ୍କ ଚେତନଦୀପ୍ତ ବ୍ୟକ୍ତିସତ୍ତା ଏସବୁ ସୃଷ୍ଟିର ଅନ୍ତରାଳରେ ବିଦ୍ୟମାନ । ପ୍ରବନ୍ଧ ଓ ସମାଲୋଚନା ରଚନା କ୍ଷେତ୍ରରେ ସେ ଜଣେ ସ୍ୱନାମଧନ୍ୟ ପ୍ରାବନ୍ଧିକ ।

ମୋ ପାଇଁ ଅତନ୍ତ ଗୌରବର କଥା ହେଉଛି, ସେ ମୋ ଗାଁ ସ୍କୁଲ୍ ନାଉଗାଁ ମାଇନର ସ୍କୁଲ୍‌ରେ ପାଠ ପଢିଥିଲେ । ଆମ ଅଞ୍ଚଳର ଜଣେ ବିଶିଷ୍ଟ ଶିକ୍ଷାବିତ ଭାବରେ ସେ ଅଶେଷ ସମ୍ମାନ ଓ ମର୍ଯ୍ୟଦାର ଅଧିକାରୀ ହୋଇ ପାରିଛନ୍ତି । ସମଗ୍ର ଜଗତସିଂହପୁର ଅଞ୍ଚଳ ପ୍ରତି ତାଙ୍କର ଆନୁଗତ୍ୟ ଓ ଭଲପାଇବାର ପଟାନ୍ତର ନାହିଁ । ଏହି ମାଟିମନସ୍କ ବ୍ୟକ୍ତିଙ୍କ ପ୍ରତି ମୋର ଆନ୍ତରିକ ଶ୍ରଦ୍ଧା ଓ ସମ୍ମାନ ବହୁଗୁଣିତ ହେଲା ଯେଉଁଦିନ ତାଙ୍କ ପ୍ରଚେଷ୍ଟାରେ "ଜଗତସିଂହପୁର ଅତୀତ ଓ ବର୍ତ୍ତମାନ" (ସଂକଳନ ଓ ସଂପାଦନା) ଗ୍ରନ୍ଥଟି ଲୋକଲୋଚନକୁ ଆସିଲା । ନିଜର ଜାତୀୟ କର୍ତ୍ତବ୍ୟ ସଂପାଦନରେ ତାଙ୍କର ଏ ମହତ୍ତ୍ୱପୂର୍ଣ୍ଣ ଭୂମିକାକୁ ମହାକାଳ ଚିରକାଳ ସ୍ମରଣ କରୁଥିବ । ନିଜ ଅଞ୍ଚଳର ଯଶସ୍ୱୀ ବ୍ୟକ୍ତିମାନଙ୍କର କୃତି ଓ କୀର୍ତ୍ତିକୁ ଲିପିବଦ୍ଧ କରିବା ପାଇଁ ବହୁ ଶ୍ରମ ସ୍ୱୀକାର କରିଛନ୍ତି ସେ । ଏପରି ଭୂମିଲଗ୍ନ ବ୍ୟକ୍ତିଙ୍କର ଦ୍ୱିତୀୟ ଉଦାହରଣ ନାହିଁ । ଡକ୍ଟର ଭୋଳାନାଥ ରାଉତ ନିଜେ ଗୋଟିଏ ଅନୁଷ୍ଠାନରେ ରୂପାନ୍ତରିତ ହୋଇ ଯାଇଛନ୍ତି ସତେକି । ଜଗତସିଂହପୁର ଅଞ୍ଚଳର ସରଳାଦେବୀ, ପ୍ରତିଭାରାୟ, ବୀରକିଶୋର ଦାସ, ପ୍ରିୟନାଥ ଦେ, ମାଳତୀ ଚୌଧୁରୀ, (ବୋହୂ) ଡାକ୍ତର କଳ୍ପତରୁ ବିଶ୍ୱାଳ, ବିଶ୍ୱମ୍ଭର

ପରିଡ଼ା, ପ୍ରମୁଖ ମହାନ ବ୍ୟକ୍ତିଙ୍କ ଜୀବନ ଓ କୃତି ସମୂହକୁ ସଂରକ୍ଷିତ କରିବା ଦିଗରେ ତାଙ୍କର ଶ୍ରମ ଓ ସାଧନା ବାସ୍ତବିକ ପ୍ରଶଂସନୀୟ । ଏହା ତାଙ୍କ ଜାତୀୟ ପ୍ରୀତିର ପରିଗ୍ରାୟକ । ଜଣେ ନିଜ ମାଟିକୁ ଭଲ ପାଉ ନଥିଲେ ଏପରି ସାରସ୍ୱତ ଉପହାର ଦେବା ସମ୍ଭବ ହୋଇ ପାରିନଥାନ୍ତା । ସାଂପ୍ରତିକ ସମାଜରେ ସ୍ୱାର୍ଥନିଷ୍ଠ ଭାବନା ବ୍ୟକ୍ତିର ମଗ୍ନ ଚୈତନ୍ୟକୁ କବଳିତ କରିଛି ବୋଲି ଅନେକ ସମାଲୋଚନା କରିଥାନ୍ତି । ମାତ୍ର ଡକ୍ଟର ଭୋଳାନାଥ ରାଉତ ଏ ଦିଗରେ ଏକ ବ୍ୟତିକ୍ରମ । ନିଜ ପାଇଁ ସେ ବିଶେଷ କିଛି କରି ନାହାଁନ୍ତି ।

କେବଳ ସମାଲୋଚନାତ୍ମକ ନିବନ୍ଧ ରଚନା ଓ ସଂପାଦନାରେ ତାଙ୍କ ସୃଜନଶୀଳତା ସୀମାବଦ୍ଧ ହୋଇଯାଇନାହିଁ । ସେ ଗୁଡ଼ିଏ ଗଳ୍ପ ଓଡ଼ିଆ ସାହିତ୍ୟକୁ ଉପହାର ଦେଇଛନ୍ତି । " ଅନୁଚ୍ଚାରିତ ସ୍ୱର" ଗଳ୍ପ ଗ୍ରନ୍ଥରେ ଜୀବନ ଓ ଜଗତ ପ୍ରତି ତାଙ୍କ ପ୍ରଗାଢ ଅନୁରାଗ ଉତ୍କୀର୍ଣ୍ଣ ହୋଇଛି ବେଶ ମନୋଜ୍ଞ ଶୈଳୀରେ । ଏହି ଗଳ୍ପଗୁଡ଼ିକରେ ବୌଦ୍ଧିକତାର ଜଟିଳ ପ୍ରକାଶ ଅପେକ୍ଷା ମାନବବାଦୀ ସ୍ୱର ଅଧିକ ମୁଖର ହୋଇଉଠିଛି । ମଣିଷର ଯାବତୀୟ ଦୁଃଖ ଦୈନ୍ୟ, ଆନନ୍ଦ ଉଲ୍ଲାସ, ପ୍ରଣୟ ବିରହ, ସଫଳତା ବିଫଳତା, ସ୍ୱପ୍ନ ସଂଭାବନାର ମାର୍ମିକ ଅଭିବ୍ୟକ୍ତି ଘଟିଛି ଗଳ୍ପଗୁଡ଼ିକରେ ।

ଜଣେ ସଂଗଠକ ଭାବରେ ତାଙ୍କ କର୍ମନିଷ୍ଠାର ପରିଚୟ ଦେଇପାରିଛନ୍ତି ଡକ୍ଟର ରାଉତ । ନିଖିଳୋତ୍କଳ ଶିକ୍ଷକ ମହାସଂଘର ସଭାପତି ମଣ୍ଡଳୀର ସଭ୍ୟ, ନିଖିଳୋତ୍କଳ ବେସରକାରୀ ମହାବିଦ୍ୟାଳୟ ଶିକ୍ଷକ ସଂଘର ଯୁଗ୍ମ ସଂପାଦକ ଓ ଉପସଭାପତି, ନିଖିଳ ଭାରତ ଓଡ଼ିଆ ଅଧ୍ୟାପକ ସମ୍ମେଳନର ସାଧାରଣ ସଂପାଦକ, କାର୍ଯ୍ୟକାରୀ ସଭାପତି ଓ ସଭାପତି, ଅଭ୍ୟୁଦୟ ସାହିତ୍ୟ ସମାଜର ସଂପାଦକ ପ୍ରଭୃତି ବହୁ ଅନୁଷ୍ଠାନର କର୍ମକର୍ତ୍ତା ଭାବରେ ସେ ତାଙ୍କର ସାଂଗଠନିକ ଦକ୍ଷତାର ପରିଚୟ ଦେଇପାରିଛନ୍ତି । ଉତ୍କଳ ବିଶ୍ୱବିଦ୍ୟାଳୟର ସିନେଟ୍ ସଭ୍ୟ ହେବାର ଗୌରବ ସେ ହାସଲ କରି ପାରିଛନ୍ତି । ଓଡ଼ିଆ ସାରସ୍ୱତ ଜଗତର ବହୁ ଅନୁଷ୍ଠାନ ସହିତ ସେ ଅନ୍ତରଙ୍ଗ ଭାବରେ ଜଡ଼ିତ । ତାଙ୍କ ପୁରୋଦୃଷ୍ଟି ଓ ଦିଗ୍‌ଦର୍ଶନ ଦ୍ୱାରା ସମୃଦ୍ଧ ଓଡ଼ିଶାର ବହୁ ବହୁ ସାଂସ୍କୃତିକ ଅନୁଷ୍ଠାନ । ଉତ୍କଳ ସାହିତ୍ୟ ସମାଜ, ଓଡ଼ିଆ ସାହିତ୍ୟ ଏକାଡେମୀ, କେନ୍ଦ୍ରୀୟ ସାହିତ୍ୟ ଏକାଡେମୀ, କଟକ ବେତାରକେନ୍ଦ୍ର, ଭୁବନେଶ୍ୱର ଦୂରଦର୍ଶନ କେନ୍ଦ୍ର ଓ ଓଡ଼ିଆ ଭାଷା ପ୍ରତିଷ୍ଠାନ ପ୍ରଭୃତି ଛାମୁଆ ଅନୁଷ୍ଠାନ ଗୁଡ଼ିକ ସହିତ ସେ ଯୋଡ଼ି ହୋଇଯାଇଛନ୍ତି ବହୁ କାଳରୁ । ତାଙ୍କ ବ୍ୟକ୍ତିତ୍ୱ, ପାଣ୍ଡିତ୍ୟ, କର୍ମ ପ୍ରବଣତା, ଜାତୀୟ ପ୍ରୀତି, ଓ ଧୀଷଣାର ପ୍ରତିଫଳନ ଘଟିଛି ଏସବୁ କର୍ମ ପ୍ରଚେଷ୍ଟା ମଧ୍ୟରେ । ଜୀବନବ୍ୟାପୀ ଜଣେ ନିଷ୍ଠାପର ସାଧକ ଭାବରେ ସେ ବଞ୍ଚିଛନ୍ତି । ସେପରି ଜଣେ ଶିକ୍ଷାବିତ୍, ସ୍ରଷ୍ଟା, ସଦ୍‌ଗୁରୁଙ୍କୁ ମୁଁ ପ୍ରଣାମ ନିବେଦନ କରୁଛି । ■

# ବୟସ ହାରିଯାଉ

ଡକ୍ଟର ଅଜୟ୍ କୁମାର ମିଶ୍ର

ସ୍ୱାମୀ ବିବେକାନନ୍ଦ ସ୍ମାରକୀ କଲେଜର ଯେଉଁ କେତେଜଣ ଅଧ୍ୟାପକଙ୍କ ନାମ ଚର୍ଚ୍ଚିତ ହୁଏ, ସେମାନଙ୍କ ମଧ୍ୟରେ ଡକ୍ଟର ଭୋଳାନାଥ ରାଉତ ଅଧ୍ୟାପକ ଭାବେ ଅଧିକ ଚର୍ଚ୍ଚା ପରିସରକୁ ଆସିଥାଆନ୍ତି । ମୁଁ ଏଇ କଲେଜର ଛାତ୍ର ନଥିଲେ ବି ଛାତ୍ରାବସ୍ଥାରେ ତାଙ୍କ ନାମ ଶୁଣିଥିଲି । ଏସ୍.ଭି.ଏମ୍. କଲେଜରେ ଓଡ଼ିଆ ବିଭାଗରେ ଅଧ୍ୟାପନା କରିବା ସମୟରେ ୧୯୯୩ ମସିହାରେ ସେ ହେଲେ ମୋର ବିଭାଗ ମୁଖ୍ୟ । ଏଇ ଦାୟରେ ତାଙ୍କ ସହିତ ମୋର ବିଭାଗୀୟ ବୃତ୍ତିଭିତ୍ତିକ ସଂପର୍କ । ବିଭାଗର ସର୍ବାଙ୍ଗୀଣ ବିକାଶ, ପ୍ରତ୍ୟେକ ସହଯୋଗୀଙ୍କ ସହ ପରାମର୍ଶ ଓ ସହାୟତା ଗ୍ରହଣ କରିବା, ନିୟମିତଃ ପାଠଚକ୍ର ଆୟୋଜନ, ବିଶେଷତଃ ଓଡ଼ିଆ ସାହିତ୍ୟ ସମାଜର ବାର୍ଷିକୋତ୍ସବ ଭଳି ବିଭିନ୍ନ କାର୍ଯ୍ୟକ୍ରମରେ ତାଙ୍କ ପରିଚାଳନାଗତ ଦକ୍ଷତାର ସ୍ପଷ୍ଟ ପରିଚୟ ପାଇସାରିଥିଲି ।

୧୯୬୩ ମସିହାରେ ସେ କଥିତ କଲେଜର ଓଡ଼ିଆ ବିଭାଗରେ ଅଧ୍ୟାପକ ଜୀବନ ଆରମ୍ଭ କରି, ପରେପରେ ନୟାଗଡ଼ କଲେଜ, ବାଙ୍କିକଲେଜ, ତିର୍ତ୍ତୋଲ କଲେଜ, କିଶୋର ନଗର କଲେଜ, କନ୍ଦରପୁର କଲେଜ, କେନ୍ଦ୍ରାପଡ଼ା କଲେଜ ଇତ୍ୟାଦି ଓଡ଼ିଶାର ବିଭିନ୍ନ ମହାବିଦ୍ୟାଳୟରେ ଅଧ୍ୟାପକ, ଉପାଧ୍ୟକ୍ଷ, ଅଧ୍ୟକ୍ଷ, ଇତ୍ୟାଦି ଭାବରେ ନିଜର ବୃତ୍ତିଗତ ଜୀବନ କଟାଇ ୧୯୯୮ ମସିହାରେ ବୃତ୍ତିନିବୃତ୍ତ ହୋଇଛନ୍ତି ।

ବୃତ୍ତି ଜୀବନରୁ ଅବସର ସିନା ନେଲେ ହେଲେ ତାଙ୍କ କର୍ମନିଷ୍ଠ ଜୀବନର ନିରବଚ୍ଛିନ୍ନ କର୍ମପ୍ରବଣତା ସେମିତି ଅବ୍ୟାହତ ରହିଛି । ଓଡ଼ିଶାର ଶିକ୍ଷକ ଆନ୍ଦୋଳନ ସହିତ ସେ ଶିକ୍ଷକ ନେତା ଅବନୀ ବରାଳଙ୍କ ଘନିଷ୍ଠ ସହଯୋଗୀ ଭାବରେ ବହୁ ଉନ୍ନୟନ ମୂଳକ କାର୍ଯ୍ୟ ସଂପାଦନ କରିଛନ୍ତି । ତାଙ୍କ ଭଳି ଜଣେ ଦକ୍ଷ ସଂଯୋଜକ, ସଂପାଦକ ଓ ଆୟୋଜକ ପ୍ରକୃତରେ ବିରଳ । ଓଡ଼ିଆ ଅଧ୍ୟାପକ ସମ୍ମେଳନ ତାଙ୍କ ସାଙ୍ଗଠନିକ ଦକ୍ଷତାର ଅନ୍ୟତମ ପରିଚୟ । ମିଷ୍ଟଭାଷୀ, ଅଥଚ ମିଷ୍ଟ କଥନ ଭିତରେ ଅନ୍ୟମାନଙ୍କ ଠାରୁ କାମ ଆଦାୟ କରିବାରେ ସେ ଧୂରୀଣ ।

ଜଗତସିଂହପୁର ଜିଲ୍ଲାରେ ଆମେ ପୁସ୍ତକ ମେଳା ଆୟୋଜନ କରିବାବେଳେ ମୁଁ ଲକ୍ଷ୍ୟ କରିଥିଲି ତାଙ୍କର ଆଗ୍ରହ । ମେଳା ପରିସରସ୍ଥ ପ୍ରତି ସଂଧ୍ୟାର ସାରସ୍ୱତ ଉତ୍ସବର ପ୍ରଥମ ଶ୍ରୋତା ସେ । ମଞ୍ଚାସୀନ ଅତିଥିମାନେ ତାଙ୍କର ପ୍ରାୟ ପରିଚିତ ବନ୍ଧୁ । ଜିଲ୍ଲା ଉତ୍ସବର ପ୍ରଥମ ବର୍ଷର ସ୍ମରଣିକା 'ଆଦିପତ୍ର'ର ପ୍ରଥମ ସଂପାଦକ ଭାବରେ ମୁଁ କାର୍ଯ୍ୟ ନିର୍ବାହ କରିବା ପରେ, ଜାଣିଲି, ଭୋଳିବାବୁ ସେଇ ପ୍ରଥମ ସଂଖ୍ୟାରେ ସ୍ଥାନିତ ଲେଖା ଗୁଡ଼ିକ ଦେଖି ପ୍ରୀତ ହୋଇଛନ୍ତି , ମତେ ସାଧୁବାଦ ଜଣେଇଛନ୍ତି ।ପରେ ପରେ ସେ ସଂକଳନରୁ ପରି କଳ୍ପିତ ହୋଇଛି ବର୍ତ୍ତମାନର ତିନିଖଣ୍ଡରେ ପ୍ରକାଶିତ ତାଙ୍କ ସଂପାଦିତ "ଜଗତସିଂହପୁର ଅତୀତ ଓ ବର୍ତ୍ତମାନ' । ବଡ଼ ସୁଖକର ଅନୁଭବ । ଜିଲ୍ଲାର ବିଭିନ୍ନ ଲେଖକଙ୍କ ସାମର୍ଥ୍ୟ ଅନ୍ୱେଷଣ କରି, ସେମାନଙ୍କ ଦ୍ୱାରା ବିଭିନ୍ନ ଦୃଷ୍ଟିକୋଣରୁ ରଚିତ ବିଭିନ୍ନ ଆଲେଖ୍ୟ ଏକତ୍ର କରି ବଡ଼ବଡ଼ ତିନିଖଣ୍ଡ ଗ୍ରନ୍ଥ ସଂପାଦନା ଓ ପ୍ରକାଶନ କରିବା ଏକ ସାହସିକ ପଦକ୍ଷେପ । ଏକଦା ତାଙ୍କର ସହକର୍ମୀ ଜଣେ ଅଧ୍ୟାପକ ମୋତେ କହିପକାଇଲେ "ଆଉ କ'ଣ ଭୋଳିବାବୁ ଇତିହାସ ଲେଖିଲେଣି ।" ବଡ଼ କଷ୍ଟ ଲାଗିଥିଲା ଏଇ ମନ୍ତବ୍ୟ । ଭୋଳିବାବୁ ଏତେ ଶ୍ରମ ସାଧନା କରି ଜନ୍ମଭୂମିର ଅତୀତକୁ ଖୋଜି ବସିଲେ, ଏ ଭୂମିର ଐତିହ୍ୟକୁ ଲୋକ ଲୋଚନକୁ ଆଣିଲେ, ଅବସର ପରେ ଏତେ ଶ୍ରମ ସ୍ୱୀକାର କଲେ ଅଥଚ ତାଙ୍କ ପ୍ରତି ଏଇ ଉପହାସ ।

ସମୟ ଦାୟରେ ମୁଁ କଟକରେ ଅବସ୍ଥାନ କରିବାରୁ ମୋତେ ବାରମ୍ବାର ଫୋନ୍ କରିନ୍ତି ଓ ମୋର କଟକ ରହଣିରେ ସେ ଦୁଃଖ କରନ୍ତି । ପାଖରେ ଥିଲେ ଅନେକ କାମ ହୋଇଥାନ୍ତା ବୋଲି ଜଣାନ୍ତି । "ଆଦିପତ୍ର" ସଂପାଦନା ମୁଖ୍ୟ ଥିବା ସମୟରେ ଅନେକବାର ତାଙ୍କ ସହିତ ମୁଁ ପ୍ରେସ୍‌ରେ ବସି ଲେଖା ସଂଶୋଧନ, ସଂପାଦନା ଇତ୍ୟାଦି କରିଛି । ବୟସ ଦାୟରେ ତାଙ୍କ କର୍ମନିଷ୍ଠା କେବେବି ନ୍ୟୂନ ହୋଇନାହିଁ । ରାତିଦିନ ଏକ କରି ଆମେ ବହୁ କଷ୍ଟ ସ୍ୱୀକାର କରି ଆଦିପତ୍ର ସଜେଇଲୁ । ମାତ୍ର ମୋ ସଂପାଦିତ ପ୍ରଥମ ସଂଖ୍ୟାର ମାନ ପରବର୍ତ୍ତୀ ସଂଖ୍ୟାରେ ନଥିବାରୁ ସେ ଦୁଃଖ କରିଛନ୍ତି ।

ସ୍ଥାନୀୟ ପରିମଣ୍ଡଳରେ ପ୍ରାୟ ସ୍ମୃତିପତ୍ର ଗୁଡ଼ିକର ସଂପାଦକ ସେ । ତାଙ୍କ ସଂପାଦନାରେ ଅନେକ ସ୍ମରଣିକା ଓ ପାଠ୍ୟ ପୁସ୍ତକ ପ୍ରକାଶିତ । ଦିନେ ପ୍ରସ୍ତାବ ଦେଲି, 'ଆଜ୍ଞା' ଆପଣଙ୍କ ସାରସ୍ୱତ କୃତିକୁ ନେଇ ଏକ ସ୍ମରଣିକା ସଂପାଦିତ ହେଲେ କେମିତି ହୁଅନ୍ତା ? ଆତ୍ମ ପ୍ରଚାର ପ୍ରୟାସ ହୀନ ଭୋଳିବାବୁ ସେତେବେଳେ ତତ୍‌ପରତା ପ୍ରକାଶ କଲେନାହିଁ । ମୁଁ ତାଙ୍କର ଭ୍ରାଇଁ ନିରଞ୍ଜନକୁ ମଧ୍ୟ ଏ ପ୍ରସ୍ତାବ ଦେଇଥିଲି । ଅନେକଦିନ ପରେ ଏବେ ଶୁଣିଲି ଡକ୍ଟର ନଟବର ଶତପଥୀ, ଡକ୍ଟର ପ୍ରଦିପ୍ତ କୁମାର ପଣ୍ଡା, ଶ୍ରଦ୍ଧେୟ ନିରଞ୍ଜନ ଆଉ ମହେନ୍ଦ୍ର କୁମାର ଆଗ୍ରୱାଲ ଏ

ଦିଗରେ କାର୍ଯ୍ୟାରମ୍ଭ କରି ଅଗ୍ରସର ହୋଇଛନ୍ତି । ସେମାନଙ୍କୁ ଧନ୍ୟବାଦ ।

ଭୋଳିବାବୁଙ୍କ ସଂପାଦନାର ସ୍ୱାକ୍ଷର ବହନ କରନ୍ତି 'ଜଗତସିଂହପୁର ଅତୀତ ବର୍ତ୍ତମାନ' 'ଆଦିପତ୍ର' 'ବୀର କିଶୋର ଦାସ', ପ୍ରିୟନାଥ ଦେ, ମାଳତୀ ଚୌଧୁରୀ, କଳ୍ପତରୁ ବିଶ୍ୱାଳ, ବିଶ୍ୱମ୍ବର ପରିଡ଼ା ସ୍ମରଣିକା, ପ୍ରବନ୍ଧ, ଏଯୁଗ ସେ ଯୁଗ, ଏକାଙ୍କିକା ସୌରଭ, ଗଳ୍ପ ସମାରୋହ, କବିତା ଏଯୁଗ ସେଯୁଗ, ଓଡ଼ିଆ ଉପନ୍ୟାସ ସାହିତ୍ୟର ପରିଚୟ, ସରଳାଦେବୀ ଗ୍ରନ୍ଥାବଳୀ, ସାହିତ୍ୟରେ ହସ୍ୟବାଦ, ମେହେର ଆଲୋକ ଭଳି ଅନେକ ଗୁରୁତ୍ୱପୂର୍ଣ୍ଣ ଗ୍ରନ୍ଥାବଳୀ ସ୍ମରଣିକା ଓ ପାଠ୍ୟପୁସ୍ତକ । ଜଣେ କଥାକାର ଓ ସମାଲୋଚକ ଭାବରେ ତାଙ୍କ ସୃଜନ ସ୍ୱାକ୍ଷରର ପରିଛନ୍ନ ପରିଚୟ ପ୍ରକାଶ କରନ୍ତି ସାହିତ୍ୟିକ ସମାଲୋଚକ, କାବ୍ୟ ଓ କବି, ଓଡ଼ିଆ ସାହିତ୍ୟରେ ତତ୍ତ୍ୱ ଓ ତଥ୍ୟ' ବୈଦିକ ସମାଜ ସାହିତ୍ୟ ଓ ସଂସ୍କୃତି, 'ଲେଖା ଓ ଲେଖକ', 'ଦାଣ୍ଡି ରାମାୟଣରେ ଓଡ଼ିଶାର ଲୋକସଂସ୍କୃତି,' 'ଓଡ଼ିଶାର ରାଜନୀତିକ ସାମାଜିକ ଓ ସାଂସ୍କୃତିକ ଇତିହାସ', 'ମହାପୁରୁଷ ଅଚ୍ୟୁତାନନ୍ଦ,'ଅନୁଚାରିତ ସ୍ୱର', ଶତାବ୍ଦୀର ସ୍ୱପ୍ନ ଓ ପଣ୍ଡିତ ଗୋଦାବରୀଶ ଇତ୍ୟାଦି ଗ୍ରନ୍ଥ । ସାରସ୍ୱତ କୃତିତ୍ୱ ପାଇଁ ବିଭିନ୍ନ ସାରସ୍ୱତ ଅନୁଷ୍ଠାନ ତଥା ଓଡ଼ିଆ ସାହିତ୍ୟ ଏକାଡେମୀ ସମ୍ବର୍ଦ୍ଧନା ସେ ଲାଭକରିଛନ୍ତି ।

ନିଖିଳୋତ୍କଳ ଶିକ୍ଷକ ମହାସଂଘର ସଭାପତି, ବେସରକାରୀ କଲେଜ ସଂଘର ଯୁଗ୍ମ ସଂପାଦକ ଓ ଉପସଭାପତି ଏବଂ ଓଡ଼ିଆ ଅଧ୍ୟାପକ ସମ୍ମେଳନର ସାଧାରଣ ସଂପାଦକ, କାର୍ଯ୍ୟକାରୀ ସଭାପତି ଏବଂ ଶେଷରେ ସଭାପତି ପଦମଣ୍ଡନ କରିଛନ୍ତି । ଉତ୍କଳ ବିଶ୍ୱବିଦ୍ୟାଳୟର ସିନେଟ୍ ସଦସ୍ୟ ଅଭ୍ୟୁଦୟ ସାହିତ୍ୟ ସମାଜ ଓ ଅଳକା କଳାମଣ୍ଡପର ସଂପାଦକ ପ୍ରଭୃତି ବିଭିନ୍ନ ସଂଗଠନ ତାଙ୍କ ଅସାଧାରଣ ସୃଜନାତ୍ମକ ସାଙ୍ଗଠନିକ ଦକ୍ଷତାର ପରିଚୟ ବହନ କରିଥାଏ ।

ଜଣେ ସାରସ୍ୱତ ସାଧକ ଭାବରେ ସେ ଗଳ୍ପ, କବିତା, ନାଟକ, ଏକାଙ୍କିକା, ପ୍ରବନ୍ଧ, ସମାଲୋଚନା ପ୍ରଭୃତି ବିଭିନ୍ନ କ୍ଷେତ୍ରରେ କଲମ ଚଳାଇ ନିଜର ସ୍ୱାକ୍ଷର ପ୍ରକାଶ କରିଛନ୍ତି । ତମାମ ଜୀବନ ବିଭିନ୍ନ ସାଙ୍ଗଠନିକ କାର୍ଯ୍ୟକ୍ରମ ପୁଣି ଅବସର ପରେ ଅନବସର ସାହିତ୍ୟ ସାଧନାରେ ବ୍ରତୀ – ଏଇ ବରିଷ୍ଠଙ୍କୁ ଦେଖିଲେ ସତରେ ତାଙ୍କ ସ୍ପୃହା ଓ କର୍ମନିଷ୍ଠା ନିକଟରେ ବାର୍ଦ୍ଧକ୍ୟ ଯେମିତି ପରାଜିତ ହୋଇଛି । ଭୋଳିବାବୁ ଜଗତସିଂହପୁର କାହିଁକି ଓଡ଼ିଶାମାଟିର ଗୌରବ । ■

ଏସ.ଭି.ଏମ୍. (ଅଟୋ) କଲେଜ
ଜଗତସିଂହପୁର

# ଭୋଳାନାଥ ସାର୍‌ଙ୍କ ପାଇଁ କେଇପଦ

ଡକ୍ଟର ସଂଘମିତ୍ରା ମିଶ୍ର

ଭୋଳିସାର୍, ମାନନୀୟ ଡକ୍ଟର ଭୋଳାନାଥ ରାଉତଙ୍କ ସଂପର୍କରେ କିଛି ଲେଖିବାକୁ ହେବ । ମୁଁ ସାର୍‌ଙ୍କୁ ବା କେତେ ଜାଣିଛି । ମୋ ଗାଇଡ ପ୍ରଫେସର କୃଷ୍ଣ ଚରଣ ସାହୁଙ୍କ ଅଧୀନରେ ସେ ଗବେଷଣା କରୁଥିଲେ । ଗବେଷଣା ସରିବା ପରେ ମଧ୍ୟ ସେମାନଙ୍କର ସାରସ୍ୱତ ସଂପର୍କ ରହିଥିଲା । ମୁଁ ତ ଦେଖିଛି ଅନେକ ସମୟରେ ସେମାନେ ପ୍ରାଚୀନ ସାହିତ୍ୟ ବିଶେଷ କରି ରାମାୟଣ ସଂପର୍କରେ ଆଲୋଚନା କରୁଥିଲେ ।

ଭୋଳାନାଥଙ୍କର ଜନ୍ମଭୂମି ଓ କର୍ମଭୂମି ଥିଲା ଜଗତସିଂହପୁର । ଅନ୍ୟାନ୍ୟ ଅଧ୍ୟାପକଙ୍କ ଠାରୁ ସେ ଥିଲେ ଭିନ୍ନ । ଜଗତସିଂହପୁର ପ୍ରତ୍ୟେକ ସାଂସ୍କୃତିକ ଅନୁଷ୍ଠାନର ସେଥିଲେ ସକ୍ରିୟ ସଦସ୍ୟ । ମନେ ଅଛି ଥରେ ସାର୍ ମୋତେ ଡାକିଥିଲେ ଜଗତସିଂହପୁର ପୁସ୍ତକ ମେଳାକୁ । ତାଙ୍କୁ ଥଣ୍ଡାଜର ହୋଇଥିଲା । ତଥାପି ମଫଲର ଟୋପି ସ୍ୱେଟର ଶାଲ୍ ଆବୃତ ସେ ଆମେ ଫେରିବାଯାଏ ଉପସ୍ଥିତ ଥିଲେ, ଆମ ଖାଇବାପିଇବାର ଯତ୍ନ କରିଥିଲେ ।

ଦରକାର ପଡ଼ିଲେ ସାର୍ ଫୋନ୍‌ଟିଏ କରି କାହା ନମ୍ବର ବା ଠିକଣା ପଗ୍ରୁଥିଲେ ଓ କେମିତି ଅଛି ବୋଲି ପଦେ ନିଶ୍ଚୟ ପଚାରୁଥିଲେ । ସାର୍‌ଙ୍କ ସମୟ ଥିଲା କଲେଜମାନଙ୍କର ଗଢା ହେବା ସମୟ । ତେଣୁ ଖୁବ୍ ସାମର୍ଥ୍ୟ ଥିବା ସର୍ବମାନ୍ୟ ମଣିଷମାନେ ଆଗ୍ରହରେ ଅଧ୍ୟାପନା ବୃତ୍ତିକୁ ଆସିଥିଲେ । 'ଦାଣ୍ଡି ରାମାୟଣରେ ଓଡ଼ିଶାର ଲୋକସଂସ୍କୃତି' ସଂପର୍କରେ ସେ ଗବେଷଣା କରିଥିଲେ । ଗତ ଶତକ ପ୍ରାୟ ଷଷ୍ଠ ଦଶକରେ ଅଭ୍ୟୁଦୟ ସାହିତ୍ୟ ସମାଜ ଗଠନ କରି ଅନେକ ସମଧର୍ମୀଙ୍କ ସହିତ ସେ ବହୁ ମୂଲ୍ୟବାନ ଗ୍ରନ୍ଥ ସଂପାଦନା କରିଛନ୍ତି । ସେଗୁଡ଼ିକ ଭିତରୁ ଓଡ଼ିଆ ଉପନ୍ୟାସ ସାହିତ୍ୟ ପରିଚୟ ୧ମ ଓ ୨ୟ ଖଣ୍ଡ ଉଲ୍ଲେଖଯୋଗ୍ୟ । ସେ ସମଗ୍ର ଜୀବନ ପଢାଲେଖା ସହିତ ରହିଛନ୍ତି । ତାଙ୍କର ପୁସ୍ତକ 'ସାହିତ୍ୟିକ ସମାଲୋଚନା', 'ଓଡ଼ିଆ ସାହିତ୍ୟର ତତ୍ତ୍ୱ ଓ ତଥ୍ୟ', 'ବୈଦିକ ସମାଜରେ ସାହିତ୍ୟ ଓ ସଂସ୍କୃତି' ପ୍ରଭୃତି ତାଙ୍କ ପ୍ରଜ୍ଞାର ଫସଲ । ତାଙ୍କ ଲିଖିତ 'ମହାପୁରୁଷ ଅଚ୍ୟୁତାନନ୍ଦ' ପୁସ୍ତକ ସ୍ୱତନ୍ତ୍ର ଉଲ୍ଲେଖ ଆବଶ୍ୟକ କରେ ।

ଓଡ଼ିଆ ଅଧ୍ୟାପକ ସମ୍ମେଳନର ସଭାପତି ଭାବେ ପ୍ରତ୍ୟେକ ଓଡ଼ିଆ ଅଧ୍ୟାପକ ଭଣା ଅଧିକେ ତାଙ୍କ ସାଂଗଠନିକ ଦକ୍ଷତାର ପରିଚୟ ପାଇଛନ୍ତି । କେତେ ଉଦାର ହେଲେ ଜଣେ ଏଭଳି ଅନୁଷ୍ଠାନକୁ ଦିଗ୍‌ଦର୍ଶନ ଦେଇପାରେ ତାହା ଭାବିହୁଏ ନାହିଁ । ଅଧ୍ୟାପକ ଭାବରେ ଗଳ୍ପ ଉପନ୍ୟାସ କବିତା ପ୍ରବନ୍ଧ ଆଦି ସାହିତ୍ୟର ସବୁ ବିଭାଗ ସହିତ ସେ ଜଡ଼ିତ ଥିଲେ । ସେହି ବହୁ ପାଠିତାର ନିଦର୍ଶନ ତାଙ୍କର ପ୍ରବନ୍ଧଗୁଡ଼ିକରେ ପ୍ରତିଫଳିତ, 'ବୈଦିକ ସମାଜରେ ସାହିତ୍ୟ ଓ ସଂସ୍କୃତି' ପ୍ରବନ୍ଧ ପୁସ୍ତକ ତାଙ୍କର ଜ୍ଞାନର ବିସ୍ତୃତ ତଥା ଗମ୍ଭୀର ପରିସୀମା ସଂପର୍କରେ ପାଠକକୁ ସୂଚନା ଦେଇଥାଏ ।

ଜଗତସିଂହପୁର ଅନେକ ପ୍ରତିଭାର ଜନ୍ମଦାତ୍ରୀ । ଜଗତସିଂହପୁର ଇତିହାସ ସାମାଜିକ ସ୍ଥିତି ସଂସ୍କୃତି ପ୍ରଭୃତିକୁ ନେଇ ସେ "ଜଗତସିଂହପୁର: ଅତୀତ ଓ ବର୍ତ୍ତମାନ" ଶୀର୍ଷକ ତିନିଖଣ୍ଡ ଗ୍ରନ୍ଥ ପ୍ରକାଶ କରିଛନ୍ତି । ଏତଦ୍‌ବ୍ୟତୀତ ଜଗତସିଂହପୁରରେ ଜନ୍ମିତା ଜ୍ଞାନପୀଠ ବିଜୟିନୀ ପଦ୍ମଶ୍ରୀ ପ୍ରତିଭା ରାୟଙ୍କ ସଂପର୍କରେ ସେ 'ମନସ୍ୱିନୀ ପ୍ରତିଭା ରାୟ' ଶୀର୍ଷକ ଗ୍ରନ୍ଥ ସଂପାଦନା କରିଛନ୍ତି । ପ୍ରତିଭା ରାୟ କେବେ କେମିତି ଲେଖୁଥିବା କବିତା ତଥା ଗାନଯୋଗ୍ୟ ଗୀତିକବିତା ସଂପର୍କରେ ଲେଖିବାକୁ ଭୋଳିସାର୍ ମୋତେ ପ୍ରଥମେ ଅନୁରୋଧ କରିଥିଲେ ଓ ତାପରେ ପ୍ରତିଭା ରାୟ ମହାଶୟା ମୋ ନିକଟକୁ ତାଙ୍କ କବିତା ଗୁଡ଼ିକୁ ପଠାଇଥିଲେ । ଏହା ଭୋଳିସାର୍‌ଙ୍କର ଆଗ୍ରହ ଆତ୍ମୀୟତା ତଥା ସଂପାଦନା ଦକ୍ଷତାର ପରିଚାୟକ ।

ଭୋଳାନାଥ ସାର୍ ସରଳାଦେବୀ ଗ୍ରନ୍ଥାବଳୀର ସଂପାଦନା କାର୍ଯ୍ୟ ହାତକୁ ନେଇଥିଲେ । ମୋ ଅଧୀନରେ ଗବେଷଣା କରୁଥିବା ସବିତା ମଲ୍ଲିକ ସରଳାଦେବୀଙ୍କ ସଂପର୍କରେ କିଛି ତଥ୍ୟ ଆଣିବାକୁ ଏକାଧିକ ଥର ଜଗତସିଂହପୁର ଯାଇଛନ୍ତି ଓ ପ୍ରତିଥର "ହେଇ ଗ୍ରନ୍ଥାବଳୀ ବାହାରିବ । ତେଣିକି ତୁମ କାମ ସହଜ ହୋଇଯିବ "ଶୁଣି ଫେରିଛନ୍ତି କ୍ରମେ ତାଙ୍କର ଗବେଷଣାର ସମୟ ସମାପ୍ତ ହୋଇଛି ଓ ସାର୍ ଅସୁସ୍ଥତା ବଶତଃ ଗ୍ରନ୍ଥାବଳୀ ମୁଦ୍ରଣ ଶେଷ କରିପାରି ନାହାଁନ୍ତି । ସେ ଝିଅ ଏବେ ତା ଥେସିସ୍ ଦାଖଲ କରିବ । ସେଇ ଗ୍ରନ୍ଥାବଳୀ ସଂପର୍କରେ ମୁଁ ସାର୍‌ଙ୍କ ସହିତ ଅନେକ ଥର କଥାବାର୍ତ୍ତା କରିଛି ଓ ଶାରୀରିକ ଅସୁସ୍ଥତା ସତ୍ତ୍ୱେ ସେ ପ୍ରତି ଥର ଆଉ ଅଳ୍ପଦିନରେ ପ୍ରେସ୍‌ରୁ ଆସିଯିବ ବୋଲି କହିଛନ୍ତି ।

ଜଗତସିଂହପୁର ଯାଇଥିବା ସମୟରେ ସାର୍ ମୋତେ ତାଙ୍କ ଘରକୁ ଡାକିଥିଲେ ରାତି ହୋଇଯାଇଥିବାରୁ ମୁଁ ତରତର ହୋଇଥିଲି । ସାର୍ କହୁଥିଲେ ଦେଖିବ ଗ୍ଲ କେତେଟା କଂପ୍ୟୁଟରରେ କେମିତି କାମ ଚ୍ଳିଛି । ମୁଁ ଆଉ ଥରେ ଆସିଲେ ଯିବି କହି ଚ୍ଳି ଆସିଥିଲି । ଅନ୍ତତଃ ଦେଖିଥାଆନ୍ତି ତ ଭୋଳିବାବୁ ଜୀବନରେ ରୂପାନ୍ତରିତ କରିଥିବା ସେହି ପ୍ରବୀଣ ଅଧ୍ୟାପନାର ଆଗ୍ରହ ଓ କର୍ମଦକ୍ଷତାର ସ୍ୱରୂପ । ସେ ସୁଯୋଗ ନେଇନାହିଁ ବୋଲି ମୁଁ ଦୁଃଖିତ ।

ଦୀର୍ଘ ଦିନର ଅଧ୍ୟାପନା କାଳରେ ସାର୍ ବହୁ କୃତୀ ଛାତ୍ରଛାତ୍ରୀଙ୍କୁ ଶିକ୍ଷାଦାନ କରିଛନ୍ତି । ବହୁ ସଂପାଦନା କରିଛନ୍ତି ଓ ଅନେକ ସଂପାନର ପ୍ରବନ୍ଧ ପଢିଛନ୍ତି । ଆଗ୍ରହ ନଥିଲେ ଏତେ କାର୍ଯ୍ୟ କରିବା ସମ୍ଭବ ନୁହେଁ ।

ଭୋଳିସାର୍ ଭୂମିର ମଣିଷ । ଅନେକ ସୁଯୋଗ ଥିଲେ ମଧ୍ୟ ସେ ଜଗତସିଂହପୁର ପ୍ରତି ଏକାନ୍ତ ଅନୁଗତ ଥିଲେ । ଅନେକ ବ୍ୟକ୍ତିଙ୍କ ସହିତ ତାଙ୍କର ପରିଚୟ ଥିଲା । ବୋଧୁହୁଏ ଥରେ ପଞ୍ଚସଖା ସାହିତ୍ୟ ସଂପର୍କରେ ଆଲୋଚନା ଟେଲିଭିଜନରେ ହେବାର ଥାଏ । ସେଥିପାଇଁ ସାର୍‌ଙ୍କର କି ସୁଲଭ ଆଗ୍ରହ ମୁଁ ଦେଖିଛି । ସେତେବେଳେ ଏତେ ଚ୍ୟାନେଲ୍ ନଥାଏ । ତେଣୁ ସାହିତ୍ୟ ପତ୍ରିକାକୁ ଅନ୍ୟ ରଙ୍ଗର ଆଗ୍ରହ ମଧ୍ୟ ବେଶ୍ ଥିଲା । ସାରଙ୍କୁ ମୁଁ ସେ ଆଲୋଚନାରେ ଦେଖିଥିଲି । (ବୋଧୁହୁଏ ପଠାଣି ସାର୍ ଥିଲେ କି କ'ଣ ? )

ଜୀବନସାରା ସେ କାମ କରିଛନ୍ତି । ସାହିତ୍ୟ ସାଧନାରେ ଅନବରତ ଲାଗି ରହିଛନ୍ତି । ପାଠ୍ୟପୁସ୍ତକ ସଂପାଦନା କ୍ଷେତ୍ରରେ ମଧ୍ୟ ତାଙ୍କର ଆଗ୍ରହ ଥିଲା । ପ୍ରଫେସର ନିତ୍ୟାନନ୍ଦ ନାୟକଙ୍କ ସହିତ ମିଶି ସେ କବିତା ଓ ପ୍ରବନ୍ଧ ପୁସ୍ତକ (ପାଠ୍ୟ ଉପଯୋଗୀ) ସଂକଳନ ଓ ତାର ମୁଖବନ୍ଧ ଲେଖିଥିଲେ ।

ସାର୍‌ଙ୍କ ପରିବାର ସଂପର୍କରେ ମୋର ବିଶେଷ ଧାରଣା ନାହିଁ ମାତ୍ର ଆମ ଓଡ଼ିଆ ଅଧ୍ୟାପକ ପରିବାରର ସେ ଥିଲେ ମୁଖ୍ୟ ଏହା ହିଁ ସତ୍ୟ । ସାର୍ ଏବେ ଅସୁସ୍ଥ । ସେ ଶୀଘ୍ର ସୁସ୍ଥ ହୁଅନ୍ତୁ ବୋଲି ମୁଁ ଈଶ୍ୱରଙ୍କୁ ପ୍ରାର୍ଥନା କରୁଛି । ସରଳାଦେବୀଙ୍କ ଗ୍ରନ୍ଥାବଳୀ ଗୋଟିଏ ଗବେଷକର କାମରେ ସିନା ଲାଗିପାରିଲାନି, ତାହା ସମଗ୍ର ଓଡ଼ିଶାର ଗୌରବାବହ ପରଂପରାର ଇତିହାସ ଅବଶ୍ୟ ପାଲଟିଯିବ । ଈଶ୍ୱର ତାଙ୍କୁ ଅଧାଲେଖା ଦାୟିତ୍ୱ ସଂପନ୍ନ କରିବାର ସାମର୍ଥ୍ୟ ଦିଅନ୍ତୁ ଏତିକି କାମନା । ମୋତେ ଏସବୁ ଋଣସ୍ୱୀକାର ପାଇଁ ସୁଯୋଗ ଦେଇଥିବାରୁ ମୁଁ ଆୟୋଜକ ମାନଙ୍କଠାରେ କୃତଜ୍ଞ । ■

# ଜଗତସିଂହପୁର ଅତୀତ ଓ
# ବର୍ତ୍ତମାନର ବିନ୍ଧାଣୀ- ଶ୍ରୀ ଭୋଳାନାଥ ରାଉତ

ରାଜକିଶୋର ମିଶ୍ର

ଐତିହ୍ୟ ସମୃଦ୍ଧ ଜଗତସିଂହପୁରର ଜଣେ ଚିନ୍ତାନାୟକ ଓ ପ୍ରଜ୍ଞାପୁରୁଷ ଭାବରେ ପ୍ରାୟ ଅର୍ଦ୍ଧଶତାବ୍ଦୀ ପୂର୍ବେ ମୋ ଆଗରେ ଉଭା ହୋଇଥିଲେ ଶ୍ରୀଯୁକ୍ତ ଭୋଳାନାଥ ରାଉତ ଯାହାଙ୍କୁ ଆମେ ଶ୍ରଦ୍ଧା ଓ ସମ୍ମାନରେ ଡାକୁଥିଲୁ "ଭୋଳିବାବୁ"ବୋଲି । ଏଥିଲା ୧୯୬୫ମସିହା । ଏମ୍.ଏ. ପରୀକ୍ଷା ଦେଇ ଫଳ ବାହାରିବା ଆଗରୁ ସ୍ୱାମୀ ବିବେକାନନ୍ଦ ମହାବିଦ୍ୟାଳୟରେ ମୁଁ ନିଯୁକ୍ତି ପାଇଥାଏ ଇଂରାଜୀ ବିଭାଗର ଅଧ୍ୟାପକ ଭାବରେ । କଲେଜର ପରିସର ସେତେବେଳେ ସଂକୀର୍ଣ୍ଣ ଥାଏ । ଅଳ୍ପକିଛି ଦିନର ପରିଚୟ ପରେ ସେ ମୋତେ ଆପଣେଇ ନେଲେ, ବଡ଼ ଭାଇର ସ୍ନେହ ଦେଇ । ସେତେବେଳେ ମୋ ବଡ଼ଭାଇ ବ୍ରଜସୁନ୍ଦର ମିଶ୍ର ଓ କକେଇ ଗଦାଧର ମିଶ୍ର ସେଇ କଲେଜରେ ଅଧ୍ୟାପନା କରୁଥାନ୍ତି ଏବଂ ସେମାନଙ୍କ ସହିତ ଭୋଳିବାବୁଙ୍କର ବେଶ୍ ଆନ୍ତରିକତା ଥାଏ । ମୋତେ ଲାଗିଲା ସତେକି ମୁଁ ଛାଏଁ ଛାଏଁ ତାଙ୍କ ସୁନାପଞ୍ଜୁରି ଭିତରକୁ ପଶି ଯାଉଛି । ହଁ ତା' ଭିତରେ ଆଗରୁ କବି ଅଧ୍ୟାପକ ନିତ୍ୟାନନ୍ଦ ନାୟକ ପଶିଯାଇ ନୀଳ ସ୍ୱପ୍ନରେ ବିଭୋର ଥା'ନ୍ତି ଆଉ ତେଣା ପିଟି ପିଟି ମତେ ସଂକେତ ଦେଉଥାନ୍ତି । ଆସ ମିଷ୍ଟର ମିଶ୍ର , ଭୋଳାନାଥଙ୍କ ସାରସ୍ୱତ ବ୍ୟୂହଭିତରେ ଅଭିମନ୍ୟୁ ପାଲଟିଯାଅ ।

ବୟସର ତାରୁଣ୍ୟ, ବିସ୍ତୀର୍ଣ୍ଣ ଉଜପଡ଼ିଆରେ ଶ୍ୟାମଳିମା, ଶ୍ଳଥଯୌବନା ଅଳକାନଦୀର ସୈକତ ଶଯ୍ୟା, ଠାଏ ଠାଏ ଗୁଞ୍ଜରଣ ସୃଷ୍ଟି କରୁଥିବା ଝାଉଁଗଛ, ସଞ୍ଜ ସକାଳର ଫୁଲ ପରି ବିଛାଡ଼ି ହୋଇପଡୁଥିବା କିଶୋର ଓ କିଶୋରୀ ଛାତ୍ରଛାତ୍ରୀଙ୍କର କୁହୁତାନ କଲେଜର ପରିବେଶଟାକୁ କେମିତି ଏକ ଗୁରୁକୁଳ ଆଶ୍ରମରେ ପରିଣତ କରିଦେଇଥାଏ । ପଚାଶ ବର୍ଷପରେ ସେହି ସଜଳ ସ୍ମୃତି ବାରମ୍ବାର ଅନୁରଣିତ ହୋଇ ଉଠେ । ଶିକ୍ଷାୟତନର ମୁରବି ବା ଅଭିଭାବକ ଥାନ୍ତି ଭୋଳାନାଥ ବାବୁ । ତାଙ୍କର ଆର୍ଷ ଗାମ୍ଭୀର୍ଯ୍ୟ, ଦୃଢ଼ ଗୃହାଣି, ସମସ୍ତଙ୍କୁ ଭଲଭାବରେ ପରଖି ନବାର ପ୍ରଜ୍ଞା ସମୟୋଚିତ ହସ୍ତକ୍ଷେପ ଓ ପଦକ୍ଷେପ, ବିଭିନ୍ନ ସମସ୍ୟା ସମାଧାନର ତରିକା ଓ ପ୍ରତ୍ୟୁତ୍ପନ୍ନ ମତି ଆମ ସମସ୍ତଙ୍କୁ ଅଭିଭୂତ କରୁଥାଏ । ସେ ଆମ ଭଳି ପ୍ରଗଳ୍ଭ ବିଳାସର ସମୟ ବିତଉନଥିଲେ, ସେ ଥିଲେ କର୍ମବୀର ମିତବ୍ୟୟୀ ଓ ମିତାହାରୀ । ଜନ୍ମମାଟିର

ସଂସ୍କୃତି, ଐତିହ୍ୟ ଓ ପରଂପରା ପ୍ରତି ସେ ଥିଲେ ଶ୍ରଦ୍ଧାଶୀଳ । ସବୁବେଳେ ଚଳଚଞ୍ଚଳ ଓ କର୍ମତତ୍ପର । ଛାପାଖାନା କରିବାରେ ଉଦ୍ୟମ କରିଥିଲେ । ହଁ କିଛି ଦିନଧରି ଜଗତସିଂହପୁର ପ୍ରଥମ ପ୍ରେସ୍ ଭାବରେ ତାର ସୁନାମ ମଧ୍ୟ ଥିଲା ।

ତାଙ୍କର ସାରସ୍ୱତ ଅଭିଯାନରେ ସେ ମୋତେ ଓ ମୋର ପ୍ରିୟକବି ନିତ୍ୟାନନ୍ଦ ନାୟକଙ୍କୁ ନେଇ କରି ଆମ ମଥାରେ ଶାଢ଼ିବାନ୍ଧିଲେ । ମୋତେ ନିର୍ଦ୍ଦେଶ ଦେଲେ ଗୋପୀନାଥ ମହାନ୍ତିଙ୍କର ସେ ପର୍ଯ୍ୟନ୍ତ ପ୍ରକାଶିତ ସକଳ ଉପନ୍ୟାସର ଆକଳନ କରି ଗୋଟିଏ ନିବନ୍ଧ ଲେଖିବାକୁ ଓ ବନ୍ଧୁ ନାୟକଙ୍କୁ ଦାୟିତ୍ୱ ଦେଲେ ଗୋପୀନାଥବାବୁଙ୍କ ଅଗ୍ରଜ କାହ୍ନୁ ମହାନ୍ତିଙ୍କର ଉପନ୍ୟାସ ସମ୍ଭାର ଉପରେ ଏକ ବିସ୍ତୃତ ଆଲୋଚନା ପ୍ରସ୍ତୁତ କରିବା ପାଇଁ । ଶ୍ରମ ସ୍ୱୀକାର କରି ଉପନ୍ୟାସତକ ସଂଗ୍ରହ କରି ଆମକୁ ଯୋଗାଇବାରେ ଲାଗିଲେ ଏବଂ ମଝିରେ ମଝିରେ ତଦାରଖ କଲେ ଆମେ କେତେବାଟ ଗଲୁବୋଲି । ସେ କେମିତି ଆମ ଉପରେ ଭରସା କଲେ କେଜାଣି ? କବି ନିତ୍ୟାନନ୍ଦ ତ ସବୁବେଳେ ଗୁଣୁଗୁଣୁ, ଗ୍ଭଲିଲା ବେଳେ ବି । ଆଚ୍ଛନ୍ନ ମୁଦ୍ରାରେ ତ ସବୁବେଳେ ଥା'ନ୍ତି । ଆଉ ମୋ ଉପରେ ସମୟର ଉଜାଣି ଢେଉ । ଫୁରସତ୍ ନଥାଏ । ଏମିତି ଏକ ସମୟ ଆସିଲା ଲେଖା ଅଧାରେ ମୋର ପିତାଙ୍କ ବିୟୋଗ ହେଲା । ମୁଁ ଦଶାହ କାର୍ଯ୍ୟରେ ବ୍ୟସ୍ତଥାଏ । ଘରେ ଆସି ଭୋଳିବାବୁ ହାଜର । ମୁଁ ବାପଛେଉଣ୍ଡ ହୋଇଥିବାରୁ ଗଭୀର ଦୁଃଖ ପ୍ରକାଶ କଲେ । କହିଲେ ମୁଁ ବି ଏକ ପ୍ରକାର ଛେଉଣ୍ଡ ହେବାକୁ ଯାଉଛି, ମୋତେ ସାହାଯ୍ୟ କରିବନି ? କଥାର ତାତ୍ପର୍ଯ୍ୟ ବୁଝିଗଲି । ନିର୍ଦ୍ଦିଷ୍ଟ ସମୟରେ ବହୁପୃଷ୍ଠା ସମ୍ବଳିତ ଲେଖାଟି ତାଙ୍କୁ ଦେଇ ମୁଁ ତାଙ୍କ ସାରସ୍ୱତ ଦାୟମୁକ୍ତ ଦେଲି । ଏ ଥିଲା ୧୯୬୮ ମସିହା ବେଳର କଥା ।

ଘଟଣାକ୍ରମେ ମୁଁ ସରକାରୀ କଲେଜରେ ଯୋଗ ଦେବାପାଇଁ ସମ୍ବଲପୁର, ବଲାଙ୍ଗିର ଓ ଭୁବନେଶ୍ୱର ପ୍ରଭୃତି ସ୍ଥାନକୁ ଗ୍ଭଲିଗଲି । ଜଗତସିଂହପୁର ନୂଆ ଜିଲ୍ଲା ହେଲା ୧୯୯୩ରେ । ଏକ ଭାଷାଭିତ୍ତିକ ପ୍ରଦେଶର ସଦ୍ୟ ନୂତନ ଜିଲ୍ଲାର ଅଧିବାସୀ ଭାବରେ ଭୋଳିବାବୁ ଆଉ ସ୍ଥିର ହୋଇ ରହିପାରିଲେ ନାହିଁ । ଯେ ଥରେ ସାହିତ୍ୟକୁ ନିଜର ରୋଚକ ପ୍ରବୃତ୍ତି ଭାବରେ ଗ୍ରହଣ କରିଛି, ସେ କ'ଣ ଜାଗତିକ ବନ୍ଧନରେ ବାନ୍ଧି ହୋଇଯାଇପାରେ ? ପଠାଣି ପଟ୍ଟନାୟକ ଓ ତାଙ୍କ ଯୁଗ୍ମ ସଂପାଦନାର ଅଭ୍ୟୁଦୟ ସାହିତ୍ୟ ସମାଜ ଆନୁକୂଲ୍ୟରେ ପ୍ରକାଶିତ ବିରାଟ ଓଡ଼ିଆ ଉପନ୍ୟାସ ସାହିତ୍ୟର ପରିଚୟ' ଗ୍ରନ୍ଥଟି ଏକ ମାଇଲ୍ ଖୁଣ୍ଟ କହିଲେ ଅତ୍ୟୁକ୍ତି ହେବନାହିଁ । ତାଙ୍କ ରଚିତ ଅନ୍ୟାନ୍ୟ ଗ୍ରନ୍ଥ ଯଥା 'ସାହିତ୍ୟିକ ସମାଲୋଚନା', ଓଡ଼ିଶାର ରାଜନୈତିକ, ସାଂସ୍କୃତିକ ଓ ସାମାଜିକ ଇତିହାସ', 'ସାହିତ୍ୟ ତତ୍ତ୍ୱ ଓ ତଥ୍ୟ', 'ବୈଦିକ ସାହିତ୍ୟ ଓ ସଂସ୍କୃତି',

'ଦାଣ୍ଡିରାମାୟଣରେ ଓଡ଼ିଶାର ଲୋକସଂସ୍କୃତି ' (ପି.ଏଚ.ଡି. ସନ୍ଦର୍ଭ) ପ୍ରଭୃତି ପ୍ରକାଶିତ ହୋଇ ତାଙ୍କ ସାରସ୍ୱତ ପ୍ରତିଭାକୁ ପୂର୍ଣ୍ଣ ବିକଶିତ କରିପାରିଅଛି ।

ସରକାରୀ ପ୍ରୋତ୍ସାହନରେ ପ୍ରତିବର୍ଷ ଜଗତସିଂହପୁର ଜିଲ୍ଲାର ସଦର ମହକୁମାରେ ଏପ୍ରିଲ୍ ପହିଲାରୁ ପାଞ୍ଚ ତାରିଖ ପର୍ଯ୍ୟନ୍ତ ଆୟୋଜିତ 'କଲ୍ଲୋଳ' ଉତ୍ସବରେ ତାଙ୍କର ସକ୍ରିୟ ଭୂମିକା ରହିଲା । ପ୍ରତିବର୍ଷ ମାର୍ଚ୍ଚମାସ ମଝିଆମଝି ମୋତେ ଫୋନ୍ ଯୋଗେ ତାଗିଦ କରିବେ ସ୍ମରଣିକାରେ ପ୍ରକାଶଯୋଗ୍ୟ ଲେଖାପାଇଁ । ସେ ଲେଖା ପୁଣି ଭିନ୍ନ ବିଷୟବସ୍ତୁ ଉପରେ ଆଧାରିତ ନହୋଇ କେବଳ ଜଗତସିଂହପୁର କୈନ୍ଦ୍ରିକ । ଥରେ ଥରେ ହୁଏତ ମୁଁ ବାଟହୁଡ଼ା ହୋଇଥିବି, ଲେଖି ପାରିନଥିବି ବା ସମୟାଭାବର ଛଳନା କରିଥିବି । ଜଗତସିଂହପୁର ପାଣି ପବନ ଜନଜୀବନ ଅତୀତ ଓ ବର୍ତ୍ତମାନ ସହ ନିବିଡ଼ଭାବରେ ପେଷି ହୋଇଯାଉଥିବା ଅଦ୍ଭୁତ ଖିଆଲର ମଣିଷଟିଏ ହେଉଛନ୍ତି ଭୋଳିବାବୁ । ଜଗତସିଂହପୁର ହୃଦୟ ପିଞ୍ଜରେ ଥରି ଉଠିଥିଲା ମହାବାତ୍ୟାର ମହାପ୍ରକୋପରେ ୧୯୯୯ର ପାଦ ଦେଶରେ । ଅଜସ୍ର ପ୍ରାକୃତିକ ବିପର୍ଯ୍ୟୟ ଏକାକାର ହୋଇ ମହାପ୍ରଭଞ୍ଜନ ରୂପେ ବୋହିଗଲା ଆମର ପ୍ରିୟ ମାଟିରେ । ସେତେବେଳେ ସୂଚନା ଓ ଲୋକ ସଂପର୍କ ବିଭାଗର ମାସିକ ସରକାରୀ ଇଂରାଜୀ ପତ୍ରିକା 'ଓଡ଼ିଶାରିଭ୍ୟୁ'ର ସଂପାଦକ ଭାବରେ ମୁଁ କାର୍ଯ୍ୟ କରୁଥାଏ । ବାରମ୍ବାର ଜଗତସିଂହପୁର ବାଲିକୁଦା, କୁଜଙ୍ଗ, ଏରସମା ପ୍ରଭୃତି ଅଞ୍ଚଳକୁ ମୁଁ ଆସୁଥାଏ ପ୍ରତ୍ୟକ୍ଷ ବିବରଣୀ ସଂଗ୍ରହ ପାଇଁ ସେଇ ଦୁର୍ଦ୍ଦିନମାନଙ୍କରେ ଭୋଳିବାବୁଙ୍କର ଅଶ୍ଳୂଳ ମୁହଁ ମୁଁ ଦେଖିଛି, ପ୍ରକୃତିର ତାଣ୍ଡବଲୀଳା ବିରୋଧରେ ସେ କ'ଣ କିଛି ଗୁପ୍ତ ମନ୍ତ୍ରଣାରେ ଯୋଗାବିଷ୍ଟ ଥିଲେ !

ହଁ । ତାଙ୍କ ମାନସପଟରେ ଜଗତସିଂହପୁର ଅପସୃୟମାନ ଏକ ବିରାଟ ସଭ୍ୟତା ବାରମ୍ବାର ରେଖାପାତ କରିଥିଲା । ତାକୁ ତୋଳି ଧରିବାକୁ ହବ, ସାଉଁଟିବାକୁ ହେବ, ବିଛାଡ଼ି ହୋଇ ପଡ଼ିଥିବା ଏ ମାଟିର ସାରସ୍ୱତ ମୋତି ମାଣିକ୍ୟ । ହତଜାନୁ ପିତାମହ ଭୀଷ୍ମ ପୁଣି ଅଭୂତପୂର୍ବ ଉନ୍ମାଦନାରେ ଚେଇଁ ଉଠିଲେ । ସେତେବେଳେ ସେ ଅବସର ନେଇଥାନ୍ତି । ଜଣେ ଦକ୍ଷ ସଂଗଠକର ସକଳ ବିଭୂତିରେ ମାଖି ହୋଇ ସେ ଖୋଜିବୁଲିଲେ ସମଧର୍ମୀ ସହକର୍ମୀମାନଙ୍କୁ । କି ଦିନ କି ରାତି ସେ ହେଲେ ଚିନ୍ତାମଗ୍ନ । ସଞ୍ଚିତ ଅର୍ଥ, ସେବାନିବୃତ୍ତ ହେବାପରେ ପାଇଥିବା ପ୍ରାପ୍ୟରାଶିକୁ ପୁଞ୍ଜିକରି ସେ ଖସଡ଼ା ପ୍ରସ୍ତୁତି କଲେ ଲେଖିବାକୁ ଆଉ ଏକ ଗଦ୍ୟ ମହାଭାରତ । ନାଁ ଦେଲେ "ଜଗତସିଂହପୁର : ଅତୀତ ଓ ବର୍ତ୍ତମାନ" । ତିନି ଖଣ୍ଡରେ ବିଶାଳ ଗ୍ରନ୍ଥ ୨୦୦୦୬ ମସିହାର ଅନ୍ତିମ ପାର୍ବଣରେ ପ୍ରକାଶ ପାଇଲା । "ସର୍ବୋପରି ଦୀର୍ଘ ଗ୍ରିବର୍ଷ ସଂସାର ପ୍ରତି ସଂପୂର୍ଣ୍ଣ ଉଦାସୀନ ରହି ଏଇ କାର୍ଯ୍ୟ ସାଧନାରେ ବ୍ରତୀ ଥିଲେ ମଧ୍ୟ ମୋର ପରିବାରର ସମସ୍ତ ସଦସ୍ୟ ଏଇ ତନ, ଧନ, ମନ କ୍ଷୟକାରୀ ପ୍ରବଣତାକୁ ସହନଶୀଳତାର

ସହିତ ବିଗ୍ରହକୁ ନେଇ ସମସ୍ତ କାର୍ଯ୍ୟରେ ଅକୁଣ୍ଠିତ ସହଯୋଗ କରିଥିବା ହେତୁ ଏତେବଡ଼ କାର୍ଯ୍ୟ ସମ୍ଭବ ହୋଇ ପାରିଛି" - ଏହା ଥିଲା ସଂଗ୍ରାହକ, ସଂଗଠକ ପ୍ରାଜ୍ଞ ଭୋଳାନାଥ ରାଉତଙ୍କର ସକୃତଜ୍ଞ ଉଚ୍ଚାରଣ । ନିଜର ସଫଳତାର ଡିଣ୍ଡିମ ସେ କେବେ ପିଟି ନାହାନ୍ତି । ଯେଉଁ ଗବେଷକମାନଙ୍କୁ ନେଇ ସେ କାର୍ଯ୍ୟ କରୁଥିଲେ ସେମାନଙ୍କର ଗସ୍ତବେଳେ ସୁଖସ୍ୱାଚ୍ଛନ୍ଦ୍ୟ ପ୍ରତି ଦୃଷ୍ଟି ଦେଇଥିବା କଥା ମୋତେ ଅନେକ କହିଛନ୍ତି । ଡକ୍ଟର ସୁରେନ୍ଦ୍ର କୁମାର ମହାରଣା, ଡକ୍ଟର ରବୀନ୍ଦ୍ର କୁମାର ପ୍ରହରାଜ ପ୍ରଭୃତି ଅଙ୍ଗେ ନିଭେଇଛନ୍ତି । ତାଙ୍କର ଜ୍ୱାଇଁ ନିରଞ୍ଜନ ଓ ସୁହୃଦ୍ ମହେନ୍ଦ୍ର କୁମାର ଆଚାର୍ଯ୍ୟ ଓ ଅଧ୍ୟାପକ କୁଳମଣି ଦାଶ ପ୍ରଗାଢ଼ ନିଷ୍ଠା ଓ ଅବଦାନକୁ ସେ ଭୁଲି ପାରିନାହାଁନ୍ତି । ତୃତୀୟ ଖଣ୍ଡରେ ମୋ' ଲିଖିତ ପ୍ରବନ୍ଧ 'ସ୍ୱାଧୀନତା ଆନ୍ଦୋଳନରେ ଜଗତସିଂହପୁର'କୁ ସ୍ଥାନିତ କରି ମୋତେ ଅନୁଗୃହୀତ କରିଛନ୍ତି । "କଲ୍ଲୋଳ" ଉତ୍ସବରେ ତାଙ୍କ ଆତିଥେୟତାକୁ ମୁଁ ସମ୍ମାନ ଦେବାରେ ବୋଧେ ଅବହେଳା କରିନାହିଁ ।

ଏକ ସାରସ୍ୱତ ନାଭିରଜ୍ଜୁରେ ମୁଁ ଭୋଳିବାବୁଙ୍କ ସହ ଚିରଦିନ ବାନ୍ଧିହୋଇ ଯାଇଛି । ୧୯୬୮ରେ ଗୋପୀନାଥ ମହାନ୍ତିଙ୍କ ଉପନ୍ୟାସ କୃତି ଉପରେ ମୋ ଲିଖିତ ନିବନ୍ଧ ଦିନେ ପୁଣି ଏକ ବଡ଼ ସନ୍ଦର୍ଭରେ 'ଗୋପୀନାଥ ମହାନ୍ତିଙ୍କ ଉପନ୍ୟାସର ମରମ କଥା' (ପ୍ରକାଶକ ବିଦ୍ୟାପୁରୀ କଟକ ୨୦୦୭)ରେ ପରିଣତ ହେବ, ମୋର କଳ୍ପନାର ବାହାରେ ଥିଲା । ଉକ୍ତ ପୁସ୍ତକର ବିପୁଳ ଉନାଦୃତିର ମୂଳରେ ଥିଲା ଭୋଳାନାଥଙ୍କର ପ୍ରୋତ୍ସାହନ । ସେହିଁ କରିଥିଲେ ଛେରା ପହଁରା ସାରସ୍ୱତ ସାହିତ୍ୟ ସରସ୍ୱତୀଙ୍କର ଦର୍ପଦଳନ ରଥରେ ଯେଉଁଠି ଆମକୁ ସଜେଇ ଦେଇଥିଲେ ପାର୍ଶ୍ୱ ପ୍ରତିମା ସେବକ ଭାବରେ । ୨୦୦୭ ମସିହାରେ ମୋ ଲିଖିତ ଏଇ ପୁସ୍ତକଟି ଜଗତସିଂହପୁର ଅନୁଷ୍ଠିତ ଏକ ସାନ୍ଧ୍ୟ ସାହିତ୍ୟ ଆସରରେ ବାକ୍‌ରୁଦ୍ଧ ହୋଇ ମୁଁ ଭୋଳିବାବୁ ସମର୍ପଣ କରିଥିଲି ।

ଆଜି ସେଇ ଦୁର୍ଦ୍ଦମନୀୟ ମହାଯୋଦ୍ଧା ବାଣୀପୁତ୍ର ଭୋଳାନାଥବାବୁ ପିତାମହ ଭୀଷ୍ମଙ୍କ ଭଳି ଶଯ୍ୟାଶାୟୀ, ଦୁଇ ତିନିମାସ ତଳେ ତାଙ୍କୁ ଭେଟିଲା ବେଳେ ସେ କହିଥିଲେ "ଜଗତସିଂହପୁରର ଅତୀତରେ ମୁଁ ଥିଲି, ବର୍ତ୍ତମାନ ଅଛି ଓ ଭବିଷ୍ୟତରେ ମୁଁ ରହିଥିବି ବୋଲି ଆଶା କରୁଛି, ଲେଖନୀରୁ କାଳି ସରିନାହିଁ, ହେଲେ ହାତ ଥକି ଗଲାଣି । ତମେ ସବୁ ଆଗେଇ ନେବ' । ଯୋ ଜୀବତି ସ ଜୀବତୁ । ■

ପ୍ରାକ୍ତନ ସଚିବ, ଓଡ଼ିଶା ସାହିତ୍ୟ ଏକାଡେମୀ
N1/A-27 IRC Village, Bhubaneswar -751015,
Tel- 9338209716, 0674-2559473

# ସହୃଦୟ ପ୍ରଜ୍ଞାପୁରୁଷ

ଡ. ରାଧାଶ୍ୟାମ ବେହୁରା

କଳା, ସାହିତ୍ୟ, ସମାଜସେବା ଆଦି ବିଭିନ୍ନ କ୍ଷେତ୍ରରେ ଆପଣାକୁ ଉତ୍ସର୍ଗ କରିଥିବା ବହୁ ବ୍ୟକ୍ତିଙ୍କୁ ଦେଖିବାର ସୁଯୋଗ ମିଳେ । ତେବେ ଏ ସବୁ ପରିସରରେ ଜଣେଜଣେ ବ୍ୟକ୍ତି ସ୍ୱତନ୍ତ୍ର ଭାବରେ ଏଭଳି ବାରିହୋଇ ପଡ଼ନ୍ତି ଯେ ତାଙ୍କ ବ୍ୟକ୍ତିତ୍ୱର ଆଲୋକିତ ଦିଗ ମନକୁ ସ୍ୱତଃମୁଗ୍ଧ କରେ । ସେପରି ସ୍ୱତନ୍ତ୍ର ଭାବରେ ହୃଦୟକୁ ଅଧିକାର କରିନେଉଥିବା ଜଣେ ବ୍ୟକ୍ତି ହେଉଛନ୍ତି ଭୋଳାନାଥ ରାଉତ । ଓଡ଼ିଆ ଭାଷା ସାହିତ୍ୟର ଜଣେ ଲେଖକ, ସଂଗଠକ, ସୁବକ୍ତା, ନାଟ୍ୟ ନିର୍ଦ୍ଦେଶକ ଭାବରେ କେତେ ଅନ୍ତରକୁ ସେ ଯେ ବିପୁଳ କମ୍ପନରେ ଆନ୍ଦୋଳିତ କରିଛନ୍ତି ତାହା ବିସ୍ମୟଜନକ । ତେବେ ସବୁଠାରୁ ମହତ୍ତ୍ୱପୂର୍ଣ୍ଣ ବିଷୟ ହେଉଛି ତାଙ୍କ ମାନସିକତାର ଉଦାରତା ଓ ବିଶାଳତା । ଏକ ବ୍ୟାପକ ଦୃଷ୍ଟିଭଙ୍ଗୀ, ଉଦାର ସମ୍ବେଦନଶୀଳ ମନୋଭାବ ନେଇ ସମସ୍ତଙ୍କୁ ଏକ ସୂତ୍ରରେ ଗୁଛି ରଖିବା ପାଇଁ ତାଙ୍କର ବିନମ୍ର ଓ ସଯତ୍ନ ପ୍ରଚେଷ୍ଟା ଏ କ୍ଷେତ୍ରରେ ସବୁଠୁ ଅଧିକ ପ୍ରାଣସ୍ପର୍ଶୀ ।

ସେଇଥି ପାଇଁ ହିଁ ତାଙ୍କ ବ୍ୟକ୍ତିତ୍ୱର ଆଲୋକ ଉଦ୍‌ବେଳନ ସୃଷ୍ଟି କରେ ଅନ୍ତରରେ । ଏଭଳି ଅବସରରେ ହିଁ ତ ଜଣେ ଉତ୍ସର୍ଗୀକୃତ ଅଙ୍ଗୀକାରବଦ୍ଧ ଶିଳ୍ପୀଙ୍କୁ ଅଭିନନ୍ଦନ ଜ୍ଞାପନ କରିବା ପାଇଁ ହୃଦୟ ଭିତରୁ ଜନ୍ମ ନିଏ ଅବାରିତ ପ୍ରେରଣା । ତାଙ୍କର ସାରା ଜୀବନର ଅନୁରାଗ ଓ ଅଭୀପ୍‌ସା, ସ୍ୱପ୍ନ ଓ ସଂକଳ୍ପ, କର୍ମପ୍ରବଣତା ଓ ଜୀବନଧାରାର ନାନା ଚିତ୍ର ସ୍ୱତଃ ଉଙ୍କିମାରେ ମନ ଆକାଶରେ । ଶ୍ରୀଯୁକ୍ତ ରାଉତଙ୍କ ମହତ୍ତ୍ୱପୂର୍ଣ୍ଣ ଅବଦାନ ଠିକ୍ ସେହିଭଳି ଅନେକ ହୃଦୟରେ ତରଙ୍ଗ ସୃଷ୍ଟି କରିଛି ।

ଡ. ରାଉତ ଏକ ବହୁମୁଖୀ ପ୍ରତିଭା ଛାତ୍ରାବସ୍ଥାରୁ ତାଙ୍କର ସାହିତ୍ୟକ ଜୀବନର ହୋଇଥିଲା ଉନ୍ମେଷ । ସାହିତ୍ୟ ପ୍ରୀତି ତାଙ୍କ ଜୀବନର ପ୍ରତି ଛତ୍ରରେ ହେଉଥିଲା ବିକସିତ । ବାସ୍ତବିକ ବହୁମୁଖୀ ପ୍ରତିଭାର ଅମ୍ଳାନ ସ୍ପର୍ଶରେ ସାହିତ୍ୟର ବିଭିନ୍ନ ବିଭାଗ ହୋଇଛି ସମୃଦ୍ଧ । ହାଇସ୍କୁଲରେ ଅଧ୍ୟୟନ କାଳରୁ ସେ ମୋର ଥିଲେ ଆଦର୍ଶ । ସତରେ କହିବାକୁ ଗଲେ ତାଙ୍କର ସେ ଦିନର ଉତ୍ସାହ ପ୍ରେରଣା ମୋ ହୃଦୟରେ ଆଙ୍କି ଦେଇଥିଲା ସାହିତ୍ୟ ପ୍ରତି

ଅମଳିନ ପ୍ରେରଣା । ତାଙ୍କ ସାଧନା ସଂପର୍କରେ ଅତି ସଂକ୍ଷିପ୍ତରେ କିଛି ଆଲୋଚନା କଲାବେଳେ ମୋ ଜୀବନାକାଶରେ ଫୁଟି ଉଠୁଛି ବହୁ ସ୍ମୃତିର ଝଲକ ।

ତାଙ୍କ ଲେଖନୀର ଅମୃତ ସ୍ପର୍ଶରେ ସେ ସୃଷ୍ଟି କରିଛନ୍ତି ବହୁ ପୁସ୍ତକ । ସାହିତ୍ୟ ସାଧନା ଥିଲା ତାଙ୍କ ଜୀବନର ଏକ ଦେବପୂଜା । ନିତିଦିନିଆ ଜୀବନର କର୍ମ ଜଞ୍ଜାଳ ତାଙ୍କୁ ଲକ୍ଷ୍ୟଚ୍ୟୁତ କରି ପାରିନଥିଲା । ସଂକ୍ଷେପରେ କହିବାକୁ ଗଲେ ତାଙ୍କ ସାହିତ୍ୟ ସାଧନାରୁ ସେ ଜନ୍ମ ଦେଇଛନ୍ତି, ପ୍ରବନ୍ଧ ନାଟକ ଇତ୍ୟାଦି । ମହାବିଦ୍ୟାଳୟ ଅଧ୍ୟୟନ କାଳରୁ ତାଙ୍କର ପ୍ରତିଭା ଥିଲା ବହୁମୁଖୀ ଓ ବହୁଦିଗ ସ୍ପର୍ଶୀ । କବିତା ପ୍ରବନ୍ଧ, ନାଟକ ସମାଲୋଚନା ଇତ୍ୟାଦି ପୁସ୍ତକ ରଚନା କରି ତାଙ୍କ ପ୍ରତିଭାର ପରିଚୟ ପ୍ରଦାନ କରିଛନ୍ତି । ସ୍ୱାମୀ ବିବେକାନନ୍ଦ ମହାବିଦ୍ୟାଳୟରେ ଯୋଗଦାନ ପରେ ତାଙ୍କ ପ୍ରେରଣା ଓ ଉତ୍ସାହ ଭୁଲିବାର ନୁହେଁ ଭୁଲି ହୋଇପାରେନା । ସେଇ ମୋର ପ୍ରିୟ ଓ ଏକାନ୍ତ ଅନ୍ତରଙ୍ଗ ଭୋଳିଭାଇ ।

ହାଇସ୍କୁଲ୍‌ରେ ପଢିବା ସମୟରୁ ମୁଁ ତାଙ୍କୁ ଜାଣେ । ଏକା ସ୍କୁଲରେ ପାଠ ପଢୁଥିଲୁ । ମହାବିଦ୍ୟାଳୟରେ ଅଧ୍ୟୟନ ପାଇଁ ସେ ମୋର ନାମ ଲେଖାଇ ଦେଇଥିଲେ । ମୋର ଆଇ.ଏ. ର ପ୍ରଥମ ବର୍ଷ ହେଲା ବେଳକୁ ସେ ବି.ଏ. ଶେଷ ବର୍ଷ ଛାତ୍ର ଥିଲେ । ସେଇ ସମୟରୁ ମୁଁ ତାଙ୍କ ସ୍ପର୍ଶରେ ଆସି କିଛି ଲେଖାଲେଖିରେ ମନ ଦେଲି । ପ୍ରଜାତନ୍ତ୍ର ଇତ୍ୟାଦିରେ ମୋର ପ୍ରବନ୍ଧ ଓ କବିତାମାନ ପ୍ରକାଶ ପାଇବାକୁ ଲାଗିଲା । ସେ ଲେଖା ଲେଖିବା ପାଇଁ ମୋତେ ସବୁବେଳେ ଉତ୍ସାହ ଓ ପ୍ରେରଣା ଦିଅନ୍ତି ।

୧୯୬୩ ମସିହାରୁ ସ୍ୱାମୀ ବିବେକାନନ୍ଦ ସ୍ମାରକ ମହାବିଦ୍ୟାଳୟରୁ ଅଧ୍ୟାପନା ଆରମ୍ଭ କରି ବାଙ୍କି, ନୟାଗଡ଼, ତିର୍ତ୍ତୋଲ, କିଶୋରନଗର, କନ୍ଦରପୁର, କେନ୍ଦ୍ରାପଡ଼ା ଇତ୍ୟାଦି ମହାବିଦ୍ୟାଳୟରେ ଅଧ୍ୟାପକ, ପ୍ରାଧ୍ୟାପକ ଓ ଅଧ୍ୟକ୍ଷ ଭାବରେ କାର୍ଯ୍ୟକରି କେନ୍ଦ୍ରାପଡ଼ା ମହାବିଦ୍ୟାଳରୁ ଉପାଧ୍ୟକ୍ଷ ଭାବରେ ୧୯୯୮ ମସିହାରେ ଅବସର ଗ୍ରହଣ କଲେ ।

ଡ. ଭୋଳାନାଥ ରାଉତ ଏକାଧାରରେ ଜଣେ ପ୍ରାବନ୍ଧିକ, ନାଟ୍ୟକାର, ସଂକଳକ, ସଂଗଠକ, ସଂପାଦକ ଓ ଉଦ୍ୟୋଗୀ ମଣିଷ । ଆଜି ସେ ଅସୁସ୍ଥ ଥିଲେ ମଧ୍ୟ ସାହିତ୍ୟ ନିଶାରେ ବିଭୋର । ସତରେ କହିବାକୁ ଗଲେ ବ୍ୟାଧି ଓ ବାର୍ଦ୍ଧକ୍ୟ ତାଙ୍କ ସାହିତ୍ୟ ନିଶାରେ ଅନ୍ତରାୟ ସୃଷ୍ଟି କରିନାହିଁ । ଶେଷରେ ସେଇ ପ୍ରଜ୍ଞା ପୁରୁଷଙ୍କର ସୁସ୍ଥ ମନ ଓ ସୁନ୍ଦର ସ୍ୱାସ୍ଥ୍ୟ ଆଶା କରି ରହିଲି । ■

# ନିରଳସ ସାହିତ୍ୟ, ସଂଗଠକ ଓ ସଂସ୍କୃତିପ୍ରେମୀ

ଡକ୍ଟର ସୁରେନ୍ଦ୍ର କୁମାର ମହାରଣା

'ଡକ୍ଟର ଭୋଳାନାଥ ରାଉତ'- ଏଇ ନାଁଟି ସହିତ କେବଳ ଜଗତସିଂହପୁର ଜିଲ୍ଲାବାସୀ ନୁହଁନ୍ତି, ସାରା ଓଡ଼ିଶାର ସାହିତ୍ୟ ଓ ସଂସ୍କୃତିପ୍ରେମୀମାନେ ଅତି ପରିଚିତ । ଉତ୍କଳୀୟ ଧର୍ମ ସଂସ୍କୃତି ଓ ସାହିତ୍ୟ କ୍ଷେତ୍ରରେ ଲେଖନୀ ଚାଳନାକରି ସେ ଯେଉଁ ସାରସ୍ୱତ ସୌଧମାନ ନିର୍ମାଣ କରିଛନ୍ତି ସେଗୁଡ଼ିକ ମଧ୍ୟରେ ସାହିତ୍ୟିକ ସମାଲୋଚନା, ଓଡ଼ିଶାର ରାଜନୀତିକ ସାଂସ୍କୃତିକ ଓ ସାମାଜିକ ଇତିହାସ, ସାହିତ୍ୟତତ୍ତ୍ୱ ଓ ତଥ୍ୟ', ବୈଦିକ ସାହିତ୍ୟ ଓ ସଂସ୍କୃତି 'କାବ୍ୟ ଓ କବି ଲେଖା ଓ ଲେଖକ ଇତ୍ୟାଦିର ନାମ ଉଲ୍ଲେଖଯୋଗ୍ୟ । 'ଦାଣ୍ଡିରାମାୟଣ'ରେ ଓଡ଼ିଶାର ଲୋକସଂସ୍କୃତି' ଗ୍ରନ୍ଥଟି ତାଙ୍କ ଗବେଷଣୀୟ ଖ୍ୟାତିର ଅନ୍ୟତମ ନିଦର୍ଶନ । କେବଳ ସାହିତ୍ୟ ସମାଲୋଚନା କ୍ଷେତ୍ରରେ ତାଙ୍କ କୃତିତ୍ୱ ସୀମିତ ନୁହେଁ, ଗଳ୍ପସାହିତ୍ୟରେ ହାତଦେଇ ସେ ରଚନା କରିଥିବା ଗଳ୍ପଗୁଡ଼ିକ ଅନୁଗୁଞ୍ଜରିତ ସ୍ୱର ସଂକଳନରେ ସ୍ଥାନିତ । ସେହିପରି ଶତାବ୍ଦୀର ସ୍ୱପ୍ନ ତାଙ୍କ ଏକାଙ୍କିକାଗୁଚ୍ଛର ଏକ ମନୋରମ ସଂକଳନ । ଜଣେ ସୁଯୋଗ୍ୟ ସଂପାଦକର ପରିଚୟଟିଏ ସେ ନିଜପାଇଁ ସୃଷ୍ଟିକରିପାରିଛନ୍ତି । ଓଡ଼ିଆ ଉପନ୍ୟାସ ସାହିତ୍ୟର ପରିଚୟ, ପ୍ରବନ୍ଧ ସେ ଯୁଗ ଏ ଯୁଗ' ମେହେର ଆଲୋକ', ସାହିତ୍ୟରେ ରହସ୍ୟବାଦ, ଗଳ୍ପ ସମାରୋହ, ଏକାଙ୍କିକା ସୌରଭ, କବିତା ସେ ଯୁଗ ଏ ଯୁଗ ଇତ୍ୟାଦି ସଂକଳନ ସଂପାଦନ କରିବାଦ୍ୱାରା । ଏଗୁଡ଼ିକର ସଂଯୋଜିତ ମୁଖବନ୍ଧ ରଚୟିତାମାନଙ୍କ ପରିଚୟ ତାଙ୍କ ସାରସ୍ୱତ ପ୍ରତିଭାର ଅମଳିନ ସ୍ୱାକ୍ଷର ।

ଜଣେ ଅଗ୍ରଣୀ ସାହିତ୍ୟ ସଂଗଠକ ଭାବରେ ସେ ସୁପରିଚିତ । ଅଭ୍ୟୁଦୟ ସାହିତ୍ୟ ସମାଜ, ଜଗତସିଂହପୁର ସାହିତ୍ୟ -ସଂସଦ, ଅଳକା କଳାମଣ୍ଡପ ଆଦିର ସେ ସ୍ୱନାମଧନ୍ୟ ପ୍ରତିଷ୍ଠାତା ସଂପାଦକ । ଶିକ୍ଷକ ମହାସଂଘର ମଧ୍ୟ ସେ ଜଣେ ସର୍ବମାନ୍ୟ ନେତା, ନିଖିଳ ଉତ୍କଳ ଶିକ୍ଷକ ମହାସଂଘ, ଅଖିଳ ଭାରତୀୟ ଓଡ଼ିଆ ଅଧ୍ୟାପକ ସମ୍ମେଳନ, ବେସରକାରୀ କଲେଜ ଶିକ୍ଷକ ସଂଘ ଇତ୍ୟାଦିର ସେ ବିଭିନ୍ନ ସମୟରେ ବିଭିନ୍ନ ପଦ ମଣ୍ଡନ କରି ରାଜ୍ୟରେ ଶିକ୍ଷକ ଆନ୍ଦୋଳନ ସକ୍ରିୟ ରଖିପାରିଛନ୍ତି ଓ ଶିକ୍ଷକମାନଙ୍କର ବିଭିନ୍ନ ଦାବି ଉପସ୍ଥାପନ ଓ

ସମସ୍ୟା ସମାଧାନ ପ୍ରଭୃତି କାର୍ଯ୍ୟରେ ସଫଳ ହୋଇଛନ୍ତି, ରାଜ୍ୟରେ ଶିକ୍ଷକ ସମାଜର ଉନ୍ନତିପାଇଁ ତାଙ୍କ ଏକନିଷ୍ଠ ନେତୃତ୍ୱ ତାଙ୍କୁ ସ୍ମରଣୀୟ କରିରଖିଛି ।

"ଜଗତସିଂହପୁର ଅତୀତ: ଓ ବର୍ତ୍ତମାନ' ସଂକଳନ ତାଙ୍କ ବଳିଷ୍ଠ ସାରସ୍ୱତ ଓ ସାଙ୍ଗଠନିକ ଶକ୍ତିର ମହତ ପରିଚୟ । ଏହି ବିପୁଳକାୟ ସଂକଳନ ତିନିଖଣ୍ଡରେ ପ୍ରକାଶିତ । ମାତ୍ର ଦୁଇତିନି ସହଯୋଗୀ ସଂପାଦକଙ୍କୁ ନେଇ ସେ ମୁଖ୍ୟ ସଂକଳକ ଓ ମୁଖ୍ୟ ସଂପାଦକର ଦାୟିତ୍ୱ ତୁଲାଇଛନ୍ତି ଏବଂ ଏକ କୀର୍ତ୍ତି କୋଣାର୍କ ଗଢିପାରିଛନ୍ତି । ଯାହା ଅବିଶ୍ୱାସ୍ୟ ହେଲେ ବି ସତ୍ୟ । ଜଗତସିଂହପୁର ବହୁବିଂଧ ସାଂସ୍କୃତିକ ବିଭାଗର ଏହା ଏକ ବିରାଟ ଜ୍ଞାନକୋଷ । ଜଗତସିଂହପୁର ଜିଲ୍ଲା ଇତିହାସ, ଭୂଗୋଳ, ପ୍ରତ୍ନତତ୍ତ୍ୱ, କଳାଭାସ୍କର୍ଯ୍ୟ, ଧର୍ମ, ନୌବାଣିଜ୍ୟ, ସାମରିକ ଶକ୍ତି, ସାହିତ୍ୟ ଓ ସାହିତ୍ୟିକ, ଅର୍ଥନୀତି, ରାଜନୀତି, ସ୍ୱାଧୀନତା ସଂଗ୍ରାମ ଓ ସଂଗ୍ରାମୀ ଇତ୍ୟାଦି ବିଷୟରେ ବିଭିନ୍ନ ଗବେଷକମନଙ୍କ ଗବେଷଣାପ୍ରଭୃତି ମୂଲ୍ୟବାନ ପ୍ରବନ୍ଧୀୟ ସମାହାରରେ ବିପୁଳ କଳେବର ବିଶିଷ୍ଟ ଏହି ତିନିଖଣ୍ଡ ଗ୍ରନ୍ଥର ଆତ୍ମପ୍ରକାଶ । ଡକ୍ଟର ରାଉତଙ୍କ ଏହି ମହାର୍ଘ ସଂକଳନ ଜଗତସିଂହପୁର ଜିଲ୍ଲାର ଏକ ଐତିହାସିକ ଓ ସାଂସ୍କୃତିକ ଦଲିଲ୍ । ଜଗତସିଂହପୁର ଜିଲ୍ଲା ସଂସ୍କୃତି ପରିଷଦ ଦ୍ୱାରା ୨୦୦୭ ଖ୍ରୀଷ୍ଟାବ୍ଦରେ ଏହି ତିନିଖଣ୍ଡ ପ୍ରକାଶିତ । ଡକ୍ଟର ରାଉତଙ୍କ ନିଷ୍ଠାପର ଉଦ୍ୟମ ତତ୍‌କାଳୀନ ସ୍ଥାନୀୟ କିଛି ସଂସ୍କୃତିପ୍ରେମୀ ବ୍ୟକ୍ତିବିଶେଷଙ୍କ ଆନ୍ତରିକ ପ୍ରେରଣା, ଅକୁଣ୍ଠ ସହାୟତା ନିମନ୍ତେ ବିରାଟ କୀର୍ତ୍ତିର ସଫଳ ରୂପାୟନ ସମ୍ଭବ ହୋଇଛି ।

ଏହି କାର୍ଯ୍ୟରେ ଡକ୍ଟର ରାଉତଙ୍କ ଦୃଢ ମନୋଭାବ, ଗଭୀର ଇଚ୍ଛାଶକ୍ତି ଓ ଅପୂର୍ବ ସାଙ୍ଗଠନିକ ଶକ୍ତିର ପରିଚୟ ମୁଁ ଲକ୍ଷ୍ୟକରିଛି ଅତି ପାଖରୁ, ଯେଉଁଥିପାଇଁ ସେ ସୁଯୋଗଟିଏ ସୃଷ୍ଟିକରିଥିଲେ ମୋ ପାଇଁ । ଜଗତସିଂହପୁର ମୋ ଜନ୍ମ ଜିଲ୍ଲା ହେଲେହେଁ ଆମ ପରିବାର ବାହାରେ ରହୁଥିବାରୁ ଓ ମଝିରେ ଗାଁକୁ ଆସୁଥିବା କାରଣରୁ କେତେଜଣଙ୍କ ପାଇଁ ଯେଉଁ ସୁଯୋଗ ସୃଷ୍ଟିହୁଏ, ତଦ୍ୱାରା ବିଭିନ୍ନ ଉପାୟରେ ଆମ ଜମି, ଡିହବାଡ଼ି ଅନେକାଂଶରେ ଅନ୍ୟଦ୍ୱାରା କବଳିତ ହୁଏ । ଥାନାଫାଣ୍ଡି, ଠେଙ୍ଗାବାଡ଼ି, କୋର୍ଟକଚେରି, ସପକ୍ଷରେ ମୁଁ ନ ଥିବାରୁ ଏବଂ ଏହା ମୋ ସାଧ୍ୟାତୀତ ଥିବାରୁ ପ୍ରାୟତଃ ମୁଁ ଗାଁରୁ ଦୂରେଇ ରହେ । ତେଣୁ ଖୁବ୍ କମ୍ ଲୋକ ଜାଣନ୍ତି ଯେ ମୁଁ ଜଗତସିଂହପୁର ଜିଲ୍ଲାର ସନ୍ତାନ । ମୋର କିଛି ପୁସ୍ତକ ମାଧ୍ୟମରେ ମୋତେ ଆବିଷ୍କାର କରନ୍ତି ଡକ୍ଟର ରାଉତ ଓ ମୋର ପରିଚୟ କୌଣସି ସୂତ୍ରରୁ ପାଇ ମୋତେ ନିଜର କରି ନିଅନ୍ତି ନିଜ ଜିଲ୍ଲାର ଜଣେ ଭାଇ ଭାବରେ । ଏହି ଭାଇ ପଣିଆର ସ୍ୱରୂପ ସେ ମୋ ଉପରେ ଲଦିଦିଅନ୍ତି ତାଙ୍କ ପରିଚୟ ପୂର୍ବୋକ୍ତ ସାଂସ୍କୃତିକ

ସୌଧର ନିର୍ମାଣ କାର୍ଯ୍ୟରେ ଜଣେ ଶ୍ରମିକର ଦାୟିତ୍ୱ । ଓଡ଼ିଶାରେ ବୌଦ୍ଧଧର୍ମ ମୋ ଗବେଷଣାର କ୍ଷେତ୍ର ହୋଇଥିବାରୁ ସେ ମୋତେ ଜଗତସିଂହପୁର ଜୈନ ଓ ବୌଦ୍ଧସଂସ୍କୃତି' ବିଷୟକ ପ୍ରବନ୍ଧଟିଏ ପ୍ରସ୍ତୁତ କରିବାକୁ ଅନୁରୋଧ କରନ୍ତି । ମୁଁ ଜଗତସିଂହପୁର ଜିଲ୍ଲାର ବିରିଡ଼ି ବ୍ଲକ୍ ଅନ୍ତର୍ଗତ ବାଇଶିମୌଜାରେ ଜନ୍ମ ପୁରୀ ସହରରେ ଶିକ୍ଷାପ୍ରାପ୍ତ ଓ ରାଜଧାନୀ ଭୁବନେଶ୍ୱରରେ ଅବସ୍ଥିତ; ଏଣୁ ମୋର ଜଗତସିଂହପୁର ଜିଲ୍ଲା ସହିତ ବିଶେଷ ପରିଚିତ ନଥିବାରୁ ସେ ଛୁଟିଦିନରେ ମୋତେ ଭୁବନେଶ୍ୱରରୁ ନେଇ ଜଗତସିଂହପୁର ଜିଲ୍ଲାର ବିଭିନ୍ନ ସ୍ଥାନ ବୁଲାଇଛନ୍ତି, ଜୈନ ଓ ବୌଦ୍ଧସଂସ୍କୃତିର ଅବଶେଷ ଥିବା ସ୍ଥାନମାନଙ୍କୁ ନେଇଛନ୍ତି ଏବଂ ଏ ସଂପର୍କିତ ମୋର ଜ୍ଞାନକୁ ବ୍ୟାପକ କରିଛନ୍ତି । ଯାହାର ବିନିଯୋଗରେ ମୁଁ ପ୍ରସ୍ତୁତ କରିଛି ଏକ ଦୀର୍ଘ ପ୍ରବନ୍ଧ । କେବଳ ସେତିକି ନୁହେଁ ଜଗତସିଂହପୁର ଶୈବସଂସ୍କୃତି ପ୍ରବନ୍ଧ ରଚନାରେ ମଧ୍ୟ ସେ ମୋତେ ତାଙ୍କ ସହିତ ଅନ୍ତର୍ଭୁକ୍ତ କରିଛନ୍ତି ।

ଏଠାରେ କହିରଖେ କେବଳ ମୁଁ ନୁହେଁ ମୋ ଭଳି ବହୁ ଗବେଷକଙ୍କୁ ସେ ବିଭିନ୍ନ ସ୍ଥାନରୁ ଗାଡ଼ିରେ ନେଇ ଜଗତସିଂହପୁର ଜିଲ୍ଲାର କୋଣ ଅନୁକୋଣରେ ପହଞ୍ଚାଇଛନ୍ତି, ସେମାନେ ଖାଇବା ଓ ରହିବା ବ୍ୟବସ୍ଥା ମଧ୍ୟ କରିଛନ୍ତି । ଦ୍ୱିପ୍ରହରର ଟାଣଖରାକୁ ଖାତିର ନକରି ଗବେଷକଙ୍କ ସହିତ ସେ ବୁଲିଛନ୍ତି, ଆଲୋଚନା କରିଛନ୍ତି, ଦିଗ୍‌ଦର୍ଶନ ମଧ୍ୟ ଦେଇଛନ୍ତି; ଫଳରେ ସେମାନଙ୍କ ପାଇଁ ପ୍ରେରଣାର ଉତ୍ସ ପାଲଟି ଯାଇଛନ୍ତି । ମୁଁ ସବୁବେଳେ ଲକ୍ଷ୍ୟକରିଛି, ଜୀବନର ଅପରାହ୍ଣରେ ବି ତାଙ୍କ ଯୁବସୁଲଭ ଉଦ୍ଧାମତା, ନିଜ ଜିଲ୍ଲାର ଅତୀତ ଓ ବର୍ତ୍ତମାନର ଇତିହାସ ପ୍ରଣୟନ କରିବାର ସଂକଳ୍ପବଦ୍ଧ ପ୍ରବଣତା । ଜଣେ ଯୁବ ଗବେଷକର ସମସ୍ତ ଉତ୍ସୁକତା ସହିତ ଆମ ସାଙ୍ଗରେ ଥାନ୍ତି ତାଙ୍କ ସୁଯୋଗ୍ୟ ଜାମାତା ଅଧ୍ୟାପକ ନିରଞ୍ଜନ ବିଶ୍ୱାଳ । ସେ ମହାଶୟ ମଧ୍ୟ ଏହି ଜଗତସିଂହପୁର ଅତୀତ ବର୍ତ୍ତମାନ ନାମକ ସାଂସ୍କୃତିକ କୋଷର ଅନ୍ୟତମ ବିନ୍ଧାଣୀ, ଅନ୍ୟତମ ସଂକଳକ । ସେ ଯାହାହେଉ ଡକ୍ଟର ରାଉତଙ୍କ ନିଜ ଜିଲ୍ଲାପ୍ରୀତି ମୋତେ ବହୁ ମଠ, ମନ୍ଦିର ସାଂସ୍କୃତିକ ବୈଶିଷ୍ଟ୍ୟପୂର୍ଣ୍ଣ ସ୍ଥାନମାନ ଭ୍ରମଣ କରିବାର ସୁଯୋଗ ଦେଇଛି ଓ ସାଂସ୍କୃତିକ ଚିତ୍ରାବଳି ନିଜ ଜିଲ୍ଲା ସଂପର୍କିତ ଜ୍ଞାନର ଦିଗ୍‌ବଳୟକୁ ଦୀର୍ଘାୟିତ କରିଛି । ସେଥିପାଇଁ ମୁଁ ତାଙ୍କ ନିକଟରେ ଚିରକୃତଜ୍ଞ ।

ଜଗତସିଂହପୁର ଜିଲ୍ଲାର ଇତିହାସ, ଭୂଗୋଳ, ପ୍ରତ୍ନତତ୍ତ୍ୱ, ଶିଳ୍ପ, ସ୍ଥାପତ୍ୟ, ବାଣିଜ୍ୟ, କୃଷି ସାମାଜିକ ଚଳଣି ସ୍ୱାଧୀନତା ସଂଗ୍ରାମ, ଧର୍ମ, ସାହିତ୍ୟ, ଇତ୍ୟାଦି ସଂସ୍କୃତିର ସମସ୍ତ ଦିଗକୁ ଛୁଇଁବାରେ ସେ ସଫଳ ହୋଇଛନ୍ତି ତିନିଖଣ୍ଡରେ ପ୍ରକାଶିତ ଆଲୋଚ୍ୟ ପୁସ୍ତକରେ । ଏହା ଜଗତସିଂହପୁର ଜିଲ୍ଲାର ଅତୀତ ଓ୍ ବର୍ତ୍ତମାନର ଏକ ପ୍ରାମାଣିକ ଦଲିଲ୍ ଏବଂ ଅନ୍ୟ ଜିଲ୍ଲାବାସୀଙ୍କ ପାଇଁ ପ୍ରେରଣାର ଉତ୍ସ ।

ଏତେସବୁ ସାଂସ୍କୃତିକ ବିଭବକୁ ଆଲୋକିତ କରିଥିଲେ ବି ଆହୁରି କିଛି ବାକି ରହିଯାଇଥିବା ସେ ଅନୁଭବ କରିଛନ୍ତି । ତେଣୁ ସେ ଅତି ସ୍ପଷ୍ଟ ଶବ୍ଦରେ ଏହାର ମୁଖବନ୍ଧରେ ସୂଚାଇ ଦେଇଛନ୍ତି ଏବଂ ଏ ବିଷୟ ଅଧିକ ଅଧ୍ୟୟନ, ଅନୁଶୀଳନ ଓ ପରିବର୍ଦ୍ଧନର ଦାୟିତ୍ୱ ତାଙ୍କ ଭାଷାରେ "ଗ୍ରନ୍ଥଟି ପ୍ରସ୍ତୁତ କଲାବେଳେ ଅନେକ ସମସ୍ୟାର ସମ୍ମୁଖୀନ ହୋଇଛି । ତନ୍ମଧ୍ୟରୁ ତଥ୍ୟସଂଗ୍ରହ ପାଇଁ ସମସ୍ୟା ଅତ୍ୟନ୍ତ ଗୁରୁତର ହୋଇଛି । ଭବିଷ୍ୟତ ପାଇଁ ଏ ଗ୍ରନ୍ଥକୁ ଏକ ଦସ୍ତାବିଦ୍ ଡକୁମେଣ୍ଟ୍ ଭାବେ ପ୍ରସ୍ତୁତ କରିବାକୁ ଉଦ୍ଦେଶ୍ୟ ରଖି ମୁଖ୍ୟତଃ ବୈଜ୍ଞାନିକ, ପ୍ରତ୍ନତାତ୍ତ୍ୱିକ, ନୃତାତ୍ତ୍ୱିକ ଓ ଐତିହାସିକ ଦୃଷ୍ଟିକୋଣରୁ ଚେଷ୍ଟାକରାଯାଇଛି । ଏଥିରେ ଅନେକାଂଶରେ ସଫଳ ହେଲେ ସଂପୂର୍ଣ୍ଣ ସଫଳ ହୋଇପାରିନାହିଁ । ସ୍ପଷ୍ଟ ଭାବରେ ସ୍ୱୀକାର କରୁଛିଯେ ମୁଁ ଓ ମୋର ସହଯୋଗୀମାନେ କେହି ଐତିହାସିକ ନାହୁଁ । ତାପରେ ଏ ସ୍ଥାନୀୟ ଅଞ୍ଚଳରେ ଇତିହାସକୁ ସଂପୂର୍ଣ୍ଣ ଭାବେ ଲୋକଲୋଚନକୁ ଆଣିବା ଏକ କଷ୍ଟସାଧ୍ୟ ବ୍ୟାପାର ସତ୍ତ୍ୱେ ଇତିହାସର କେତେକ ସୂତ୍ର ଅନୁସନ୍ଧାନ କରିବାପାଇଁ ଚେଷ୍ଟାକରାଯାଇଛି । ଏଥିରେ ହୁଏତ କିଛି ତ୍ରୁଟି ଥାଇପାରେ । ସେଥିରେ ଭବିଷ୍ୟତର ଗବେଷକମାନଙ୍କ ହାତରେ ସମର୍ପିଦେଇ ଆଶା କରୁଛି କି ସେମାନେ ଏହାକୁ ଆଉ ଦୁଇପାଦ ଆଗେଇନେବେ " (ମୁଖବନ୍ଧ, ପୃ:୦) ।

ତାଙ୍କ ସମ୍ମାନାର୍ଥେ ଅଭିନନ୍ଦନ ପୁସ୍ତକଟିଏ ପ୍ରକାଶ କରିବା ଏକ ସାଧୁଉଦ୍ୟମ ଏବଂ ଯୋଗ୍ୟ ବ୍ୟକ୍ତିଙ୍କୁ ଯଥାଯୋଗ୍ୟ ମାନ୍ୟତା ପ୍ରଦାନ କରିବାର ଏକ ଉଜ୍ଜ୍ୱଳ ପରଂପରା ଭଗବାନ କରନ୍ତୁ, ଡକ୍ଟର ରାଉତ ଅଚିରେ ସୁସ୍ଥହୋଇ ଜିଲ୍ଲା ପାଇଁ, ଜାତି ପାଇଁ, ଏଭଳି ଆଉ କିଛି ମହାର୍ଘ ସାରସ୍ୱତ ଓ ସାଂସ୍କୃତିକ କାର୍ଯ୍ୟ ସମାପନ କରି ଆମ ସମସ୍ତଙ୍କ ପାଇଁ ଆଦର୍ଶ ହୋଇ ରହିଥାଆନ୍ତୁ । ■

# ଅଧ୍ୟାପକ ଭୋଳାନାଥ ରାଉତ
# ବୌଦ୍ଧିକ ଓ ସାଙ୍ଗଠନିକ ଉତ୍କର୍ଷର
# ଏକ ଅପୂର୍ବ ସମନ୍ୱୟ

ଦୁର୍ଯ୍ୟୋଧନ ପରିଡ଼ା

କେନ୍ଦ୍ରାପଡ଼ା କଲେଜରେ ମୁଁ ଅଧ୍ୟାପକ ଭାବରେ ଯୋଗଦେଲି ୧୯୮୧ ମସିହାରେ । ଅଧ୍ୟାପନା ଆରମ୍ଭର ଖୁବ୍ କମ ଦିନ ମଧ୍ୟରେ ମିଶିଗଲି ହୋଇଗଲି ଶିକ୍ଷକ ମହାସଂଘ ଆନ୍ଦୋଳନ ସହିତ । ପ୍ରାୟ ସେହି ସମୟରୁ ଶୁଣି ଆସୁଥିଲି ଅଧ୍ୟାପକ ଭୋଳାନାଥ ରାଉତଙ୍କ କଥା, ଜଣେ ପ୍ରବୀଣ ତଥା ଧୁରୀଣ ସଂଗଠକ ବୋଲି । ବେସରକାରୀ କଲେଜ ଶିକ୍ଷକ ସଂଘ ବା ଶିକ୍ଷକ ମହାସଂଘ ବୈଠକରେ କେବେ କେବେ ତାଙ୍କୁ ଦୂରରୁ ହିଁ ଦେଖୁଥିଲି । ଧଳା ଧୋତି ପଞ୍ଜାବୀରେ ତାଙ୍କୁ ପ୍ରାୟତଃ ଦେଖିଆସିଛି ପ୍ରଥମ ଦିନଠାରୁ । ତେବେ ତାଙ୍କ ସହ ଘନିଷ୍ଠ ହେବା ଆରମ୍ଭ ହେଲା ସେ କେନ୍ଦ୍ରାପଡ଼ା କଲେଜକୁ ବଦଳି ହେବାପରେ ଓ ସେଠାରେ ଉପାଧ୍ୟକ୍ଷ ଭାବରେ କାର୍ଯ୍ୟ କଲାବେଳେ । ସେତେବେଳେ ମୁଁ ଅବଶ୍ୟ କିଛି ବର୍ଷ ପାଇଁ କେନ୍ଦ୍ରାପଡ଼ା କଲେଜରୁ ସ୍ଥାନାନ୍ତର ହୋଇଥାଏ ପଟ୍ଟାମୁଣ୍ଡାଇ କଲେଜକୁ, ହେଲେ କେନ୍ଦ୍ରାପଡ଼ା ସହରକୁ ଆଧାର କରି ତଥାପି ବି ଜୀବନଚର୍ଯ୍ୟା ଲାଗିରହିଥାଏ ।

ବଡମାନଙ୍କର ପ୍ରିୟ ଡାକ 'ଭୋଳିବାବୁ' ରେ ସେ ଥିଲେ ପରିଚିତ । ଆମପରି କନିଷ୍ଠମାନଙ୍କ ପାଇଁ ସେ କିନ୍ତୁ ଥିଲେ 'ସାର୍' । ସେ ଅଧ୍ୟାପନା ଆରମ୍ଭ କରିଥିବା ଏସ୍.ଭି.ଏମ୍. କଲେଜରେ ମୁଁ ଯଦି ପାଠ ପଢ଼ିଥାନ୍ତି, ତେବେ ସେ ମଧ୍ୟ ହୋଇଥାନ୍ତେ ମୋର ଶିକ୍ଷକ । ସେ ହେଉଛନ୍ତି ଜଣେ ବ୍ୟକ୍ତି ଯେ କି ଶୈକ୍ଷିକ ଓ ସାଙ୍ଗଠନିକ କାର୍ଯ୍ୟରେ ସମ ଆଗ୍ରହ ଓ ସାମର୍ଥ୍ୟର ଅଧିକାରୀଥିଲେ ଏବଂ ଉଭୟ କ୍ଷେତ୍ରରେ ମଧ୍ୟ ସମ ପରିମାଣରେ ଉତ୍କର୍ଷ ଅର୍ଜନ କରିଥିଲେ ।

ଅବନୀ (ବରାଳ) ବାବୁଙ୍କର ସେ ଥିଲେ ସହପାଠୀ । ତାଙ୍କ ବନ୍ଧୁତାର ଅନାବିଳତା ତଥା ତାଙ୍କ ସାମର୍ଥ୍ୟର ଗଭୀରତା ପାଇଁ ଅବନୀବାବୁ ତାଙ୍କୁ ଅନେକ ସମୟରେ ସ୍ମରଣ କରୁଥିଲେ । ଉଭୟ ବେସରକାରୀ କଲେଜ ଶିକ୍ଷକ ସଂଘ ଓ ନିଖିଳ ଉତ୍କଳ ଶିକ୍ଷକ ମହାସଂଘର ସଂକଟ ବେଳେ, ସେ ତାଙ୍କର ଉପଦେଶ ଓ ସହଯୋଗ ସଦା ସର୍ବଦା ଦେଇଆସିଛନ୍ତି । ସେ ଚାକିରିରେ ସେତେବେଳେ ଥାନ୍ତୁ କି ନ ଥାନ୍ତୁ, ସେଥିରେ ବେଶୀ କିଛି ଫରକ ପଡ଼ିନାହିଁ ।

ବୃତ୍ତିରେ ଥିବାବେଳେ ସେ ଥିଲେ ଆଗ ଧାଡ଼ିର ସଂଗ୍ରାମୀ/ନେତା । ନଥିଲା ବେଳେ ବି କେବେ ସେଥିରୁ କମ୍ ନଥିଲେ । ଆମପରି କନିଷ୍ଠମାନଙ୍କୁ ସବୁ ସମୟରେ ଉପଦେଶ ଓ ମାର୍ଗ ଦର୍ଶନ କରାଇବାରେ ଓ ସାଥିରେ ରହି (କାନ୍ଧରେ କାନ୍ଧ ମିଳାଇ) ସଂକଟରୁ ଉତ୍ତୀର୍ଣ୍ଣ କରାଇବାରେ ଦୃଢ଼ ପଦପାତର ସମର୍ଥନ ଦେବାରେ ତାଙ୍କ ତୁଲ୍ୟ ମଣିଷ ଖୁବ୍ କମ୍ ଅଛନ୍ତି ।

ଆଜି ମନେ ପଡୁଛି ୨୦୦୩ ମସିହା କଥା । ନିଖିଳ ଉତ୍କଳ ବେସରକାରୀ କଲେଜ ଶିକ୍ଷକ ସଂଘରୁ କିଛି ଅଧ୍ୟାପକ ଓ କର୍ମଚାରୀ ଅଲଗା ହୋଇ ଅନ୍ୟ ଏକ ସଂଗଠନ ତିଆରିକଲେ । ତାର ବୈଠକ ହେଲା କାମାକ୍ଷାନଗର କଲେଜରେ । ୧୯୬୨ ମସିହାରୁ ଆନ୍ଦୋଳନ ଓ ସଂଗ୍ରାମର ବୁନିଆଦ୍ - ପରିପୁଷ୍ଟ ମୂଳ ସଂଗଠନକୁ ଏକ ବିଭାଜନକାରୀମାନେ ଶକ୍ତ ଆଘାତ ପହୁଂଚାଇଲେ । ଏହାଥିଲା ସଂଘର ସ୍ଥିତି ପାଇଁ ଏକ ଆହ୍ୱାନ । ସେହି ସଂକଟଜନକ ସମୟରେ ମୋତେ ତାର ସାଧାରଣ ସଂପାଦକ ଭାବରେ ଦାୟିତ୍ୱ ନେବାକୁ ଆହ୍ୱାନ ଆସିଲା । ସେତେବେଳକୁ ତାଙ୍କ ବୃତ୍ତି ନିବୃତ୍ତି ହୋଇସାରିଲାଣି । ସମାନ ଅବସ୍ଥା ମଧ୍ୟ ଥିଲା, ଶିକ୍ଷକ ମହାସଂଘର ପ୍ରାତଃସ୍ମରଣୀୟ ନେତା ଅବନୀ ବରାଳଙ୍କ ବିୟୋଗ ପରେ ପରେ ୨୦୧୩ମସିହାରେ । ମୋତେ ଯୁଗ୍ମ -ସାଧାରଣ ସଂପାଦକ ପଦରୁ ସାଧାରଣ ସଂପାଦକଙ୍କ ଦାୟିତ୍ୱ ନେବାକୁ ହେଲା ଓ ସେଥିରେ ସେ ମଧ୍ୟ ଥିଲେ ଅନ୍ୟତମ ବଳିଷ୍ଠ ସମର୍ଥକ । ମୋତେ କ'ଣ କହିବାକୁ ହେବ, ବିଭାଜନକାରୀଙ୍କୁ କିପରି ମୁକାବିଲା କରିବାକୁ ପଡ଼ିବ, ସେ କେବେ ଚାହୁଁନଥିଲେ ମୁଁ ଶିକ୍ଷକ ମହାସଂଘର ସାଧାରଣ ସଂପାଦକ ଦାୟିତ୍ୱ ଛାଡ଼ିଦିଏ ବୋଲି । ଏଭଳି ଅଯାଚିତ ସ୍ନେହ ଓ ସମର୍ଥନରେ ସେ ମୋତେ ଜୀବନସାରା ଅନୁଗୃହୀତ କରିଆସିଛନ୍ତି । କୌଣସି ସଂକଟ ବେଳେ ସେ ମେରିଖୁଣ୍ଟ ଭାବରେ ସଂଗଠନ ସମ୍ମୁଖରେ ଅଣ୍ଟା ଭିଡ଼ି ଠିଆହୋଇ ତାର ସଂଗ୍ରାମକୁ ଆଗେଇ ନେଇ ତାକୁ ସଫଳ କରାଇଛନ୍ତି ।

୧୯୯୯ରେ ମହାବାତ୍ୟା ପରେ ପରେ ମହାସଂଘର ରିଲିଫ କାର୍ଯ୍ୟକ୍ରମ ହେଉ ବା ଅବନୀ ବାବୁଙ୍କ ଜଗତସିଂହପୁର ସାଂସଦ ପ୍ରାର୍ଥୀଭାବେ ନିର୍ବାଚନ ଲଢିବା ହେଉ, ସବୁ କାର୍ଯ୍ୟରେ ତାଙ୍କ ଗୃହ ହୋଇଯାଇଥିଲା କେନ୍ଦ୍ରବିନ୍ଦୁ । ଜଗତସିଂହପୁର ବା ତାକୁ ଟପି ଜିଲ୍ଲାର ଅନ୍ୟ କୌଣସି ବ୍ଲକ୍‌କୁ ଗଲାବେଳେ ତାଙ୍କୁ ଦେଖା ନକରି ଆଗକୁ ଯିବା ଆମ ପାଇଁ ଥିଲା ଅଚିନ୍ତନୀୟ । କୌଣସି କାମର ଦାୟିତ୍ୱ ନେଇ ଗଲାବେଳେ, ତାଙ୍କ ସହ ଦେଖାହେବା ପରେ, କେତେବେଳେ ସେ ଆମକୁ ସାଙ୍ଗରେ ନେଇ ତ, କେତେବେଳେ ଦିଗ୍‌ଦର୍ଶନ ସହ ଆଗକୁ ଯିବାକୁ ଦିଗବାରେଣୀ ଭଳି ଭୂମିକା ନିର୍ବାହ କରୁଥିଲେ । ■

ପ୍ରାକ୍ତନ ସାଧାରଣ ସଂପାଦକ, ନିଖିଳ ଉତ୍କଳ ଶିକ୍ଷକ ମହାସଂଘ

# ଜଣେ ସାରସ୍ୱତ ସହଯୋଗୀର ସ୍ମୃତି ଅନୁଭୂତି

ମହେନ୍ଦ୍ର କୁମାର ଆଗ୍ରୱାଲ

ବିଂଶ ଶତାବ୍ଦୀର ଷଷ୍ଠ ଦଶକରେ ଜଗତସିଂହପୁର ଠାରେ ଯେତେବେଳେ କିଛି ଶିକ୍ଷାପ୍ରେମୀ ଓ ଶିକ୍ଷାବିତ ଏକ ମହାବିଦ୍ୟାଳୟ କଳ୍ପନା କରି ଉଚ୍ଚ ଶିକ୍ଷା ପାଇଁ ସ୍ୱାମୀ ବିବେକାନନ୍ଦ ସ୍ମାରକ ମହାବିଦ୍ୟାଳୟ ନାମରେ ଏକ ମହାବିଦ୍ୟାଳୟ ପ୍ରତିଷ୍ଠା କଲେ, ଏହି ମହାବିଦ୍ୟାଳୟରେ ଅଧ୍ୟାପନା ପାଇଁ ସରକାରୀ ଚାକିରିର ମୋହ ତୁଟାଇ ଯେଉଁ କେତେଜଣ ଉଚ୍ଚ ଡିଗ୍ରୀପ୍ରାପ୍ତ ଯୁବକ ଆଗେଇ ଆସିଥିଲେ ସେମାନଙ୍କ ମଧ୍ୟରେ ଡକ୍ଟର ଭୋଳାନାଥ ରାଉତ ଥିଲେ ଅନ୍ୟତମ । ତତ୍କାଳୀନ ଶିକ୍ଷା ବ୍ୟବସ୍ଥାରେ ବେସରକାରୀ ଶିକ୍ଷାନୁଷ୍ଠାନରେ ଅଧ୍ୟାପକ, ଶିକ୍ଷକ, ତଥା ଶିକ୍ଷାକର୍ମଚାରୀମାନଙ୍କ ନିଯୁକ୍ତି ସର୍ତ୍ତାବଳି ଏପରି ଥିଲା ଯେ ସକାଳେ ନିଯୁକ୍ତି ପାଇଥିବା କର୍ମଚାରୀଟି ମଧ୍ୟାହ୍ନରେ ପରିଚାଳନା ସମିତିର ସଂପାଦକ, ସଭାପତି କିମ୍ବା କ୍ଷମତାଶାଳୀ ସଭ୍ୟଙ୍କ ରୋଷର ଶିକାର ହେଲେ ସଂଧ୍ୟାରେ ଚାକିରି ଯାଉଥିଲା । "ଚାକିରି ଏକ ତାଳଗଛ ଛାଇ" ସମାଜରେ ପ୍ରଚଳିତ ଏହି ଉକ୍ତିଟି ତତକାଳୀନ ବେସରକାରୀ ଶିକ୍ଷାନୁଷ୍ଠାନ କର୍ମଚାରୀଙ୍କ କ୍ଷେତ୍ରରେ ଶତ ପ୍ରତିଶତ ଠିକ ଥିଲା । ପରିଚାଳନା ସମିତିର ମର୍ଜିରେ ଚଳିବାକୁ ପଡୁଥିବା ଓ ଚାକିରି ସୁରକ୍ଷା ପାଇଁ କୌଣସି ସର୍ତ୍ତାବଳୀ ନଥିବା ସମୟରେ ହିଁ ଡକ୍ଟର ରାଉତ, ସ୍ୱାମୀ ବିବେକାନନ୍ଦ ସ୍ମାରକ ମହାବିଦ୍ୟାଳୟ ଭଳି ଏକ ବେସରକାରୀ ଶିକ୍ଷାନୁଷ୍ଠାନରେ ଓଡ଼ିଆ ସାହିତ୍ୟ ବିଭାଗରେ ଯୋଗଦେଇ ଅଧ୍ୟାପନା ଆରମ୍ଭ କରିଥିଲେ । ଅଧ୍ୟାପକ ଡକ୍ଟର ରାଉତ ଅଭ୍ୟୁଦୟ ସାହିତ୍ୟ ସମାଜ ସହ ସଂପର୍କିତ ହୋଇ ସେ ଓଡ଼ିଆ ଉପନ୍ୟାସ ସାହିତ୍ୟର ପରିଚୟ ସଂକଳନରେ ନିଜକୁ ସଂଯୁକ୍ତ କରିଥିଲେ । ଅଧ୍ୟାପନା ସହିତ ଡକ୍ଟର ରାଉତ ଜଗତସିଂହପୁର ଠାରେ ଅଳକା ପ୍ରେସ୍ ନାମକ ଏକ ଛାପାଖାନ ପ୍ରତିଷ୍ଠା କରିଥିଲେ । ଯାହା ଜଗତସିଂହପୁରର ପ୍ରଥମ ଛାପାଖାନା । ଡକ୍ଟର ରାଉତ ତାଙ୍କର ଆଦ୍ୟ ଅଧ୍ୟାପନା କାଳରେ ଶିକ୍ଷକ ମହାସଂଘ ସହିତ ସଂପୃକ୍ତ ହୋଇଥିଲେ ।

ଡକ୍ଟର ରାଉତଙ୍କ ସହ ବିତିଥିବା ଅବିସ୍ମରଣୀୟ ମୁହୂର୍ତ୍ତଗୁଡ଼ିକ ଏହି ନିବନ୍ଧରେ ସ୍ଥାନିତ କଲେ ଏହା ଏକ ନିବନ୍ଧ ନହୋଇ ଏକ ଗ୍ରନ୍ଥ ହେବ । ସେ ଦୃଷ୍ଟି କୋଣରୁ କେତେକ ଅଭୁଲା

ତଥା ଅନନ୍ୟ ସ୍ମୃତି ଅନୁଭୂତିକୁ ଏଠାରେ ସ୍ଥାନିତ କରିବାକୁ ଚେଷ୍ଟା କରିଛି ମାତ୍ର । ଡକ୍ଟର ରାଉତଙ୍କ ସହ ମୋର ସାରସ୍ୱତ ସଂପର୍କ ଅବଧି ପ୍ରାୟ ଦେଢଦଶନ୍ଧିର କିନ୍ତୁ ସାଙ୍ଗଠନିକ ସଂପର୍କ ପ୍ରାୟ ୪ଦଶନ୍ଧିରୁ ଊର୍ଦ୍ଧ୍ୱକାଳ । ୧୯୭୨ ମସିହାରେ ବେତନ ସମୀକରଣ ପାଇଁ ଶିକ୍ଷକ ଆନ୍ଦୋଳନ ଠାରୁ ୧୯୮୪ମସିହାର ଦୁର୍ବାର ଶିକ୍ଷକ ଆନ୍ଦୋଳନ ପର୍ଯ୍ୟନ୍ତ ଡକ୍ଟର ରାଉତଙ୍କ ସହ ପ୍ରତ୍ୟକ୍ଷ ସଂପର୍କ ଥିଲା । ଏହା ପରେ ଡକ୍ଟର ରାଉତଙ୍କ ସହ ମୋର ସାରସ୍ୱତ ସଂପର୍କର ପୃଷ୍ଠଭୂମି ହେଉଛି ୨୦୦୦ମସିହାରେ ଜଗତସିଂହପୁର ସାଂସ୍କୃତିକ ପରିଷଦ ଗଠନ ଏବଂ ପୁସ୍ତକ ମେଳାର ଆୟୋଜନ । ୨୦୦୦ ମସିହା ଏପ୍ରିଲ୍ ମାସରେ ଜଗତସିଂହପୁର ପ୍ରଥମ ପୁସ୍ତକମେଳା ଉପଲକ୍ଷେ ଏକ ସ୍ମରଣିକା 'ସ୍ମୃତିପତ୍ର' ସଂପାଦନ ସମୟରେହିଁ ଡକ୍ଟର ରାଉତଙ୍କ ସହ ମୋର ପ୍ରଥମ ସାରସ୍ୱତ ସଂପର୍କ । ଏହି ସ୍ମୃତିପତ୍ର ସଂପାଦନା ମଣ୍ଡଳୀରେ ଡକ୍ଟର ରାଉତ ସହ ମୋର କାର୍ଯ୍ୟ ସଂପୃକ୍ତି ଥିବାରୁ ଏହା ହେଉଛି ତାଙ୍କ ସହିତ ମୋର ପ୍ରଥମ ସାରସ୍ୱତ ସଂପର୍କ । ୨୦୦୦ ମସିହା ଏପ୍ରିଲ୍ ଓ ୨୦୦୧ମସିହା ଜାନୁୟାରୀ ମାସରେ ଜଗତସିଂହପୁର ପୁସ୍ତକମେଳା, ଜଗତସିଂହପୁର ସାଂସ୍କୃତିକ ପରିଷଦ ଦ୍ୱାରା ସଫଳ ଭାବରେ ଆୟୋଜିତ ହୋଇଥିଲା । ଠିକ ଏହାପରେ ୨୦୦୧ମସିହା ଏପ୍ରିଲ୍ ମାସରେ ଜଗତସିଂହପୁରର ତତ୍କାଳୀନ ବିଧାୟକ ବିଷ୍ଣୁଦାସ ଓ ଜିଲ୍ଲାପାଳ ସର୍ବେଶ୍ୱର ମହାନ୍ତିଙ୍କ ଉଦ୍ୟମ ତଥା ଜଗତସିଂହପୁରର ଶିକ୍ଷାବିତ୍, ବୁଦ୍ଧିଜୀବୀଙ୍କ ସହଯୋଗରେ ଜଗତସିଂହପୁର ଜିଲ୍ଲା ଉତ୍ସବ ୨୦୦୧ ଆୟୋଜିତ ହୋଇଥିଲା । ଏହି ଜିଲ୍ଲା ଉତ୍ସବ ଉପଲକ୍ଷେ 'ଆଦିପତ୍ର' ନାମକ ଏକ ସ୍ମରଣିକା ପ୍ରକାଶ ପାଇବାର ନିଷ୍ପତ୍ତି ଗ୍ରହଣ କରାଯାଇଥିଲା । ସଂପାଦନା ମଣ୍ଡଳୀ ନିଷ୍ପତ୍ତି କ୍ରମେ ଜଗତସିଂହପୁର ଅଞ୍ଚଳର ଐତିହ୍ୟ, ଧର୍ମଧାରା, ସଂସ୍କୃତି, ସାହିତ୍ୟ ବ୍ୟକ୍ତିତ୍ୱ ଓ ଭୌଗୋଳିକ ପରିବେଶକୁ ନେଇ କେବଳ ପ୍ରବନ୍ଧମାନ ସ୍ଥାନିତ କରାଯିବାର ସ୍ଥିର ହୋଇଥିଲା ଏବଂ ଏହି କ୍ରମରେ ଜଗତସିଂହପୁର ଜିଲ୍ଲାର ବିଭିନ୍ନ ବ୍ୟକ୍ତିଙ୍କ ପାଖକୁ ଜଗତସିଂପୁର ସଂପର୍କିୟ ଗୋଟିଏ ଗୋଟିଏ ବିଷୟରେ ପ୍ରବନ୍ଧ ଲେଖିବାକୁ ଅନୁରୋଧ କରାଯାଇଥିଲା । ଏହି ପ୍ରବନ୍ଧ ଗୁଡ଼ିକୁ ସଂପାଦନା କାଳରେ ଦେଖାଗଲା ଦୁଇଟି ଦୀର୍ଘ ପ୍ରବନ୍ଧ ରହିଛି, ଯାହାକୁ "ଆଦିପତ୍ର"ରେ ସ୍ଥାନିତ କରାଗଲେ ସ୍ମରଣିକାର କଳେବର ଅଧିକ ହେବ ।

ଏହି ପ୍ରବନ୍ଧ ଦୁଇଟି ମଧ୍ୟରୁ ଗୋଟିଏ ଥିଲା ନବରବି ସଂପାଦିକା ଶ୍ରୀମତୀ ସଂଧ୍ୟାମହାନ୍ତିଙ୍କ ଲିଖିତ "ସାରଳାରୁ ସ୍ୱାଧୀନତା" ଏବଂ ଡକ୍ଟର ଭୋଳାନାଥ ରାଉତଙ୍କ ଲିଖିତ "ଓଡ଼ିଆ ସାହିତ୍ୟକୁ ଜଗତସିଂହପୁର ଅବଦାନ" । ଏହି ଦୁଇଟି ଲେଖାକୁ ସଂକ୍ଷିପ୍ତୀକରଣରେ ସଂପାଦନା କରି ସ୍ଥାନିତ କରାଯିବାର ନିଷ୍ପତ୍ତି ନିଆଗଲା । ଡକ୍ଟର ରାଉତଙ୍କ

ଲେଖାଟିକୁ ସଂପାଦିତ କରିବାକୁ ମୋତେ ଦାୟିତ୍ୱ ଦିଆଯାଇଥିଲା । ଦୀର୍ଘ ପ୍ରବନ୍ଧଟିକୁ ଯଥା ସମ୍ଭବ ସଂକ୍ଷିପ୍ତ କରାଯାଇଥିଲା କାରଣ ଡକ୍ଟର ରାଉତଙ୍କ ପ୍ରବନ୍ଧରେ ଥିବା ତଥ୍ୟକୁ ସଂକ୍ଷିପ୍ତ କରିବା ସମ୍ଭାବନା କମ୍ ଥିବାରୁ ପ୍ରାୟତଃ ସମସ୍ତ ତଥ୍ୟ ସହିତ ଲେଖାଟି ଆଦିପତ୍ର - ୨୦୦୧ରେ ପ୍ରକାଶିତ ହୋଇଥିଲା । ମୋ ମତରେ ଲେଖାଟି ଖୁବ୍ ତଥ୍ୟଶୀଳ ଏବଂ ଗବେଷଣାତ୍ମକ ହୋଇଥିଲା । ଏହା ହେଉଛି ଡକ୍ଟର ରାଉତଙ୍କ ସହ ସାରସ୍ୱତ ସଂପର୍କର ଆଉ ଏକ ଫର୍ଦ୍ଦ ଯଦିଓ ପୂର୍ବରୁ କଳିଙ୍ଗ ବାଲିଯାତ୍ରା ଚେଳିତୋଳ କାଲି ବାଲିଯାତ୍ରର ସ୍ମରଣିକାରେ ପ୍ରକାଶିତ ହୋଇଇଥିବା ତାଙ୍କର କେତୋଟି ପ୍ରବନ୍ଧ ପଢିବାର ସୁଯୋଗ ମିଳିଥିଲା । ସେଇ ପ୍ରବନ୍ଧ ଗୁଡ଼ିକ ମଧ୍ୟ ତଥ୍ୟାଶ୍ରୟୀ ଓ ଗବେଷଣାତ୍ମକ ଥିଲା । ୨୦୦୨ ମସିହା ପୁସ୍ତକ ମେଳା ସମୟ ପରେ ପରେ ଡକ୍ଟର ରାଉତ ଅଧ୍ୟାପକ କୁଳମଣି ଦାଶ ଓ ମୋ ସହିତ ଜଗତସିଂହପୁର ଆଞ୍ଚଳିକ ଇତିହାସ ନାମକ ଏକ ଗ୍ରନ୍ଥ ରଚନା କରିବା ପାଇଁ ଆଲୋଚନା କରିଥିଲେ । ମୋର ଝିଅ ବାହାଘର ଆଗକୁ ଥିବାରୁ ମୁଁ ଜୁନ୍‌ମାସ ଠାରୁ ସମୟ ଦେବିବୋଲି କହିଥିଲି ଏବଂ କୁଳମଣିବାବୁ ମଧ୍ୟ ମୋ ପ୍ରସ୍ତାବରେ ରାଜି ହୋଇଥିଲେ । ମାତ୍ର ଡକ୍ଟର ରାଉତ ପ୍ରାୟ ମାସକ ପରେ ପୁଣି ମୋତେ ଏବଂ କୁଳମଣିବାବୁଙ୍କୁ ଡାକି କହିଲେ ଯେ ସେ ଆଦିପତ୍ର ୨୦୦୧ରେ ଯେଉଁ ଲେଖକମାନେ ଜଗତସିଂହପୁର ଅଞ୍ଚଳ ସଂପର୍କରେ ଯେଉଁ ବିଷୟରେ ଲେଖାଦେଇଥିଲେ ସେମାନଙ୍କ ପାଖକୁ ଲେଖାଦେବା ପାଇଁ ଚିଠି ପଠାଇଦେଇଛନ୍ତି । ଡଃ ରାଉତଙ୍କ ଚିଠିପାଇ କେତେଜଣ ସେମାନଙ୍କ ଲେଖାପଠାଇଲେ ଏବଂ ମୋର ଯାହା ଆଶଙ୍କା ଥିଲା ତାହାହିଁ ଘଟିଲା । ଯେଉଁମାନଙ୍କୁ ଲେଖା ମଗାଯାଇଥିଲା ସେମାନଙ୍କ ମଧ୍ୟର ଅନେକଙ୍କର ପ୍ରବନ୍ଧ ଗବେଷଣାତ୍ମକ କିମ୍ବା ଆବଶ୍ୟକୀୟ ତଥ୍ୟ ସମ୍ବଳିତ ନଥିଲା । ସେ ଗୁଡ଼ିକୁ ଡଃ ରାଉତଙ୍କ ସମେତ କୁଳମଣି ବାବୁ ଓ ମୁଁ ପ୍ରାୟ ପ୍ରତ୍ୟକ ଲେଖାଗୁଡ଼ିକୁ ସଂପାଦନା କଲାବେଳେ ଅନେକ ଲେଖାକୁ ତଥ୍ୟ ଭିତ୍ତିକ କରି ପୁନର୍ଲିଖନ କରିବାକୁ ପଡ଼ିଲା ।

ପ୍ରଥମ ଖଣ୍ଡରେ କେବଳ ଜିଲ୍ଲାର ପ୍ରାଚୀନ ଇତିହାସ ଏବଂ ଜିଲ୍ଲାର ନାମକରଣ, ଜିଲ୍ଲାର ପ୍ରାକୃତିକ ପରିବେଶ, ଭୂତତ୍ତ୍ୱ, ନୃତତ୍ତ୍ୱ ପ୍ରତ୍ନତତ୍ତ୍ୱ, (ସ୍ଥାପତ୍ୟ ଓ ଭାସ୍କର୍ଯ୍ୟ) ଧର୍ମଧାରା, ନୌବାଣିଜ୍ୟ ତଥା ବ୍ରିଟିଶ୍ ଶାସନ ଅମଳର ବିଭିନ୍ନ ଉଚ୍ଚପଦସ୍ଥ ଅଧିକାରୀଙ୍କ ରିପୋର୍ଟର ଜିଲ୍ଲା ସଂପର୍କୀୟ ତଥ୍ୟ ରାଶିର ଅନୁଦିତ ସଂପାଦିତ ଅଂଶ ଅନ୍ତର୍ଭୁକ୍ତ କରା ଯାଇଥିଲାବେଳେ ଦ୍ୱିତୀୟ ଖଣ୍ଡରେ ଜିଲ୍ଲା ସଂପର୍କୀୟ ଇଂରେଜଶାସକ ଅମଳର କିଛି ଐତିହାସିକ ତଥ୍ୟ, ଭାଷା, ସାହିତ୍ୟ, ସଂସ୍କୃତି, ମଠମନ୍ଦିର, ପର୍ବପର୍ବାଣି, ଯାତ୍ରା, ପାଲା, ଲୋକଗୀତ, ନୃତ୍ୟସଂଗୀତ, ବିଜ୍ଞାନ, ବୈଦିକ ସଂସ୍କାର, ସମ୍ବାଦପତ୍ର, ପ୍ରାକୃତିକ ବିପର୍ଯ୍ୟୟ, ଗଡ଼ ସଂସ୍କୃତି ସ୍ଥାନ ପାଇଥିଲା । ତୃତୀୟ

ଖଣ୍ଡଟିକୁ ଦୁଇ ଭାଗରେ ବିଭକ୍ତ କରାଯାଇ ପ୍ରଥମ ଖଣ୍ଡରେ ଜିଲ୍ଲାର ସ୍ୱାଧୀନତା ସଂଗ୍ରାମର ଇତିହାସ, ଜିଲ୍ଲାର ବିଭିନ୍ନ ରାଜନୈତିକ ଦଳ, ଅର୍ଥନୀତି, ସାଧାରଣ ନିର୍ବାଚନ ଏବଂ ନିର୍ବାଚିତ ଜନପ୍ରତିନିଧି ବିଭିନ୍ନ ସାମାଜିକ ଆନ୍ଦୋଳନର ଇତିହାସ, ଶିକ୍ଷା, ଶିଳ୍ପ, ହାଟବଜାର, ଯାତ୍ରାର ଇତିହାସ ସ୍ଥାନିତ ହୋଇଥିଲା ବେଳେ ଦ୍ୱିତୀୟ ଖଣ୍ଡରେ ଜିଲ୍ଲା ଘୋଷଣା ସଂପର୍କୀୟ ତଥ୍ୟ ତଥା ପ୍ରଶାସନର ସମସ୍ତ ବିଭାଗର ଅତୀତ ଓ ବର୍ତ୍ତମାନ ସଂପର୍କୀୟ ବିଭିନ୍ନ ତଥ୍ୟାବଳି ସନ୍ନିବେଶିତ ହୋଇଛି । ପ୍ରତି ଖଣ୍ଡରେ ଶେଷଭାଗରେ ଅତି ଦୁର୍ଲ୍ଲଭ ଐତିହାସିକ ମାନଚିତ୍ର ପ୍ରତ୍ନତାତ୍ତ୍ୱିକ ବିଭବରାଜିର ଫଟୋଚିତ୍ର ସ୍ଥାନିତ ହୋଇଛି ।

ଏହି ଗ୍ରନ୍ଥରେ ସନ୍ନିବେଶିତ ସମସ୍ତ ପ୍ରବନ୍ଧ ଓ ବିରଳ ତଥ୍ୟ ସଂଗ୍ରହ ପାଇଁ ହରେକୃଷ୍ଣ ମହତାବ ପାଠାଗାର ଠାରୁ ଆରମ୍ଭ କରି ରାଜ୍ୟ ସଂଗ୍ରହାଳୟ ଅଭିଲେଖାର ରାଜ୍ୟ ସଚିବାଳୟ, ଜଗତସିଂହପୁର ଜିଲ୍ଲାର ଜିଲ୍ଲାପାଳଙ୍କ କାର୍ଯ୍ୟାଳୟଠାରୁ ଆରମ୍ଭ କରି ବିଭିନ୍ନ ବିଭାଗକୁ ଯାଇ ତଥ୍ୟ ସଂଗ୍ରହ କରିବାରେ ଡକ୍ଟର ରାଉତଙ୍କର ଯେଉଁ ନିଷ୍ଠା, ଏକାଗ୍ରତା ଥିଲା ତାହା ତାଙ୍କୁ ଅତି ନିକଟରେ ଜଣେ ସହଯୋଗୀ ଭାବରେ ମୁଁ ନିରୀକ୍ଷଣ କରିଛି । ଠିକ ତଥ୍ୟ ନପାଇଲା ପର୍ଯ୍ୟନ୍ତ ସେ ଅନ୍ୱେଷଣ କାର୍ଯ୍ୟ ଜାରିରଖନ୍ତି ।

ଏକନିଷ୍ଠଚିତ୍ତରେ ଏକାଦି କ୍ରମେ ଲେଖାଗୁଡ଼ିକୁ ପଢି ତାକୁ ସଂପାଦନ କରିବା, ଟାଇପ୍ ହୋଇଥିବା ଲେଖାକୁ ସଂଶୋଧନ କରିବା କାର୍ଯ୍ୟମଧ୍ୟ ବେଳେବେଳେ ଏପରି ବିଭିନ୍ନ ଆଲୋଚନା ପରିସରକୁ ଗ୍ଢ଼ିଆସେ । ସେଦିନ ଏହି କଥା ଘଟିଥିଲା । ଟିକେ ହସି ସାର୍ ମୋତେ ଉତ୍ତର ଦେଲେ 'ସେକଥାତ ଆପଣଙ୍କ ସହିତ ଆଲୋଚନା ହୋଇସାରିଛି' ମୋର ଉତ୍ତର ଥିଲା" ସାର୍ ଆପଣ ମୋତେ କହିଥିଲେ ଯେ ଆପଣ ତିର୍ତୋଲିଆ (ମୋର ଘର ତିର୍ତୋଲ ଅଞ୍ଚଳରେ) ବୋଲି ଆପଣଙ୍କ ମଧ୍ୟରେ ଏକ ଆବେଗ ରହିଛି ଯେ ଚେଳିତୋଳର ଅବସ୍ଥିତି ତିର୍ତ୍ତୋଲରେ ଥିଲା ବୋଲି । ଗଣେଶ ପ୍ରସାଦ ପରିଜା, ନିତ୍ୟାନନ୍ଦ ନାଥଙ୍କ ଭଳି ଆପଣ ମଧ୍ୟ ଏହି ସ୍ୱପ୍ନରେ ମାତିଛନ୍ତି ।ଯଦି ଆପଣ କହୁଛନ୍ତି ତେବେ ଗ୍ରନ୍ଥର ମୁଖବନ୍ଧରେ ଚେଳିତୋଳ ଅବସ୍ଥିତି ସଂପର୍କରେ ଅନୁଚ୍ଛେଦଟିଏ ସ୍ଥାନିତ କରିଦେବା । ପୁନଶ୍ଚ ମୁଁ କହିଥିଲି "ସାର୍ ଏହି ଗ୍ରନ୍ଥର ସଂପାଦନା ମଣ୍ଡଳୀରେ ଆପଣ କୁଳମଣି ବାବୁ ଓ ନିରଞ୍ଜନ ନାଉଗାଁ ବ୍ଲକର ଓ ମୁଁ ଏକା ତିର୍ତୋଲ ବ୍ଲକର ହୋଇଥିବାରୁ ସଂଖ୍ୟାଲଘୁ ନ୍ୟାୟରେ ମୋ ସ୍ୱର ତ ଉପେକ୍ଷିତ ହେବା ସ୍ୱାଭାବିକ" । ସାର୍ ଓ କୁଳମଣିବାବୁ ମଧ୍ୟରେ ଏକ ହାସ୍ୟକର ପରିବେଶ ସୃଷ୍ଟିହେଲା ଏବଂ କୁଳମଣି ବାବୁ ଡକ୍ଟର ରାଉତଙ୍କୁ କହିଲେ "ସାର୍ ଭାଇନାଙ୍କ ଅଭିମାନଟା ଖୁବ୍ ବେଶୀହୋଇଗଲା । ଏ ଦିଗରେ ଆପଣ କିଛି ଉଦ୍ୟମ କରନ୍ତୁ" । ବାସ୍ ତାପରେ ସାର୍ ଉଦ୍ୟମ ଆରମ୍ଭ କଲେ ଏବଂ

ଜଣେ ନୌବିଶେଷଜ୍ଞଙ୍କ ସଂଧାନ ପାଇଲେ । ସେ ହେଉଛନ୍ତି ଇଂ ଦୁର୍ଗାପ୍ରସାଦ ପତି । ତାଙ୍କ ଠାରୁ ଚେଲିତୋଳ ଅବସ୍ଥିତି ସଂପର୍କରେ ଏକ ତଥ୍ୟ ଭିତ୍ତିକ ପ୍ରବନ୍ଧ ପାଇଁ ଅନୁରୋଧ କରିବା ପରେ ଇଂ ପତି ଏ ସଂପର୍କରେ ଏକ ତଥ୍ୟଭିତ୍ତିକ ପ୍ରବନ୍ଧ ସଂକଳନ ପାଇଁ ଲେଖିଥିଲେ । ଯାହାର ଶୀର୍ଷକଥିଲା "ଜଗତସିଂହପୁର ଜିଲ୍ଲାର ନୌବାଣିଜ୍ୟ ପରଂପରା" । ସେହି ପ୍ରବନ୍ଧଟିରେ ଇଂ ପତି ଚେଲିତୋଳର ଅବସ୍ଥିତି ତିର୍ତୋଲଠାରେ ଥିଲା ବୋଲି ଅନେକ ତଥ୍ୟ ଉପସ୍ଥାପନ କରିଛନ୍ତି ଯାହାକି ସାଂପ୍ରତିକ ଗବେଷକ ମାନଙ୍କ ପାଇଁ ଗବେଷଣାର ବିଷୟ ହୋଇ ଯାଇଛି ।

ସଂକଳନ କାର୍ଯ୍ୟର ସଂପାଦନା ପ୍ରାୟ ଶେଷପର୍ଯ୍ୟାୟରେ ପହଞ୍ଚିସାରିବା ପରେ ଟାଇପ୍‌ହୋଇଥିବା ପାଠ ସଂଶୋଧନ କାର୍ଯ୍ୟ ଚାଲିଥାଏ ଏବଂ ଇଂରେଜ ସରକାର ଅଧିକାରୀମାନଙ୍କ ପ୍ରଦତ୍ତ କିଛି ବିରଳ ଐତିହାସିକଙ୍କ ବିବରଣୀ ଗୁଡ଼ିକର ଅନୁବାଦ କାର୍ଯ୍ୟଚାଲିଥାଏ । ଏହି ଅନୁବାଦ କାର୍ଯ୍ୟ ଉଭୟେ ମୁଁ ଏବଂ କୁଳମଣି ବାବୁ କରୁଥାଉ ଏବଂ ସାର ତାକୁ ଓଡ଼ିଆରେ ଲେଖୁଥାନ୍ତି । ଘଟଣାଟି ପ୍ରାୟ ୨୦୦୫ ମସିହାର ମାର୍ଚ୍ଚ ମାସର ଘଟଣା । କୁଳମଣିବାବୁଙ୍କ କିଛି କାର୍ଯ୍ୟପାଇଁ କେତେଦିନ ଅନୁବାଦ କାର୍ଯ୍ୟପାଇଁ ଆସୁନଥାନ୍ତି । ସେଦିନ ହଣ୍ଟରଙ୍କ ରିପୋର୍ଟର ଅନୁବାଦ କାର୍ଯ୍ୟ ଚାଲୁଥାଏ । ସାର୍ ଲେଖୁଥାନ୍ତି ଏବଂ ରିପୋର୍ଟକୁ ଅନୁବାଦ କରି ସାରଙ୍କୁ ଡାକୁଥାଏ । ହଣ୍ଟର ରିପୋର୍ଟରେ ଥିବା ଗୋଟିଏ ଗୋଟିଏ ବାକ୍ୟ ପାରାଗ୍ରାଫ ଭଳିହୋଇଥାଏ । ପ୍ରାୟତଃ ଏହି ସଂକଳନ କାର୍ଯ୍ୟରେ ଅନେକ ସମୟରେ ସାରଙ୍କ ଘରେ ମଧ୍ୟାହ୍ନ ଭୋଜନ ବ୍ୟବସ୍ଥା ହୋଇଥାଏ । ସେଦିନ ମଧ୍ୟ ସାର୍‌ଙ୍କ ଘରେ ମୋର ମଧ୍ୟାହ୍ନ ଭୋଜନ ବ୍ୟବସ୍ଥା ହୋଇଥିଲା । ମୁଁ ଡାକୁଥାଏ ଏବଂ ସାର୍ ଲେଖୁଥାନ୍ତି । ସମୟ ପ୍ରାୟ ଗୋଟାଏ ପାଖାପାଖି । ହଠାତ୍ ମୋତେ ଲେଖାଗୁଡ଼ିକ ଅସ୍ପଷ୍ଟ ଦେଖାଗଲା ଏବଂ ଆଉ ଡାକିପାରିଲି ନାହିଁ ଦେହରୁ ଗମ୍‌ଗମ୍ ଝାଳ ବୋହିବାକୁ ଲାଗିଲା । ସାର୍ ମୋ ଆଡକୁ ଚାହିଁ ଉଠିପଡ଼ିଲେ ଏବଂ ତାଙ୍କର ବଡ଼ ବୋହୂ ବିନ୍ଦୁକୁ ଡାକ ପକାଇ କହିଲେ 'ବିନ୍ଦୁ ! ସାର୍‌ଙ୍କ ସୁଗାରଫଲ୍ କରୁଛି ତୁ ଫ୍ରିଜିରୁ କିଛି ମିଠା ନେଇଆ । ଏ କଥା ମୋତେ ଅସ୍ପଷ୍ଟ ଶୁଣାଯାଉଥାଏ ଏବଂ କିଛି ସମୟ ପରେ ବିନ୍ଦୁ ଚାରଟି ରସଗୋଲା ଏକ ପ୍ଲେଟ୍‌ରେ ମୋ ପାଖରେ ଥୋଇଦେବା ମାତ୍ରେ ସେଇ ଅବସ୍ଥାରେ ମୁଁ ଗୋଟିକ ପରେ ଗୋଟିଏ ରସଗୋଲା ଖାଇବା ପରେ ମୋତେ ସୁସ୍ଥ ଲାଗିଲା ଏବଂ ସେଦିନ କାର୍ଯ୍ୟ ସେଇଠି ବନ୍ଦ ରହିଲା । ଏମିତି ଅନେକ ଅନୁଭୂତି ଏଠାରେ ଲିପିବଦ୍ଧ କରିବା ସମ୍ଭବ ନୁହେଁ । ତଥାପି କେତେକ ଅନୁଭୂତି ସ୍ମୃତି ଆପେ ଆପେ ମନକୁ ଚାଲିଆସୁଛି ।

ପ୍ରଥମେ ସାର୍ ମୋତେ ସଂକଳନ ପାଇଁ ଗୋଟିଏ ପ୍ରବନ୍ଧ ଲେଖିବା ପାଇଁ ଦାୟିତ୍ୱ ଦେଇଥିଲେ ମାତ୍ର ପରେ ଗୋଟିକ ପରେ ଗୋଟିଏ ପ୍ରବନ୍ଧର ଦାୟିତ୍ୱ ଦେବାକୁ ଲାଗିଲେ ।

ସଂପାଦନା ଓ ଅନ୍ୟଲେଖାଗୁଡ଼ିକ ପୁନର୍ଲିଖନ ମଧ୍ୟରେ ସାର୍ ଗୋଟିକପରେ ଗୋଟିଏ ଲେଖା ବରାଦ କଲେ । ଏ ସବୁ କାର୍ଯ୍ୟ ମଧ୍ୟରେ ତଥ୍ୟଭିତ୍ତିକ ଓ ଗବେଷଣାତ୍ମକ ଲେଖା ଲେଖିବା ସମ୍ଭବ ନୁହେଁ କହିବା ପରେ ମଧ୍ୟ ସାର୍‌ଙ୍କ ଗ୍ରାସରୁ ମୋତେ ମୁକ୍ତି ମିଳିଲା ନାହିଁ । ଏହି କ୍ରମରେ ପ୍ରାୟ ଚାରିଟି ଲେଖା ସରିବା ପରେ ମୁଁ ଭାବିଥିଲି ବୋଧେ ସାର୍ ଆଉ କେଉଁଲେଖା ପାଇଁ ବରାଦ କରିବେ ନାହିଁ ମାତ୍ର କଥାଟା ସେଇଆ ହେଲା ନାହିଁ । ସଂକଳନ ସମସ୍ତ କାର୍ଯ୍ୟ ସରିବା ପରେ ସଂକଳନରେ ସ୍ଥାନିତ ହେବାକୁ ଥିବା ଫଟୋଗ୍ରାଫ୍ ଓ ମାନଚିତ୍ର ସଂଯୋଜନା କାର୍ଯ୍ୟ ଚାଲିଥାଏ । ଇତି ମଧ୍ୟରେ ମୁଁ ସ୍ଥାନାନ୍ତର ହୋଇ କେନ୍ଦ୍ରାପଡ଼ା ଜିଲ୍ଲାର ଜଗନ୍ନାଥ ବିଦ୍ୟାପୀଠ ଚଉଦ କୁଲାଟରେ ଯୋଗଦେଇଥାଏ । ୨୦୦୬ମସିହା ଗ୍ରୀଷ୍ମାବକାଶ ଅଳ୍ପଦିନ ବାକିଥାଏ । ସାର୍‌ଙ୍କ ଠାରୁ ଫୋନ୍ ପାଇଥିଲି ଯେ ମୋତେ ଆଉ ଗୋଟାଏ ଲେଖା ଜରୁରି ଲେଖିବାକୁ ପଡ଼ିବ । ସାର୍ ମୋତେ ଫୋନ୍‌ରେ କହିଥିଲେ, "ଦେଖନ୍ତୁ ମହେନ୍ଦ୍ରବାବୁ ! ବର୍ତ୍ତମାନ ସମସ୍ତ କାର୍ଯ୍ୟ ସରିବା ପରେ ଗୋଟିଏ ଲେଖା ସ୍ଥାନିତ ହୋଇପାରିଲା ନାହିଁ ଯେ ଜଗତସିଂହପୁର ଜିଲ୍ଲାର ମାନ୍ୟତା ପାଇବା ସଂପର୍କରେ । ତେଣୁ ସେ ଲେଖାଟି ଆପଣ ଲେଖିବେ । ଲେଖାଟିର ବିଷୟବସ୍ତୁ ସମ୍ବେଦନ ଶୀଳ ହୋଇଥିବାରୁ ମୁଁ ଲେଖିବାକୁ ଅରାଜି ହୋଇଥିଲି । ମାତ୍ର ସାର୍‌ଙ୍କ ନିକଟରେ ମୋର ରାଜି ଅରାଜିର କିଛି ମୂଲ୍ୟନାହିଁ । ଅଗତ୍ୟା 'ଜଗତସିଂହପୁର ଜନ୍ମ ଲଗ୍ନର ଇତିବୃତ' ଶୀର୍ଷକରେ ଲେଖାଟିଏ ଲେଖିବାକୁ ହେଲା । ଲେଖାଟି ପ୍ରସ୍ତୁତ କଲାବେଳେ ଏକ ଅପ୍ରୀତିକର ପରିବେଶ ସୃଷ୍ଟିହେଲା ଯାହା ସାର୍, ମୁଁ,କୁଳମଣିବାବୁ ଓ ଟୁଟୁ (ହେମନ୍ତ ରଥ) ବ୍ୟତୀତ ଅନ୍ୟ କେହି ଜାଣନ୍ତି ନାହିଁ । ସଂକଳନଟିର କାର୍ଯ୍ୟ କ୍ରମଶଃ ସରିଆସୁଥାଏ । ଗ୍ରନ୍ଥଟିକୁ ପ୍ରକାଶ କରିବା ପାଇଁ ସାର୍ ଉଦ୍ୟମ ଚାଲୁ ରଖିଥାଆନ୍ତି । ରାଜ୍ୟର କେତେକ ପ୍ରମୁଖ ପ୍ରକାଶନ ସଂସ୍ଥାରେ ଯୋଗାଯୋଗ କରାଯାଇଥିଲେ ମଧ୍ୟ ସଂକଳନଟିକୁ ପ୍ରକାଶ କରିବା ପାଇଁ ସେମାନେ ଅନିଚ୍ଛା ପ୍ରକାଶ କରିଥିଲେ । କେତୋଟି ପ୍ରକାଶନ ସଂସ୍ଥା କେବଳ ପ୍ରଥମ ଖଣ୍ଡଟିକୁ ପ୍ରକାଶ କରିବାକୁ ଇଚ୍ଛାପ୍ରକାଶ କରିଥିଲେ , ହେଲେ ସେ ପ୍ରସ୍ତାବରେ ସାର୍ ରାଜି ହୋଇ ନଥିଲେ । ଏହି ଗ୍ରନ୍ଥଟିକୁ ପ୍ରକାଶ କରିବା ଏକ ଦୁରୂହ ବ୍ୟାପାର ହେଲା ଏବଂ ସେତେବେଳେ ସଂସ୍କୃତି ମନ୍ତ୍ରୀଥିବା ଡାକ୍ତର ଦାମୋଦର ରାଉତ ଏହାକୁ ଓଡ଼ିଶା ସଂସ୍କୃତି ବିଭାଗ ତରଫରୁ ସାହିତ୍ୟ ଏକାଡେମୀ ଛାପିବା ପାଇଁ ପ୍ରସ୍ତାବ ଦେଲେ । ପାଣ୍ଡୁଲିପିକୁ ଓଡ଼ିଶା ସାହିତ୍ୟ ଏକାଡେମୀକୁ ପ୍ରଦାନ କରିବା ପାଇଁ ପରାମର୍ଶ ଦେଇଥିଲେ ମଧ୍ୟ ସାର୍ ସେଥିରେ ସମ୍ମତି ପ୍ରକାଶ କରିପାରିଲେ ନାହିଁ । କାରଣ ସାହିତ୍ୟ ଏକାଡେମୀକୁ ଥରେ ପାଣ୍ଡୁଲିପି ଚାଲିଗଲେ ସେଠୁ ପାଣ୍ଡୁଲିପିରୁ ତଥ୍ୟ ହସ୍ତାନ୍ତର ହେବାର ଯଥେଷ୍ଟ ସମ୍ଭାବନା ରହିଛି ।

ଏହା ପରେ କିଛି ରାଜନେତାଙ୍କୁ ଏହି ଗ୍ରନ୍ଥଟିକୁ ପ୍ରକାଶ କରିବାକୁ ଅନୁରୋଧ କରାଯାଉଥିଲେ ମଧ୍ୟ ତାହା ସଫଳ ହୋଇନଥିଲା ପରିଶେଷରେ ଜିଲ୍ଲା ସଂସ୍କୃତି ପରିଷଦ ଏହି ଗ୍ରନ୍ଥକୁ ପ୍ରକାଶ କରିବା ପାଇଁ ପରିଷଦ ନିକଟରେ ଏକ ପ୍ରସ୍ତାବ ରଖାଯାଇଥିଲା । ତତ୍‌କାଳୀନ ଜିଲ୍ଲାପାଳ ତଥା ଜିଲ୍ଲା ସଂସ୍କୃତି ପରିଷଦର ଅଧ୍ୟକ୍ଷ ଡକ୍ଟର ଅରବିନ୍ଦ ପାଢୀଙ୍କୁ ସାର୍‌ଙ୍କ ସହିତ ମୁଁ ଏବଂ କୁଳମଣି ବାବୁ ସାକ୍ଷାତ କରି ଗ୍ରନ୍ଥଟିର ସୂଚୀଟିକୁ ପ୍ରଦାନ କରିବାବେଳେ ସେ ଆମର ପ୍ରସ୍ତାବକୁ ଗ୍ରହଣ କଲେ ଏବଂ ଏ ସଂପର୍କରେ ବିଶଦ ଆଲୋଚନା ପାଇଁ ପ୍ରସ୍ତାବ ଦେଇଥିଲେ । ଏ ସଂପର୍କରେ ଦୁଇଥର ବୈଠକ ବସିବା ପରେ ଡକ୍ଟର ପାଢୀଙ୍କ ଅକସ୍ମାତ୍ ସ୍ଥାନାନ୍ତର ହେଲା ଏବଂ ଗ୍ରନ୍ଥର ପ୍ରକାଶନ ପାଇଁ ଥିବା ଶେଷ ଆଶାଟି ମଉଳିବାର ସମ୍ଭାବନା ଦେଖାଗଲା କିନ୍ତୁ ମା' ଶାରଳାଙ୍କ ଆଶୀର୍ବାଦ ଥିଲା ଯେ ଗ୍ରନ୍ଥଟି ପ୍ରକାଶ ପାଇବ । ଡକ୍ଟର ପାଢୀଙ୍କ ପରେ ଶ୍ରୀଯୁକ୍ତ ସତ୍ୟବ୍ରତ ସାହୁ ଆସି ଜିଲ୍ଲାପାଳ ଭାବେ ଯୋଗଦେଲେ ୨୦୦୬ ଜାନୁୟାରୀ ମାସରେ । ଶ୍ରୀଯୁକ୍ତ ସାହୁଙ୍କୁ ସାକ୍ଷାତ୍ କରି ଡକ୍ଟର ପାଢୀଙ୍କ ସହ ଆଲୋଚନା ସଂପର୍କରେ କହିଲାପରେ ସେ ଗ୍ରନ୍ଥଟିର ପ୍ରକାଶନର ଦାୟିତ୍ୱ ଜିଲ୍ଲା ସଂସ୍କୃତି ପରିଷଦ ନେବ ବୋଲି ଦୃଢ ପ୍ରତିଶ୍ରୁତି ଦେଲେ ଏବଂ ଏଥିପାଇଁ ସବୁପ୍ରକାର ଉଦ୍ୟମ ଆରମ୍ଭ କରିଦେଲେ । ଜିଲ୍ଲା ସଂସ୍କୃତି ପରିଷଦର ନିଜସ୍ୱ ଅର୍ଥରାଶି ନଥିବାରୁ ସଂଗୃହୀତ ଜମାରାଶି Carpos fund ରୁ ଅର୍ଥ ଉଠାଇବା ପାଇଁ ସଂସ୍କୃତି ବିଭାଗକୁ ଚିଠି ଲେଖାଯିବା ପରେ ସରକାରୀ ନାଲିଫିତାର ହଟଚମଟ ମଧ୍ୟରେ ସଂସ୍କୃତି ବିଭାଗ ଏ ସଂପ୍ରକୀୟ ପ୍ରସ୍ତାବକୁ ଅର୍ଥ ବିଭାଗର ମଞ୍ଜୁରି ପାଇଁ ପଠେଇ ଦେଲେ । ମାତ୍ର ଅର୍ଥବିଭାଗରୁ ମଞ୍ଜୁରି ଆସିବା ଅହେତୁକ ବିଳମ୍ବ ହେବାରୁ ସାର୍ ବଡ଼ ବ୍ୟସ୍ତ ହୋଇପଡ଼ିଲେ ଏବଂ ସାର୍‌ଙ୍କ ଜଣେ ଛାତ୍ର ଶ୍ରୀଯୁକ୍ତ କୃଷ୍ଣଚନ୍ଦ୍ର ବଡୁ ସେତେବେଳେ ଅର୍ଥବିଭାଗର ଏକ ଉଚ୍ଚପଦାଧୀକାରୀ ଥିବାରୁ ଏବଂ ଏହି ଗ୍ରନ୍ଥଟି ଡକ୍ଟର ରାଉତଙ୍କ ଦ୍ୱାରା ସଂକଳିତ ହେଉଥିବା ଜାଣି ଶ୍ରୀଯୁକ୍ତ ବଡୁ ପଠାଯାଇଥିବା ପ୍ରସ୍ତାବକୁ ମଞ୍ଜୁରି ଦେବାପାଇଁ ସହଯୋଗ କରିଥିଲେ । ଅର୍ଥର ବ୍ୟବସ୍ଥା ହେବାପରେ ସଂକଳନଟିର ତିନିଖଣ୍ଡ ରୂପକୁ ଶେଷସ୍ପର୍ଶ ଦେବାପାଇଁ ସାର୍‌ଙ୍କ ସହିତ ଆମେ ଲାଗିପଡ଼ିଲୁ । ଜିଲ୍ଲାପାଳ ଶ୍ରୀଯୁକ୍ତ ସାହୁ କାର୍ଯ୍ୟଟିକୁ ଯଥାଶୀଘ୍ର ସାରି ଛପାକାର୍ଯ୍ୟ ଆରମ୍ଭ କରିବା ପାଇଁ ପ୍ରସ୍ତୁତିରେ ଲାଗିପଡ଼ିଲେ । ଏପରିକି ମୋତେ ତରିକୁନ୍ଦ ହାଇସ୍କୁଲରୁ ଆସି ସାମୟିକ ଭାବରେ ଏହି କାର୍ଯ୍ୟପାଇଁ ଜିଲ୍ଲାପାଳ ନିର୍ଦ୍ଦେଶନାମା ପ୍ରକାଶ କଲେ ଏବଂ ତାହା ସହିତ ସଂକଳନଟିର ଛପା କାର୍ଯ୍ୟ ତ୍ୱରାନ୍ୱିତ କରିବା ପାଇଁ ଜଗତସିଂହପୁର ବିଜ୍ଞାପିତ ଅଞ୍ଚଳ କାର୍ଯ୍ୟାଳୟରେ କାର୍ଯ୍ୟକରୁଥିବା ହେମନ୍ତ ରଥଙ୍କୁ ଯୋଗସୂତ୍ର ଅଧିକାରୀ ଭାବେ ନିଯୁକ୍ତି ଦେଲେ । ଜିଲ୍ଲା ସଂସ୍କୃତି ପରିଷଦର ବୈଠକରେ ସଂକଳନ ତିନିଖଣ୍ଡ ଛପାକାର୍ଯ୍ୟ

କରୁଥିବା ସଂସ୍ଥାମାନଙ୍କ ଠାରୁ କୋଟେସନ୍ ଆଣି ପ୍ରକାଶ କରିବା ପାଇଁ ନିଷ୍ପତ୍ତି ଗ୍ରହଣ କରାଗଲା । ଜିଲ୍ଲା ସଂସ୍କୃତି ପରିଷଦର ବୈଠକରେ ମୁଁ କୁଳମଣିବାବୁ ଉପସ୍ଥିତ ଥିଲୁ ଏବଂ ଏଠାରେ ପରିଷଦର କିଛି ସଦସ୍ୟ ଏହି ସଂକଳଟିରେ ମନ୍ତ୍ରୀ ଓ ବିଧାୟକଙ୍କ ବାର୍ତ୍ତା ରହିବା ପାଇଁ ପ୍ରସ୍ତାବ ରଖିଲେ । ଅନେକ ସଦସ୍ୟ ଏହାକୁ ନାପସନ୍ଦ କଲେ ମଧ୍ୟ ପରିଶେଷରେ ବାର୍ତ୍ତା ପ୍ରଥମ ଖଣ୍ଡରେ ରଖାଯିବା ପାଇଁ ସ୍ଥିର କରାଗଲା । ଏହି ବୈଠକରେ ଉପସ୍ଥିତ ଥିବା ଜିଲ୍ଲା ସୂଚନା ଲୋକସଂପର୍କ ଅଧିକାରୀ ଶ୍ରୀଯୁକ୍ତ ରବୀନ୍ଦ୍ରନାଥ ନାୟକଙ୍କ ଉପରେ ଏହି ଦାୟିତ୍ୱ ନ୍ୟସ୍ତ କରାଗଲା । ସଂକଳନଟିର ନାମକରଣ ଉପରେ ଆଲୋଚନା କରାଯାଇ ନାମକରଣ ଦାୟିତ୍ୱ ସଂପାଦନା ମଣ୍ଡଳୀ ଉପରେ ନ୍ୟସ୍ତ କରାଗଲା । ଅନେକ ବିଗ୍ରହ ବିମର୍ଶ ପରେ ସଂକଳନଟିର ନାମ "ଜଗତସିଂହପୁର: ଅତୀତ ଓ ବର୍ତ୍ତମାନ" ରଖାଗଲା ।

ଛପା ପାଇଁ ପ୍ରେସ୍‌ମାନଙ୍କରୁ କୋଟେସନ୍ ଆସିବା ପୂର୍ବରୁ ଏକ ଅଭାବନୀୟ ଘଟଣା ଘଟିଲା । ସେଦିନ ସଂକଳନଟିର ଥିବା ଫଟୋ ଏବଂ ନକ୍ସା ପ୍ରଭୃତିକୁ ଯଥା ସ୍ଥାନରେ ସଂଯୋଜନା କରିବା କାର୍ଯ୍ୟସାରି ସଂଧ୍ୟାବେଳେ ଘରେ ପହଞ୍ଚିବା ପରେ ସାର୍‌ଙ୍କ ପାଖରୁ ଫୋନ୍ ଆସିଲା "ମହେନ୍ଦ୍ରବାବୁ ଆପଣ ଖବର ପାଇଲେଣି" ? ମୁଁ ନାଁ କରିବା ପରେ ସାର୍ ମୋତେ କହିଲେ ଟିଭି ଖୋଲି ସମ୍ବାଦ ଦେଖନ୍ତୁ । ଟିଭିଖୋଲି ଯେଉଁ ସମ୍ବାଦଟି ଶୁଣିଲି ତାହା ଥିଲା ଜିଲ୍ଲାପାଳ ଶ୍ରୀଯୁକ୍ତ ସତ୍ୟବ୍ରତ ସାହୁଙ୍କ ସ୍ଥାନାନ୍ତର ସମ୍ବାଦ । ଶ୍ରୀଯୁକ୍ତ ସାହୁଙ୍କ ସ୍ଥାନରେ ଡା ପ୍ରମୋଦ କୁମାର ମେହେର୍ଦା ଜଗତସିଂହପୁର ଜିଲ୍ଲାପାଳ ହୋଇ ଆସୁଛନ୍ତି । ସାର୍‌ଙ୍କ କଣ୍ଠରେ ବିଷାଦର ସ୍ୱର, "ଆଉ ବହି ବାହାରି ପାରିବ ନାହିଁ" । ଶ୍ରୀଯୁକ୍ତ ସାହୁ ଯେପରି ଭାବରେ ପଦକ୍ଷେପ ନେଉଥିଲେ ନୂଆ ଜିଲ୍ଲାପାଳ ସେପରି ଉତ୍ସାହ ଦେବେକି ନାହିଁ ସନ୍ଦେହ"। ମୁଁ ସାର୍‌ଙ୍କୁ ଆଶ୍ୱସନା ଦେଇ କହିଲି ସାର୍ ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ, ମା'ଶାରଳାଙ୍କ କୃପାଥିଲେ ସବୁ ହେବ । ସାର୍‌ବି ମଧ୍ୟ ଚିନ୍ମୟୀ ମା'ଙ୍କ ନିକଟରେ ଆଶ୍ରିତ । କିଛି ସମୟ ପରେ ସାର୍ ଫୋନ୍ କଲେ । ମହେନ୍ଦ୍ରବାବୁ ! ମା'ଙ୍କୁ ଏକଥା ପଚାରିଲି ସେ କହିଲେ ବଦଳିହବା କଥା କିଛି ନୁହେଁ । ଆପଣ କାଲି ସକାଳୁ ଆସନ୍ତୁ । ଆମେ ସଂକଳନଟିର ମୁଖବନ୍ଧର ପ୍ରଥମ ବାକ୍ୟରେ ମା' ଶବ୍ଦଟିକୁ ସ୍ଥାନିତ କରିଦେବା । ସକାଳୁ ସାର୍‌ଙ୍କ ଘରେ ପହଞ୍ଚିଲା ବେଳକୁ ସାର୍ ବ୍ୟସ୍ତ ଭାବରେ ମୋତେ ଅପେକ୍ଷା କରିଥାନ୍ତି । ମୁଖବନ୍ଧଟିର ପ୍ରଥମ ବାକ୍ୟର କିଞ୍ଚିତ୍ ଅଂଶକୁ ସଂଶୋଧନ କରି ସେଥିରେ ମା' ଶବ୍ଦଟିକୁ ସ୍ଥାନିତ କରାଗଲା । ଯଥା " ମା'ର ଶକ୍ତି ଓ ମାତୃଭୂମିର ଇତିହାସକୁ ଆକଳନ କରିବା ....." ବଡ଼ ଆଶ୍ଚର୍ଯ୍ୟର କଥା ଦିନ ଗୋଟାଏ ବେଳକୁ ଶ୍ରୀଯୁକ୍ତ ସାହୁଙ୍କ ବଦଳି ଆଦେଶ ଗୋଟିଏ ମାସପାଇଁ ସ୍ଥଗିତ ରହିବାର ସମ୍ବାଦ ମିଳିଲା । ଖବରଟି ମିଳିଲା କ୍ଷଣି ସାର୍ ବଡ଼ ଖୁସି ହୋଇଯାଇଥିଲେ ।

ଏହାପରେ ଶ୍ରୀଯୁକ୍ତ ସାହୁ ଯଥାଶୀଘ୍ର ସଂକଳନଟି ପ୍ରକାଶ ପାଇଁ ଦୃଢ ସଂକଳ୍ପ ହୋଇ ଉଠିଲେ ଏବଂ ଯୁଦ୍ଧକାଳୀନ ଭିତ୍ତିରେ କାର୍ଯ୍ୟ ଆରମ୍ଭ ହେଲା । କଟକର ସତ୍ୟନାରାୟଣ ପ୍ରେସ୍ ଛପାକାର୍ଯ୍ୟର ଦାୟିତ୍ୱ ନେଲା । ସଂକଳନଟିର ସମସ୍ତ ନଥିପତ୍ର ଫଟୋଗ୍ରାଫ୍ ନକ୍ସା, ପାଠର ଟ୍ରେସିଙ୍ଗ୍, ଧରି ହେମନ୍ତଙ୍କ ଦାୟିତ୍ୱରେ ସାର୍‌ଙ୍କ ସହ ଆମେ ସବୁ କଟକ ଯାତ୍ରା କଲୁ । ସେଠାରେ ପାଞ୍ଚଦିନ ପର୍ଯ୍ୟନ୍ତ ଆମେମାନେ ଦୈନିକ ଯିବା ଆସିବା କରୁଥିବା ସମୟରେ ସାର୍ ଏବଂ ନିରବାବୁ  ସେଠାରେ ରହି ସତ୍ୟନାରାୟଣ ପ୍ରେସ୍ ଓ ଜଗନ୍ନାଥ ପ୍ରସେସ୍ ବିଭିନ୍ନ କାର୍ଯ୍ୟ ସଂପାଦନା କରୁଥାନ୍ତି । ସାର୍ ଟିକେ ମାତ୍ର କ୍ଳାନ୍ତି ଅନୁଭବ କରୁନଥାନ୍ତି । ସମସ୍ତ କାର୍ଯ୍ୟ ସରିବା ପୂର୍ବରୁ ସଂକଳଟିରେ ଗୋଟିଏ ଫଟୋ ସ୍ଥାନିତ ହେବାକୁ ନେଇ ସାର୍‌ଙ୍କୁ ଏକ ଅପ୍ରୀତିକର ଘଟଣାକୁ ସାମ୍ନା କରିବାକୁ ପଡ଼ିଲା । ଅନେକ ଘାତପ୍ରତିଘାତ ସ୍ୱତ୍ତେ ଗ୍ରନ୍ଥଟି ଆତ୍ମପ୍ରକାଶ କଲା । ହେଲେ ଯେଉଁ ଜିଲ୍ଲାପାଳ (ଶ୍ରୀଯୁକ୍ତ ସାହୁ )ଙ୍କ ଦୃଢ ମନୋବଳ ଓ ସହଯୋଗ ପାଇଁ ଗ୍ରନ୍ଥଟିର ଉନ୍ମୋଚନ ହେଲା ଗ୍ରନ୍ଥଟିର ଉନ୍ମୋଚନ ଉତ୍ସବରେ ସେ ଉପସ୍ଥିତ ରହିପାରିଲେ ନାହିଁ । ସଂକଳନଟିର ଉନ୍ମୋଚନ ଉତ୍ସବ ହୋଇଥିଲା ତା ୦୩ ନଭେମ୍ବର ୨୦୦୬ମସିହା ପାରାଦ୍ୱୀପ ଠାରେ  ଅନୁଷ୍ଠିତ ହେଉଥିବା କଳିଙ୍ଗ ବାଲିଯାତ୍ରା ଉତ୍ସବରେ । ଉନ୍ମୋଚନ ଉତ୍ସବ ମଞ୍ଚରେ ଉପସ୍ଥିତ ଥିବା ମନ୍ତ୍ରୀମାନଙ୍କ ମଧ୍ୟରେ ଏହି ସଂକଳନଟି ତିନିଖଣ୍ଡ ଅଦଳ ବଦଳ ହୋଇଯିବାରୁ ସଂକଳନଟିରେ ବାର୍ତ୍ତା ସ୍ଥାନିତ ହେବାନେଇ ପରବର୍ତ୍ତୀ ଅବସ୍ଥାରେ ବିଭିନ୍ନ ପ୍ରତିକ୍ରିୟାର ସାମ୍ନା କରିବାକୁ ପଡ଼ିଥିଲା ସଂପାଦନ ମଣ୍ଡଳୀକୁ ।

ସଂକଳଟି ପ୍ରକାଶ ପାଇବା ପରେ ବିଭିନ୍ନ ଅଞ୍ଚଳରୁ କିଛି ପ୍ରତିକ୍ରିୟାମାନ ଆସିଲା । ପ୍ରତିକ୍ରିୟାରେ କେବଳ ସେମାନଙ୍କର ଅଞ୍ଚଳର ମନ୍ଦିର, ଧର୍ମପୀଠର ନାମ ସଂକଳନଟିରେ ସ୍ଥାନ ପାଇନଥିବା କଥା କୁହାଯାଇଥିଲା । ସାର୍‌ଙ୍କର ଗୋଟିଏ ଭଲ ଉତ୍ତର ଥିଲା ଯେ ଜଗତସିଂହପୁର ଜିଲ୍ଲା ଉପରେ ଏହା ଏକ ପ୍ରାରମ୍ଭିକ କାର୍ଯ୍ୟ ଏବଂ ଏଥିରେ ଥିବା ପ୍ରବନ୍ଧ ଗୁଡ଼ିକରେ ସଂପୂର୍ଣ୍ଣ ତଥ୍ୟ ନଥାଇପାରେ । ଅନ୍ୟ ସଂସ୍କରଣରେ ଏହା ସ୍ଥାନିତ କରାଯାଇପାରିବ ।

ସାର୍‌ଙ୍କ ସହିତ ଅନୁଭୂତିର ଆଉ ଏକ ଫର୍ଦ୍ଦ ହେଲା ଜଗତସିଂହପୁର ଜିଲ୍ଲା ଉତ୍ସବ ମୁଖପତ୍ର ଆଦିପତ୍ର ସଂପାଦନ ସମୟରେ । ୨୦୦୧ମସିହାରୁ ଆରମ୍ଭ ହୋଇଥିବା ଜିଲ୍ଲା ଉତ୍ସବ ମୁଖପତ୍ର 'ଆଦିପତ୍ର' ୨୦୦୩ରୁ ୨୦୧୩ପର୍ଯ୍ୟନ୍ତ ଆଦିପତ୍ରର ସଂପାଦନା ଦାୟିତ୍ୱ ତୁଲାଉଥିଲେ ଡକ୍ଟର ରାଉତ । ଦଶଟି ଆଦିପତ୍ରର ସହଯୋଗୀ ସଂପାଦକ ଭାବରେ କାର୍ଯ୍ୟ କରୁଥିବା ସମୟରେ  ଅନେକ ଅନନ୍ୟ ଅନୁଭୂତି ରହିଛି । ସମସ୍ତ ଅନୁଭୂତିକୁ ଏଠାରେ ଲିପିବଦ୍ଧ କରିବା ସମ୍ଭବ ନୁହେଁ । ସଂପାଦନା ମଣ୍ଡଳୀରେ ଅନେକ ସଭ୍ୟ ଥିଲେ ମଧ୍ୟ "ଆଦିପତ୍ର"

ସଂପାଦନା ଓ ସଂଶୋଧନ ପାଇଁ ସାର୍ ମୋତେହିଁ ବିଶେଷ ଭାବରେ କାର୍ଯ୍ୟରେ ଲଗାଉଥିଲେ । ଆଦିପତ୍ରର ଛପାକାର୍ଯ୍ୟ ଭୁବନେଶ୍ୱରର ମିଡ଼ିଆ ପ୍ରେସ୍‌ରେ ହୁଏ । ପ୍ରାୟତଃ ସାତ/ଆଠ ଥର ସାର୍‌ଙ୍କ ସହ ମିଡ଼ିଆ ପ୍ରେସ୍‌କୁ ସଂଶୋଧନ କାର୍ଯ୍ୟରେ ଯିବାକୁ ହୋଇଥାଏ ଫେରୁ ଫେରୁ ମଧ୍ୟରାତ୍ରି ହୋଇଯାଏ । ସକାଳ ୯ଟାରୁ ଭୁବନେଶ୍ୱର ଯିବାକୁ ପଡ଼ିଥାଏ, ସଂଶୋଧନ କାର୍ଯ୍ୟରେ ସାର୍‌ଙ୍କ ଧୈର୍ଯ୍ୟ ଓ ନିଷ୍ଠା ଦେଖିଲେ ଆଶ୍ଚର୍ଯ୍ୟ ହେବାକୁ ହୁଏ । ନିର୍ଭୁଲ୍ ସଂଶୋଧନ ନହେବା ପର୍ଯ୍ୟନ୍ତ ସାର୍ ସେ କାର୍ଯ୍ୟକୁ ତଦାରଖ କରୁଥାନ୍ତି । ଭୁବନେଶ୍ୱର ନେଇ ଯାଇଥିବା ଗାଡ଼ି ଡ୍ରାଇଭର ଯେତେ ବ୍ୟସ୍ତ ହେଲେ ମଧ୍ୟ ସାର୍‌ଙ୍କ ଉପରେ ତାହାର ପ୍ରଭାବ ପଡେନାହିଁ । ଏକ ବିଚିତ୍ର ଅନୁଭୂତି କଥା ନକହି ରହିପାରୁନାହିଁ । ମୋର ଏକ ବ୍ୟକ୍ତିଗତ କାର୍ଯ୍ୟରେ ଭୁବନେଶ୍ୱର ଯିବାପାଇଁ ଏକ ଗାଡ଼ିର ଆବଶ୍ୟକତା ଥାଏ । ଟ୍ରାଭେଲ୍‌ସରୁ ଗୋଟିଏ ଗାଡ଼ି ଠିକ୍ କରିଦେବାପାଇଁ ହେମନ୍ତକୁ କହିଲି । ହେମନ୍ତ ଟ୍ରାଭେଲ୍‌ସ ସହିତ କ'ଣ କଥା ହେଲା କେଜାଣି ମୋତେ ପଚାରିଲା "ଭାଇନା ଆପଣ ଏକାଯିବେ ନା ଆପଣଙ୍କ ସହିତ ଭୋଳିସାର୍ ଯିବେ" ? ମୁଁ ପଚାରିଲି, କାହିଁକି ? ହେମନ୍ତ ଉତ୍ତରରେ କହିଲା ଟ୍ରାଭେଲ୍‌ସ୍ ବାଲା କହୁଛି ଯଦି ମହେନ୍ଦ୍ରସାରଙ୍କ ସହିତ ଭୋଳିସାର୍ ଯିବେ ତେବେ କେତେବେଳେ ଫେରିବେ ତାର ଠିକଣା ନାହିଁ । ଡ୍ରାଇଭରମାନେ ଟିକେ ଅରାଜି ହେଉଛନ୍ତି ।ଏହା ସାର୍‌ଙ୍କ କାର୍ଯ୍ୟ କରିବାର ଧୈର୍ଯ୍ୟରେ ସମୟର ପ୍ରଭାବ କିଛି ନଥିଲା ବିଷୟ ପ୍ରମାଣ କରୁଛି ।

ଜଗତସିଂହପୁର ଜିଲ୍ଲା ଉତ୍ସବ ନାମକରଣ ସଂପର୍କୀୟ ସ୍ମୃତି ମଧ୍ୟ ଅଭୁଲା । ୨୦୦୬ମସିହା ଫେବୃୟାରୀ ମାସର କଥା । ଜଗତସିଂହପୁର ଜିଲ୍ଲା ଇତିହାସ ପ୍ରସ୍ତୁତି ବୈଠକରେ ତତ୍‌କାଳୀନ ଜିଲ୍ଲାପାଳ ଶ୍ରୀଯୁକ୍ତ ସତ୍ୟବ୍ରତ ସାହୁ ଜିଲ୍ଲା ଉତ୍ସବର ନାମକରଣ ପାଇଁ ଏକ ପ୍ରସ୍ତାବ ଦେଲେ । ଅନ୍ୟ ଜିଲ୍ଲା ଉତ୍ସବର ନାମ ଯେପରି 'ପରବ', 'ମଣ୍ଡେଇ', ପ୍ରଭୃତି ଦିଆହୋଇଛି ସେହିପରି ଆମ ଜିଲ୍ଲା ଉତ୍ସବର ଏକ ନାମକରଣ ପାଇଁ ସେ ପ୍ରସ୍ତାବ ଦେଲେ ଏବଂ ନାମକରଣ ପାଇଁ ଡକ୍ଟର ରାଉତଙ୍କ ଅଧ୍ୟକ୍ଷତାରେ ଏକ କମିଟି ଗଠନ କରାଗଲା । ଏବଂ ସେହି କମିଟିର ଜଣେ ସଭ୍ୟ ଭାବରେ ମୋ ନାମ ମଧ୍ୟ ଥିଲା । କମିଟିର ପ୍ରଥମ ବୈଠକରେ ସହମତି ଭିତ୍ତିରେ ଜିଲ୍ଲାଉତ୍ସବର ନାମକରଣ ହୋଇପାରିଲା ନାହିଁ । କେତେକ ଏହାର ନାମ ଅଳକା, ହରିଦ୍ରା, ଉର୍ମି, ପ୍ରଭୃତି ନାମପାଇଁ ପ୍ରସ୍ତାବ ଦେଲାବେଳେ ଏଥିରେ ସହମତି ହୋଇପାରିଲା ନାହିଁ । ଶେଷରେ ସାର୍‌ଙ୍କ ଉପରେ ଦାୟିତ୍ୱ ନ୍ୟସ୍ତ କରାଗଲା । ପ୍ରାୟ ଦିନକ ପରେ ସାର୍ ମୋତେ ଡକାଇ ପଠାଇଥିଲେ ଏହି ନାମକରଣ ନିର୍ମିତ କିଛି ଶବ୍ଦ ନିର୍ବାଚନ ପାଇଁ । ପ୍ରାୟ ପନ୍ଦର/ସତରଟି ଶବ୍ଦକୁ ନେଇ ଚିଠା ପ୍ରସ୍ତୁତ ସରିଲା ଏବଂ ଏହି ଚିଠାକୁ ନାମକରଣ କମିଟିର

ପରବର୍ତ୍ତୀ ବୈଠକରେ ଉପସ୍ଥାପିତ କରିବା ପାଇଁ ସ୍ଥିର ହେଲା । ମାତ୍ର ସାର୍ ବୈଠକ ପୂର୍ବରୁ ଏହି ନାମ ତାଲିକାଟିକୁ ଜିଲ୍ଲାପାଳଙ୍କୁ ଦେଖାଇବା ପାଇଁ ଚାହିଁଲେ । ଜିଲ୍ଲାପାଳଙ୍କୁ ଦେଖାକରି ଆଲୋଚନା କରିବା ନିମିତ୍ତ ସମୟ ଧାର୍ଯ୍ୟ ହେଲା । ଜିଲ୍ଲାପାଳଙ୍କ ପାଖରୁ ଖବର ପାଇ ସାର୍ ଏବଂ ମୁଁ ଜିଲ୍ଲାପାଳଙ୍କୁ ଦେଖାକଲୁ । ତାଲିକାରେ ଥିବା ଶବ୍ଦ ଉପରେ ତନ୍ନତନ୍ନ କରି ଆଲୋଚନା ପରେ '**କଲ୍ଲୋଳ**' ଶବ୍ଦଟି ଜିଲ୍ଲାପାଳଙ୍କୁ ଭଲ ଲାଗିଲା । ସେଠାରେ ଉପସ୍ଥିତ ଥିବା ଅନ୍ୟାନ୍ୟ ପ୍ରଶାସନିକ ଅଧିକାରୀମାନେ ମଧ୍ୟ ଏହିନାମଟିକୁ ପ୍ରସନ୍ଦ କଲେ । ନାମକରଣ କମିଟିରେ ନାମତାଲିକାଟିକୁ ଉପସ୍ଥାପନ କରିବା ପାଇଁ ସ୍ଥିର ହେଲା । ତାପରଦିନ ଅପରାହ୍ନ ୩ଟା ବେଳକୁ ହଠାତ୍ ଜିଲ୍ଲା ସୂଚନା ଓ ଲୋକ ସଂପର୍କ ଅଧିକାରୀଙ୍କ ଠାରୁ ହଠାତ୍ ଟେଲିଫୋନ୍ ପାଇଲି ଯେ ଜିଲ୍ଲାପାଳଙ୍କ ନିର୍ଦ୍ଦେଶରେ ତୁରନ୍ତ ନାମକରଣ କମିଟିର ବୈଠକ ବସିବ ଏବଂ ସେଥିରେ ମୋତେ ଯୋଗଦେବାକୁ ହେବ । ମୁଁ ବୁଝିପାରିଲି ନାହିଁ ଯେ ବୈଠକତ ଦୁଇ ତିନି ଦିନ ପରେ ହେବାର ଥିଲା ଏବଂ କାହିଁକି ତୁରନ୍ତ ବୈଠକ ଡକାଗଲା । ସେତେବେଳେ ମୁଁ କେନ୍ଦ୍ରାପଡ଼ା ଜିଲ୍ଲା ଚଉଦକୁଲାଟର ଜଗନ୍ନାଥ ବିଦ୍ୟାପୀଠର ପ୍ରଧାନ ଶିକ୍ଷକ ଥାଏ ଏବଂ ମାତ୍ର ଦୁଇଦିନ ପରେ ମାଟ୍ରିକ୍ ପରୀକ୍ଷା ଥିବାରୁ ମୋର ପରୀକ୍ଷା କେନ୍ଦ୍ର ପରିଦର୍ଶନ ଦାୟିତ୍ୱ ଥାଏ । ମୁଁ ଚଉଦକୁଲାଟ ଯିବାପାଇଁ ପ୍ରସ୍ତୁତ ହେଉଥାଏ । ତେଣୁ ଚଉଦକୁଲାଟ ଯିବି କି ଜିଲ୍ଲାପାଳଙ୍କ କାର୍ଯ୍ୟାଳୟ କମିଟି ବୈଠକରେ ଯୋଗଦେବାକୁ ଯିବି କିଛି ସ୍ଥିର କରିପାରୁନଥାଏ । ଠିକ୍ ଏହି ସମୟରେ ସାର୍‌ଙ୍କ ପାଖରୁ ଟେଲିଫୋନ୍ ଆସିଲା । ମହେନ୍ଦ୍ରବାବୁ ! ହଠାତ୍ ଜିଲ୍ଲାପାଳ ଜିଲ୍ଲାଉତ୍ସବ ନାମକରଣ କମିଟି ବୈଠକ ଡକାଇଛନ୍ତି । ଆପଣ ତୁରନ୍ତ ଆସନ୍ତୁ । ମୁଁ ସାର୍‌ଙ୍କୁ ପରୀକ୍ଷା କଥା କହି ବୈଠକରେ ମୋର ଯୋଗଦେବା ସମ୍ଭବ ହେବନାହିଁ ବୋଲି କହିବା ପରେ ହଠାତ୍ କମିଟିର ବୈଠକ ଡକାଯିବା କାରଣ ସଂପର୍କରେ ପଚାରିଥିଲି । ଉତ୍ତରଟି ଏହିପରି ଥିଲା । "ଗତକାଲି ଜିଲ୍ଲାପାଳଙ୍କ ନିକଟରେ ଆଲୋଚନାରେ ଉପସ୍ଥିତ ଥିବା କେହି ଜଣେ ପ୍ରଶାସନିକ ଅଧିକାରୀ ଗଣମାଧ୍ୟମ ପ୍ରତିନିଧିଙ୍କ ନିକଟରେ ଆମ ଆଲୋଚନା କଥା ପ୍ରକାଶ କରିଦେଇଛନ୍ତି ଏବଂ ଆଜି ଗୋଟିଏ ସମ୍ବାଦପତ୍ରରେ ବାହାରିଛି ଯେ ଜିଲ୍ଲାଉତ୍ସବ ନାମକରଣ ବୈଠକ ନଡାକି ଜଣେ ଦୁଇଜଣ ସଭ୍ୟଙ୍କ ସହ ପରାମର୍ଶ କରି ଜିଲ୍ଲାପାଳ "କଲ୍ଲୋଳ" ବୋଲି ଜିଲ୍ଲାଉତ୍ସବର ନାମକରଣ କରିଦେଇଛନ୍ତି । ଫଳରେ ଜିଲ୍ଲାପାଳ ଆଜି ତୁରନ୍ତ ବୈଠକ ଡାକିଛନ୍ତି । ଆପଣ ବରଂ କାଲି କେନ୍ଦ୍ରାପଡ଼ା ଯିବେ ଆଜି ବୈଠକକୁ ଆସନ୍ତୁ "। କେନ୍ଦ୍ରାପଡ଼ା ନଯାଇ ଜଗତସିଂହପୁର ବାହାରିଲି । ଦୁର୍ଭାଗ୍ୟକୁ ବାଟରେ ମୋର ଏକ ଦୁର୍ଘଟଣା ଘଟିଲା ଏବଂ ଡାହାଣ ଗୋଡ଼ଟି ଫ୍ୟାକ୍‌ଚର ହୋଇଗଲା । ମୋତେ ଦୁର୍ଘଟଣା ସ୍ଥଳରୁ ଡାକ୍ତରଙ୍କ

ପାଖକୁ ଯାଇ ଗୋଡ଼ଟି ପ୍ଲାଷ୍ଟର କରିବା ସମୟରେ ସାର୍ ଦୁର୍ଘଟଣା ଖବର ପାଇଁ ମୋ ନିକଟରେ ପହଞ୍ଚିଥିଲେ ଏବଂ କମିଟିର ଅନ୍ୟ କେତେଜଣ ମଧ୍ୟ ସେଠାରେ ପହଞ୍ଚିଥିଲେ । ଜିଲ୍ଲାପାଳ ମଧ୍ୟ ଫୋନ୍‌ରେ ମୋତେ ଦୁର୍ଘଟଣା ସଂପର୍କରେ ପଚାରି ବୁଝିଥିଲେ । ସେଦିନ ସେ ବୈଠକରେ ମୋର ଯୋଗଦେବା ସମ୍ଭବ ହୋଇ ନଥିଲା । ରାତିରେ ସାର୍ ଫୋନ୍‌କରି କହିଲେ ଯେ ବୈଠକରେ ସର୍ବସମତି କ୍ରମେ ଜିଲ୍ଲା ଉତ୍ସବର ନାମକରଣ "କଲ୍ଲୋଳ"ହିଁ ସ୍ଥିରକରାଗଲା । ୨୦୦୬ମସିହା ଠାରୁ ଆଜିପର୍ଯ୍ୟନ୍ତ ଜିଲ୍ଲାଉତ୍ସବ "କଲ୍ଲୋଳ" ନାମରେ ଅନୁଷ୍ଠିତ ହୋଇ ଆସୁଅଛି ।

ସାର୍‌ଙ୍କ ଜଣେ ସାରସ୍ୱତ ସହଯୋଗୀଭାବରେ ଅନୁଭୂତିର ଆଉ ଗୋଟିଏ ଅନୁଭୂତି ନଯୋଡ଼ିଲେ କଥାଟି ଅଧା ରହିଯିବ । ଜଗତସିଂହପୁର ଅତୀତ ବର୍ତ୍ତମାନ ସଂକଳନ ପରେ ସାର୍‌ଙ୍କ ଯେତେକ ପୁସ୍ତକ ପ୍ରକାଶ ପାଇଛି ତାହାର ଡି.ଟି.ପି ସଂଶୋଧନ କାର୍ଯ୍ୟଟି ସାର୍ ମୋ ଦ୍ୱାରାହିଁ କରାଉଥିଲେ । ଏହି ସମୟରେ ସାର୍ ଆଉ ଏକ ବୃହତ ପ୍ରକଳ୍ପକାର୍ଯ୍ୟ ଆରମ୍ଭ କରିଦେଲେ । କାର୍ଯ୍ୟଟି ହେଲା ଜଗତସିଂହପୁର ମାଟିର ସ୍ୱାଧୀନତା ସଂଗ୍ରାମୀ ନାରୀନେତ୍ରୀ ତଥା ବିଶିଷ୍ଟ ଲେଖିକା ସରଳାଦେବୀଙ୍କ ଗ୍ରନ୍ଥାବଳୀ ସଂକଳନ କାର୍ଯ୍ୟ । ଏହି କାର୍ଯ୍ୟରେ ମଧ୍ୟ ସାର୍‌ଙ୍କ ସଂପାଦନା ସହଯୋଗୀ ଭାବରେ କାର୍ଯ୍ୟକରିବାକୁ ପଡ଼ିଲା । ସରଳାଦେବୀ ଗ୍ରନ୍ଥାବଳୀକୁ ତିନିଖଣ୍ଡରେ ସଂକଳନ କରିବା ଯୋଜନା କରାଯାଇ କାର୍ଯ୍ୟ ଆରମ୍ଭ ହେଲା । ସାର୍ ସରଳାଦେବୀ ଲେଖାଟିକୁ ବିଭିନ୍ନ ସ୍ଥାନରୁ ସଂଗ୍ରହ କରୁଥାନ୍ତି ଏବଂ ତାକୁ ସଂପାଦିତ କରି ଟାଇପ୍ କାର୍ଯ୍ୟ ଚାଲୁଥାଏ । ଉତ୍ତୀର୍ଣ୍ଣ ବୟସରେ ଅସୁସ୍ଥତାକୁ ଖାତିର ନକରି ସାର୍ ଏହି କାର୍ଯ୍ୟରେ ପୂରାମାତ୍ରାରେ ଲାଗିଥାନ୍ତି । ଏହି ସମୟରେ ଡଃ ପ୍ରତିଭା ରାୟଙ୍କୁ ଜ୍ଞାନପୀଠ ପୁରସ୍କାର ମିଳିବା କଥାଟି ଘୋଷଣା ହେଲା । ସାର୍ ପ୍ରସ୍ତାବ ଦେଲେ ଯେ ଡଃ ପ୍ରତିଭାରାୟଙ୍କୁ ଜଗତସିଂହପୁରରେ ସମ୍ବର୍ଦ୍ଧନା ଦେବା ପାଇଁ ଏକ ଉତ୍ସବ ଆୟୋଜନ କରିବା ସହିତ ଡଃ ରାୟଙ୍କ ଉପରେ ଏକ ଅଭିନନ୍ଦନିକା ପ୍ରକାଶ କରିବା ପାଇଁ । ମୁଁ ପଚାରିଥିଲି "ସାର୍ ଏ କାର୍ଯ୍ୟକ୍ରମ କେଉଁ ଅନୁଷ୍ଠାନ ଦ୍ୱାରା ହେବ" ? ସାର୍‌ଙ୍କ ଉତ୍ତର ଥିଲା "କାହିଁ ? ଜଗତସିଂହପୁର ଜିଲ୍ଲାରେ ଥିବା ସାହିତ୍ୟ ଅନୁଷ୍ଠାନ ମିଳିତ ସହଯୋଗରେ ଏ କାର୍ଯ୍ୟକ୍ରମଟି କରିବ " ଏହାପରେ ସାର୍ ଅଭିନନ୍ଦନିକାରେ ଲେଖା ଦେବାପାଇଁ ବିଭିନ୍ନ ବ୍ୟକ୍ତିଙ୍କ ସହ ଯୋଗାଯୋଗ ଆରମ୍ଭ କରି ଦେଲେ । ସରଳାଦେବୀ ଗ୍ରନ୍ଥାବଳୀ କାର୍ଯ୍ୟ ମଧ୍ୟ ଚାଲିଥାଏ । ପ୍ରାୟ ପନ୍ଦର କୋଡ଼ିଏ ଦିନ ପରେ ସାର୍ ଡଃ ପ୍ରତିଭା ରାୟଙ୍କ ଅଭିନନ୍ଦନିକା ବଦଳରେ ଡଃ ରାୟଙ୍କର ପୁରସ୍କୃତ ତଥା ଉତ୍କୃଷ୍ଟ ଉପନ୍ୟାସ ଓ ଗଳ୍ପ ସଂକଳନ ପରେ ଏକ ସମୀକ୍ଷା ଗ୍ରନ୍ଥ କରିବା ପାଇଁ ପ୍ରସ୍ତାବ କଲେ । ମୁଁ ସାର୍‌ଙ୍କୁ କହିଥିଲି ଯେ ଏହା ଏକ ଦୁରୂହ କାର୍ଯ୍ୟ କାରଣ ଡଃ ରାୟଙ୍କ ପୁରସ୍କୃତ ଉପନ୍ୟାସ ଗଳ୍ପ ସଂକଳନ ଉପରେ

ଯେପରି ସମୀକ୍ଷକ ବା ଆଲୋଚକ ନମିଳିଲେ ସମୀକ୍ଷା ଗ୍ରନ୍ଥଟି ପୂର୍ଣ୍ଣାଙ୍ଗ ହେବନାହିଁ । ସାରଙ୍କ ଉତ୍ତର ଥିଲା ସମୀକ୍ଷକ ଯୋଗାଡ଼ ହୋଇଯିବେ । ଏହାପରେ ସରଳାଦେବୀ ଗ୍ରନ୍ଥାବଳୀର ଦ୍ୱିତୀୟ ଖଣ୍ଡର ସଂପାଦନା କାର୍ଯ୍ୟ ଧିମେଇ ଗଲା ଏବଂ ସାର୍ ଡଃ ରାୟଙ୍କ ସହ ଯୋଗାଯୋଗ କରି ତାଙ୍କର ପୁରସ୍କୃତ ସାହିତ୍ୟ କୃତିଗୁଡ଼ିକର ତାଲିକା ଆଣି ଓଡ଼ିଶାର ପ୍ରତିଷ୍ଠିତ ସାହିତ୍ୟ ସମୀକ୍ଷକ ଓ ଆଲୋଚକମାନଙ୍କୁ ଏହିକାର୍ଯ୍ୟ ପାଇଁ ଦାୟିତ୍ୱ ଦେଲେ । ଆଲୋଚକମାନଙ୍କ ଠାରୁ ଲେଖା ଆସିବା ବିଳମ୍ବ ହେଲା ଏବଂ ସାର୍ ଯେତେ ଶୀଘ୍ର ସମ୍ବର୍ଦ୍ଧନା ଉତ୍ସବ କାର୍ଯ୍ୟକ୍ରମ କରିବାକୁ ଚାହୁଁଥିଲେ ସେଥିରେ ବିଳମ୍ବ ଘଟିଲା । ବହୁ ଆଲୋଚକ ଲେଖା ପଠାଇଲେ ଏବଂ ଲେଖାଗୁଡ଼ିକ ସଂପାଦନା ପରେ ଭୁବନେଶ୍ୱର ମିଡ଼ିଆ ପ୍ରେସ୍‌ରେ ଡି.ଟି.ପି କାର୍ଯ୍ୟ ଆଗେଇ ଚାଲିଲା । ସହଯୋଗୀ ସଂପାଦକ ଭାବରେ ଉତ୍କଳ ବିଶ୍ୱବିଦ୍ୟାଳୟ ଓଡ଼ିଆ ବିଭାଗ ପ୍ରାଧ୍ୟାପକ ଡଃ ସନ୍ତୋଷ ତ୍ରିପାଠୀ ଓ ଡଃ ନିରଞ୍ଜନ ବିଶ୍ୱାଳଙ୍କୁ ନିଆଗଲା । କ୍ରମେ ଗ୍ରନ୍ଥଟିର କଳେବର ବଢିବାକୁ ଲାଗିଲା । ଏହି ଗ୍ରନ୍ଥଟିକୁ ପ୍ରକାଶ କରିବା ପାଇଁ ପ୍ରକାଶକଙ୍କ ସହିତ ଯୋଗାଯୋଗ କରିବାରେ ଜଣାଗଲା ଯେ ନିର୍ଦ୍ଦିଷ୍ଟ ସମୟସୀମା ମଧ୍ୟରେ ଏହାର ପ୍ରକାଶନ ସମ୍ଭବ ନୁହେଁ । ସାର୍ ଗୋଟିଏ ପ୍ରସ୍ତାବ ଦେଲେ ଯେ ଆମେ ଉଭୟେ କୁନା ବାବୁ (ମିଡ଼ିଆ ପ୍ରେସ୍‌ର ସ୍ୱତ୍ତ୍ୱାଧିକାରୀ)ଙ୍କୁ ଏହି ସଂକଳନଟିର ପ୍ରକାଶ କରିବା ପାଇଁ ଅନୁରୋଧ କଲେ ସେ ହୁଏତ ରାଜି ହୋଇଯିବେ । ଠିକ୍ ସେଇଆ ହେଲା, ଆମ ପ୍ରସ୍ତାବରେ କୁନା ବାବୁ ରାଜିହୋଇଗଲେ । ଏହାପରେ ଗ୍ରନ୍ଥଟିର ନାମକରଣ ଓ ପ୍ରଚ୍ଛଦ ସଂପର୍କରେ ଆଲୋଚନା ହୋଇ ଗ୍ରନ୍ଥଟିର ନାମକରଣ 'ମନସ୍ୱିନୀ ପ୍ରତିଭା ରାୟ' ରଖାଗଲା ଏବଂ ପ୍ରଚ୍ଛଦ ଅଙ୍କନ ପାଇଁ ଓଡ଼ିଶାର ବିଶିଷ୍ଟ ଶିଳ୍ପୀ ଶ୍ରୀଯୁକ୍ତ ଶିବ ପାଣିଗ୍ରାହୀଙ୍କ ସହଯୋଗାଯୋଗ କରାଗଲା ଏବଂ ସ୍ୱୟଂ ଡଃ ରାୟଙ୍କ ସହ ପରାମର୍ଶ କରାଗଲା ।

ଏହି କାର୍ଯ୍ୟକ୍ରମ ପାଇଁ ସାର୍‌ଙ୍କ ଅକ୍ଳାନ୍ତ ଓ ଅବିଶ୍ରାନ୍ତ ପରିଶ୍ରମ ତାଙ୍କର ଅସୁସ୍ଥତାକୁ କ୍ରମଶଃ ବଢାଇଦେଇଥିଲା । ବାରମ୍ବାର ଭୁବନେଶ୍ୱର ମିଡ଼ିଆ ପ୍ରେସ୍‌କୁ ଯାଇ ଘଣ୍ଟା ଘଣ୍ଟା କାର୍ଯ୍ୟକରିବାର ନିଶା ଶରୀର ଅସୁସ୍ଥତା ସତ୍ତ୍ୱେ ତାଙ୍କର ମନୋବଳକୁ ଦୁର୍ବଳ କରିପାରୁ ନଥିଲା । ସଂକଳନର କାର୍ଯ୍ୟ ସରିବା ପରେ ସମ୍ବର୍ଦ୍ଧନା ଉତ୍ସବ କାର୍ଯ୍ୟକ୍ରମ ପାଇଁ ଆୟୋଜନ ଆରମ୍ଭହେଲା । ପୂର୍ବଯୋଜନା ଅନୁଯାୟୀ ସାର୍ ଜଗତସିଂହପୁର ଜିଲ୍ଲାରେ ଥିବା ବିଭିନ୍ନ ସାହିତ୍ୟ ଅନୁଷ୍ଠାନର କର୍ମକର୍ତ୍ତାଙ୍କୁ ଏକ ବୈଠକରେ ଯୋଗଦେବା ପାଇଁ ଆମନ୍ତ୍ରଣ କଲେ ଏବଂ କେତୋଟି ହାତଗଣତି ଅନୁଷ୍ଠାନ କର୍ମକର୍ତ୍ତା ପ୍ରଥମ ବୈଠକରେ ଯୋଗଦେଇ ଏହି ସମ୍ବର୍ଦ୍ଧନା କାର୍ଯ୍ୟକ୍ରମ ସଂପର୍କୀୟ ଆଲୋଚନାରେ ଭାଗ ନେଇଥିଲେ ସତ ମାତ୍ର ପରବର୍ତ୍ତୀ ବୈଠକରେ ଯୋଗଦାନ କଲେନାହିଁ । ଏହାଦେଖି ସାର୍ ଆଗରୁ ମନସ୍ଥ କରିଥିବା 'ଜଗତସିଂହପୁର ଗବେଷଣା

ପରିଷଦ' ଗଠନକୁ ତ୍ୱରାନ୍ୱିତ କଲେ ଏବଂ ସ୍ଥିରହେଲା ନବଗଠିତ 'ଜଗତସିଂହପୁର ଗବେଷଣା ପରିଷଦ' ଆନୁକୂଲ୍ୟରେ ସମ୍ବର୍ଦ୍ଧନା ଉତ୍ସବ ଆୟୋଜନ ହେବ । ଏହି ସମୟରେ ଚନ୍ଦ୍ରଶେଖର ସାଂସ୍କୃତିକ ପରିଷଦ ଗୁନ୍ଦପୁରର ସଂପାଦକ ଶ୍ରୀ ହେମନ୍ତ ରଥ ସହଯୋଗର ହାତ ବଢ଼ାଇଥିଲେ ଏବଂ ଜଗତସିଂହପୁର ଗବେଷଣା ପରିଷଦ ଓ ଚନ୍ଦ୍ରଶେଖର ସାଂସ୍କୃତିକ ପରିଷଦ ମିଳିତ ଆନୁକୂଲ୍ୟରେ ସମ୍ବର୍ଦ୍ଧନା ଉତ୍ସବ ଦେବାପାଇଁ ସ୍ଥିର କରାଗଲା । ଏହି ଉତ୍ସବରେ ଡଃ ରାୟଙ୍କ ସହିତ ଜଗତସିଂହପୁର ମାଟିର ସୁପୁତ୍ର ବିଶିଷ୍ଟ ସାହିତ୍ୟିକ ହରପ୍ରସାଦ ଦାସଙ୍କୁ ସମ୍ବର୍ଦ୍ଧିତ କରିବାକୁ ସ୍ଥିର କରାଗଲା । ଏହାପରେ ସାର୍ ଲାଗିପଡ଼ିଲେ ଅତିଥି ତଥା ସମ୍ବର୍ଦ୍ଧିତ ହେବାକୁ ଥିବା ପ୍ରତିଭାଙ୍କୁ ନିମନ୍ତ୍ରଣ କରିବା ଲାଗି । ସାର୍‌ଙ୍କ ସହ ପ୍ରାୟ ମୋତେ ପ୍ରତ୍ୟେକ ସ୍ଥାନକୁ ଯିବାପଡୁଥାଏ । ସମ୍ବର୍ଦ୍ଧନା ଉତ୍ସବର ଉଦ୍‌ଘାଟନ ଓ ଅତିଥି କରି ଆମନ୍ତ୍ରଣ କରାଗଲା ଜ୍ଞାନପୀଠ ପୁରସ୍କାର ପ୍ରାପ୍ତ ସାହିତ୍ୟିକ ଡଃ ସୀତାକାନ୍ତ ମହାପାତ୍ରଙ୍କୁ । ଏହି କାର୍ଯ୍ୟକ୍ରମ ଯେତେ ପାଖେଇ ଆସୁଥାଏ ସାର୍‌ଙ୍କ ଦେହ ସେତିକି ଅସୁସ୍ଥତା ମଧ୍ୟକୁ ଟାଣିହୋଇ ଯାଉଥାଏ । ଆମର ବହୁ ବାରଣ ସତ୍ତ୍ୱେ ସାର୍ ଆମର ବାରଣ ମାନୁନଥାନ୍ତି । ୨୦୧୪ ମସିହା ଅଗଷ୍ଟ ୨ ତାରିଖରେ ଜଗତସିଂହପୁର ସଦର ମହକୁମାରେ ଥିବା ନିମାଁଇ ଭବନରେ ଡଃ ପ୍ରତିଭା ରାୟ ଓ ଶ୍ରୀଯୁକ୍ତ ହରପ୍ରସାଦ ଦାସଙ୍କୁ ଏକ ଭବ୍ୟ ସମ୍ବର୍ଦ୍ଧନା ଦିଆଯିବା ସହିତ 'ମନସ୍ୱିନୀ ପ୍ରତିଭା ରାୟ' ସଂକଳନଟି ମୁଖ୍ୟ ଅତିଥି ଡଃ ସୀତାକାନ୍ତ ମହାପାତ୍ରଙ୍କ ଦ୍ୱାରା ଉନ୍ମୋଚିତ ହୋଇଥିଲା । ସେଦିନ ଉତ୍ସବରେ ସାର୍ ବହୁ ଉତ୍‌ଫୁଲିତ ଥିଲେ ମଧ୍ୟ ତାଙ୍କ ଶରୀରରୁ ଗୁରୁତର ଅସୁସ୍ଥତାର ଲକ୍ଷଣ ବାରିହୋଇ ପଡୁଥିଲା । ସାର୍‌ଙ୍କ ପରାମର୍ଶରେ ହେମନ୍ତ ବରାଦରେ ନିମନ୍ତ୍ରିତ ଅତିଥିମାନଙ୍କ ପାଇଁ ପ୍ରସ୍ତୁତ ହୋଇଥିଲା ଓଡ଼ିଆ ଘରର ଖାଦ୍ୟ । ଅତିଥିମାନଙ୍କ ଖାଇବା ସମୟରେ ସାର୍ ପ୍ରତ୍ୟକ୍ଷ ଭାବରେ ବୁଝାସୁଝା କରୁଥିବା ସମୟରେ ସେ ଗଭୀର ଅସୁସ୍ଥତା ଅନୁଭବ କରୁଥିବା ଆମେ ସମସ୍ତେ ଅନୁଭବ କରିଥିଲୁ । ଅତିଥିମାନଙ୍କ ଖାଇସାରିବା ପରେ ସାର୍ କ୍ଲାନ୍ତ ହୋଇ ପଡ଼ିଲେ ଏବଂ ତୁରନ୍ତ ସାର୍‌ଙ୍କୁ ଖାଇବାକୁ ଦିଆଗଲା ।

ସାର୍‌ଙ୍କ ଜିଦ୍‌ରେ ଆମେ ସମସ୍ତେ ତାଙ୍କ ସହିତ ଖାଇବାକୁ ବସିଲୁ । ଅତିଥିମାନଙ୍କ ବିଦାୟ ପରେ ସାର୍‌ଙ୍କୁ ନେଇ ଘରେ ଛାଡ଼ିଲାବେଳେ ମାଉସୀ (ସାର୍‌ଙ୍କ ସ୍ତ୍ରୀ) ଓ ପୁଅ ଟୁଲୁବାବୁଙ୍କୁ ସାର୍‌ଙ୍କୁ ପରଦିନ ଡାକ୍ତରଙ୍କ ପାଖକୁ ନେବାକୁ ପରାମର୍ଶ ଦେଇ ଫେରିଥିଲି । ଏହାର୧୫/୨୦ଦିନ ପରେ ଶାରଦୀୟ ଦୁର୍ଗାପୂଜା ସମୟରେ ସାର୍‌ଙ୍କ ଦେହ ଗଭୀର ଭାବରେ ଅସୁସ୍ଥ ହୋଇ ପଡ଼ିଲା । ଏହାପରେ ସାର୍ କଟକର ଅଶ୍ୱିନୀ ହସ୍‌ପିଟାଲ୍‌ରେ ଚିକିତ୍ସିତ ହେଲେ । ଖବର ପାଇ ସାର୍‌ଙ୍କୁ ହସ୍‌ପିଟାଲ୍‌ରେ ଦେଖାକରିବା ପରେ ଜାଣିବାକୁ ପାଇଲି

ସାର୍‌ଙ୍କ ଶରୀର ଜଟିଳ ଭାବରେ ଅସୁସ୍ଥ ହୋଇ ପଡ଼ିଛି ଏବଂ ଭିନ୍ନ ଭିନ୍ନ ଭାବରେ ଅସ୍ତ୍ରୋପଚାର କରାଯିବ । ଅସ୍ତ୍ରୋପଚାର ସରିଲା ହେଲେ ସାର୍ ସଂପୂର୍ଣ୍ଣ ଅସୁସ୍ଥ ହୋଇ ବିଭିନ୍ନ ନର୍ସିଂହୋମ୍ ଓ ପରେ କଟକସ୍ଥ ଝିଅଘରେ ଶଯ୍ୟାଶାୟୀ ହୋଇ ରହିଲେ । ଚିକିତ୍ସା ଚାଲିଲା । ସାର୍‌ଙ୍କୁ ହସ୍‌ପିଟାଲରେ ବାରମ୍ବାର ସାକ୍ଷାତ କରୁଥିଲି । ବିଗତ ପନ୍ଦର ବର୍ଷ ମଧ୍ୟରେ ସାର୍‌ଙ୍କ ଠାରୁ ସପ୍ତାହରେ ଅନେକ ଥର ଫୋନ୍ ପାଇବା ମୋର ଅଭ୍ୟାସ ହୋଇ ଯାଇଥିଲା ।

ପରିଶେଷରେ ଗୋଟିଏ କଥା କହି ମୋର ଏହି ସ୍ମୃତି ଅନୁଭୂତିର ଫର୍ଦ୍ଦ ଶେଷ କରିବି । ବିଗତ ଦେଢ଼ ଦଶନ୍ଧି ଧରି ସାର୍‌ଙ୍କ ଜଣେ ଅନ୍ତରଙ୍ଗ ସହଯୋଗୀ ଭାବରେ କାର୍ଯ୍ୟ କରିବା ମଧ୍ୟରେ ତାଙ୍କ ବ୍ୟକ୍ତିତ୍ୱର କେତୋଟି ଦିଗ ମୋତେ ପ୍ରଭାବିତ କରିଛି । ସାର୍‌ଙ୍କ କାର୍ଯ୍ୟ କରିବାର ତରିକା ହେଲା ସେ ଯେକୌଣସି କାର୍ଯ୍ୟ ସେ ହାତକୁ ନିଅନ୍ତି, ତାକୁ ନିଷ୍ଠାର ସହିତ କରନ୍ତି । ସେଥିପାଇଁ ସେ ଅଧୈର୍ଯ୍ୟ ହୁଅନ୍ତି ନାହିଁ । ସାର୍ ଯାହାକୁ ଯେଉଁ ଦାୟିତ୍ୱ ଦିଅନ୍ତି ତାଠାରୁ କାମ ଆଦାୟ ପାଇଁ ଯଥାସମ୍ଭବ ଚେଷ୍ଟା କରନ୍ତି । କାର୍ଯ୍ୟ ହାସଲ ନହେଲା ପର୍ଯ୍ୟନ୍ତ ଦାୟିତ୍ୱ ନେଇଥିବା ବ୍ୟକ୍ତିଟିର ନିସ୍ତାର ନାହିଁ । ସାରସ୍ୱତ ତଥା ସାଂଗଠନିକ କାର୍ଯ୍ୟପାଇଁ ଆସୁଥିବା ପ୍ରତିବଂଧକକୁ ଖାତିର କରନ୍ତି ନାହିଁ । ସବୁ ସମୟ ସାରସ୍ୱତ ଜଗତ ପାଇଁ କିଛିନା କିଛି ସ୍ୱପ୍ନ ଦେଖୁଥାନ୍ତି ଏବଂ ସ୍ୱପ୍ନଟି ଯେତେ ଅସମ୍ଭବ ହେଲେ ମଧ୍ୟ ସେ ତାହାକୁ ସାକାର କରିବା ପାଇଁ ସଂକଳ୍ପବଦ୍ଧ ହୁଅନ୍ତି । ଆଜି ସାର୍ ଶାରୀରିକ ଅସୁସ୍ଥତା ମଧ୍ୟରେ ଗତି କରୁଥିଲେ ମଧ୍ୟ ପୁଣି କିଛି କରିବାର ଲକ୍ଷ୍ୟ ମଧ୍ୟ ରହିଛି ।

ଈଶ୍ୱରଙ୍କ ନିକଟରେ ପ୍ରାର୍ଥନା ସାର୍‌ଙ୍କୁ ସଂପୂର୍ଣ୍ଣ ସୁସ୍ଥକରି ଦୀର୍ଘଜୀବୀ କରନ୍ତୁ । ■

କୋଠିଆଁ, କାଦୁଅପଡ଼ା,

ମୋ - ୭୫୪୧୦, ୯୯୩୭୧୯୬୯୧୧

# ମାଟିର ବରପୁତ୍ର ଭୋଳାନାଥ

ଇଂ ପ୍ରଭାକର ସ୍ୱାଇଁ

ଓଡ଼ିଶାର ସାରସ୍ୱତ ଜଗତରେ ଅଧ୍ୟାପକ ଭୋଳାନାଥ ରାଉତ ସ୍ମରଣୀୟ ଉଚ୍ଚାରଣ । ସେ ବହୁ ପ୍ରତିଭାର ଅଧିକାରୀ । ଏକାଧାରାରେ ସେ ପ୍ରଥିତଯଶା ଲେଖକ, ପ୍ରବୀଣ ଶିକ୍ଷାବିତ୍, ପ୍ରମୁଖ ସଂଗଠକ ଓ ସଂସ୍କାରକ । ଉତ୍କଳ ଜନନୀର ଏହି ସୁଯୋଗ୍ୟ ସନ୍ତାନଙ୍କ ସୁଖ୍ୟାତି ସର୍ବତ୍ର ପରିବ୍ୟାପ୍ତ ।

ଅଧ୍ୟାପକ ଭୋଳାନାଥଙ୍କର ଜନ୍ମ ୧୯୩୮ ମସିହା ଫେବୃୟାରୀ ମାସ ୫ତାରିଖରେ ବୀରଭୂମି ଜଗତସିଂହପୁର ଜିଲ୍ଲାର ନନ୍ଦିଗ୍ରାମରେ । ଜଗତସିଂହପୁର ସାରସ୍ୱତ ଭୂମି ରୂପେ ସୁପରିଚିତ । ବାଗ୍‌ଦେବୀ ଶାରଳାଙ୍କ ବିଜେସ୍ଥଳୀ ସେହି ମାଟି । ପୁଣି ସେହି ମାଟିରେ ଆବିର୍ଭୂତ ଓଡ଼ିଶାର ବହୁ ଯୋଗଜନ୍ମା । ପଞ୍ଚଦଶ ଶତାବ୍ଦୀରେ ସେହି ମାଟିରେ ଓଡ଼ିଆ ଭାଷା ସାହିତ୍ୟର ଜନକ ଆଦିକବି ସାରଳା ଦାସ ଆବିର୍ଭାବ ହୋଇ ଓଡ଼ିଆ ସାହିତ୍ୟର କୋଣାର୍କ ମହାଭାରତ, ବିଲଙ୍କା ରାମାୟଣ, ଚଣ୍ଡୀପୁରାଣ, ରଚନା କରିଥିଲେ । ପରେ ପୁଣି ସେହି ମାଟିରେ ଷୋଡ଼ଶ ଶତାବ୍ଦୀରେ ପଞ୍ଚସଖା ଯଶୋବନ୍ତ ଦାସ, ବିଂଶ ଶତାବ୍ଦୀରେ ଜାତୀୟ କବି ବୀର କିଶୋର ଦାସ, ଲୋକକବି ବାଳକୃଷ୍ଣ ମହାନ୍ତି, ନାଟ୍ୟକାର ନିଶାମଣି ସ୍ୱାଇଁ, ଶ୍ରୀମତୀ ସରଳାଦେବୀ ପଦ୍ମଶ୍ରୀ ପ୍ରତିଭାରାୟ, ବିଭୂତି ପଟ୍ଟନାୟକ, ନିତ୍ୟାନନ୍ଦ ଶତପଥୀ, ହରପ୍ରସାଦ ଦାସ, ଭୋଳାନାଥ ରାଉତ ପ୍ରମୁଖ ବହୁ ସାରସ୍ୱତ ସାଧକ ଜନ୍ମଗ୍ରହଣ କରି ଓଡ଼ିଶାର ବାଣୀଭଣ୍ଡାରକୁ ଋଦ୍ଧିମନ୍ତ କରିଛନ୍ତି । ପୁଣି ସେହି ଜଗତସିଂହପୁର ଜିଲ୍ଲାର ଅଳକା ଆଶ୍ରମ ଏକଦା ଜାତୀୟ ମୁକ୍ତି ସଂଗ୍ରାମର ପୀଠସ୍ଥଳୀ ଥିଲା । ଗୋପବନ୍ଧୁ ଚୌଧୁରୀ, ପ୍ରାଣକୃଷ୍ଣ ପଢିହାରୀ ନିତ୍ୟାନନ୍ଦ କାନୁନ୍‌ଗୋ, ଭାଗିରଥୀ ମହାପାତ୍ର, ବୀରକିଶୋର ଦାସ ପ୍ରମୁଖ ସେହି ମାଟିରେ ଜନ୍ମ ନେଇ ସ୍ୱାଧୀନତା ସଂଗ୍ରାମକୁ ପ୍ରଜ୍ୱଳିତ କରିବା ସହିତ ଓଡ଼ିଶାକୁ ନବ ଆଲୋକରେ ଉଦ୍‌ଭାସିତ କରିଥିଲେ ।

ଜନ୍ମ ମାଟିର ପାଣି ପବନ, ପରିବେଶ, ଐତିହ୍ୟ ପରମ୍ପରା ଅତୀତ ଓ ବର୍ତ୍ତମାନ ଭୋଳାନାଥଙ୍କ ଜୀବନକୁ ବହୁ ଭାବରେ ପ୍ରଭାବିତ କରିଛି । ଜନ୍ମରୁ ସେ ଜନ୍ମଭୂମିର ଇଷ୍ଟଦେବୀ ଶାରଳାଙ୍କ ଶରଣାପନ୍ନ ହୋଇ ତାଙ୍କରି କରୁଣାରୁ ସେ ନିଜକୁ ସମାଜରେ ପ୍ରତିଷ୍ଠିତ

କରିପାରିଛନ୍ତି । ଭୋଳାନାଥ ଜଣେ ମେଧାବୀ ଛାତ୍ରଥିଲେ । ସେ ୧୯୫୪ରେ ସୁଖ୍ୟାତ ଅଲଣାହାଟ ହାଇସ୍କୁଲରୁ ମାଟ୍ରିକୁଲେସନ ପାଶ୍ କଲାପରେ କଟକର ଖ୍ରୀଷ୍ଟ କଲେଜରେ ଇଣ୍ଟରମିଡିଏଟ୍ (ଆଇ.ଏ) ଓ ସ୍ନାତକ, ରେଭେନ୍‌ସା ମହାବିଦ୍ୟାଳୟରୁ ଓଡ଼ିଆ ଭାଷା ସାହିତ୍ୟରେ ସ୍ନାତକୋତ୍ତର (ଏମ୍.ଏ) ଶିକ୍ଷା ଲାଭକଲେ ।୧୯୬୨ରେ ଉପାଧ୍ୟୁତ୍ତର ଡିଗ୍ରୀ ପ୍ରାପ୍ତିପରେ ଜଗତସିଂହପୁର ସ୍ୱାମୀ ବିବେକାନନ୍ଦ ସ୍ମାରକ ମହାବିଦ୍ୟାଳୟରେ ଅଧ୍ୟାପନା କାର୍ଯ୍ୟରେ ଯୋଗଦେଲେ । ପରେ ସେ ନୟାଗଡ଼ କଲେଜ, କେନ୍ଦ୍ରାପଡ଼ା କଲେଜରେ ଅଧ୍ୟାପକ ଓ ପ୍ରାଧ୍ୟାପକ ରୂପେ ଅବସ୍ଥାପିତ ହୋଇଥିଲେ । ସେ ଆଦିକବି ସାରଳାଦାସ ମହାବିଦ୍ୟାଳୟ (ତିର୍ତ୍ତୋଲ), କିଶନନଗର କଲେଜ ଏବଂ ସ୍ୱାମୀ ବିବେକାନନ୍ଦ ସ୍ମାରକ ମହାବିଦ୍ୟାଳୟ (ଜଗତସିଂହପୁର) ପ୍ରଭୃତିର ଅଧ୍ୟକ୍ଷ ପଦ ମଣ୍ଡନ କରିଥିଲେ । ଭୋଳାନାଥ ବାବୁଙ୍କ ଅଧ୍ୟାପନା ଜୀବନ ସ୍ୱତନ୍ତ୍ର ଥିଲା । ସେ ନିଜର ଅଭିନବ ଶିକ୍ଷାଦାନ ଶୈଳୀ ପାଇଁ ଅଗଣିତ ଛାତ୍ରଛାତ୍ରୀଙ୍କର ଶ୍ରଦ୍ଧାଭାଜନ ହୋଇପାରିଥିଲେ । ସେ ଥିଲେ ଜଣେ ଆଦର୍ଶ ଅଧ୍ୟାପକ । ତାଙ୍କର ଛାତ୍ରଛାତ୍ରୀ ତାଙ୍କୁ ଦେବପ୍ରତିମ ଭକ୍ତି ଓ ସମ୍ମାନ କରୁଥିଲେ ।

ଗୁରୁବ୍ରହ୍ମା ଗୁରୁବିଷ୍ଣୁ ଏହି ଉକ୍ତିଟି ଭୋଳାନାଥ ବାବୁଙ୍କ ପ୍ରତି ପ୍ରଯୁଜ୍ୟ । ଭୋଳାନାଥ ବାବୁ ସୁଦକ୍ଷ ଅଧ୍ୟକ୍ଷ ଥିଲେ । ଅଧ୍ୟକ୍ଷ ଭାବରେ ତାଙ୍କର ପ୍ରଶାସନର ଦୃଷ୍ଟାନ୍ତ ବିରଳ । ୧୯୯୮ ମସିହାରୁ ସେ କାର୍ଯ୍ୟରୁ ଅବସର ଗ୍ରହଣ କରିଥିଲେ ମଧ୍ୟ ଛାତ୍ରଛାତ୍ରୀମାନଙ୍କ ମଧ୍ୟରେ ସେ ଏଯାବତ୍ ସ୍ମରଣୀୟ ହୋଇ ରହିଛନ୍ତି ।

ଭୋଳାନାଥ ବାବୁ ସଫଳ ସାରସ୍ୱତ ସ୍ରଷ୍ଟା । ସେ ସାହିତ୍ୟର ବିଭିନ୍ନ ବିଭାଗରେ ଯଥା - ଗଳ୍ପ, ନାଟକ, ସମାଲୋଚନା ପ୍ରଭୃତିରେ ଲେଖନୀ ଚାଳନା କରି ଆମ ବାଣୀଭଣ୍ଡାରର ଶ୍ରୀବୃଦ୍ଧି ସାଧନ କରିଛନ୍ତି । ତାଙ୍କର ଗଳ୍ପ ଓ ନାଟକ ଆମ ସର୍ଜନାତ୍ମକ ସାହିତ୍ୟର ଏକ ଏକ ସ୍ମରଣୀୟ ଗ୍ରନ୍ଥ । ଏହାର କଥାବସ୍ତୁ ହୃଦୟସ୍ପର୍ଶୀ, ଭାଷା ସରଳ ଓ ସାବଲୀଳ । ତାଙ୍କର ସୃଷ୍ଟି ସରଳ ସତ୍ୟଶିବ ସୁନ୍ଦର ଆରାଧନାରେ ସମୁଜ୍ଜ୍ୱଳ । ଅଧ୍ୟାପକ ରାଉତଙ୍କ ସମାଲୋଚନା ଅଭିନବ ଓ ସ୍ୱତନ୍ତ୍ର । ସେଗୁଡ଼ିକର ଅନୁଶୀଳନ କଲେ, ପାଠକ ବହୁ ତତ୍ତ୍ୱ ଓ ତଥ୍ୟର ସନ୍ଧାନ କରିପାରେ । ଏପରି ଗ୍ରନ୍ଥଗୁଡ଼ିକ ମଧ୍ୟରେ ଓଡ଼ିଶାର ସାଂସ୍କୃତିକ ଇତିହାସ, ଲେଖା ଓ ଲେଖକ, ଓଡ଼ିଆ ସାହିତ୍ୟର ତତ୍ତ୍ୱ ଓ ତଥ୍ୟ, କବି ଅଚ୍ୟୁତାନନ୍ଦ, 'ବୈଦିକ ସମାଜ, ସାହିତ୍ୟ ଓ ସଂସ୍କୃତି' ପ୍ରଭୃତି ଉଲ୍ଲେଖନୀୟ ।

ଅଧ୍ୟାପକ ରାଉତ ଜଣେ ବଳିଷ୍ଠ ସଂଗଠକ ଓ ସଂପାଦକ । ସେ ବହୁ ଉପାଦେୟ ଗ୍ରନ୍ଥ ସଂକଳନ ଓ ସଂପାଦନ କରି ଉଦାହରଣ ସୃଷ୍ଟି କରିଛନ୍ତି । ତାଙ୍କ ସଂପାଦିତ ଗ୍ରନ୍ଥମାନଙ୍କ

ମଧ୍ୟରେ ଓଡ଼ିଆ ଉପନ୍ୟାସ ସାହିତ୍ୟର ପରିଚୟ', ଜଗତସିଂହପୁର ଅତୀତ ଓ ବର୍ତ୍ତମାନ (୧ମ, ୨ୟ, ୩ୟ ଖଣ୍ଡ) ସରଳାଦେବୀଙ୍କ ରଚନାବଳୀ, ମନସ୍ୱିନୀ ପ୍ରତିଭାରାୟ, ବିପ୍ଳବିଣୀ ମାଳତୀ ଚୌଧୁରୀ, ସଂଗ୍ରାମୀ ପ୍ରିୟଦା ଓ ସଂଗ୍ରାମୀ ବିଶ୍ୱମ୍ବର' ପ୍ରଭୃତି ଉଲ୍ଲେଖନୀୟ । "ଜଗତସିଂହପୁର : ଅତୀତ ଓ ବର୍ତ୍ତମାନ" ସଂକଳନ ତ୍ରୟ ଜଗତସିଂହପୁର ଜିଲ୍ଲାର ଜ୍ୱଳନ୍ତ ଇତିହାସ । ଭୋଳାନାଥ ବାବୁ ଏହି ଇତିହାସର ସଂକଳନ ସଂପାଦନା କରି ଆଗାମୀ ପିଢି ପାଇଁ ଯେଉଁ ଐତିହାସିକ ତଥ୍ୟମାନ ରଖିଦେଲେ, ସେଥିପାଇଁ ସେ ନିଜେ ଇତିହାସ ପାଲଟି ଗଲେ । ଅଧ୍ୟାପକ ରାଉତ ତାଙ୍କର ଜୀବନବ୍ୟାପୀ ସାରସ୍ୱତ ସାଧନା ପାଇଁ ଓଡ଼ିଶା ସାହିତ୍ୟ ଏକାଡେମୀ ଚେଳିତୋଳ କଲ୍‌ଚରାଲ ଏକାଡେମୀ ପ୍ରଭୃତି ବହୁ ମର୍ଯ୍ୟାଦାଜନକ ଅନୁଷ୍ଠାନ ଦ୍ୱାରା ପୁରସ୍କୃତ ଓ ସମ୍ମାନିତ ହୋଇଛନ୍ତି ।

ଅଧ୍ୟାପକ ରାଉତଙ୍କ ସାରସ୍ୱତ ଜୀବନ ପରି ସାମାଜିକ ଜୀବନ ମଧ୍ୟ ଅତ୍ୟନ୍ତ ଉଚ୍ଚକୋଟୀର । ସେ ବହୁ ସାମାଜିକ ଅନୁଷ୍ଠାନ ସହିତ ସଂପୃକ୍ତ । ସେ ଜଣେ ସ୍ନେହୀ, ଦରଦୀ ଓ ପରୋପକାରୀ ମଣିଷ । ସେ ସଦା ମଣିଷର ବିପଦ ଆପଦରେ ଠିଆ ହୁଅନ୍ତି । ସେ ଦୁଃଖୀରଙ୍କୀଙ୍କୁ ସାହାଯ୍ୟ କରନ୍ତି । ସେ ମଣିଷ ପରି ମଣିଷଟିଏ । ଅତି ଭଲ ମଣିଷ । ଜୀବନଯାପନ ତାଙ୍କର ସାଧାରଣ; କିନ୍ତୁ ବ୍ୟକ୍ତିତ୍ୱ ତାଙ୍କର ଅସାଧାରଣ । ମୁଁ ତାଙ୍କୁ ଜଣେ ଆଦର୍ଶମାନବ ରୂପେ ବିବେଚନା କରେ । ସେ ମୋ ମାଟିର ବରପୁତ୍ର, ଗର୍ବ ଓ ଗୌରବ । ମୁଁ ତାଙ୍କ ପ୍ରତ୍ୟକ୍ଷ ସଂପର୍କରେ ବହୁ ଦିନରୁ ଆସିଛି ଓ ତାଙ୍କର ମହାନତାର ପରିଚୟ ପାଇଛି । ଏହି ଅବସରରେ ଭାଗବତର ଏକ ମହତବାଣୀ ମୋର ମନେପଡ଼େ ।

ସର୍ବେ ଚଳିବେ କାଳବଳେ/ଯଶ ରହିବ ମହୀତଳେ ।

କେହି ଏ ଦୁନିଆରେ ଚିରଦିନ ପାଇଁ ରହିନାହିଁ ବା ରହିବନାହିଁ ମାତ୍ର ଜୀବଦଶାରେ ଯିଏ ଯେଉଁ, ସୁକର୍ମ କରେ ସେହି ଯଶହିଁ ତାଙ୍କୁ ଚିର ଅମର ରଖିଥାଏ । ସେହି ମର୍ମରେ ଭୋଳାନାଥବାବୁ ତାଙ୍କ ଜୀବନବ୍ୟାପୀ ସାହିତ୍ୟ, ସଂସ୍କୃତି, ସଂଗଠନ, ଅଧ୍ୟାପନା କ୍ଷେତ୍ରରେ ସାଧନା କରି ଯେଉଁ କୀର୍ତ୍ତିରାଜି ସୃଷ୍ଟି କରିଛନ୍ତି, ତାହା ତାଙ୍କୁ ଚିରଭାସ୍ୱର କରି ରଖିବ । ତାଙ୍କ ଭଳି ଜଣେ ମହାନ ପ୍ରତିଭାଙ୍କୁ ପ୍ରଣତି ଜଣାଇ ଏକ ଅଭିନନ୍ଦନିକା ପ୍ରକାଶ ପାଉଥିବା ଖବରରେ ମୁଁ ଅତ୍ୟନ୍ତ ଉଲ୍ଲସିତ । ମୁଁ ଏହି ଅବସରରେ ତାଙ୍କର ଦୀର୍ଘନିରାମୟ ଜୀବନ କାମନା କରିବା ସହିତ ତାଙ୍କ ଚଲାପଥ କୁସୁମିତ ହେଉ ଏତିକି ମା' ଶାରଳାଙ୍କ ପଦାରବିନ୍ଦରେ ନିବେଦନ କରୁଛି ।"ଜୀବେମ ଶରଦଃ ଶତମ୍" । ■

ପ୍ରତିଷ୍ଠାତା ଓ ସଭାପତି, ସାରଳା ସାହିତ୍ୟ ସଂସଦ, ସାରଳାଭବନ, କଟକ-୭୫୩୦୦୮

# ସ୍ୱାଭିମାନୀ ଅଧ୍ୟାପକ ଡକ୍ଟର ଭୋଳାନାଥ

ଜଗଦୀଶ ଚନ୍ଦ୍ର କାନୁନ୍‌ଗୋ

୧୬୦୦ଶହ ମସିହାର ଶେଷ ଭାଗକୁ ଇଂରେଜ ମାନେ East India Company ମାଧ୍ୟମରେ ଭାରତରେ ସେମାନଙ୍କର ବ୍ୟବସାୟ ଆରମ୍ଭ କରିଥିଲେ । ପ୍ରଥମେ କରମଣ୍ଡଳ ଉପକୂଳସ୍ଥ ମସଲିମ୍ ପଟ୍ଟମ୍ ଠାରେ ବାଣିଜ୍ୟକୋଠି ଆରମ୍ଭ କଲେ । ସମୃଦ୍ଧ ଓଡ଼ିଶା ବିଷୟରେ ମଧ୍ୟ ଅବଗତ ହୋଇଥିଲେ । ଫଳରେ ଓଡ଼ିଶା ଉପରେ ସେମାନଙ୍କର ଦୃଷ୍ଟିପାତ ହୋଇଥିଲା । ଓଡ଼ିଶାର ହରିହରପୁର ଅର୍ଥାତ୍ ବର୍ତ୍ତମାନର ଜଗତସିଂହପୁର ସେ ସମୟରେ ବସ୍ତ୍ର ଉତ୍ପାଦନ କ୍ଷେତ୍ରରେ ଏକ କେନ୍ଦ୍ରସ୍ଥଳୀ ଥିଲା । ତନ୍ତୀ ବା ଭୁଲିଆ ଜାତି ଦ୍ୱାରା ହେଉଥିବା ଉନ୍ନତ ବସ୍ତ୍ର ଦେଶର ବିଭିନ୍ନ ସ୍ଥାନ ଓ ବିଦେଶକୁ ରପ୍ତାନି ହେଉଥିଲା ତେଣୁ ଏ ଅଞ୍ଚଳର ଲୋକମାନେ ସେମାନଙ୍କର ବହୁବିଧ କର୍ମ ଦକ୍ଷତା ଓ ସାଂସ୍କୃତିକ ଚେତନାର ସୂଚନା ପ୍ରଦର୍ଶନ କରିଥିଲେ । ଓଡ଼ିଶାର ବୀର ପାଇକ ଯୋଦ୍ଧାଙ୍କର ଦୃଢ ପ୍ରତିରୋଧ ଯୋଗୁ ଓଡ଼ିଶାକୁ ବହୁ ପଛରେ ଅର୍ଥାତ୍ ୧୮୦୩ ମସିହାରେ ଇଂରେଜମାନେ ନିଜ ଅଧୀନକୁ ନେଇଥିଲେ । ସେତେବେଳକୁ ଇଂରେଜମାନଙ୍କର ସ୍ଥିତି ଭାରତରେ ଖୁବ୍ ସୁଦୃଢ ହୋଇ ଯାଇଥିଲା ଓ ବହୁଭାବେ ବିସ୍ତାରିତ ହୋଇଥିଲା ଏହା ପୂର୍ବରୁ ସାରଳାଦାସଙ୍କ ପରି ସାରସ୍ୱତ ସାଧକଙ୍କ ଆବିର୍ଭାବ ପଞ୍ଚଦଶ ଶତାବ୍ଦୀର ମଧ୍ୟ ଭାଗରେ ଜଗତସିଂହପୁର ଅଞ୍ଚଳରେ ହୋଇଥିଲା । ଆଦିକବି ସାରଳା ଦାସଙ୍କ ଅପୂର୍ବ ଦାନ ପାଇଁ ଆମର ସାହିତ୍ୟ ଓ ସଂସ୍କୃତି ଐତିହ୍ୟକୁ ବହୁଭାବେ ପରିଚୟ ଦେଇଛି । ସେଥିପାଇଁ ସମଗ୍ର ଭାରତରେ ଆମେ ଏକ ଉନ୍ନତ ସାଂସ୍କୃତିକ ଚେତନାଶୀଳ ଜାତିର ଦାୟାଦ ବୋଲି ନିଜକୁ ଗର୍ବିତ କରିବାରେ ସମର୍ଥ ହୋଇଛୁ । ବହୁ କବି, ସାହିତ୍ୟିକ, ନାଟ୍ୟକାର, କଳାକାର, ବୈଜ୍ଞାନିକ ସମାଜସେବୀ ଓ ରାଜନୈତିକ ବ୍ୟକ୍ତି ଏ ଅଞ୍ଚଳରେ ଜନ୍ମଲାଭ କରି ଓଡ଼ିଶାର ତଥା ଭାରତରେ ଖ୍ୟାତି ଅର୍ଜନ କରିବାରେ ସମର୍ଥ ହୋଇଛନ୍ତି ।

ଅବିଭକ୍ତ କଟକ ଜିଲ୍ଲା ଜଗତସିଂହପୁର ନାଉଗାଁ ଅଞ୍ଚଳର ନନ୍ଦିଗ୍ରାମରେ ପିତା ବୃନ୍ଦାବନ ଓ ମାତା ଉଜ୍ଜ୍ୱଳମଣିଙ୍କ କୋଳମଣ୍ଡନ କରିଥିଲେ ଭୋଳାନାଥ ୧୯୩୮ ମସିହା ଫେବୃୟାରୀ ମାସ ୫ତାରିଖରେ । ଦେବୀନଦୀ କୂଳରେ ପ୍ରାକୃତିକ ଶୋଭାର ଅପୂର୍ବ ସବୁଜ ଭୂଖଣ୍ଡର

ଅପରପାର୍ଶ୍ୱରେ ଅବସ୍ଥିତ ମା' ମଙ୍ଗଳା ପୀଠ । ଏହି ପରି ଏକ ସ୍ଥାନରେ ଜନ୍ମିତ ଏହି ବାଳକ ଉପରେ ପ୍ରକୃତିର ବହୁ ପ୍ରଭାବ ପଡ଼ିଥିଲା । ପଲ୍ଲୀଜୀବନ ସହିତ ସେ ଓତପ୍ରୋତଃ ଭାବେ ଜଡ଼ିତ ହୋଇଥିଲେ । ଭବିଷ୍ୟତରେ ଯେ ସେ ଓଡ଼ିଶା ମାଟିରେ ସୁନାମ ଅର୍ଜନ କରି ଗୌରବ ଆଣିବେ, ସେ କଥା ପିତାମାତାଙ୍କର କଳ୍ପନାର ବାହାରେ ଥିଲା । ତାଙ୍କର ଗୁଣ ଗରିମା "ତୁଳସୀ ଦୁଇ ପତ୍ରରୁ ବାସିବା" ପରି ଶୈଶବରୁ ବେଶ୍ ବାରି ହୋଇ ପଡୁଥିଲା । ସେ ଯେପରି ଶାନ୍ତ, ଭଦ୍ର ଓ ସରଳ ସେହିପରି ଶିକ୍ଷା ତାଙ୍କର ବିଶେଷ ଆଗ୍ରହ ଦୃଷ୍ଟିକୁ ଆସୁଥିଲା । ତେଣୁ ସେ ପରିବାର ସଦସ୍ୟ ଓ ଶିକ୍ଷକ ମାନଙ୍କର ଶ୍ରଦ୍ଧାଭାଜନ ହୋଇଥିଲେ ।

ତାଙ୍କର ନିରବଚ୍ଛିନ୍ନ ସାଧନା ସାଂସ୍କୃତିକ ବିକାଶ କ୍ଷେତ୍ରରେ ଅଦମ୍ୟ ପ୍ରଚେଷ୍ଟା ଓ ସାଂଗଠନିକ ଦକ୍ଷତା ଏ ଅଞ୍ଚଳବାସୀଙ୍କୁ ବିଭିନ୍ନ ସାଂସ୍କୃତିକ କ୍ଷେତ୍ରରେ ମାନ୍ୟତା ଦେଇଛି । ଜଣେ ଉଚ୍ଚକୋଟୀର ଗାଳ୍ପିକ, ନାଟ୍ୟକାର, ସମାଲୋଚକ ଓ ଗବେଷକ ହିସାବରେ ସାହିତ୍ୟ ଜଗତରେ ମଧ୍ୟ ଖ୍ୟାତି ରହିଛି ଓ ଏହି ସବୁ ବିଷୟରେ ବିବିଧ ପୁସ୍ତକ ରଚନା କରିଛନ୍ତି । ପରିଣତ ବୟସରେ ତାଙ୍କର ଲେଖନୀ ଅବିରତ ଭାବେ ଗ୍ଭଲିଛି । ତାଙ୍କର ପ୍ରକାଶିତ ପୁସ୍ତକ ଗୁଡ଼ିକ ଆଜି ଓଡ଼ିଶା ସାହିତ୍ୟରେ ବହୁକବି, ସାହିତ୍ୟିକ ଓ ଛାତ୍ରଙ୍କ ଉପରେ ପ୍ରଭାବ ପକାଇଛି । ସେହି ପୁସ୍ତକ ଗୁଡ଼ିକ ମଧ୍ୟରୁ 'ଦାଣ୍ଡି ରାମାୟଣରେ ଓଡ଼ିଶାର ଲୋକ ସଂସ୍କୃତି,' ସାହିତ୍ୟ, ସମାଲୋଚନା, ସାହିତ୍ୟ ଓ ସଂସ୍କୃତି , ସାଂସ୍କୃତିକ ଓ ସାମାଜିକ ଇତିହାସ, ଓଡ଼ିଆ ଉପନ୍ୟାସ ସାହିତ୍ୟର ପରିଚୟ, ସାହିତ୍ୟରେ ରହସ୍ୟବାଦ, ଗଳ୍ପ ସମାରୋହ, ଉଲ୍ଲେଖନୀୟ । ଏକାଙ୍କିକା ସୌରଭ, "କବିତା ସେ ଯୁଗର" ପ୍ରଭୃତି ଅନ୍ୟତମ । ସେ ଯୁଗ ଓ ବିଭିନ୍ନ ଉପାଦେୟ ନିବନ୍ଧ ପ୍ରକାଶ କରିଛନ୍ତି ଡଃ ରାଉତଙ୍କ ସଂକଳିତ "ଜଗତସିଂହପୁର : ଅତୀତ ଓ ବର୍ତ୍ତମାନ" ଗ୍ରନ୍ଥଟି ଏ ଅଞ୍ଚଳର ସମସ୍ତ ପ୍ରକାର ସାଂସ୍କୃତିକ ଚେତନାର ସୂଚନା ଦେବାରେ ଏକ ଅଭିନବ ଉଦ୍ୟମ ।

ଓଡ଼ିଶା ସାହିତ୍ୟ ଏକାଡେମୀ, ଓ ଉତ୍କଳ ସାହିତ୍ୟ ସମାଜ ପରି ପୁରାତନ ଓ ପ୍ରତିଷ୍ଠିତ ଅନୁଷ୍ଠାନ ସହିତ ତାଙ୍କର ସଂପୃକ୍ତି ଉଲ୍ଲେଖନୀୟ । ଅଭ୍ୟୁଦୟ ସାହିତ୍ୟ ସମାଜ ଓ ଅଳକା କଳା ମଣ୍ଡପ ପରି ଅନୁଷ୍ଠାନ ସହିତ ଓତଃପ୍ରୋତ ଭାବେ ଜଡ଼ିତ ହୋଇ ଜଗତସିଂହପୁର ପ୍ରତିଷ୍ଠାତା ସଭ୍ୟଭାବେ ସାହିତ୍ୟ, ସଂଗୀତ ଓ ନୃତ୍ୟ କ୍ଷେତ୍ରରେ ନୂତନ ମାର୍ଗ ପ୍ରଦର୍ଶନ କରି ଓଡ଼ିଶାରେ ଜଗତସିଂହପୁରକୁ ଏକ ପ୍ରମୁଖ ଆସନ ଦେବାପାଇଁ ଚେଷ୍ଟାରତ । ମୁଁ ଦୀର୍ଘଦିନ ଧରି ଓଡ଼ିଶା ରାଜ୍ୟ ସରକାରଙ୍କ ସଂସ୍କୃତି ବିଭାଗର ଏକାଡେମୀ ସମୂହରେ କାର୍ଯ୍ୟ କରୁଥିଲି । ଏହି ସମୟରେ ଓଡ଼ିଶା ସାହିତ୍ୟ ଏକାଡେମୀ, ସଂଗୀତ ନାଟକ ଏକାଡେମୀ ଓ ଲଳିତକଳା

ଏକାଡେମୀର ବିଭିନ୍ନ କାର୍ଯ୍ୟକ୍ରମ ଏ ଅଞ୍ଚଳରେ ହେଉଥିବା ସମୟରେ ଡଃ ରାଉତଙ୍କର ଯେଉଁ ଆବଶ୍ୟକତା ତାହା ସମସ୍ତେ ଉପଲବ୍ଧି କରି ଥାଆନ୍ତି । ତାହା ମୁଁ ଭୁଲି ପାରିବି ନାହିଁ କାରଣ ତାଙ୍କର ଉପଦେଶ ଓ ଆଲୋଚନା କ୍ରମେ ବିଭିନ୍ନ କାର୍ଯ୍ୟକ୍ରମ ସଫଳ ହୋଇଥାଏ । ସେ ଯେପରି ଜଣେ ଉଦ୍ୟୋଗୀ ପୁରୁଷ ଓ କର୍ମ ଚଞ୍ଚଳ ସଂଗଠକ ସେପରି ବ୍ୟକ୍ତିତ୍ୱର ଲୋକ ଦେଖିବା ବିରଳ । ତାଙ୍କର କର୍ମମୟ ଜୀବନରୁ ଅବସର ନେବା ପରେ ମଧ୍ୟ ସାହିତ୍ୟ ରଚନା କ୍ଷେତ୍ରରୁ ବିରତ ନ ହୋଇ ବିଭିନ୍ନ ପୁସ୍ତକ ରଚନା କରିବାରେ ନିଜକୁ ନିୟୋଜିତ କରିଛନ୍ତି ।

ଜଣେ ଶୃଙ୍ଖଳିତ ସଂଗ୍ରାମୀ ଛାତ୍ରଭାବେ ନେତୃତ୍ୱ ନେବା, ବିଭିନ୍ନ ମହାବିଦ୍ୟାଳୟରେ ଅଧ୍ୟୟନ ସମୟରୁ ସୂଚନା ମିଳିଥିଲା । କର୍ମମୟ ଜୀବନର ପ୍ରାରମ୍ଭରୁ ସେ ଜଣେ ଆଦର୍ଶ ବାଦୀ ଶିକ୍ଷକ ହେବାର ପଥ ବାଛି ନେଇଥିଲେ । ଭାରତରେ ଶିକ୍ଷକମାନଙ୍କ ଆର୍ଥିକ ଦୁର୍ଗତି ଓ ସମାଜରେ ଥିବା ସେମାନଙ୍କର ଅବସ୍ଥା ସଂପର୍କରେ ଅବଗତ ଥିଲେ । ଅଧ୍ୟାପକ ପଦରେ ନିଯୁକ୍ତି ଲାଭ କରିବା ପରେ ଶିକ୍ଷକ ମାନଙ୍କର ବିଭିନ୍ନ ହିତକର କାର୍ଯ୍ୟ ପାଇଁ ମନ ବଳାଇ ଥିଲେ । ରାଜ୍ୟ ଓ ସମାଜରେ ଉପଯୁକ୍ତ ସ୍ଥାନ ଓ ଅର୍ଥନୈତିକ ହକ୍ ଦାବି ପାଇଁ ଜଣେ ଶିକ୍ଷାବିତ ଭାବରେ ବିଭିନ୍ନ ଶିକ୍ଷକ ସଂଘ ସହିତ ନିଷ୍ଠାପର ଭାବେ କାର୍ଯ୍ୟ କରୁଥିଲେ । ନିଖିଳ ଉତ୍କଳ ଶିକ୍ଷକ ମହାସଂଘ, ବେସରକାରୀ କଲେଜ ଶିକ୍ଷକ ସଂଘ ଓ ଓଡ଼ିଆ ଅଧ୍ୟାପକ ସମ୍ମିଳନୀ ସହିତ ଓତପ୍ରୋତଃ ଭାବେ ଜଡ଼ିତ ଥିଲେ । ଆଜିର ଶିକ୍ଷକ ରାଜନିତି ଠାରୁ ସେ ସମୟର ନେତୃତ୍ୱ ଭିନ୍ନ ଥିଲା । ତାଙ୍କର ନିଷ୍ଠାପର କର୍ମ ଶିକ୍ଷକ ମହଲରେ ଗୁରୁତ୍ୱ ବଢାଇଥିଲା ।

ଭାରତର ପ୍ରଖ୍ୟାତ ରାଜନେତା, ଓଡ଼ିଶାର ପୂର୍ବତନ ମୁଖ୍ୟମନ୍ତ୍ରୀ ସ୍ୱର୍ଗତ ବିଜୁପଟ୍ଟନାୟକ ୧୯୯୩ ମସିହା ବେଳକୁ ସାଂସ୍କୃତିକ ପରିଷଦ ପ୍ରଶାସନିକ କ୍ଷେତ୍ରରେ ସୁବିଧା ପାଇଁ କେତେକ ନୂଆ ଜିଲ୍ଲା ଗଠନ କରିଥିଲେ, ଏବଂ ତିର୍ତ୍ତୋଲ, ଜଗତସିଂହପୁର, ବାଲିକୁଦା ଓ ଏରସମା ନିର୍ବାଚନ ମଣ୍ଡଳୀକୁ ନେଇ ଜଗତସିଂହପୁର ଜିଲ୍ଲା ଗଠନ ହୋଇଥିଲା । ଜଗତସିଂହପୁର ଜିଲ୍ଲାରେ ଷାଠିଏ ଦଶକ ବେଳକୁ ଗୋଟିଏ ମହାବିଦ୍ୟାଳୟ ପ୍ରତିଷ୍ଠିତ ହୋଇ ଶିକ୍ଷା ଓ ସଂସ୍କୃତି କ୍ଷେତ୍ରରେ ବିକାଶ ଆରମ୍ଭ ହୋଇଥିଲା । ବ୍ୟବସାୟ, ବାଣିଜ୍ୟ ଓ ପ୍ରଶାସନିକ ସୁବିଧା ବୃଦ୍ଧି କ୍ଷେତ୍ରର ପ୍ରସାର ହେଲା । ଜଗତସିଂହପୁର ଜିଲ୍ଲାରେ ବିଭିନ୍ନ ଶିକ୍ଷାନୁଷ୍ଠାନ ହେବାରୁ ବିଭିନ୍ନ ଶିକ୍ଷାଗତ ଓ ପ୍ରଶାସନିକଗତ କାର୍ଯ୍ୟରେ ଆବଶ୍ୟକ ମୁଦ୍ରଣ କାର୍ଯ୍ୟପାଇଁ କୌଣସି ମୁଦ୍ରଣ ପ୍ରେସ୍ ନଥିବାରୁ କଟକରେ ଥିବା ବିଭିନ୍ନ ପ୍ରେସ୍ ଉପରେ ନିର୍ଭର କରୁଥିଲେ । ତେଣୁ ଲୋକ ଖର୍ଚ୍ଚାନ୍ତ ମଧ୍ୟ ହେଉଥିଲେ । କେତେକ ସ୍ଥଳରେ ମୁଦ୍ରଣର ମଧ୍ୟ ତ୍ରୁଟି ରହୁଥିଲା । ଶିକ୍ଷାବିତ

ଡଃ ରାଉତ ଏଗୁଡ଼ିକ ଉପଲବ୍ଧି କରିଥିଲେ । ତେଣୁ ଏ ଅଞ୍ଚଳର ଉଚ୍ଚଶିକ୍ଷା ଓ ସାଂସ୍କୃତିକ ପରଂପରା ରକ୍ଷା କରି ଯେପରି ସରସ ସୁନ୍ଦର ନିର୍ଭୁଲ ମୁଦ୍ରଣ ହେବ ନିଜେ ଜଗତସିଂହପୁର ଅଞ୍ଚଳରେ ପ୍ରଥମ ମୁଦ୍ରଣ ପ୍ରେସ୍ "ଅଳକା ପ୍ରେସ୍ " ସ୍ଥାପନ କରି ମୁଦ୍ରଣ ଶିଳ୍ପର ଶ୍ରୀବୃଦ୍ଧି ପାଇଁ ପ୍ରୟାସ କରିଥିଲେ । ତେଣୁ ବିଭିନ୍ନ ମୁଦ୍ରଣ କାର୍ଯ୍ୟପାଇଁ ଅଧିକାଂଶ ଏ ଅଞ୍ଚଳରୁ କଟକ ନଯାଇ ଛପା କାର୍ଯ୍ୟ ଏଠାରେ କରିବାରେ ସକ୍ଷମ ହୋଇଥିଲେ । କେତେକ ଶ୍ରମିକ ମଧ୍ୟ ନିଯୁକ୍ତି ପାଇଥିଲେ । କ୍ରମେ ଏ ଅଞ୍ଚଳରେ ଜନ ସଂଖ୍ୟା ବଢ଼ିବାକୁ ଲାଗିଲା । ମୁଦ୍ରଣ କାର୍ଯ୍ୟ ବଢ଼ିଲା । ମୁଦ୍ରଣ ପାଇଁ ଅଭିରୁଚି ମଧ୍ୟ ହେଲା । ବିଭିନ୍ନ ଶିକ୍ଷା ଅନୁଷ୍ଠାନ ଓ ସମାଜର ବିଭିନ୍ନ କାର୍ଯ୍ୟର ବିକାଶ ହେବାରୁ ମୁଦ୍ରଣ କାର୍ଯ୍ୟର ବହୁଳ ଆବଶ୍ୟକତା ଉପଲବ୍ଧି ହେବାସହିତ ଡକ୍ଟର ରାଉତ ଜଣେ ଶିକ୍ଷାବିତ ଶିକ୍ଷକ ନେତା ଓ ଲେଖକ ହୋଇଥିବାରୁ, ବ୍ୟବସାୟ ପ୍ରତି ତାଙ୍କର ସମୟ ନଥିଲା । ତେଣୁ "ଅଳକା ପ୍ରେସ୍" ପ୍ରତି ସେ ଦୃଷ୍ଟି ଦେଇପାରିନଥିଲେ । ୧୯୬୫ ମସିହା ପରେ ଏ ଜିଲ୍ଲାରେ ବହୁପ୍ରେସ୍ ଆରମ୍ଭ ହେଲା ଓ ମୁଦ୍ରଣ ପ୍ରେସ୍‌ର ବୃଦ୍ଧିପାଇଁ ଶ୍ରମିକ ନିଯୁକ୍ତି କ୍ଷେତ୍ରରେ ବାଟ ଫିଟିଗଲା । ତାଙ୍କ ପ୍ରେସ୍‌ରୁ ସୃଷ୍ଟ ଶ୍ରମିକମାନେ ସ୍ୱତନ୍ତ୍ର ପ୍ରେସ୍ ବସାଇଥିଲେ ମଧ୍ୟ ଜଗତସିଂହପୁର ପ୍ରଥମ ଛପାଖାନା ଅଳକା ପ୍ରେସ୍ ସବୁଦିନ ପାଇଁ ବନ୍ଦ ହୋଇଗଲା । ତାଙ୍କ ସହିତ ମୋର ଯେଉଁ ସ୍ୱଳ୍ପ ସମୟ ସାକ୍ଷାତ ଓ ଫୋନ୍ ମାଧ୍ୟମରେ ଆଲୋଚନା ହୋଇଛି ଜଗତସିଂହପୁର ଲୋକ ମାନଙ୍କର ସାଂସ୍କୃତିକ ଚେତନାପାଇଁ ସେ ସଦା ସର୍ବଦା ବ୍ୟଗ୍ରତା ପ୍ରକାଶ କରୁଥିବାର ଅନୁଭବ କରିଛି । ଗତ କିଛିଦିନ ତଳେ ସେ ଅସୁସ୍ଥ ଥିଲେ ମଧ୍ୟ ମୋ ସହିତ ଆଲୋଚନାରେ ପ୍ରଖ୍ୟାତ ନାରୀ ନେତ୍ରୀ ସରଳା ଦେବୀଙ୍କ ସଂଗ୍ରାମୀ ଜୀବନ ଓ ସାହିତ୍ୟ କୃତି ଉପରେ ତଥ୍ୟ ସଂଗ୍ରହ କରି ଅଧୁନା ଏକ ଗ୍ରନ୍ଥ ପ୍ରକାଶନ ଉଦ୍ୟମ କରୁଛନ୍ତି ବୋଲି କହିଥିଲେ । ଡଃ ଭୋଳାନାଥ ରାଉତଙ୍କ ପରି କର୍ମରତ ପ୍ରଖ୍ୟାତ ଅଧ୍ୟାପକ ଓ ଶିକ୍ଷାବିତ କେବେ ବସିବାର ବ୍ୟକ୍ତି ନୁହଁନ୍ତି । ଓଡ଼ିଶାର ସଚେତନ ଶୀଳ ବ୍ୟକ୍ତି, ସାହିତ୍ୟିକ ମାନଙ୍କର ତାଙ୍କଠାରୁ ବହୁତ କିଛି ଶିଖିବାର ଅଛି । ଆଜି ନବ ସଭ୍ୟ ଯୁଗରେ ତାଙ୍କର ସ୍ଥାନ ଗରିମା ଆମର ଧେୟ କହିଲେ ଅତ୍ୟୁକ୍ତି ହେବନାହିଁ । ■

ପୂର୍ବତନ ସଭାପତି, ଓଡ଼ିଶା ଲଳିତ କଳା ଏକାଡେମୀ
N-3/237, I.R.C Village, Bhubaneswar

# ମୋ ଅନୁଭୂତିର ଡକ୍ଟର ଭୋଳାନାଥ ରାଉତ

ଡକ୍ଟର ଶ୍ରୀଚରଣ ଦାସ

ସାରଳା ମାଟିର ଅନ୍ୟତମ ସୁଯୋଗ୍ୟ ଦାୟାଦ ଭୋଳିସାର୍ ଓଡ଼ିଆ ସାହିତ୍ୟର ଜଣେ ପ୍ରାବନ୍ଧିକ ଓ ସମାଲୋଚକ ଭାବରେ ବେଶ ଲୋକପ୍ରିୟ । ଓଡ଼ିଆ ସମାଲୋଚନା ଓ ଗବେଷଣା କ୍ଷେତ୍ରରେ ସାର୍ ଅନନ୍ୟ ଓ ଅସାଧାରଣ । ବିଭିନ୍ନ ସମୟରେ ତାଙ୍କ ଦ୍ୱାରା ଲିଖିତ ପ୍ରବନ୍ଧ ଓ ସମାଲୋଚନା ପ୍ରଭୃତିରେ ସେ ସ୍ୱକୀୟ ମୌଳିକ ଚିନ୍ତାଧାରାର ପରିଚୟ ପ୍ରଦାନ କରିଛନ୍ତି । ସାର୍ 'ଦାଣ୍ଡି ରାମାୟଣରେ ଓଡ଼ିଶାର ଲୋକ ସଂସ୍କୃତି', ଶୀର୍ଷକ ଗବେଷଣାତ୍ମକ ନିବନ୍ଧ ରଚନା କରି ଉତ୍କଳ ବିଶ୍ୱବିଦ୍ୟାଳୟରୁ ପି ଏଚ୍ ଡି. ଲାଭ କରିଛନ୍ତି । ଜଣେ ଖ୍ୟାତନାମା ସାହିତ୍ୟିକ ଭାବରେ ସେ ରଚନା କରିଥିବା ପୁସ୍ତକ ଗୁଡ଼ିକ ହେଲା, କାବ୍ୟ ଓ କବି, ଓଡ଼ିଆ ସାହିତ୍ୟରେ ତତ୍ତ୍ୱ ଓ ତଥ୍ୟ ବୈଦିକ ସାହିତ୍ୟ, ସମାଜ ଓ ସଂସ୍କୃତି, ସାହିତ୍ୟ ଓ ସମାଲୋଚନା, ଲେଖା ଓ ଲେଖକ ଓଡ଼ିଶାର ସାଂସ୍କୃତିକ ସମାଜିକ ଓ ରାଜନୈତିକ ଇତିହାସ ଇତ୍ୟାଦି । ସାର୍‌ଙ୍କ ଦ୍ୱାରା ସାଂପାଦିତ ଗ୍ରନ୍ଥ ମଧ୍ୟରେ ଓଡ଼ିଆ ଉପନ୍ୟାସ ସାହିତ୍ୟର ପରିଚୟ, ମେହେର ଆଲୋକ ଏବଂ ସାହିତ୍ୟରେ ରହସ୍ୟବାଦ ଏଗୁଡ଼ିକ ବେଶ୍ ତଥ୍ୟଭିତ୍ତିକ ଓ ଗବେଷଣାଧର୍ମୀ । ଏତଦ୍ ବ୍ୟତୀତ ତାଙ୍କର ଏକମାତ୍ର ଗଳ୍ପ ସଂକଳନ, ଅନୁଚ୍ଚାରିତ ସ୍ୱର ଓ ପାଠକୀୟ ସ୍ୱୀକୃତିଲାଭ କରିଛି । ସାର୍ ଜଣେ ବିଶିଷ୍ଟ ସଂଗଠକ ଓ ବହୁ ସାଂସ୍କୃତିକ ଅନୁଷ୍ଠାନର ମାର୍ଗଦର୍ଶକ । ସାର୍‌ଙ୍କ ବହୁମୁଖୀ ପ୍ରତିଭା ତାଙ୍କ ବଳିଷ୍ଠ ବ୍ୟକ୍ତିତ୍ୱର ଶ୍ରେଷ୍ଠ ପରିଚୟ । ଏସବୁ ମଧ୍ୟରେ ଜଗତସିଂହପୁର : ଅତୀତ ଓ ବର୍ତ୍ତମାନ ପୁସ୍ତକ ଏହି ଜିଲ୍ଲାର ଇତିହାସର ପୃଷ୍ଠଭୂମି ଉପରେ ରଚନା କରାଯାଇଥିଲେହେଁ ସାଂପ୍ରତିକ ସମୟର ସାରସ୍ୱତ ସାଧକ, ଗବେଷକ, ବୈଜ୍ଞାନିକ, ଯନ୍ତ୍ରୀ, ମନ୍ତ୍ରୀ ଓ ପ୍ରଶାସକ ଶିକ୍ଷା ସଂସ୍କୃତି ଧର୍ମ ଓ ରାଜନୀତି ଏ ସବୁ ଏଥିରେ ସ୍ଥାନିତ ହୋଇଛି । ଏହା ଏକ ଦୀର୍ଘ ସଂକଳନ । ତିନିଖଣ୍ଡରେ ବିଭାଜିତ ଏହି ପୁସ୍ତକରେ ପ୍ରାୟ ଏକଶହରୁ ଊର୍ଦ୍ଧ୍ୱ ଲେଖକ ବିଭିନ୍ନ ବିଷୟରେ ତଥ୍ୟ ଭିତ୍ତିକ ବିଷୟମାନ ରଚନା କରି ଜଗତସିଂହପୁର ମର୍ଯ୍ୟଦା ବୃଦ୍ଧିରେ ସହାୟକ ହୋଇ ପାରିଛନ୍ତି । ଜଗତସିଂହପୁର ଜିଲ୍ଲା ସଂସ୍କୃତି ପରିଷଦ ତରଫରୁ ପ୍ରକାଶିତ ଏହି ବିପୁଳାୟତନ ସଂକଳନର ମୁଖ୍ୟ ପୃଷ୍ଠପୋଷକ ହେଉଛନ୍ତି

ଡକ୍ଟର ରାଉତ । ସେ କେବଳ ଏହାର ସଂକଳନ ଓ ମୁଖ୍ୟ ସଂପାଦକ ନୁହନ୍ତି ସତୁରୀ ବର୍ଷ ବୟସରେ ତାଙ୍କୁ ଏ ଗ୍ରନ୍ଥଟି ସଂପାଦନା କରିବାପାଇଁ ଯେତିକି ପରିଶ୍ରମ କରିବାକୁ ପଡିଛି ତାହା କେବଳ ଅନୁଭବୀ ଏବଂ ତାଙ୍କୁ ସାହାଯ୍ୟ କରୁଥିବା ମୁଷ୍ଟିମେୟ ବ୍ୟକ୍ତିବିଶେଷ ଜାଣନ୍ତି । ଦିବଂଗତ ଅଧ୍ୟାପକ କୁଳମଣି ଦାଶ, ଶ୍ରୀଯୁକ୍ତ ମହେନ୍ଦ୍ର କୁମାର ଆଗ୍ରର୍ଯ୍ୟ ଓ ଅଧ୍ୟାପକ ନିରଞ୍ଜନ ବିଶ୍ବାଳ ସାର୍‌ଙ୍କ ସହିତ ବହୁରାତି ଅନିଦ୍ରା ହୋଇ କାର୍ଯ୍ୟ କରିଛନ୍ତି । ଏହା ବାସ୍ତବରେ ସାରଙ୍କ୍ ଜୀବନର ସର୍ବଶ୍ରେଷ୍ଠ ସଫଳତା ।

ସାର୍‌ଙ୍କୁ ମୁଁ ୧୯୯୦ ପୂର୍ବରୁ ବିଶେଷ ଭାବରେ ଜାଣି ନଥିଲେ ବି, ତାଙ୍କ ନାଁ ଶୁଣିଥିଲି । ସାର୍ ଯେତେବେଳେ ଉତ୍କଳ ବିଶ୍ୱବିଦ୍ୟାଳୟ ଅଧୀନରେ ପିଏଚ୍‌ଡି କରୁଥିଲେ ସେତେବେଳେ ମୋ ଗାଇଡ୍ ପ୍ରଫେସର ଡକ୍ଟର କୃଷ୍ଣଚରଣ ସାହୁଙ୍କଠାରୁ ସାରଙ୍କ ବିଷୟରେ ଅଧିକ ଜାଣିବାର ସୁଯୋଗ ପାଇଲି । ମୁଁ ପିଏଚ୍‌ଡି ପାଇଲି ୧୯୮୪ ମସିହାରେ । ଥେସିସ୍‌ଟି ମାଗିଲି ସାରଙ୍କ ଠାରୁ ଶୁଣିଲି ଭୋଳିବାକୁ ନେଇଛନ୍ତି । ଡଃ ସାହୁ ଭୋଳିସାରଙ୍କ ସଂପର୍କରେ ମୋତେ ବହୁତ କଥା କହିଲେ । ଜଗତସିଂହପୁର ପାଇଁ ଭୋଳିସାର ବାସ୍ତବରେ ଗର୍ବ ଓ ଗୌରବ । ଏହା ସ୍ୱତନ୍ତ୍ର ଜିଲ୍ଲା ହେଲାପରେ ଜିଲ୍ଲାର ସଦର ମହକୁମାରେ ବହୁଧାର୍ମିକ ଓ ସାଂସ୍କୃତିକ କାର୍ଯ୍ୟକ୍ରମ କରାଯାଇଥାଏ । ଏହା ମୂଳରେ ଥାନ୍ତି ଭୋଳିସାର୍ । ଜଗତସିଂହପୁର ପୁସ୍ତକମେଳା ଅନୁଷ୍ଠିତ ହେବାରେ ସାରଙ୍କ୍ ଉଦ୍ୟମ ଓ ପ୍ରେରଣା କମ୍ ନୁହେଁ । ଜିଲ୍ଲା ଉତ୍ସବ ବହିଁ ଅନ୍ୟ ଏକ ସାଂସ୍କୃତିକ କାର୍ଯ୍ୟକ୍ରମ । "କଲ୍ଲୋଳ"ର ମୁଖପତ୍ର 'ଆଦିପତ୍ର' ସାର୍‌ଙ୍କ ସଂପାଦନାରେ ପ୍ରକାଶ ପାଏ । ଏହିପରି ଜିଲ୍ଲାର ବହୁ ସାହିତ୍ୟିକ ଅନୁଷ୍ଠାନ ସାରଙ୍କ୍ ପ୍ରେରଣାରେ ଗଢିଉଠିଛି ।

ମୁଁ ସଂସ୍କୃତ ବିଭାଗର ଛାତ୍ରଥିଲି । ପରବର୍ତ୍ତୀ ସମୟରେ ଘରୋଇ ଭାବେ ଓଡ଼ିଆ ଭାଷା ଓ ସାହିତ୍ୟରେ ଏମ୍.ଏ ପରୀକ୍ଷା ଦେଇ ପ୍ରଥମ ଶ୍ରେଣୀ ପାଇଲି ଏବଂ ୧୯୮୪ ମସିହାରେ ଏରଷ୍ଟ କଲେଜରେ ଓଡ଼ିଆ ବିଭାଗରେ ତୃତୀୟ ପଦବୀରେ ଯୋଗଦେଲି । ଲେଖାଲେଖୀ ମଧ୍ୟ ମୋର ଗୋଟିଏ ଅଭ୍ୟାସ । ସେତେବେଳେ ମୁଁ ପ୍ରାୟ ବହୁ ପତ୍ର ପତ୍ରିକାକୁ ପ୍ରକାଶ ପାଇଁ ପ୍ରବନ୍ଧ ପଠାଏ । ସାର୍ ମୋ ବିଷୟରେ ଗଦାଧର ମିଶ୍ର, ରାଜକିଶୋର ମିଶ୍ର ଓ ବ୍ରଜ ସୁନ୍ଦର ମିଶ୍ର ପ୍ରଭୃତିଙ୍କ ଠାରୁ ସନ୍ଧାନ ନେଲେ ଏବଂ ଜିଲ୍ଲା ଉତ୍ସବର ମୁଖପତ୍ର ଆଦିପତ୍ରରେ ଲେଖାଦେବା ପାଇଁ ବିଷୟ ନିର୍ବାଚନ କରି ଜିଲ୍ଲାପାଳଙ୍କ ଜରିଆରେ ପଠାଇଲେ । ସାର୍ ମୋତେ ଜାଣନ୍ତି ମୁଁ ଜଗତସିଂହପୁରର ଏକ ବିଶିଷ୍ଟ ମଠ (ବମ୍ଭିଲୋମଠ)ର ମୁଖ୍ୟ ସେବାଧୀଶ । ଏ ମଠକୁ ସାର୍ ଆଗରୁ ଆସିଥିଲେକି ନାଁ ଜାଣେନାହିଁ କିନ୍ତୁ ଜାଣିଥିଲେ ଏହି ମଠ ଗଦାଧର

ବାବୁ ଏବଂ ବ୍ରଜବାବୁ ପ୍ରଭୃତିଙ୍କର ଗୁରୁପୀଠ ଏବଂ ଓଡ଼ିଶାର ପ୍ରସିଦ୍ଧ ସାଧକ ପରମବୈଷ୍ଣବ ଆୟୁର୍ବେଦ ଓ ଜ୍ୟୋତିଷ ବିଶାରଦ ସ୍ୱର୍ଗତ ଗଣେଶ ମିଶ୍ର ମଧ୍ୟ ଏହି ମଠର ପ୍ରଥମ ଭକ୍ତ ।

ସାର୍ କେତେ ଯେ ସ୍ଥିତପ୍ରଜ୍ଞ ଏବଂ କାର୍ଯ୍ୟଦକ୍ଷ ତାହା ଜଗତସିଂହପୁର: ଅତୀତ ଓ ବର୍ତ୍ତମାନ ପୁସ୍ତକ ପ୍ରଭୃତି ସମୟରେ ମୁଁ ପ୍ରତ୍ୟକ୍ଷ ହେଲି । ମୋତେ ସେଥିରେ ଲେଖିବା ପାଇଁ ଜଗତସିଂହପୁର ଜିଲ୍ଲାର ମଠ ସଂସ୍କୃତି ଶୀର୍ଷକ ବିଷୟଟି ସାର୍ ଦେଲେ ଏବଂ ଅଧ୍ୟାପକ ନିରଞ୍ଜନ ବିଶ୍ୱାଳ ଓ ମୁଁ ବିଭିନ୍ନ ମଠକୁ ଯାଇ ତଥ୍ୟ ସଂଗ୍ରହକଲୁ । ସେଇ ଗୋଟିଏ କାମ କରିବାପାଇଁ ଆମ ଦୁହିଁଙ୍କୁ କେତେ କଷ୍ଟ ହୋଇଛି ତାହା ଅନୁଭବୀହିଁ କହିପାରିବ । ତେଣୁ ସାର୍ ଏତେ ବୟସରେ କେତେ କଷ୍ଟରେ ଏତେ ବଡ଼ କାମ କେମିତି କରିପାରିଲେ ସେ କଥା ଭାବିଲେ ମୋତେ ଆଶ୍ଚର୍ଯ୍ୟ ଲାଗେ । ସାର୍ ମୋତେ ବହୁତ ସ୍ନେହ କରନ୍ତି । ମୁଁ ମଧ୍ୟ ମଝିରେ ମଝିରେ ସାର୍‌ଙ୍କ ପାଖକୁ ଯାଇ ସାରଙ୍କ ସାରସ୍ୱତ ସାଧନାର ସନ୍ଧାନ ନିଏ । ଫୋନରେ ଅନେକ କଥା ହେଉଁ ଆମ ପାଇଁ ସାର୍ ପ୍ରେରଣାର ଉତ୍ସ । ତାଙ୍କ ବିନା ଜଗତସିଂହପୁର ପ୍ରତିଟି ସାଂସ୍କୃତିକ କାର୍ଯ୍ୟକ୍ରମ ଅଧୁରା ରହିବ । ସାର୍‌ଙ୍କ ସହିତ ଶ୍ରୀଯୁକ୍ତ ମହେନ୍ଦ୍ର କୁମାର ଆଗ୍ରର୍ଯ୍ୟ ଓ ଅଧ୍ୟାପକ ନିରଞ୍ଜନ ବିଶ୍ୱାଳ ସବୁ କାର୍ଯ୍ୟରେ ସହଯୋଗ କରି ଆସିଛନ୍ତି । ସାର୍‌ଙ୍କୁ ଏରଷ୍ଣ କଲେଜର ଓଡ଼ିଆ ସେମିନାର୍ ଓ ବାର୍ଷିକ ଉତ୍ସବରେ ଯୋଗଦେବାପାଇଁ ଯେତେବେଳେ ମୁଁ ଅନୁରୋଧ କରେ ସାର୍ ହସନ୍ତି ଏବଂ କୁହନ୍ତି 'ଶ୍ରୀଚରଣ ବାବୁ ! ଏହାତ ଆମର ନୈତିକ ଦାୟିତ୍ୱ । ଆମେ କରିବାନିତ ଆଉ କିଏ କରିବ ।' ସାର୍ ଭାଷଣ ଦେବାବେଳେ ଛାତି ଗର୍ବରେ ଫୁଲିଉଠେ । ଭଗବାନ ସାରଙ୍କୁ ଶତାୟୁ କରନ୍ତୁ ଏବଂ ଲେଖନୀ ତାଙ୍କ ହାତରେ ସେମିତି ଚଳଚଞ୍ଚଳ ଥାଉ । ଏଭଳି ପ୍ରତିଭା ଜଗତସିଂହପୁର ବିରଳ ନିଷ୍ଚୟ । ■

ବମ୍ବିଲୋ, ପୋ - ସାଇବୀର ବାସନ୍ଦରା, ଭା-ବିରିଡ଼ି ରୋଡ୍,
ଜି- ଜଗତସିଂହପୁର, ଫୋନ୍- ୯୯୩୮୪୭୬୩୫୩

# ମୋ' ଜୀବନ ପଛେ.....

ଉମାକାନ୍ତ ମହାନ୍ତି

ମୁଁ ତାଙ୍କର ଛାତ୍ର ନୁହେଁ, ସେ କିନ୍ତୁ ମୋର ଶିକ୍ଷାଦାତା; ମୁଁ ତାଙ୍କର ସହକର୍ମୀ ନୁହେଁ, କିନ୍ତୁ ଜଣେ ଅନ୍ତରଙ୍ଗ ସହକର୍ମୀ ହିସାବରେ ତାଙ୍କଠାରୁ ବହୁ ଅକୃତ୍ରିମ ସହାନୁଭୂତି ସହିତ ଉଚିତ୍ ଦିଗ୍‌ଦର୍ଶନ ପାଇ ଆସିଛି । ମୁଁ ତାଙ୍କର ବନ୍ଧୁବାନ୍ଧବ କିମ୍ବା ପରିବାରର କେହି ନୁହେଁ କିନ୍ତୁ ସେ ମୋତେ ତାଙ୍କର ଜଣେ ଆତ୍ମୀୟ ଭାବରେ ଧରିନେଇଛନ୍ତି ।

ତାଙ୍କ ସହିତ ଘନିଷ୍ଠତା ବଢ଼ିଯିବାପରେ ଥରେ ତାଙ୍କୁ ପଗ୍ଚରିଦେଲି- "ସାର୍ । ଆପଣଙ୍କର ତ ଧନ-ଜନ, ଗୋପ-ଲକ୍ଷ୍ମୀ, ମାନ-ସମ୍ମାନ, ସାମାଜିକ ସ୍ୱୀକୃତି ସାଗରର ଗଭୀରତା ଭଳି ଅମାପ ଆପଣଙ୍କ ପୁଅ ମାନେତ ସମାଜରେ ବେଶ୍ ପ୍ରତିଷ୍ଠିତ ଝିଅମାନଙ୍କୁ ଭଲଘର ବର ଦେଖି ଦେଇ ସାରିଛନ୍ତି- ଜ୍ୱାଇଁମାନେ ମଧ୍ୟ କେହି କାହାକୁ କମ୍ ନୁହନ୍ତି, ସମାଜକୁ ଯାହା ଦବାରକଥା ତା'ତ ଆପଣ ଦେଇ ସାରିଲେଣି, ଆପଣ ଏ ଦଦରା ଶରୀରଟାକୁ ବାଢ଼ିଲଗାଇ ଏଭଳି ଅସରନ୍ତି - ଅଛିଣ୍ଡା କାମରେ କାହିଁକି ମାତିଛନ୍ତି ? ହାତରୁ ଖାଇ ଘୋଡ଼ା ଆଗରେ କାହିଁକି ତେଉଁଛନ୍ତି ? ଜୀବନରେ କ'ଣ ପାଇ ନାହାଁନ୍ତି ଯେ ଆଉ କିଛି ପାଇବାକୁ ଆଶା ରଖିଛନ୍ତି ?

ପ୍ରକାଶ ଥାଉକି ସେତେବେଳକୁ ସେ ଉଦରପୀଡ଼ା-ପାଦଫୁଲା ଅଣ୍ଟାବିନ୍ଧା-ମଧୁମେହ-ନିଦ୍ରାହୀନତା-ଉଚ୍ଚ ରକ୍ତଚାପ-ହୃଦ୍‌ଯନ୍ତ୍ରଣା ଆଦି ସାନବଡ଼ ବହୁ ବ୍ୟାଧିରେ ଆକ୍ରାନ୍ତ ହୋଇ ପାଞ୍ଚ-ଛଅ ଥର ନର୍ସିଂହୋମ୍‌ରେ ଭର୍ତ୍ତିହୋଇ ସାରିଥାଆନ୍ତି । ଲକ୍ଷଲକ୍ଷ ଟଙ୍କାବି ଚିକିତ୍ସାରେ ଖର୍ଚ୍ଚ ହୋଇସାଇଥାଏ ।

ହସି ହସି ଉତ୍ତରରେ ମୋତେ କହିଲେ- "ସନ୍ଥକବି ଭୀମଭୋଇ କ'ଣ କହିଛନ୍ତି ଜାଣିଛ ? ମୋ ଜୀବନ ପଛେ.....

ସେଦିନର ଏଇ କଥା ପଦକରୁ, ତାଙ୍କ ଜୀବନ ଦର୍ଶନ କ'ଣ ସହଜରେ ସବୁ ବୁଝିଗଲି, ଆଉ କିଛି ବାକି ରହିଲା ନାହିଁ ।

ଉପରେ ସାଙ୍କେତିକ ଭାବେ ଯେଉଁ ଭଦ୍ରବ୍ୟକ୍ତିଙ୍କ କଥା କୁହାଗଲା, ସେ ହେଉଛନ୍ତି ମା' ଶାରଳା ଏବଂ ମାଟିର ମହାକବି ସାରଳାଦାସଙ୍କ ମହିମାରେ ମହକିତ ଜଗତସିଂହପୁର ମାଟିର ଅନ୍ୟତମ ବରେଣ୍ୟ ସାରସ୍ୱତ ସାଧକ, ଡଃ ଭୋଳାନାଥ ରାଉତ, ସଂକ୍ଷେପରେ

ଭୋଳିବାବୁ ।

ସେତେବେଳେକୁ ଗ୍ରାଲିଥାଏ ଏକାଧିକ ଖଣ୍ଡରେ ବିଭକ୍ତ ସରଳାଦେବୀଙ୍କ ଜୀବନୀ ଏବଂ ଜଗନ୍ନାଥ ମନ୍ଦିର ଉପରେ ହୋଇଥିବା ଅନ୍ୟୁନ ୧୭ଥର ବିଧର୍ମୀମାନଙ୍କ ଆକ୍ରମଣର ଇତିହାସ; ରକ୍ତବାହୁ କିଏ ଏବଂ ସେ କେବେ ଓ କାହିଁକି ଜଗନ୍ନାଥ ମନ୍ଦିର ଆକ୍ରମଣ କରିଥିଲା ଇତ୍ୟାଦି ସମ୍ବନ୍ଧରେ ବହୁ ଗବେଷଣାମୂଳକ ଲେଖା ।

ତାଙ୍କ ଭାଷାରେ- "ଏ ସମ୍ବନ୍ଧରେ ଓଡ଼ିଶାର ଐତିହାସିକମାନେତ କିଛି କରିଗଲେ ନାହିଁ, ମୁଁ ହେଲେ ଟିକିଏ ମୂଳଦୁଆ ପକାଇ ଯାଇଥାଏ.....

ଏହି ସଂକଳନଟିର ଢାଞ୍ଚାରେ ଅନ୍ୟ କେତେକ ଜିଲ୍ଲାରେ ଅନୁରୂପ ସଂକଳନ ଖଣ୍ଡିଏ ଖଣ୍ଡିଏ କରିବା ପାଇଁ କାମ ଆରମ୍ଭ ହୋଇଗଲାଣି ବୋଲି ଏବେ ଶୁଣିବାକୁ ମିଳିଲାଣି । ଏପରି ସଂକଳନ ଖଣ୍ଡିଏ ଆଗରୁ ନଥିଲା, କି ଭବିଷ୍ୟତରେ ହୋଇ ପାରିବ ଏ ବିଶ୍ୱାସ ନାହିଁ ।

ଡକ୍ଟର ରାଉତ ଯଦିଓ ଏହାର ମୁଖ୍ୟ ସଂକଳକ ଥିଲେ, ତେବେ ଏଥିରେ ସ୍ଥାନିତ ଅଧିକାଂଶ ପ୍ରବନ୍ଧର ସ୍ରଷ୍ଟା ହେଉଛନ୍ତି ସେ ନିଜେ । ଅନ୍ୟମାନଙ୍କ ଦ୍ୱାରା ଲିଖିତ ପ୍ରବନ୍ଧ ଗୁଡ଼ିକର ଭାଷା ଏବଂ ଉପସ୍ଥାପନା ଶୈଳୀ ତାଙ୍କ ମନୋନୀତ ନହେବାରୁ ସେ ନିଜେ ସେ ଗୁଡ଼ିକର ପୁନର୍ଲିଖନ କରିବାଟା ଉଚିତ୍ ମନେ କଲେ ।

ଏ ଖଣ୍ଡିକ ବ୍ୟତୀତ, ତାଙ୍କର ଭାରତୀୟ ସଂସ୍କୃତି ଉପରେ ଆଧାରିତ ଆଉ ଖଣ୍ଡିଏ ଉଚ୍ଚକୋଟୀରେ ଗବେଷଣାମୂଳକ ରଚନା ରହିଛି ଯାହାକି ଭାରତୀୟ ସଂସ୍କୃତିର ଇତିହାସ ଉପରେ ଗବେଷଣା କରୁଥିବା ଗବେଷକମାନଙ୍କୁ ଯଥେଷ୍ଟ ଦିଗ୍‌ଦର୍ଶନ ଦେଇପାରୁଛି ।

ତେବେ କେବଳ ଜଗତସିଂହପୁର ଅତୀତ ଓ ବର୍ତ୍ତମାନ ଗ୍ରନ୍ଥ ଖଣ୍ଡିକ ପାଇଁ ତାଙ୍କ ନାଁ ଉତ୍କଳର ସାରସ୍ୱତ ଇତିହାସରେ ସୁନା ଅକ୍ଷରରେ ଲେଖାହୋଇ ରହିଗଲାଣି । ତାଙ୍କର ଅନ୍ୟ ରଚନା ଗୁଡ଼ିକର ବ୍ୟାଖା କରିବାର ଆଉ କୌଣସି ଆବଶ୍ୟକତା ନାହିଁ ।

ଏହି ସଂକଳନର ସଂପୂର୍ଣ୍ଣସେଟ୍ ଗୋଟିଏ ଗୋଟିଏ ଏବେ ଜଗତସିଂହପୁର ଜିଲ୍ଲାର ବିଭିନ୍ନ ସ୍କୁଲ୍, କଲେଜ, ପାଠାଗାର ଇତ୍ୟାଦିରେ ରହିଗଲାଣି ଯାହାକି ଛାତ୍ର ଅଧ୍ୟାପକ ଏବଂ ଗବେଷକମାନଙ୍କ ପାଇଁ ଏକ ପ୍ରାମାଣିକ ଗ୍ରନ୍ଥ ହିସାବରେ ବିବେଚିତ ହୋଇ ଆସୁଛି । ଏଥିରେ ସ୍ଥାନିତ କେତେକ ମୌଳିକ ତଥ୍ୟକୁ ଉପଜୀବ୍ୟ କରି କେତେକ ଗବେଷକ ପି.ଏଚ.ଡି. କରିବା ପାଇଁ ଆଗେଇ ଆସିଲେଣି । ଜଗତସିଂହପୁର ଜିଲ୍ଲାରେ ଏପରି କୌଣସି ସାହିତ୍ୟ କିମ୍ବା ସାଂସ୍କୃତିକ ଅନୁଷ୍ଠାନ ନାହିଁ ଯାହାକି ତାଙ୍କ ଦୃଷ୍ଟିର ଅନ୍ତରାଳରେ ରହିଯାଇଛି । ଯିଏ ଯେତେବେଳେ ଯେଉଁଠିକୁ ସଭାପତି, ମୁଖ୍ୟଅତିଥି କି ମୁଖ୍ୟବକ୍ତା ହିସାବରେ ଡାକିଛନ୍ତି, ସେ କାହାକୁ ନିରାଶ କରିନାହାନ୍ତି । କୌଣସି ଗାଡ଼ି ଘୋଡ଼ା ବ୍ୟବସ୍ଥା କରିବା ପାଇଁ ଅନୁଷ୍ଠାନ

ଉପରେ ଆର୍ଥିକ ଗୃପ ନ ଦେଇ ଶ୍ରୀଯୁକ୍ତ ମହେନ୍ଦ୍ର ଆଗ୍ରୱାଲ୍ଙ୍କ ସ୍କୁଟର ପଛରେ ମୁଣ୍ଡରେ ଖଣ୍ଡିଏ ଗାମୁଛା ପକାଇ ବସିପଡ଼ି ଯଥାସମୟରେ ପହଞ୍ଚିଯାଇଛନ୍ତି । ପଳାଶୋଳ, ତରିକୁନ୍ଦ, ଗୋଠିଣା, ଅଢଙ୍ଗ, ନାଇଲୋ, ଜୟଶୋଳ, ସାତପୁରା, କେଉଁ ଜାଗାକୁ ସେ ନ ଯାଇଛନ୍ତି, ଏପରି ନୁହେଁ । କେବଳ ଯେ ଯାଇଛନ୍ତି ସେକଥା ନୁହେଁ, ଅନୁଷ୍ଠାନଟିକୁ ଆହୁରି ଆଗକୁ ଆଗକୁ ଆଗେଇ ନବା ପାଇଁ ବହୁ ଉପଦେଶ ଦେଇଛନ୍ତି ମଧ୍ୟ ।

ଏଇ ଗତ କାଲିର କଥା- ଗୁଣଚିହ୍ନେ ଗୁଣିଆ; ନ୍ୟାୟରେ ଜଗତସିଂହପୁର ମାଟିର ବିଶିଷ୍ଟ ସାରସ୍ୱତ ବ୍ୟକ୍ତିତ୍ୱ ପଦ୍ମଶ୍ରୀ ପ୍ରତିଭା ରାୟ ଏବଂ ଶ୍ରୀଯୁକ୍ତ ହରପ୍ରସାଦ ଦାସଙ୍କୁ ତାଙ୍କ ନିଜ ଜନ୍ମମାଟିରେ ସମ୍ବର୍ଦ୍ଧନା ଦେବାର ଝୁଙ୍କ୍ ତାଙ୍କ ମୁଣ୍ଡରେ ପଶିଗଲା । ସେଥିରେ ସେ ପୁରାଦମ୍‌ରେ ମାତିଗଲେ ମଧ୍ୟ ।

ହାତରୁ ହଜାର ହଜାର ଟଙ୍କା ଖର୍ଚ୍ଚ କରି ପ୍ରତିଭାରାୟଙ୍କ ସଂକ୍ଷିପ୍ତ ଜୀବନୀ ଖଣ୍ଡିଏ ସହିତ ତାଙ୍କ ସୃଷ୍ଟିସମ୍ଭାରର ଏକ ସମୀକ୍ଷା ଗ୍ରନ୍ଥ ମାତ୍ର କେଇଟା ଦିନ ମଧ୍ୟରେ ପ୍ରସ୍ତୁତ କରିଦେଲେ ।

ଗ୍ରନ୍ଥ ଖଣ୍ଡିକ ସହିତ ସେଦିନ ବିଶିଷ୍ଟ କବି ସୀତାକାନ୍ତ ମହାପାତ୍ରଙ୍କ ସଭାପତିତ୍ୱରେ ଏକ ଅଭୂତ ପୂର୍ବ ସମ୍ବର୍ଦ୍ଧନା ସଭାର ଆୟୋଜନ କରାଇ ପାରିଥିଲେ ।

ସମ୍ବର୍ଦ୍ଧନା ଶେଷରେ ସରୁ ଉଷୁନା ଚାଉଳ ଭାତ, ପୁରୁଣା ମୁଗର ଡାଲି, ବାଇଗଣ ଭର୍ତ୍ତା, ବଡ଼ିଚୁରା, ଶାଗ, ଶୋରିଷବାଟଣର ରାଇ ଇତ୍ୟାଦି ଖାଣ୍ଟି ଓଡ଼ିଆ ଘର ଖାଦ୍ୟ ସମୂହ ପ୍ରସ୍ତୁତ କରାଇ ଶତାଧିକ ବ୍ୟକ୍ତିଙ୍କୁ ଆପ୍ୟାୟିତ ମଧ୍ୟ କରାଇଥିଲେ । ସେଦିନର ଏ ସମସ୍ତ କାର୍ଯ୍ୟ ମାଧ୍ୟମରେ ସେ ଯେଉଁ ନିଛକ । ଓଡ଼ିଆମୀର ପରାକାଷ୍ଠା ଦେଖାଇଲେ, ତାହା ଜଗତସିଂହପୁର ମା' ଓ ମାଟି ପ୍ରତିଥିବା ତାଙ୍କର ଗଭୀର ମମତାର ନିଦର୍ଶନ ହିଁ ଥିଲା । ଜଗତସିଂହପୁର ମାଟିରେ ଆଉ କ'ଣ କେହି ପୁଅ ଏ କାମ କରିବାକୁ ନଥିଲେ ? ଶ୍ରୀମା ଓ ଶ୍ରୀ ଅରବିନ୍ଦଙ୍କ ଦାର୍ଶନିକ ଚିନ୍ତାଧାରାକୁ କେବଳ ସେ ନିଜେ ଯେ ଜୀବନ ଚଲାପଥରେ ପାଥେୟ ହିସାବରେ ଗ୍ରହଣ କରିନେଇଛନ୍ତି ସେ କଥା ନୁହେଁ, ତାର ପ୍ରଚାର ପ୍ରସାରରେ ମଧ୍ୟ ବ୍ରତୀହୋଇ ଅନ୍ୟମାନଙ୍କୁ ସେ ଦର୍ଶନର ମହତ୍ତ୍ୱ ଜଣାଇବାରେ କେବେବି କାର୍ପଣ୍ୟ ପ୍ରକାଶ କରି ନାହାଁନ୍ତି ।

ତାଙ୍କରି ପ୍ରରୋଚନାରେ ଏବଂ ବରିଷ୍ଠ ଲେଖକ ତଥା ଶିକ୍ଷାବିତ୍ ଶ୍ରୀଯୁକ୍ତ ମହେନ୍ଦ୍ର କୁମାର ଆଗ୍ରୱାଲ୍ଙ୍କ ସଂପାଦନାରେ ଗୋଠିଣାର ସ୍ୱର୍ଗତ ରାମଚନ୍ଦ୍ର ସ୍ୱାଇଁ (ଗୋଠିଣାରାମା)ଙ୍କର ପ୍ରାୟ ଅବଲୁପ୍ତ ରଚନା ବଳୀର କିୟଦଂଶ ପୁନରୁଦ୍ଧାର କରାଯାଇ ଗ୍ରନ୍ଥାବଳୀ ଆକାରରେ ଆଜି ପ୍ରକାଶିତ ହୋଇଯାଇଛି ଯାହାକି ଓଡ଼ିଆ ସାହିତ୍ୟ ଏକାଡେମୀ ଆନୁକୂଲ୍ୟରେ ରାଜାରାମ ମୋହନରାୟ ପାଠାଗାର ଯୋଜନା ମାଧମ୍ୟରେ ଓଡ଼ିଶାର ଅନ୍ୟୁନ ୩୦୦ ପାଠାଗାରକୁ

ଯୋଗାଇ ଦିଆଯାଇ ପାରିଛି । ଗୋଠିଣାରାମା ଭଳି ଜଣେ ଲୋକପ୍ରିୟ ଗଣ ନାଟ୍ୟକାର ସବୁଦିନ ପାଇଁ ବିସ୍ମୃତିର ଅତଳ ଗର୍ଭକୁ ଗ୍ଳାନିଯାଇ ପୁନର୍ବାର ଲୋକ ଲୋଚନକୁ ଆସି ପାରିଛନ୍ତି, କେବଳ ତାଙ୍କର ପ୍ରେରଣାକୁ ପୁଞ୍ଜିକରି ।

ଜଗତସିଂହପୁର ଜିଲ୍ଲା ସାଂସ୍କୃତିକ ପରିଷଦ ଆନୁକୂଲ୍ୟରେ ଆୟୋଜିତ ବାର୍ଷିକ ପୁସ୍ତକ ମେଳା ଏବଂ ଜିଲ୍ଲାଉତ୍ସବ ଭଳି ଭବ୍ୟ ସାଂସ୍କୃତିକ ସମାରୋହ 'କଲ୍ଲୋଳ'ର ଜଣେ ପ୍ରତିଷ୍ଠାତା ଦିଗ୍‌ଦର୍ଶକ ହିସାବରେ ଏଯାବତ୍ କାର୍ଯ୍ୟ କରିଆସିଛନ୍ତି । ଏହି ଉପଲକ୍ଷେ ନିୟମିତ ଭାବେ ପ୍ରକାଶ ପାଇ ଆସୁଥିବା ମୁଖପତ୍ର "ଆଦିପତ୍ର"ଟିରେ ଯେଉଁମାନେ ଆଖିପକାଇଛନ୍ତି ସେମାନେ ନିଷ୍ଚିତଭାବେ ଡଃ ରାଉତଙ୍କର କଲମ କେତେ ଶକ୍ତିଶାଳୀ ଏବଂ ତାଙ୍କ ସଂପାଦନା ଶୈଳୀ କେତେ ଉଚ୍ଚକୋଟୀର ସେ କଥା ସ୍ୱୀକାର କରିବାକୁ ବାଧ୍ୟ ହୋଇଛନ୍ତି । ତାଙ୍କ ପ୍ରତି ମା' ଶାରଳାଙ୍କ ଆଶୀର୍ବାଦ ନଥିଲେ ଏସବୁ କ'ଣ ସମ୍ଭବପର ହୋଇପାରନ୍ତା ।

ଡକ୍ଟର ରାଉତଙ୍କୁ କେବଳ ସାହିତ୍ୟ ସଂସ୍କୃତି ମଧ୍ୟରେ ବାନ୍ଧିରଖିଲେ ତାଙ୍କ ପ୍ରତିଭାର ଉଚିତ ମୂଲ୍ୟାୟନ ହୋଇ ପାରିବନାହିଁ । ତାଙ୍କର ମଧ୍ୟ ଥିଲା ଅସାଧାରଣ ସାଂଗଠିକ ଦକ୍ଷତା । ଅଧ୍ୟାପକ ସ୍ୱର୍ଗତ ଅବନୀ ବରାଳ ଏବଂ ଅନ୍ୟ କେତେକଙ୍କ ସହମିଶି ସେ ବେସରକାରୀ କଲେଜ ଅଧ୍ୟାପକବର୍ଗଙ୍କ ଚାକିରି ସର୍ତ୍ତାବଳି ସହିତ ବେତନ-ଭତ୍ତା ଇତ୍ୟାଦି ବିଷୟରେ ସବୁଦିନ ପାଇଁ ଏକ ସମ୍ମାନ ଜନକ ସମାଧାନ କରାଇ ପାରିଥିଲେ । ମୋର ତାଙ୍କ ସହ ବିଶେଷ ଆନ୍ତରିକତା ଗଡ଼ିଉଠିଲା ଯେତେବେଳେ 'ଜଗତସିଂହପୁର: ଅତୀତ ଓ ବର୍ତ୍ତମାନ' ଗ୍ରନ୍ଥର ସଂକଳନରେ ସହଯୋଗ କରିବା ପାଇଁ ମୁଁ ତାଙ୍କ ଠାରୁ ନିର୍ଦ୍ଦେଶ ପାଇଲି । ସେଦିନର ସେହି ନିର୍ଦ୍ଦେଶକୁ ଶିରୋଧାର୍ଯ୍ୟ କରି ସେତୁବନ୍ଧ ପ୍ରତିଷ୍ଠାରେ କ୍ଷୁଦ୍ର ଗୁଣ୍ଡୁଚିମୂଷାଟି ଟିକିଏ ବାଲିଝାଡ଼ି ଦେବାପରି ମୁଁ ସାମାନ୍ୟ କିଛି ସାହାଯ୍ୟ କରିଛି । ଗ୍ରନ୍ଥଟିର ସଂପାଦନା ମଣ୍ଡଳୀର ପ୍ରତ୍ୟକ୍ଷ ସଂପର୍କରେ ଆସି କଲମ ଘଷ ସମ୍ବନ୍ଧରେ ମୁଁ କିଛି ଶିକ୍ଷା କରିଛି । ଏହା ସେ ଆନ୍ତରିକ ଭାବେ ଇଚ୍ଛା କରିଥିଲେ । ମୁଁ କେତେବା ତାଙ୍କ ବିଷୟରେ କହିବି ? ମୁଁ ତାଙ୍କ ଠାରେ ବ୍ୟକ୍ତିଗତଭାବେ ଗଭୀର ଭାବେ ଋଣୀ ।

ମୋର ଆମେରିକା ଭ୍ରମଣ କାହାଣୀ- 'ମୋ' ସ୍ୱପ୍ନ କାହାଣୀର ଦେଶ ପୁସ୍ତକ ଖଣ୍ଡିକର ମୁଖବନ୍ଧ ସେ ଯେଭଳି ଭାବେ ଲେଖିଦେଇ ମତେ ଉତ୍ସାହିତ କରିଛନ୍ତି । ପ୍ରତିଦାନରେ ତାଙ୍କୁ ଆଉତ କିଛି ଦେଇ ପାରିନାହିଁ, କେବଳ ମୋ' ଦ୍ୱାରାଲିଖିତ 'ଇତିହାସର କବରତଳୁ' ପୁସ୍ତକ ଖଣ୍ଡିକ ତାଙ୍କୁ ସାଦର ଉତ୍ସର୍ଗ କରି ମୁଁ ଯତ୍‌ସାମାନ୍ୟ ଭାବେ ଋଣ ପରିଶୋଧ କରିପାରିଛି ବୋଲି ଆଜି ଆତ୍ମତୃପ୍ତି ଲାଭ କରୁଛି । ■

ସା/ପୋ-ମଣ୍ଡାସାହି, ଜଗତସିଂହପୁର, ପିନ୍- ୭୫୪୧୧୪

# ଜ୍ୟେଷ୍ଠାୟ ନମଃ ଶ୍ରେଷ୍ଠାୟ ନମଃ

ନିରଞ୍ଜନ ପଣ୍ଡା

ଆର୍ଯ୍ୟ ସଂସ୍କୃତି ପରଂପରା ଚିରକାଳ ଜ୍ୟେଷ୍ଠମାନଙ୍କୁ, ଶ୍ରେଷ୍ଠମାନଙ୍କୁ ଉଚ୍ଚ ମର୍ଯ୍ୟାଦା ଓ ଯଥୋଚିତ ସମ୍ମାନ ପ୍ରଦର୍ଶନ କରିବାରେ କେବେ କୁଣ୍ଠା ପ୍ରକାଶ କରିନାହିଁ ବରଂ ଏକ ସୁସ୍ଥ ସମାଜ ଓ ଶିକ୍ଷିତ ବର୍ଗ ମଧ୍ୟରେ ଏହି ବ୍ୟବସ୍ଥା ବେଶ୍ ଆଦୃତ ଓ ଗ୍ରହଣୀୟ ହୋଇ ପାରିଛି । ଏହି ପରିପ୍ରେକ୍ଷୀରେ ଜଗତସିଂହପୁର ଜଣେ ସୁପରିଚିତ କୃତୀ ସଂପନ୍ନ, ଶିକ୍ଷାବିତ୍, ସାହିତ୍ୟିକ, ଅଧ୍ୟାପକ, ଅଧ୍ୟକ୍ଷ ଶିକ୍ଷକନେତା ତଥା ସୁଖ ଦୁଃଖର ସାଥୀ ଅବସରପ୍ରାପ୍ତ ପ୍ରାଧ୍ୟାପକ ଭୋଳାନାଥ ରାଉତ । ୭୮ତମ ଜନ୍ମବାର୍ଷିକରେ ତାଙ୍କ ଶ୍ରଦ୍ଧାଳୁ ଓ ଆତ୍ମୀୟମାନଙ୍କ ଦ୍ୱାରା ପ୍ରତିପାଳିତ ହେଉଥିବା ଏକ ଆନନ୍ଦ ଓ ପ୍ରେରଣାର ବିଷୟ । ବିଶିଷ୍ଟ ଦାର୍ଶନିକ କାର୍ଲସାହ ଏକଦା କହିଥିଲେ A Man is great not because what he has, but because what he is ଯଦି କେବେ କେହି ସାର୍ଙ୍କ ଜୀବନର ଉପଯୁକ୍ତ ମୂଲ୍ୟାୟନ କରେ ତେବେ ସିଏ ହିଁ ବୁଝିବ କାର୍ଲସାହଙ୍କ ଏହି ଉକ୍ତି କେତେ ଯଥାର୍ଥ । ଅନେକ ସୁଗୁଣ ସଂପନ୍ନ ମାର୍ଜିତ ରୁଚିର କମ୍ କଥା କହୁଥିବା ଜଣେ ମଣିଷ ସିଏ । ଗୀତାର ମହାନ୍ ବାଣୀ "କର୍ମେଣ ବାଧିକାରେସ୍ତୁ ମା ଫଳେସୁ କଦାଚନ" । ତାଙ୍କ ଜୀବନର ଆଦର୍ଶ ଭାବରେ ସେ ଗ୍ରହଣ କରିଥିବା ମନେହୁଏ ।

ସ୍ୱାଧୀନତା ପରେ ଓଡ଼ିଶାର ୧୦୬ଟି ହାଇସ୍କୁଲ ଓ ୧୨ଟି ମହାବିଦ୍ୟାଳୟ ଓ ଗୋଟିଏ ବିଶ୍ୱ ବିଦ୍ୟାଳୟ ଥିଲା । ୧୦୬ଟି ହାଇସ୍କୁଲରେ ପଢୁଥିଲେ ପ୍ରାୟ ୧୫ ହଜାର ଛାତ୍ର ଓ ୧୨ଟି କଲେଜରେ ଥିଲେ ୪ହଜାର ପିଲା । ୧୯୫୪ମସିହାରେ ଓଡ଼ିଶାର ଲୋକସଂଖ୍ୟା ଥିଲା ଦେଢକୋଟି ଏମାନଙ୍କ ମଧ୍ୟରେ ଇଂରାଜୀ ଜାଣିଥିଲେ ମାତ୍ର ୧୦ହଜାର ଲୋକ । ସ୍ୱାଧୀନତା ପରେ ଶିକ୍ଷାର ପ୍ରସାର ଘଟିଥିଲା ଜଗତସିଂହପୁର ଠାରେ ୧୯୬୨ମସିହାରେ କେତେଜଣ ଶିକ୍ଷାପ୍ରେମୀ ମହତବ୍ୟକ୍ତି ମାନଙ୍କ ସାଧୁ ଉଦ୍ୟମରେ ଗଢିଉଠିଲା ସ୍ୱାମୀ ବିବେକାନନ୍ଦ ସ୍ମାରକୀ ମହାବିଦ୍ୟାଳୟ । ତତ୍କାଳୀନ ଅବସର ପ୍ରାପ୍ତ ପୋଲିସ୍ ସୁପରିଟେଣ୍ଡେଣ୍ଟ ସ୍ୱର୍ଗତ ଶ୍ରୀପତି ନନ୍ଦ ଥାଆନ୍ତି ସଂପାଦକ ଓ ଜଗତସିଂହପୁର ଜିଲ୍ଲାର ଅନ୍ୟତମ ମହାନ ବ୍ୟକ୍ତିତ୍ୱ ସ୍ୱର୍ଗତ ବୀରେନ୍ ମିତ୍ର ସଭାପତି ଦାୟିତ୍ୱ ଗ୍ରହଣ କରିଥାଆନ୍ତି । ଗୁଣ ଚିହ୍ନେ ଗୁଣିଆ ସୁନା

ଚିହ୍ନେ ବଣିଆ ବାସ୍ତବରେ ସେତେବେଳେ ଉଚ୍ଚଶିକ୍ଷିତ କର୍ମୀଙ୍କ ସଂଖ୍ୟା ଯଥେଷ୍ଟ କମ ଥିଲେ ଓ କଲେଜରେ ଯେଉଁ ଅଳ୍ପ କେତେଜଣ ତରୁଣ ସଦ୍ୟ ସ୍ନାତକୋତ୍ତର ଡିଗ୍ରୀଧାରୀ ଯୁବକ ଅଧ୍ୟାପକ ଭାବରେ ଯୋଗଦେଇଥିଲେ ସେମାନେ ସମସ୍ତେ ଥିଲେ ଜଣେ ଜଣେ ସଂକଳ୍ପବଦ୍ଧ ସାଧକ । ସେମାନଙ୍କ ମଧ୍ୟରେ ମୁଖ୍ୟ ଥିଲେ ଇଂରାଜୀ ବିଭାଗର ମୁଖ୍ୟ ସ୍ୱର୍ଗତ ଗଦାଧର ମିଶ୍ର, ଓଡ଼ିଆ ବିଭାଗରେ ମୁଖ୍ୟ ଅଧ୍ୟାପକ ଡ. ଭୋଳାନାଥ ରାଉତ, ଇତିହାସ ବିଭାଗର ମୁଖ୍ୟ ଅଧ୍ୟାପକ ଶୁକଦେବ ପାଣି, ରାଜନୀତି ବିଜ୍ଞାନର ମୁଖ୍ୟ ଅଧ୍ୟାପକ ଧ୍ରୁବଚରଣ ନାୟକ ପ୍ରଭୃତି । ଅଧ୍ୟାପକ ସ୍ୱର୍ଗତ ଉପେନ୍ଦ୍ର ପଣ୍ଡା ଅଧ୍ୟକ୍ଷ ଭାବରେ ଯୋଗଦେଇ କାର୍ଯ୍ୟ କରୁଥାଆନ୍ତି । ଏମାନଙ୍କ ବ୍ୟତୀତ ବିଜ୍ଞାନ ବିଭାଗରେ ଅଳ୍ପ କେତେଜଣ ଅଧ୍ୟାପକ ଯୋଗଦେଇଥାଆନ୍ତି । କଲେଜ ନିର୍ମାଣ ଓ ଏହାର ଉନ୍ନତି ନିମନ୍ତେ ଯେଉଁ କେତେଜଣ ବିଶେଷ ଭାବରେ ଆଗୁଆ ଥାଆନ୍ତି ସେମାନଙ୍କ ମଧ୍ୟରୁ ଅଧ୍ୟାପକ ରାଉତ ଅନ୍ୟତମ । ଅଧିକାଂଶ କାର୍ଯ୍ୟ ଓ ଦାୟିତ୍ୱ ତୁଲାଇବାରେ ସେ ମୁଖ୍ୟ ଭୂମିକାରେ ଥାଆନ୍ତି । ଶୁଭ୍ରଧଳା ପ୍ୟାଣ୍ଟ୍ ଓ ଧଳା ସାର୍ଟ ପିନ୍ଧିବା ତାଙ୍କର ପ୍ରାୟ ସଉକ ଥିଲା । ପାଠପଢାରେ ଶବ୍ଦ ସଂଯୋଜନ ଶକ୍ତି ଶୁଦ୍ଧ ଓ ସୁନ୍ଦର ଭାବରେ ଉଚ୍ଚାରଣ ସହିତ ଅଧ୍ୟାପନାର ଶୈଳୀ ଥିଲା ଅତ୍ୟନ୍ତ ପ୍ରଶଂସନୀୟ ଓ ଉଚ୍ଚକୋଟୀର । ଜର୍ଜ ବର୍ଣ୍ଣାଡ ଶ ଏକଦା ଶିକ୍ଷକ ସମ୍ବନ୍ଧରେ ଟିପଣୀ ଦେଇ କହିଥିଲେ "The best of us become teachers and rest can go where ever they want to" ବାସ୍ତବରେ ଯୋଗ୍ୟ ଅଧ୍ୟାପକମାନଙ୍କ ଯୋଗଦାନରେ ଶିକ୍ଷା କ୍ଷେତ୍ରରେ ଜଗତସିଂହପୁର କଲେଜ୍‌ର ସୁନାମ ଯଥେଷ୍ଟ ଉଚ୍ଚରେ ଥିଲା ସେତେବେଳେ ।

ମନେପଡ଼େ ୧୯୬୪-୬୫ ମସିହାରେ ଓଡ଼ିଶା ଇତିହାସର ଘଟଣା ବହୁଳ ଛାତ୍ର ଆନ୍ଦୋଳନର ବହୁଚର୍ଚ୍ଚିତ ଅଧ୍ୟାୟର କଥା । ସାମାନ୍ୟ ଏକ ରେଡ଼ିଓକୁ ନେଇ ବଚସାରୁ ଆରମ୍ଭ ହୋଇଥିବା ଏହି ଆନ୍ଦୋଳନ ସ୍ୱଳ୍ପ ସମୟ ମଧ୍ୟରେ ଉଗ୍ର ରୂପ ନେଇ ସମଗ୍ର ରାଜ୍ୟରେ ବ୍ୟାପିଗଲା । ସ୍କୁଲ୍ କଲେଜ ସବୁ ବନ୍ଦ ହୋଇଥିଲା । ରାଜ୍ୟ ସରକାର ବିରୋଧୀ ଏହି ଆନ୍ଦୋଳନ ପ୍ରତି ଓଡ଼ିଶାର ଶ୍ରମିକ, ବୁଦ୍ଧିଜୀବୀ, ଲେଖକ ଓ ଓଡ଼ିଶାର ତିନି ସମ୍ବାଦପତ୍ର ସମାଜ, ପ୍ରଜାତନ୍ତ୍ର ଓ ମାତୃଭୂମିର ପୂର୍ଣ୍ଣ ସମର୍ଥନ ଫଳରେ ଓଡ଼ିଶାର ଏକ ଗଣ ବିଦ୍ରୋହ ସୃଷ୍ଟି ହେବାପରି ପରିଲକ୍ଷିତ ହେଲା । ସାର୍ କଲେଜରେ ଜଣେ ଅଧ୍ୟାପକ ଭାବରେ, ଜଣେ ବୃଦ୍ଧିଜୀବୀ ଭାବରେ ଛାତ୍ରମାନଙ୍କୁ ଶାନ୍ତ ଓ ସ୍ୱାଭାବିକ ହେବାପାଇଁ ମୂଲ୍ୟବାନ ଉପଦେଶ ପ୍ରଦାନ କରିବାରେ ଅବହେଳା କରିନଥିଲେ । ସେ ବୁଝିଥିଲେ Teacher is a social leader ପରେ ଏହି ଛାତ୍ର ଆନ୍ଦୋଳନର ପ୍ରଭାବରେ ଓଡ଼ିଶାର ଜନଜୀବନଙ୍କୁ ପ୍ରଭାବିତ ହେଲା ଓ ନିର୍ବାଚନରେ

କଂଗ୍ରେସ ଦଳର ପରାଜୟ (ବିଜୁପଟ୍ଟନାୟକ ସରକାର) ହେଲା ଓ ସ୍ୱତନ୍ତ୍ର ଜନକଂଗ୍ରେସ ଦଳର ପାଟନା ମହାରାଜ ସ୍ୱର୍ଗତ ରାଜେନ୍ଦ୍ର ନାରାୟଣ ସିଂହଦେଓଙ୍କ ନେତୃତ୍ୱରେ ସରକାର ଗଠନ ହେଲା । ବିଶିଷ୍ଟ ଜନନେତା ଢେଙ୍କାନାଳ ପ୍ରଜା ଆନ୍ଦୋଳନର ଅନ୍ୟତମ ସାରଥୀ ସ୍ୱାଧୀନତା ସଂଗ୍ରାମୀ ପବିତ୍ର ମୋହନ ପ୍ରଧାନ ଉପମୁଖ୍ୟ ମନ୍ତ୍ରୀ ପଦ ଗ୍ରହଣ କରିଥିଲେ ।

Some are born great, Some as achieves greatness and have greatness thurst open. ସେହି ନ୍ୟାୟରେ ନ୍ୟାୟ ପାଇଁ ସଂଗ୍ରାମ କରିବା ନ୍ୟାୟୋଚିତ କାର୍ଯ୍ୟକରିବା, ସ୍ୱାର୍ଥହୀନ ସମାଜ ଗଠନ କରିବାର ଆଦର୍ଶ ତାଙ୍କ ରକ୍ତ କଣିକାରେ ଚିର ପ୍ରବାହିତ । ଓଡ଼ିଶାର ଶିକ୍ଷା ଓ ଶିକ୍ଷକର ବିକାଶ ପାଇଁ ଶିକ୍ଷାର କାର୍ଯ୍ୟ ଦାବି ପାଇଁ ନିଖିଳ ଉତ୍କଳ ଶିକ୍ଷକ ମହାସଂଘ ଗଠନ ହେବାପରେ ସେ ଅତ୍ୟନ୍ତ ଆନନ୍ଦ ଓ ଆଗ୍ରହରେ ସେଥିରେ ସାମିଲ୍ ହୋଇ ଜଣେ ଆଗ ଧାଡ଼ିର ନେତା ପାଲଟିଯାଇଥିଲେ । ପ୍ରତିଟି ସମୟରେ ପ୍ରତିଟି ଘଟଣାରେ ଶିକ୍ଷାଦାନର ସ୍ୱାର୍ଥ ପତି ସେ ସଜାଗ ଥିଲେ ଓ ଆବଶ୍ୟକ ହେଲେ ସ୍ୱର ଉତ୍ତୋଳନ କରିବାରେ କେବେ ଦ୍ୱିଧା ପ୍ରକାଶ କରୁନଥିଲେ । ଶିକ୍ଷକ ଜାତିର ମଉଡ଼ମଣି ଶିକ୍ଷକ ନେତା ଓଡ଼ିଆ ଶିକ୍ଷକ ଆନ୍ଦୋଳନର କର୍ଣ୍ଣଧାର ସ୍ୱର୍ଗତ ଅବନୀ ବରାଳଙ୍କ ସହିତ ତାଙ୍କର ଅନ୍ତରଙ୍ଗ ବନ୍ଧୁତା ଥିଲା । ଅବନୀ ବରାଳଙ୍କ ଦେହାନ୍ତ ଖବରରେ ତାଙ୍କ ନୟନରୁ ଅଶ୍ରୁଝରି ପଡ଼ିଥିଲା ଓ କ୍ଷଣକାଳ ସେ ବାକ୍‌ରୁଦ୍ଧ ହୋଇ ଯାଇଥିଲେ । ୧୯୭୮ ମାର୍ଚ୍ଚ ୯ତାରିଖରେ ଶିକ୍ଷକ ମହାସଂଘ ଆହ୍ୱାନରେ ଭୁବନେଶ୍ୱରରେ ବିଧାନ ସଭା ଘେରାଉ ପାଇଁ ନୟାଗଡ଼ରୁ ବସ୍‌ରେ ଆସୁଥିବା ବାଟରେ ଦୁର୍ଘଟଣାର ସମ୍ମୁଖୀନ ହୋଇ ଭଉଣୀ ତରୁ, ଶାନ୍ତି ଓ ବିଳାସିନୀ ସାଥୀ, ବ୍ରଜ ବାନାମ୍ବର ଓ କାହ୍ନୁ ସବୁଦିନ ପାଇଁ ଆଖିବୁଜି ଦେଇଥିଲେ । ସେଦିନର ସେହି ଘଟଣାର ସମ୍ବାଦରେ ସାର୍ ଅତ୍ୟନ୍ତ ଭାବ ବିହ୍ୱଳ ହୋଇପଡ଼ିବା ସହିତ ନୟନରୁ ବୋହି ପଡ଼ିଥିବା ଅଶ୍ରୁଧାର ଯିଏ ଦେଖିଛି ସିଏ ବୁଝୁଛି କେତେ ଦରଦୀ ହୃଦୟର ମଣିଷ ସିଏ ଓ କେତେ କୋମଳ ତାଙ୍କ ମନର ଭାବ ।

Live like a hermit & work like a horse ସାଧୁପରି ଜୀବନ କାଟିବା ଓ ଜୀବନ ଯୁଦ୍ଧରେ ବେଗଗାମୀ ଅଶ୍ୱଭଳି ଝପଟି ପଡ଼ିବାରେ ସେ କେବେ ତ୍ରୁଟି କରି ନାହାଁନ୍ତି । ଜୀବନ ସଂଗ୍ରାମର ପ୍ରତିଟି କ୍ଷେତ୍ରରେ ବିଜୟୀର ମନୋଭାବ ସେ ପୋଷଣ କରି ଜୀବନ ସଂଗ୍ରାମରେ ବ୍ରତୀ ହୋଇଛନ୍ତି । ସ୍ୱଳ୍ପବେତନ ପରିବାରର ଆର୍ଥିକ ଖର୍ଚ୍ଚ ସାମାଜିକ ଜୀବନ, ସଙ୍ଘୀୟ ଭାବନା ସର୍ବୋପରି ନିଜର ପ୍ରତିଷ୍ଠା ଓ ମର୍ଯ୍ୟାଦା ପାଇଁ ଅତ୍ୟନ୍ତ ସଚେତନଶୀଳ ମଣିଷ ସିଏ । ସେଥିପାଇଁ ଅଳକା ପ୍ରେସ୍ ପ୍ରତିଷ୍ଠା ଓ ସାହିତ୍ୟ ସେବାକୁ ସେ ଗୁରୁତ୍ୱ ଦେଇଥିଲେ ।

୧୯୯୩ ଅପ୍ରିଲ୍ ୩ତାରିଖରେ ଜଗତସିଂହପୁର ଜିଲ୍ଲା ପ୍ରତିଷ୍ଠା ପରେ ଜଗତସିଂହପୁର ବାସୀଙ୍କ ଭାବନାକୁ ସମ୍ମାନ ଦେଇ ସେ ଜଗତସିଂହପୁର ଜିଲ୍ଲାର ଐତିହ୍ୟ ପରଂପରା ସଂସ୍କୃତି ଓ ଜନଜୀବନର ଧାରାକୁ ସାଉଁଟି ମାଟି ମୁଠାଏ ସୃଷ୍ଟି କଲେ ଜଗତସିଂହପୁର ଇତିହାସ ଯାହା ଏକ ଅମୂଲ୍ୟ ଗ୍ରନ୍ଥର ମର୍ଯ୍ୟାଦା ଲାଭ କରି ପାରିଛି ।

ବହୁ ଘଟଣା ବହୁଳ ସାର୍‌ଙ୍କ ଜୀବନ । ସଂଗ୍ରାମ ଓ ସମନ୍ୱୟର ଅନେକ ସୋପାନ ଅତିକ୍ରମ କରି ସେ ଆଜି ଜୀବନର ସାୟାହ୍ନରେ ଅବତୀର୍ଣ୍ଣ । ଆଦ୍ୟରୁ ପ୍ରାନ୍ତ ପର୍ଯ୍ୟନ୍ତ ଉଜ୍ଜ୍ୱଳମୟ ଜୀବନର ସମସ୍ତ ପୃଷ୍ଠା ଠିକ୍‌ଠିକ୍ ଭାବରେ ପରଖି ତାକୁ ନିଖୁଣ ଭାବରେ ଯୋଡ଼ିବା ଅତ୍ୟନ୍ତ ଦୁରୂହ କାର୍ଯ୍ୟ । ଏକ ଲମ୍ବା ଜୀବନର ସୁଦୀର୍ଘ ପଥର ସଫଳ ପଥିକ ସିଏ । ଅନେକ ଘାତ ପ୍ରତିଘାତ ବନ୍ଧୁର ମସୃଣ, ସୁଖଦ ଦୁଃଖଦ, ତାରୁଣ୍ୟ ବାର୍ଦ୍ଧକ୍ୟର ହସକାନ୍ଦ ଭରା ଲୁହଲହୁର ସମସ୍ତ ଅନୁଭୂତି ସାଉଁଟି ଏକତ୍ର କରି ତାଙ୍କ ବହୁମୁଖୀ ଜୀବନର ଠିକ୍ ମୂଲ୍ୟାୟନ କରିବା ମୋ ପକ୍ଷରେ ଦୁଃସାହାସ ବ୍ୟତୀତ ଅନ୍ୟ କିଛି ହୋଇନପାରେ । ଜଣେ ମଣିଷ କହିଯାଇଛନ୍ତି ଜଣେ ଆଦର୍ଶବାଦୀର ନିରପେକ୍ଷ ମୂଲ୍ୟାୟନ ସମ୍ଭବ ଯେତେବେଳେ ସେ ନିଜେ ମୃତ ତାର ବନ୍ଧୁମାନେ ମୃତ ଓ ତାର ଛାତ୍ରମାନେ ମଧ୍ୟ ମୃତ । ଆମେ ସେହି ମହାକାଳର ଶେଷ ମୂଲ୍ୟାୟନ ପର୍ଯ୍ୟନ୍ତ ଅପେକ୍ଷା କରିବା । କାରଣ ସାଂପ୍ରତିକ ସାମାଜିକ ବ୍ୟବସ୍ଥାରେ ନୈତିକତା, କର୍ତ୍ତବ୍ୟନିଷ୍ଠ କର୍ମ ପ୍ରବଣତା ଓ ନିରପେକ୍ଷତାର ଅବକ୍ଷୟ ଘଟିଛି । ପାରଂପାରିକ ମୂଲ୍ୟବୋଧ ଶୈକ୍ଷିକ ମୂଲ୍ୟବୋଧ ଓ ସାଂସ୍କୃତିକ ମୂଲ୍ୟବୋଧ, ଆଜି ଏକ ଆହ୍ୱାନର ସମ୍ମୁଖୀନ । ଏ ସମସ୍ତ ପ୍ରତିକୂଳ ପରିସ୍ଥିତି ଓ ପରିବେଶ ମଧ୍ୟରେ ସାର୍ ଆଜି ସମସ୍ତଙ୍କ ପାଇଁ ଏକ ଉଚ୍ଚାଦର୍ଶ, ପ୍ରେରଣା, ଉତ୍ସାହ ଓ ମର୍ଯ୍ୟାଦାର ଏକ ଉଜ୍ଜ୍ୱଳ ବତୀଖୁଣ୍ଟ ଭାବେ ଚିରକାଳ ଆଲୋକ ପ୍ରଦାନ କରୁଥାଆନ୍ତୁ । ■

ଝାଙ୍କରପୁର, ବାଲିକୁଦା, ଜଗତସିଂହପୁର
ମୋ - ୯୯୩୮୬୮୧୮୭୯

# ଡକ୍ଟର ଭୋଳାନାଥ ରାଉତ
# ଏକ ଅମଳିନ ପ୍ରତିଭା

ଡକ୍ଟର୍ ଜ୍ୟୋତିର୍ମୟୀ ମହାନ୍ତି

ଏକ ବର୍ଷଣ ମୁଖର ସଂଧ୍ୟା ସମୟ । ଆକାଶରେ କଳାହାଣ୍ଡିଆ ମେଘ ଘୋଟିଥିଲା ଓ ରହି ରହି ବର୍ଷା ହେଉଥିଲା । ଟେଲିଫୋନ୍ ବାଜି ଉଠିଲା । ଧରିଲି । ଆରପଟୁ ଶୁଣାଗଲା ଡଃ ଭୋଳାନାଥ ରାଉତଙ୍କ କଣ୍ଠସ୍ୱର, ଯାହାଙ୍କୁ ମୁଁ ସାର୍ ବୋଲି ସମ୍ବୋଧନ କରେ ଜ୍ୟୋତିର୍ମୟୀ ଜଗତସିଂହପୁର ଶିଶୁ ସାହିତ୍ୟ ଉପରେ ଏକ ଗବେଷଣାମୂଳକ ଲେଖା ଦିଅ । "ପଗ୍ଚରିଲି" ସାର୍ କେଉଁ ପତ୍ରିକା ପାଇଁ ? " ଉତ୍ତର ମିଳିଲା ଜଗତସିଂହପୁର ଇତିହାସ ସଂକଳନ କରୁଛି, ସେଥିରେ ସ୍ଥାନ ପାଇବ । ବାର ଚଉଦ ପୃଷ୍ଠା ଭିତରେ ଲେଖା ରହିବ । ଶୀଘ୍ର ପଠାଇବ ।

ବହୁ ବ୍ୟକ୍ତି ବିଶେଷ ସାରଙ୍କୁ ସାହାଯ୍ୟ ପାଇଁ ଆଗେଇ ଆସିଲେ । ମାତ୍ର ସେତ ଥିଲେ ସୂତ୍ରଧର । ସେ ଆଗେ ଆଗେ ଚ୍ଚଲିଲେ ମଶାଲଧରି । ଖୁବ୍ କମ୍ ସମୟରେ ସେ ଏହି ଇତିହାସକୁ ସଂକଳନ କଲେ । 'ଜଗତସିଂହପୁର ଅତୀତ ଓ ବର୍ତ୍ତମାନ' ଶୀର୍ଷକରେ ଏକ କାଳଜୟୀକୃତି । କାଳକାଳକୁ ରହିଗଲା । ଜଗତସିଂହପୁର କଳା, ସଂସ୍କୃତି, ସାହିତ୍ୟ, ଦର୍ଶନୀୟ ସ୍ଥାନ, ଶିକ୍ଷା, ଗବେଷଣା ଏହାର ସୁଦୂର ଅତୀତ, ବର୍ତ୍ତମାନ ଓ ଆଗାମୀ ଭବିଷ୍ୟତ ସବୁ କିଛି ରହିଗଲା ଏହି ପୁସ୍ତକ ତିନିଖଣ୍ଡରେ । ଅତି ସୁନ୍ଦର ଭାବେ ଏଥିରେ ସ୍ଥାନିତ ଲେଖାର ବିଷୟ ବସ୍ତୁକୁ କଳ୍ପନା କରି ଧରାଇଦେଲେ ଆମମାନଙ୍କୁ । ବାରମ୍ବାର ଫୋନ୍‌ରେ ତଦାରଖ ହେଉଥାଏ, ବାନ୍ଧ ସେତୁବନ୍ଧ ଶୀଘ୍ର ଶୀଘ୍ର ବାନ୍ଧିଯାଅ । ଲେଖାସବୁ ନେଇଆସ । କେତେ ଶୀଘ୍ର ଏତେ ବଡ଼ କାମ ସୁରୁଖୁରୁରେ ହୋଇଗଲା ଭାବିଲେ ଆଶ୍ଚର୍ଯ୍ୟ ଲାଗେ ।

ßକେବଳ ଏହିକାମ ନୁହେଁ । ଆମ ଜିଲ୍ଲାର କଳାସଂସ୍କୃତି ଓ ଐତିହ୍ୟକୁ ପ୍ରତିପାଦିତ କରିବା ସହ ଜିଲ୍ଲାର ବିକାଶ ଧାରାକୁ ତ୍ୱରାନ୍ୱିତ କରିବା ପାଇଁ ଆୟୋଜିତ ଜିଲ୍ଲାମହୋତ୍ସବ "କଲ୍ଲୋଳ"ର ମୁଖପତ୍ର ରୂପେ ପ୍ରକାଶ ପାଉଥିବା "ଆଦିପତ୍ର"ର ମଙ୍ଗ ଧରିଲେ ସେ । ସେମିତି ଆମେ କିଛି ଗୁଣ୍ଡୁଚିମୂଷା ତାଙ୍କ ପଛରେ ରହିଲୁ । ସେ ମୁଖ୍ୟ ସଂପାଦକ ହେଲେ । କେଉଁ ପ୍ରକାର ଲେଖା ଏଥିରେ ସ୍ଥାନିତ ହେଲେ ଜିଲ୍ଲାର ଐତିହ୍ୟ ଓ ସଂସ୍କୃତି ଉତ୍କର୍ଷତା

ପ୍ରତିପାଦିତ ହେବ ସେ ବାଛିଲେ ଓ ଏହି ବିଷୟ ଗୁଡ଼ିକୁ  ଆମ ଜିଲ୍ଲା ବାହାରେ ଥିବା ଏବଂ ଏହି ଜିଲ୍ଲାରେ ଜନ୍ମନେଇଥିବା କୃତବିଦ୍ୟ ଲେଖକ ଲେଖିକାମାନଙ୍କୁ ଫୋନ୍‌ଦ୍ୱାରା ଏ ସବୁ ବିଷୟ ଧରାଇ ଲେଖା ମାଗିଲେ । ବେଶ୍ ସୁନ୍ଦର ଭାବେ ପାଠକୀୟ ଆଦୃତି ଲାଭକରି ପ୍ରତିବର୍ଷ ପ୍ରକାଶ ପାଇ ଗ୍ଲିଲା "ଆଦିପତ୍ର" ଏଥର ମଧ୍ୟ ସେ ମଶାଲ ଧରିଥିଲେ । ଏ ସବୁ ଥିଲା ସାରଙ୍କ୍ ସହ କାମ କରିବାର କିଛି ସ୍ମୃତିଭରା ମୁହୂର୍ତ୍ତ ।

ହେଲେ ସାର୍‌ଙ୍କ ସହ ମୋର ପରିଚୟ ମୋ ପିଲାଦିନରୁ । ମୁଁ ବୋଧହୁଏ ଆଠ ଦଶବର୍ଷର ହୋଇଥାଏ । କାରଣ ମୋ ସ୍ମୃତିରେ  ଝାପ୍‌ସାହୋଇ ରହିଛି ଏବେ ବି ସେ ଦୃଶ୍ୟ । ମୋ ବାପା ଗୋପୀନାଥ ମହାନ୍ତି ଆଉ ସାର୍‌ଙ୍କ ଭିତରେ ଥାଏ ନିବିଡ଼ ଘନିଷ୍ଠତା । ରାଉସାପାଟଣା, କଟକର ଆମେ ରହୁଥିବା ଭଡ଼ାଘର ସାମ୍ନା ଥିଲା ତାଙ୍କର ଏକ ଧଳା ରଙ୍ଗଦିଆ ଦୁଇମହଲା କୋଠା । ଦୁଇ ପରିବାର ଭିତରେ  ବେଶ୍ ଯିବା ଆସିବା ଗ୍ଲିଥିଲା । ବାପାଙ୍କ ପରିଚୟ ଯୋଗୁଁ ମୁଁ ମଉସା  ବୋଲି ଡାକୁଥିଲି । କିଛି ବର୍ଷପରେ  ଆମେ ସେ ଘର ବଦଳାଇଥିଲୁ । ଆଉ ଦେଖାହୋଇନଥିଲା । ଜଗତସିଂହପୁରକୁ ଆସିବା ପରେ ମୋ ସହ ଏଇ ଲେଖାଲେଖି କାର୍ଯ୍ୟରେ ସାର୍‌ଙ୍କ ସହ ପରିଚୟ ହେବାପରେ ସେ ଯେମିତି ଜାଣିଲେ ମୁଁ ଗୋପୀନାଥ ମହାନ୍ତିଙ୍କ ଝିଅ ଖୁସି ହୋଇଥିଲେ । ଏପଟେ ସେ ମୋ ଶ୍ୱଶୁରଙ୍କ ମଧ୍ୟ ଅତି ଅନ୍ତରଙ୍ଗ ବନ୍ଧୁ । ଝିଅପରି ସ୍ନେହ ଶ୍ରଦ୍ଧା କରି ତାଙ୍କର ପ୍ରତିଟି କାର୍ଯ୍ୟରେ ସେ ମୋତେ ସଂଶ୍ଳିଷ୍ଟ କଲେ ଜଣେ ବିଶିଷ୍ଟ ସାହିତ୍ୟିକ, ସମାଲୋଚକ, ଗବେଷକ, ନାଟ୍ୟକାର, ଗାନ୍ଧିକ ରୂପେ ପରିଚିତ ଏହି ବୟୋବୃଦ୍ଧ ସାହିତ୍ୟିକଙ୍କ ସଂପର୍କରେ କିଛି ଲେଖିବା ମୋ ପରି ଏକ କ୍ଷୁଦ୍ରାତିକ୍ଷୁଦ୍ର ବ୍ୟକ୍ତି  ପକ୍ଷେ ଅସମ୍ଭବ । ତାଙ୍କ ଗୁଣ ଏକ ସୁବାସିତ ଫୁଲର ମହକ । ପବନରେ ଦିଗବିଦିଗ ସଂଗ୍ରିତ ହେଲାପରି; ତାଙ୍କ ପରି ଜଣେ ମହୀୟାନ ବ୍ୟକ୍ତିଙ୍କ ବ୍ୟକ୍ତିତ୍ୱ ଜଗତସିଂହପୁର ଜିଲ୍ଲାରୁ ଆରମ୍ଭ କରି ସମଗ୍ର ରାଜ୍ୟରେ ପରିବ୍ୟାପ୍ତ ହେଲା । ନିଜର ପ୍ରତିଭା ପାଇଁ ଓଡ଼ିଶା ସାହିତ୍ୟ ଏକାଡେମୀରୁ ଆରମ୍ଭ କରି ବହୁ ସଂଗଠନରୁ ସମ୍ବର୍ଦ୍ଧିତ । ଜଣେ ଭଲ ଶିକ୍ଷକ ଭାବେ ଅନେକ ଛାତ୍ରଙ୍କ ହୃଦୟ ମଧ୍ୟରେ ତାଙ୍କ ଭାବମୂର୍ତ୍ତି ସ୍ଥାନିତ । ବହୁ ପୁସ୍ତକର ରଚୟିତା ଏହି ବର୍ଷୀୟାନ ସାହିତ୍ୟିକଙ୍କ ଅବଶିଷ୍ଟ ଜୀବନ ସୁସ୍ଥ ସୁନ୍ଦର, ନିରାମୟ ହେଉ ଆଉ ସେ ଏମିତି ଆମ ମାନଙ୍କ ଆଗରେ ମଶାଲ ଧରି ଆମକୁ ଦିଗ୍‌ଦର୍ଶନ ଦେଉଥାଆନ୍ତୁ, ଏହାହିଁ ପ୍ରଭୁ ଶ୍ରୀ ଜଗନ୍ନାଥଙ୍କ ପଦତଳେ ମୋର ପ୍ରାର୍ଥନା । ■

ବାଗସାହି, ଜଗତସିଂହପୁର

ମୋ- ୯୦୪୦୫୭୮୭୭୨

# ସ୍ୱପ୍ନର ସୌଦାଗର -ଡକ୍ଟର ଭୋଳାନାଥ ରାଉତ

ପ୍ରଦୀପ୍ତ କୁମାର ଚୌଧୁରୀ

ମହାବାତ୍ୟା ପରେ ପରେ ହଠାତ୍ ଦିନେ ହେମନ୍ତ ରଥ ମୋତେ ବାଧ୍ୟକରି ପୁସ୍ତକମେଳା ବୈଠକକୁ ଡାକିନେଲେ । ସେଦିନ ବୈଠକରେ ସାର୍‌ଙ୍କ ଉପସ୍ଥିତିରେ ଜଗତସିଂହପୁରର କେତେକ ବରିଷ୍ଠ ବ୍ୟକ୍ତି ଆଲୋଚନାରେ ଭାଗ ନେଇଥାନ୍ତି । ବୈଠକରେ ସାର୍‌ଙ୍କୁ ଦେଖି ମୁଁ ଟିକେ ଦୂରେଇ ବସିଲି । ମନେ ମନେ ଭାବୁଥିଲି କାହିଁକି ଏ ଅଡୁଆକୁ ଆସିଲି କେଜାଣି ? କାରଣ କଲେଜରେ ପାଠ ପଢ଼ିଲା ବେଳେ ସାର୍ ଜଣେ ପ୍ରଭାବଶାଳୀ ଅଧ୍ୟାପକ ଥିଲେ ଏବଂ ପରବର୍ତ୍ତୀ ସମୟରେ  ସାର୍ ତିର୍ତ୍ତୋଲ କଲେଜ ଅଧ୍ୟକ୍ଷ ଥିବା ସମୟରେ ସାର୍‌ଙ୍କ ସହିତ୨/୪ ଥର ସାକ୍ଷାତ୍ ହୋଇଥିଲା । ଜଣେ ବରିଷ୍ଠ ଅଧ୍ୟାପକ, ସଂସ୍କୃତି ସଂପନ୍ନ ସମାଲୋଚକ ଡକ୍ଟର ରାଉତଙ୍କ ଠାରୁ ଏ ଅଧମ ଯଥା ସମ୍ଭବ ଦୂରତ୍ୱ ବଜାଇ ରଖିବାକୁ ଚେଷ୍ଟା ରଖିଥିଲା ।

ପ୍ରତ୍ୟକ୍ଷ ଭାବେ ସାର୍‌ଙ୍କ ମାର୍ଗଦର୍ଶନରେ ପୁସ୍ତକମେଳା ପାଇଁ କାର୍ଯ୍ୟ କରିବା  ଭିତରେ ଅନେକ ଜିନିଷ ଜାଣିବାକୁ ପାଇଥିଲି । ଜଣେ  ବରିଷ୍ଠ ବ୍ୟକ୍ତି ଓ ବ୍ୟକ୍ତିଙ୍କ ମାର୍ଗଦର୍ଶକ ଭାବେ ସାର୍ ପୁସ୍ତକ ମେଳାର ବିଭିନ୍ନ ସମସ୍ୟା ସମାଧାନ କରୁଥିଲେ । ବିଶେଷ କରି ସ୍ଥାନୀୟ ବିଧାୟକ ଓ ଜିଲ୍ଲା ପ୍ରଶାସନ ଆଡୁ ପୁସ୍ତକ ମେଳା ପ୍ରତି ଆସୁଥିବା ସମସ୍ୟାକୁ ସାର୍  ଅତି ସହଜରେ ସମାଧାନ କରୁଥିଲେ । ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ପ୍ରସଙ୍ଗ ଥିଲା ପୁସ୍ତକ ମେଳାପାଇଁ ଅତିଥି ଚୟନ । ଓଡ଼ିଶାର ସ୍ୱନାମଧନ୍ୟ ସାହିତ୍ୟିକ ମାନଙ୍କ ପାଖକୁ ଅତିଥି ହେବା ପାଇଁ ନିମନ୍ତ୍ରଣ ନେଇ ଯାଉଥିବା  ସମୟରେ ଅତିଥିମାନେ ପ୍ରାୟତଃ ପ୍ରଶ୍ନ କରୁଥିଲେ  । ଭୋଳିବାବୁ କେମିତି ଅଛନ୍ତି  ? ସେ ପୁସ୍ତକ ମେଳାରେ ମିଶି ଅଛନ୍ତି ତ ? ସେତେବେଳେ ମନେ ମନେ ଭାବୁଥିଲି, ସାର୍‌ଙ୍କୁ ତ ସମସ୍ତେ ଜାଣନ୍ତି ଓ ସମ୍ମାନ କରୁଛନ୍ତି । ହେଲେ ଆମେ ସବୁ ସାର୍‌ଙ୍କ ଠାରୁ ଦୂରେଇ ଯାଉଛୁ ।

ପ୍ରଥମ ପୁସ୍ତକମେଳା ୨୦୦୦ରେ ଭାଗ ଦେବା ପରେ 'ସ୍ମୃତିପତ୍ର' ପ୍ରକାଶନ ପାଇଁ ଯୋଜନା ଚାଲିଲା । ପୁସ୍ତକ ମେଳା ସ୍ମୃତିପତ୍ର ଏବଂ ପରେ ପରେ ଜାତୀୟ କବି ବୀର କିଶୋର ଦାସଙ୍କ ସ୍ମୃତିରେ  ଏକ ସ୍ମୃତିପତ୍ର  ପ୍ରକାଶନ କାର୍ଯ୍ୟ ଜାରିରହିଲା । ସେ ସମୟରେ ଡି.ଟି.ପି.

ସରୁଥିବା କାଗଜକୁ ସାର୍‌ଙ୍କ ଘରେ ପହଞ୍ଚାଇବା ଓ ଏଡିଟି ସରିବା ପରେ ଆଣିବା କାମ ମୋ ଉପରେ ଥିଲା । ସେତେବେଳେ ସାର୍ ଯୁବ ସୁଲଭ ଉଦ୍ଧାମତା ଦେଖାଇ ବିଳମ୍ବିତ ରାତିରେ ମଧ୍ୟ ଏଡିଟ୍ କାମ କରୁଥିଲେ । ଅନେକ ସମସ୍ୟା ଓ ବାଦ ବିବାଦ ଭିତରେ ଜାତୀୟ କବିଙ୍କ ସ୍ମରଣିକା ପ୍ରକାଶ ପାଇଥିଲା । ଜଗତସିଂହପୁର ଗଠନ ପରେ ଜିଲ୍ଲାର ପ୍ରଥମ ଉତ୍ସବ ଓ ସାଂସ୍କୃତିକ ଅଭ୍ୟୁଦୟ ଜଗତସିଂହପୁର ପୁସ୍ତକମେଳା ଓ ଜାତୀୟ କବି ବୀରକିଶୋରଙ୍କ ସ୍ମୃତିପତ୍ର ପ୍ରକାଶନ । ଏ ସମସ୍ତ କାର୍ଯ୍ୟରେ ସାର୍‌ଙ୍କ ସହିତ ସାମିଲ୍ ହୋଇଥିଲେ ଅଧ୍ୟାପକ କୁଳମଣି ଦାଶ ଓ ମହେନ୍ଦ୍ର କୁମାର ଆଗ୍ରର୍ଯ୍ୟ । ପରେ ପରେ ୨୦୦୧ ମସିହାରେ ଆରମ୍ଭ ହେଲା ଜଗତସିଂହପୁର ଜିଲ୍ଲା ଉତ୍ସବର ମୁଖପତ୍ର "ଆଦିପତ୍ର" । ସଂପାଦନାରେ ସାର୍ ପ୍ରମୁଖ ଭୂମିକାରେ ଥିଲେ ଏବଂ ସେ ପତ୍ରିକା ଏକ ଐତିହାସିକ ପଦକ୍ଷେପ ଥିଲା ।

ଏମିତି ସାର୍‌ଙ୍କ ନିକଟକୁ ଯିବା ଆସିବା ଭିତରେ ଜାଣିବାକୁ ଜାଣିବାକୁ ପାଇଲି ଯେ ଜଗତସିଂହପୁର ଇତିହାସ ଲେଖିବା ପାଇ ପଦକ୍ଷେପ ଆରମ୍ଭ ହୋଇଛି । ଡଃ ଭୋଳାନାଥ ରାଉତ ନିଜ ଉଦ୍ୟମରେ ଜିଲ୍ଲାର ବିଭିନ୍ନ ପ୍ରାନ୍ତକୁ ଗସ୍ତ କରି ଜିଲ୍ଲାର ଇତିହାସ ସଂପର୍କରେ ତଥ୍ୟ ସଂଗ୍ରହ ଜାରି ରଖିଛନ୍ତି । ଜିଲ୍ଲାର ଅନେକ ଉପାନ୍ତ ଅଞ୍ଚଳକୁ ଗାଡ଼ି ଯିବାର ସୁବିଧା ନଥାଇ ମଧ୍ୟ ସାର୍ ଅନାୟସରେ ଯାଇ ଫଟୋ ସଂଗ୍ରହ କରିବା ସହିତ ତଥ୍ୟ ସଂଗ୍ରହ କରୁଛନ୍ତି । ଏସବୁ କାର୍ଯ୍ୟରେ ସାରଙ୍କୁ ତାଙ୍କ ଜୋଇଁ ନିରଞ୍ଜନ ବିଶ୍ୱାଳ ସହାୟତା କରୁଛନ୍ତି । ଚାକିରି ଜୀବନରୁ ଅବସର ପରେ ସାର୍‌ଙ୍କର ହାର୍ଟ୍ ସମସ୍ୟା ବାହାରିଛି ତଥାପି କୌଣସି ପ୍ରତିବନ୍ଧକୁ ଖାତିରି ନକରି ସାର୍ ଜିଲ୍ଲା ଇତିହାସ ରଚନା ପାଇଁ ଉଦ୍ୟମ ଜାରି ରଖିଥିଲେ । ଏସବୁ ଶୁଣିଲା ପରେ ସାର୍‌ଙ୍କୁ ସହଯୋଗ କରିବା ତ ଦୂରର କଥା ବରଂ ମୁଁ ସାର୍‌ଙ୍କ ଠାରୁ ଦୂରେଇବା ଆରମ୍ଭ କଲି । କାଳେ ସାର୍ ଲେଖା ବରାଦ କରିବେ ସେ ଭୟରେ ମୁଁ ଦୂରେଇ ଗଲିଲି ।

ହଠାତ୍ ଦିନେ କୌଣସି ଏକ କାମରେ ସାର୍‌ଙ୍କ ଘରକୁ ଯାଇ ବଡ଼ ଅଡୁଆରେ ପଡିଲି । ସେଦିନ ଅଧ୍ୟାପକ କୁଳମଣି ଦାଶ ଓ ମହେନ୍ଦ୍ର କୁମାର ଆଗ୍ରର୍ଯ୍ୟ ସାର୍‌ଙ୍କ ଘରେ ଜଗତସିଂହପୁର ଇତିହାସ ସଂକଳନ ପ୍ରକାଶ ପାଇଁ କାମ ଚଳାଇଥାନ୍ତି । ମୁଁ ପଚାରିବା ପରେ ହଠାତ୍ ମୋତେ କାମରେ ଲଗାଇ ଦେଲେ । ସାର୍ କହିଲେ ଜିଲ୍ଲାର ଶିକ୍ଷା, ଶିକ୍ଷାୟତନ ଓ ଶିକ୍ଷାବିତ୍ ପ୍ରସଙ୍ଗରେ ଏକ ଅନୁସଂଧାନ ମୂଳକ ଓ ତଥ୍ୟ ଭିତ୍ତିକ ପ୍ରବନ୍ଧ ପ୍ରସ୍ତୁତି କରିବାକୁ । ହଁ ମାରିଦେଇ ଆସିଲି ସିନା ହେଲେ ମୋ ଦ୍ୱାରା ଏ ସମ୍ଭବ ନୁହଁ ବୋଲି କହିବା ପାଇଁ ମୋତେ ୮ଦିନ ସମୟ ଲାଗିଲା । ସାହାସ ସଞ୍ଚୟ କରି ମନାକଲି । ମାତ୍ର ତା' ପରେ ନିସ୍ତାର

ମିଳିନଥିଲା । ସାର୍ ପୁଣି ବରାଦ କଲେ । କହିଲେ ତମେ ସାମ୍ବାଦିକତା କରୁଛ, ଜିଲ୍ଲାର ସମ୍ବାଦପତ୍ର ଓ ସାମ୍ବାଦିକତା ସଂପର୍କରେ ତଥ୍ୟ ଭିତ୍ତିକ ପ୍ରବନ୍ଧ ପ୍ରସ୍ତୁତ କର । ସାର୍‌ଙ୍କ ଦ୍ୱାରା ପ୍ରଦତ୍ତ ଦାୟିତ୍ୱ ସଂପାଦନ ଲାଗି ମୋତେ ୧୫ଦିନ ସମୟ ଲାଗିଲା । ତଥ୍ୟଭିତ୍ତିକ ଲେଖାଟି ସାରଙ୍କୁ ନେଇ ପ୍ରାଣ ବଞ୍ଚାଇ ପଳାଇ ଆସିଥିଲି । ମାତ୍ର ପରେ ଦେଖିଲି ଡଃ ଭୋଳାନାଥ ରାଉତଙ୍କ ସଂକଳିତ 'ଜଗତସିଂହପୁରଃ ଅତୀତ ଓ ବର୍ତ୍ତମାନ'ରେ ମୋ ଲେଖାଟି ସ୍ଥାନିତ ହୋଇଥିଲା ।

ଏତକ କହିବାର କାରଣ ହେଉଛି ସେ ସ୍ଥାନର ମାର୍ତ୍ତଣ୍ଡ ଡକ୍ଟର ଭୋଳାନାଥ ରାଉତ ଏକ ପ୍ରେରଣାର ଉତ୍ସ । ସେ ଉତ୍ସାହ ଯୋଗାନ୍ତି ଏବଂ ଉତ୍ତର ପିଢିକୁ ଆଗକୁ ଯିବାପାଇଁ ହାତଧରି ବାଟ ଦେଖାନ୍ତି ।

ବୟସାଧିକ୍ୟ ଯୋଗୁଁ ସାର ଥକି ପଡୁନଥିଲେ । ଜିଲ୍ଲାର ସାରସ୍ୱତ ଆନ୍ଦୋଳନ ଓ ସାଂସ୍କୃତିକ ଉଦ୍‌ବେଳନରେ ଖୁସି ହେଉଥିଲେ । ସାର୍‌ଙ୍କ ଉଦ୍ୟମରେ ମାଳତୀ ଦେବୀଙ୍କ ଉପରେ ଏକ ସଂକଳନ ପ୍ରକାଶ ପାଇଥିଲା । ଜଗତସିଂହପୁର ଗବେଷଣା ପରିଷଦ ଗଠନ କରି ଡଃ ପ୍ରତିଭା ରାୟଙ୍କ ଉପନ୍ୟାସ ଉପରେ ଏକ ସମାଲୋଚନା ପୁସ୍ତକ ପ୍ରକାଶ କରି ସାରା ଜିଲ୍ଲାର ସାରସ୍ୱତ ଆନ୍ଦୋଳନକୁ ତୀବ୍ର କରାଇଛନ୍ତି । ବାସ୍ତବରେ ସାର୍ ଜଣେ ସ୍ୱପ୍ନଭୁକ ମଣିଷ । ତାଙ୍କର ସ୍ୱପ୍ନକୁ ସାକାର କରିବା ପାଇଁ ସେ ପ୍ରଚେଷ୍ଟା କରିଥିଲେ ଓ ସଫଳ ହେଉଥିଲେ । 'ଜଗତସିଂହପୁରଃ ଅତୀତ ଓ ବର୍ତ୍ତମାନ'ର ଯେଉଁ ୩ଖଣ୍ଡ ମହାଗ୍ରନ୍ଥ ତାଙ୍କ ଦ୍ୱାରା ସଂକଳିତ ହୋଇଛି ତାହା ଆମ ଜିଲ୍ଲାର ଏକ ଗୌରବୋଜ୍ୱଳ ପୁସ୍ତକ ଏକ ଅସମ୍ଭବକୁ ସମ୍ଭବ କରିବାରେ ପ୍ରେରଣା ଯାହାକି ଉତ୍ତରଦାୟାଦ ମାନଙ୍କୁ ପ୍ରେରଣା ଯୋଗାଇବ । ଅତ୍ୟନ୍ତ ସରଳ ଓ ମିଷ୍ଟଭାଷୀ ସାର୍ କେବେ କାହାକୁ ହତୋତ୍ସାହ କରୁନଥିଲେ ବରଂ ନିଜର ସମସ୍ତ ସ୍ୱପ୍ନକୁ ସେ ଅନ୍ୟ ମାନଙ୍କ ଭିତରେ ବାଣ୍ଟୁଥିଲେ । ସମସ୍ତ ବର୍ଗର ଓ ବୟସର ବ୍ୟକ୍ତିଙ୍କ ସହିତ ପରାମର୍ଶ କରୁଥିଲେ । ଜଗତସିଂହପୁର ଜିଲ୍ଲା ଗଠନ ପରଠୁ ଜିଲ୍ଲାର ସାହିତ୍ୟ, ସଂସ୍କୃତିର ବିକାଶଧାରାର ମଙ୍ଗୁଆଳ ସାରଙ୍କ ପ୍ରେରଣା ଓ ଦିଗ୍‌ଦର୍ଶନ ଏ ଅଧମକୁ କଲମ ଧରିବା ପାଇଁ ସାହାସ ଯୋଗାଇ ପାରିଛି । ■

କୋଡିଆଁ, ଜଗତସିଂହପୁର

# ସମ୍ମାନାସ୍ପଦ ଭୋଳିବାବୁ

- ମୁରଲୀଧର ଦାସ-

ଶିକ୍ଷା ଓ ସାହିତ୍ୟ କ୍ଷେତ୍ରରେ ଜଗତସିଂହପୁର ଜିଲ୍ଲାରେ ଯେଉଁ କେତେଜଣ ବିଶିଷ୍ଟ ବ୍ୟକ୍ତି ତାଙ୍କର ଅବଦାନ ପାଇଁ ଖ୍ୟାତି ଅର୍ଜନ କରିଛନ୍ତି ସେମାନଙ୍କ ମଧ୍ୟରେ ଡକ୍ଟର ଭୋଳାନାଥ ରାଉତ ଅନ୍ୟତମ । ଉଚ୍ଚଶିକ୍ଷା କ୍ଷେତ୍ରରେ ସ୍ୱାମୀ ବିବେକାନନ୍ଦ ସ୍ମାରକ ମହାବିଦ୍ୟାଳୟ ଏକ ବିଶିଷ୍ଟ ଶିକ୍ଷାନୁଷ୍ଠାନ । ଏହି ଅନୁଷ୍ଠାନ ଯୋଗୁ ବହୁ ବ୍ୟକ୍ତି ଶିକ୍ଷାଲାଭ କରି ବିଭିନ୍ନ କ୍ଷେତ୍ରରେ କୃତିତ୍ୱ ଅର୍ଜନ କରିଛନ୍ତି । ପ୍ରତିଷ୍ଠିତ ମହାବିଦ୍ୟାଳୟରେ ଏକ ଉଚ୍ଚସ୍ତରୀୟ ବିଜ୍ଞ କମିଟି ଦ୍ୱାରା ଅଧ୍ୟାପକମାନେ ପ୍ରଥମେ ମନୋନୀତ ହୋଇଥିଲେ । ଭୋଳିବାବୁ ଓଡ଼ିଆ ବିଭାଗରେ ସର୍ବୋତ୍ତମ ବିବେଚିତ ହୋଇ ନିଯୁକ୍ତି ପାଇଥିଲେ ଏବଂ ମୁଖ୍ୟ ଅଧ୍ୟାପକ ଭାବରେ ଦୀର୍ଘଦିନ ରହି କାର୍ଯ୍ୟ କରିବା ସହିତ ଏହି ମହତ୍ ଅନୁଷ୍ଠାନର ସର୍ବାଙ୍ଗୀନ ଉନ୍ନତିରେ ସହାୟତା କରିଥିଲେ । ତାଙ୍କର ଶିକ୍ଷାଦାନର ଦକ୍ଷତା, ଜ୍ଞାନ, ସରଳତା ଓ ବ୍ୟକ୍ତିତ୍ୱ ବଳରେ କେବଳ ମହାବିଦ୍ୟାଳୟର ଛାତ୍ରଛାତ୍ରୀ ବା ସହକର୍ମୀଙ୍କର ଯେ ସେ ପ୍ରିୟପାତ୍ର ହୋଇଥିଲେ ତାହା ନୁହେଁ ସମାଜର ସବୁ ସ୍ତରର ବ୍ୟକ୍ତିଙ୍କ ମଧ୍ୟରେ ଲୋକପ୍ରିୟତା ଅର୍ଜନ କରିଥିଲେ । ଏବେ ତାହା ଅକ୍ଷୁଣ୍ଣ ରହିଛି । ତାଙ୍କର ପ୍ରତିଭା ମହାବିଦ୍ୟାଳୟର କାନ୍ଥବାଡ଼ ମଧ୍ୟରେ ସୀମିତ ନଥିଲା । ମହାଶୟ ଯେପରି ସମାଜର ମଙ୍ଗଳ ପାଇଁ ନିରବଚ୍ଛିନ୍ନ ଉଦ୍ୟମ କରିଛନ୍ତି ତାର ପଟାନ୍ତର ନାହିଁ ।

ଜଗତସିଂହପୁର ଜିଲ୍ଲାର ନାଉଗାଁ ଅନ୍ତର୍ଗତ ନନ୍ଦିଗ୍ରାମରେ ଯଦିଓ ତାଙ୍କର ପୈତୃକ ଗୃହ ସେ ଜଗତସିଂହପୁରରେ ସ୍ଥାୟୀ ବାସିନ୍ଦା ହୋଇ ସାରିଛନ୍ତି । ସେ ହିଁ ହେଉଛନ୍ତି ପ୍ରଥମ ବ୍ୟକ୍ତି ଯେ କି ସମଗ୍ର ରାଜ୍ୟରେ ଅଗ୍ରଣୀ ଜିଲ୍ଲାରୂପେ ଖାତି ଲାଭ କରିଥିବା ଜଗତସିଂହପୁର ଜିଲ୍ଲାର ଇତିହାସ ସଂକଳନ କରି ଜିଲ୍ଲାର ଶିକ୍ଷା, ଧର୍ମ, ସାହିତ୍ୟ, ବିଜ୍ଞାନ, ସଂସ୍କୃତି, ତଥା ଶିଳ୍ପ ଏବଂ ସବୁ କ୍ଷେତ୍ରରେ ଯେଉଁ ମହାନ୍ ବ୍ୟକ୍ତିମାନଙ୍କର ଉଲ୍ଲେଖନୀୟ ଅବଦାନ ଅଛି ସେ ସବୁ ବିଷୟରେ ପୁଙ୍ଖାନୁପଙ୍ଖ ଗବେଷଣାତ୍ମକ ତଥ୍ୟ ପ୍ରଦାନ କରି ସମଗ୍ର ରାଜ୍ୟ ତଥା ଦେଶରେ ଜିଲ୍ଲାର ଗୌରବ ଓ ମହତ୍ତ୍ୱକୁ ପ୍ରତିପାଦନ କରିଛନ୍ତି ।

ଡକ୍ଟର ରାଉତଙ୍କ ସହିତ ମୋର ପ୍ରଥମ ପରିଚୟ ହୁଏ, ମୁଁ ଶ୍ରୀକୃଷ୍ଣ ଏକାଡେମୀରେ

ଶିକ୍ଷକତା କରିବା ସମୟରେ । ସେ ସମୟେ ସମୟେ ଶ୍ରୀକୃଷ୍ଣ ଏକାଡେମୀକୁ ଆସନ୍ତି ଅଧ୍ୟାପକ ଥିବା ସମୟରେ । ସେତେବେଳେ ସୁରପ୍ରସାଦ ମହାପାତ୍ର ଶ୍ରୀକୃଷ୍ଣ ଏକାଡେମୀରେ ପ୍ରଧାନ ଶିକ୍ଷକ ଥିଲେ । ସୁରବାବୁ ଜଣେ ଜ୍ଞାନୀବ୍ୟକ୍ତି ହୋଇଥିବାରୁ ଉଭୟ ବିଭିନ୍ନ ବିଷୟରେ ଆଲୋଚନା କରନ୍ତି । ବେଳେବେଳେ ମୁଁ ସେଠାରେ ବସି ଆଲୋଚନାରେ ଯୋଗଦିଏ । ଭୋଳିବାବୁଙ୍କ ମୋ ପ୍ରତି ସ୍ନେହ ଶ୍ରଦ୍ଧା ଥିଲା । ତାଙ୍କର ସାନଭାଇ ବିଭାସ ଓ ବଡ଼ପୁଅ ସଞ୍ଜୟଙ୍କୁ ମୋ ପାଖରେ ଇଂରାଜୀ ପଢିବା ପାଇଁ ଛାଡ଼ିଥିଲେ ।

ଗବେଷଣାତ୍ମକ ପ୍ରବନ୍ଧ ବା ନିବନ୍ଧ ପ୍ରକାଶ କରିବା ତାଙ୍କର ଏକ ପ୍ରକାର ନିଶା ଥିଲା ତାଙ୍କ କଥାବାର୍ତ୍ତା ଓ ଆଲୋଚନାରୁ ମୁଁ ଅନୁଭବ କରିଥିଲି ଜଗତସିଂହପୁର ପାଇଁ କିଛି କରିବା ନିମିତ୍ତ ତାଙ୍କର ପ୍ରବଳ ଇଚ୍ଛା ଥିଲା । ଜଗତସିଂହପୁର କଳା ସଂସ୍କୃତି, ଶିକ୍ଷା, ବିଜ୍ଞାନ, ରାଜନୀତି ଓ ଧର୍ମଦୃଷ୍ଟିରୁ ଏକ ଅଗ୍ରଣୀ ଜିଲ୍ଲା ହୋଇଥିବାରୁ ତାଙ୍କର ଉତ୍ସାହ ଦ୍ୱିଗୁଣିତ ହେଲା ଏବଂ ଜଗତସିଂହପୁର ବିଭିନ୍ନ ବ୍ୟକ୍ତିଙ୍କ ସହିତ ସେ ଏ ସମ୍ବନ୍ଧରେ ଆଲୋଚନା ଆରମ୍ଭ କରୁଥିଲେ । ଥରେ ଲାଲା ରାଜେନ୍ଦ୍ର ପ୍ରସାଦ ରାୟ, (ଅବସରପ୍ରାପ୍ତ ଶିକ୍ଷକ ଶ୍ରୀକୃଷ୍ଣ ଏକାଡେମୀ)ଙ୍କ ସହିତ ମୁଁ ଭୋଳିବାବୁଙ୍କ ପାଖକୁ ଯାଇଥିଲି ।

ଲାଲାବାବୁଙ୍କର ଜଗତସିଂହପୁର ଇତିହାସ ନାମରେ ଦୁଇ ତିନୋଟି ପ୍ରବନ୍ଧ ଖବରକାଗଜରେ ପ୍ରକାଶିତ ହୋଇଥିଲା ଏବଂ ତାଙ୍କ ପାଖରେ ମଧ୍ୟ ଗୋଟିଏ ପାଣ୍ଡୁଲିପି ଥିଲା । ମରହଟ୍ଟା ଶାସନ ଓ ଇଂରେଜ ଶାସନ ସମ୍ବନ୍ଧରେ କିଛି ତଥ୍ୟ ଥିଲା । ଭୋଳିବାବୁ ସେଥିରୁ କିଛି ପ୍ରେରଣା ପାଇଥିଲେ ମଧ୍ୟ ତାଙ୍କର ଗବେଷଣାତ୍ମକ ଚିନ୍ତାଧାରା ଥିବାରୁ ଜଗତସିଂହପୁର ନାମ ଏବଂ ଅନ୍ୟାନ୍ୟ ବିଷୟରେ ସେ ପ୍ରାମାଣିକ ତଥ୍ୟ ଅନୁସନ୍ଧାନରେ ରହିଲେ । କ୍ରମେ କ୍ରମେ ତାଙ୍କର ଉତ୍ସାହ ଏପରି ବୃଦ୍ଧି ହେଲା ଦିନରାତି ସେ ବିଭିନ୍ନ ବିଷୟରେ ପ୍ରାମାଣିକ ତଥ୍ୟ ଖୋଜି ବାହାର କରି ବହୁ ଲୋକଙ୍କ ସହ ପରାମର୍ଶ କରି 'ଜଗତସିଂହପୁରଃ ଅତୀତ ବର୍ତ୍ତମାନ' ନାମରେ ଏକ ସୁବୃହତ୍ ଇତିହାସ ସଂକଳନ କଲେ । ତାହା ଏବେ ଉତ୍କୃଷ୍ଟ ଗବେଷଣାର ଗ୍ରନ୍ଥ ହିସାବରେ ପ୍ରସିଦ୍ଧି ଲାଭ କରିଛି । ■

ଅବସରପ୍ରାପ୍ତ ପ୍ରଧାନଶିକ୍ଷକ,
ଅଳକା ହାଇସ୍କୁଲ

# ଗବେଷକ ଭୋଳାନାଥ ବାବୁ

ରବୀନ୍ଦ୍ର ନାଥ ଚକ୍ରବର୍ତ୍ତୀ

ଘରକୁ ଫେରିଲା ପରେ ପୁଅ ଚିତ୍ତ କହିଲା 'ବାବା' ସାର୍ ଆସିଥିଲେ । ସାଥୀରେ ଜେନାବାବୁଙ୍କ ପୁଅ ଥିଲେ ିସେ ଆମ ପଞ୍ଚତତ୍ତ୍ୱ ବିଗ୍ରହଙ୍କ ଫଟୋ ନେଇ ଯାଇଛନ୍ତି ଏବଂ ତୁମକୁ ତାଙ୍କ ଆସିବା କଥା ଜଣାଇବାକୁ କହି ଯାଇଛନ୍ତି । "ଚିତ୍ତ ସାର୍ ଅର୍ଥାତ୍ ଭୋଳାନାଥ ବାବୁଙ୍କ ଏସ୍.ଭି.ଏମ୍ କଲେଜର ଛାତ୍ର । ମୁଁ ଭୋଳାନାଥ ବାବୁ ରହୁଥିବା ଘରକୁ ଯାଇଥିଲି, ସେ ଜଗତସିଂହପୁରର ଏକ ଇତିହାସ ସଂକଳନ କଥା କହିଥିଲେ ।

ଆଉ ଥରେ ଗୋଟିଏ ଭଲ ଫଟୋ ନେଇ ଦେଲି, ଜନ ନାୟକ ପୂଜ୍ୟ ବିପିନଚନ୍ଦ୍ର ପାଲ୍‌ଙ୍କ ଗୁରୁଜୀ ସଦ୍‌ଗୁରୁ ଶ୍ରୀ ବିଜୟାକୃଷ୍ଣ ଗୋସ୍ୱାମୀଙ୍କ ସମେତ ପଞ୍ଚତତ୍ତ୍ୱ ବିଗ୍ରହ ଅର୍ଥାତ୍ ଷଡ଼ଭୁଜ ଗୌରାଙ୍ଗ ମହାପ୍ରଭୁ, ନିତ୍ୟାନନ୍ଦ ଅଦ୍ୱୈତ ପ୍ରଭୁ ଗଦାଧର ପଣ୍ଡିତ, ଶ୍ରୀବାସ ପଣ୍ଡିତ ଏବଂ ଅନ୍ୟ ଦେବଦେବୀଙ୍କ ଫଟୋ ଥିଲା । ଆମ ଅଞ୍ଚଳର ଶିକ୍ଷାବିତ୍ ଡକ୍ଟର ଗୋଷ୍ଠବିହାରୀ କାନୁନ୍‌ଗୋ ଓ ତାଙ୍କ ସୁଯୋଗ୍ୟ ପିତା ଶିକ୍ଷାବିତ୍ ନୃସିଂହ ଚରଣ ବାବୁ ଗୋସାଇଁଜୀଙ୍କ ପ୍ରଶିଷ୍ୟ ବୋଲି ସେ ବିସ୍ମୟ ଓ ଆନନ୍ଦ ପ୍ରକାଶ କଲେ । ଶ୍ରୀ ବିଜୟ କୃଷ୍ଣ ଆଶ୍ରମ ରିଲିଫ୍ ସୋସାଇଟ୍ ଆମ ଓଡ଼ିଶାର ବିଶେଷତଃ ଜଗତସିଂପୁରରେ ବିଭିନ୍ନ ସମୟରେ ବିଭିନ୍ନ ପ୍ରକାର ସେବାକାର୍ଯ୍ୟ କରିଥିଲେ । ଗୁଣିନିଗୁଣଙ୍କରମତେ ଗୁଣୀଲୋକ ଗୁଣୀଲୋକର ଆଦର କରନ୍ତି ।

ସମ୍ମାନନୀୟ ଲାଲା ରାଜେନ୍ଦ୍ର ପ୍ରସାଦ ରାୟ ମୋ ଶିକ୍ଷକ । ତାଙ୍କୁ ନେଇ ଭୋଳିବାବୁଙ୍କ ପାଖକୁ ଯାଇଥିଲି । କିଛି ସମୟ ପରେ ମୁରଲୀବାବୁ ଯାଇ ପହଞ୍ଚିଲେ । ସେ ଆମ ସହିତ ଜଗତସିଂହପୁରର ଇତିହାସ ସମ୍ବନ୍ଧରେ କିଛି ଆଲୋଚନା କରିଥିଲେ । ଆମେ ଅନନ୍ଦ ମନରେ ଫେରି ଆସିଥିଲୁ । ପରେ ମୁଁ ତାଙ୍କୁ ସି.ଆର. ଉଇଲସନ୍‌ଙ୍କ ଲିଖିତ How the english come to orisa in 1633 ବହିଟିର ଜେରକ୍ସ କପିଟିଏ ଦେଇଥିଲି । ଏଥିରେ ସନ୍ତୋଷ ପ୍ରକାଶ କରିଥିଲେ ।

ମାନନୀୟ ପ୍ରଧାନ ଶିକ୍ଷକ ସୁରପ୍ରସାଦ ମହାପାତ୍ରଙ୍କ ମହାପ୍ରୟାଣ ପରେ ତାଙ୍କ ଉଦ୍ଦେଶ୍ୟରେ ନିମାଇଁ ଭବନରେ କଲ୍ୟାଣୀୟ ପ୍ରାକ୍ତନ ଶିକ୍ଷାମନ୍ତ୍ରୀ ବିଷ୍ଣୁଚରଣ ଦାସଙ୍କ ସଭାପତିତ୍ୱରେ ଏକ ସଭା ଅନୁଷ୍ଠିତ ହୋଇଥିଲା । ସେଥିରେ ଭୋଳାନାଥ ବାବୁ ନିମନ୍ତିତ

ହୋଇ ଯୋଗ ଦେଇଥିଲେ ଏବଂ ସୁରବାବୁଙ୍କ ସମ୍ବନ୍ଧରେ ଅନେକ ମୂଲ୍ୟବାନ କଥା କହିଥିଲେ । ତାହା ଭୁଲି ହେବ ନାହିଁ ।

ଭାରତୀୟ ଶାସ୍ତ୍ରବିତ୍ ବିଦେଶୀ ପଦାଧିକାରୀ ଉଇଲିୟମ୍ ଜୋମ୍ସଙ୍କ ଗୋଟାଏ ଭଲ କଥା ମନେପଡ଼େ । ସେ କହିଛନ୍ତି, ଆମେ ଜନ୍ମ ହେଲାବେଳେ କାନ୍ଦୁ, ମାତ୍ର ସମସ୍ତେ ହସନ୍ତି । ଆମେ ଜୀବନରେ ଏପରି କାର୍ଯ୍ୟ କରିଯିବା ଯେପରି ମୃତ୍ୟୁ ସମୟରେ ଆମେ ହସିହସି ବିଦାୟ ନେବା, ଏବଂ ଆମ ପାଇଁ ଅନ୍ୟମାନେ କାନ୍ଦୁଥିବେ ।" ଗୋସ୍ୱାମୀ ତୁଳସୀଦାସ ଠିକ୍ ଏହି କଥା କହିଛନ୍ତି । ବିରାଟ ସମୟ ସାଗରରେ ଆମର ପରମାୟୁ ଖୁବ୍ କମ୍ । "ସ୍ୱଳ୍ପଷ୍ଟ ଆୟୁଃ ବହବଷ୍ଟ ବିଘ୍ନାଃ ।" ଜୀବନର ଯାତ୍ରା ପଥରେ ଅନେକ ବିଘ୍ନ ଓ ସମସ୍ୟା । ତାକୁ ଭ୍ରୂକ୍ଷେପ ନକରି ସେବା ମୂଳକ କର୍ତ୍ତବ୍ୟ ପଥରେ ଆଗେଇ ଯିବା ବ୍ୟକ୍ତିଙ୍କ ସଂଖ୍ୟା କମ୍ । ସେହି ଅଳ୍ପ ବ୍ୟକ୍ତିମାନଙ୍କ ମଧ୍ୟରେ ଭୋଳିବାବୁ ଅନ୍ୟତମ । ଆମ ଶାସ୍ତ୍ର କହେ ଆମ ଜୀବନ କାଳ ମଧ୍ୟରେ ପିତୃଋଣ, ଦେବଋଣ, ଏବଂ ଋଷିଋଣ ପରିଶୋଧ ନ କରିଲେ ଆମେ ଋଣୀ ହୋଇ ରହିଯିବା । ଭୋଳାନାଥ ବାବୁ ଋଣୀ ହେବା ପରିବର୍ତ୍ତେ ଜଗତସିଂହପୁର ବାସୀଙ୍କୁ ତାଙ୍କ ନିକଟରେ ଋଣୀ କରିଦେଇଛନ୍ତି । ତାଙ୍କ ସାଂପାଦିତ ଓ ସଂକଳିତ ଅମୂଲ୍ୟ ଗ୍ରନ୍ଥ "ଜଗତସିଂହପୁର: ଅତୀତ ଓ ବର୍ତ୍ତମାନ ।" ବିରାଟ ଗ୍ରନ୍ଥଟି ୩ଖଣ୍ଡରେ ପ୍ରକାଶିତ । ପ୍ରକାଶକ ଜିଲ୍ଲା ସଂସ୍କୃତି ପରିଷଦ । ଯଦିଓ ଅନ୍ୟ ସହ ସଂପାଦକ, ଅନ୍ୟାନ୍ୟ ବ୍ୟକ୍ତି ଓ ସଂସ୍ଥା ସାହାଯ୍ୟ ସହଯୋଗ ଦେଇଛନ୍ତି, ତଥାପି ସବୁଠାରୁ ବଡ଼ ପ୍ରଶଂସାଟି ତାଙ୍କ ପାଖକୁ ଯିବ । ତନୁ, ମନ, ଧନ ଦେଇ ଚାରିବର୍ଷ ଆକ୍ଲାନ୍ତ ପରିଶ୍ରମ କରିଥିଲେ ଅବସର ପ୍ରାପ୍ତ ବୟସରେ । ଏହା କମ୍ କଥା ନୁହେଁ । ସେ ପରିବାର ପ୍ରତି ଉଦାସୀନ ରହି ପୂର୍ଣ୍ଣ ପ୍ରାଣରେ ଏହି ବିରାଟ କାମରେ ଆଗେଇ ଚାଲିନଥିଲେ ହୁଏତ ଏହି କାର୍ଯ୍ୟଟି ହୋଇ ପାରିନଥାନ୍ତା । ଏହା ତାଙ୍କର ଅସୀମ ନିଷ୍ଠା ଧୈର୍ଯ୍ୟ ତ୍ୟାଗ ଓ ଅଧ୍ୟବସାୟର ପରିଚାୟକ ।

ସେ ଜଣେ ଶିକ୍ଷକ ନେତା । ସେ ସ୍ୱାର୍ଥପରକୁ ନୁହଁ ସମାଜ କଥା ବିଶେଷତଃ ଶିକ୍ଷକ ସମାଜ କଥା ଜଣେ ପ୍ରାଧ୍ୟାପକ ଭାବେ ଏବଂ ଅଧ୍ୟକ୍ଷ ଭାବେ ଚିନ୍ତା କରିଛନ୍ତି । ଶିକ୍ଷକ ମହାସଂଘର ଜଗତସିଂହପୁର ଶାଖାର ସେ ଥିଲେ ସଭାପତି । ମୋର ଅନ୍ତରଙ୍ଗ ବନ୍ଧୁ ତଥାପି ମହାମନା ଆଜନ୍ମ ବ୍ରହ୍ମଚାରୀ ଶିକ୍ଷାବିତ୍ ଭଗବାନ ଦାସ ଏହି ସଂଘ ସହିତ ବିଶେଷ ଭାବେ ସଂପୃକ୍ତ ଥିଲେ । ଶିକ୍ଷକମାନଙ୍କ କଲ୍ୟାଣପାଇଁ ସେ ତେରଦିନ ଅନଶନ କରିଥିଲେ, ସରକାର ମଧ୍ୟ ଅନେକ ଦାବି ପୂରଣ କରିଥିଲେ । ଭଗବାନବାବୁ ଭୋଳିବାବୁଙ୍କୁ ଏବଂ ଭୋଳିବାବୁ ତାଙ୍କୁ ପ୍ରଶଂସା କରିବାର ଶୁଣିଛି, ବନ୍ଧୁଙ୍କ ପ୍ରିୟଛାତ୍ର ଅଧ୍ୟାପକ କୁଳମଣି ଦାଶଙ୍କ କଥା

ମନେପଡୁଛି । ସେ ମଧ୍ୟ ସଂପାଦକ ଭାବେ ଭୋଳିବାବୁଙ୍କୁ ଅନେକ ସାହାଯ୍ୟ କରିଛନ୍ତି । ଭୋଳିବାବୁଙ୍କୁ ସେ ବହୁ ସମ୍ମାନ ଦିଅନ୍ତି ସେ ଆମକୁ ମଧ୍ୟ ତାଙ୍କ ଶିକ୍ଷକ ଭଳି ସମ୍ମାନ ଦିଅନ୍ତି । ତାଙ୍କ ସୁମଧୁର ବ୍ୟବହାର ଜୀବନରେ କେବେହେଲେ ଭୁଲି ହେବନାହିଁ, ଆଜି ଏଇ ଦୁଇଜଣ ପରଲୋକରେ । ଏମାନେ ଥିଲେ ଭୋଳିବାବୁଙ୍କ ଏଇ ଅଭିନନ୍ଦନିକା ପ୍ରକାଶନ ପାଇଁ କେତେ ଯେ ଆନନ୍ଦ ପ୍ରକାଶ କରିଥାନ୍ତେ ଆମ୍ଭ ଭାଷାରେ କହି ହେବନାହିଁ ।

ଏହି ଭଳି ଆନନ୍ଦ ପ୍ରକାଶ କରି ଥାଆନ୍ତେ ତାଙ୍କ ସ୍ୱର୍ଗତ ସହକର୍ମୀ ବନ୍ଧୁ ଅନନ୍ତ ଚରଣ ଦାସ । ଅନନ୍ତ ଭାଇ ମୋ ଆଗରେ ଭୋଳିବାବୁଙ୍କର କେତେଥର ପ୍ରଶଂସା କରିଛନ୍ତି । ତାଙ୍କର ଦେହତ୍ୟାଗ ପରେ ତାଙ୍କ ଉଦ୍ଦେଶ୍ୟରେ ପ୍ରକାଶିତ ସ୍ମରଣିକାର ଭୋଳାନାଥବାବୁ ଅନନ୍ତଭାଇଙ୍କୁ ଉଚ୍ଛ୍ୱସିତ ପ୍ରଶଂସା କରିଛନ୍ତି । ତାଙ୍କର ଅସୂୟାଭାବ ପରଶ୍ରୀକାରତା ନାହିଁ ।

ବାଲିକୁଦା ହାଇସ୍କୁଲରେ କିଛିଦିନ ଥିଲି । ସୁଯୋଗ୍ୟ ପ୍ରଧାନ ଶିକ୍ଷକ (ପ୍ରତିଭା ରାୟଙ୍କ ପିତା) ପରଶୁ ବାବୁଙ୍କ ସଂପର୍କରେ ଏବଂ ତାଙ୍କ ପରିବାର ସଂପର୍କରେ ଆସିବାର ସୁଯୋଗ ପାଇଥିଲି । ଶ୍ରୀମତୀ ରାୟଙ୍କ ପାଖରୁ ପରଶୁବାବୁଙ୍କ ସମ୍ବନ୍ଧରେ କିଛି ଜାଣିବାକୁ ଚାହିଁଥିଲି । ଭୋଳାନାଥ ବାବୁ ଉତ୍ତମଲୋକଙ୍କୁ କୃତଜ୍ଞତା ଜଣାଇଥାନ୍ତି ଏହା ତାଙ୍କର ଏକ ବଡ଼ ମାନବିକ ଧର୍ମ । 'ଜଗତସିଂହପୁର ଅତୀତ ଓ ବର୍ତ୍ତମାନ' ପ୍ରଥମ ଖଣ୍ଡ ମୁଖ ବନ୍ଧରେ ଯାହାଠାରୁ ଯାହା ସାହାଯ୍ୟ ସହଯୋଗ ପାଇଛନ୍ତି ତାଙ୍କର ନାମ ଉଲ୍ଲେଖ କରିଛନ୍ତି । ସଂକୀର୍ଣ୍ଣତା ଓ ସ୍ୱାର୍ଥପରତା ତାଙ୍କ ପାଖରେନାହିଁ ।

ଆମ ମାଧପୁର ଗ୍ରାମର ଲାଲାସାହିର ଲାଲା ରାଜେନ୍ଦ୍ର ପ୍ରସାଦ ରାୟ ଏହି ଭଳି ଏକ ଗ୍ରନ୍ଥ ପ୍ରକାଶନର ସ୍ୱପ୍ନ ଦେଖିଥିଲେ । ସେ ଏ ଦିଗରେ ମଧ୍ୟ କିଛି କାମ କରିଥିଲେ ଏବଂ ଲେଖିଥିଲେ ତାଙ୍କ ଲେଖାକୁ କିଛି ପରିବର୍ତ୍ତନ ଓ ପରିବର୍ଦ୍ଧିନ କରି ପ୍ରକାଶ କରାଯାଇଛି । ସେ ଆଜି ପରଲୋକରେ । ସେ ଥିଲେ ଗ୍ରନ୍ଥ ପ୍ରକାଶନରେ ଏବଂ ଆଜିର ଅଭିନନ୍ଦନିକା ପ୍ରକାଶରେ ସେ ବହୁତ ଖୁସୀ ହୋଇ ଥାଆନ୍ତେ ।

ପରିବର୍ତ୍ତିନି ସଂସାରେ ମୃତଃ କେବା ନ ଜାୟତେ ସ ଜାତୋ ଯେନ ଜାତି ବଂଶ ସମୁନ୍ନତିମ୍" ଏଇ ପରିବର୍ତ୍ତନ ଶୀଳ ସଂସାରର ଜନ୍ମ ମୃତ୍ୟୁ ଲାଗି ରହିଛି ଯାହାଙ୍କ ଜନ୍ମ ହେବା ଫଳରେ ଜାତି ଓ ବଂଶର ସମ୍ୟକ ରୂପେ ଉନ୍ନତି ହୁଏ, ତାଙ୍କର ଜନ୍ମହିଁ ସାର୍ଥକ ହୋଇଥାଏ । ଏହି ଦୃଷ୍ଟିରୁ ଭୋଳାନାଥ ବାବୁ ଜନ୍ମ ସଫଳ ହୋଇଛି ।

ଈଶ୍ୱର ତାଙ୍କର ଅବଶିଷ୍ଟ ଜୀବନକୁ ନିରାମୟ, ଧର୍ମମୟ ଓ ସୁଖମୟ କରି ସତ୍‌କର୍ମ କରିବାକୁ ପ୍ରେରଣା ଦିଅନ୍ତୁ । ■

ଅବସରପ୍ରାପ୍ତ ପ୍ରଧାନଶିକ୍ଷକ, ଜଗତସିଂହପୁର

# ତାଙ୍କ ସ୍ୱନକ୍ଷତ୍ର ଦିବସ ଅବସରରେ

ଗୌରାଙ୍ଗ ଚରଣ ହୋତା

ବିଗତ ଦୁଇ ଦଶନ୍ଧିରୁ ଊର୍ଦ୍ଧ୍ୱକାଳ ଧରି ଜଗତସିଂହପୁର ସାରସ୍ୱତ ତଥା ସାଂସ୍କୃତିକ ଜୀବନକୁ ଚଳ ଚଞ୍ଚଳ କରି ଜଗତସିଂହପୁରକୁ ନିଜର କର୍ମଭୂମି ଭାବେ ଗ୍ରହଣ କରି ଆସିଛନ୍ତି ଅଧ୍ୟାପକ ଭୋଳାନାଥ ରାଉତ । ବୟସର ଅପରାହ୍ନରେ ପାଦ ଥାପି ବ୍ୟାଧିଗ୍ରସ୍ତ ହୋଇପଡ଼ିଥିଲେ ମଧ୍ୟ ଯେକୌଣସି ସାଂସ୍କୃତିକ କାର୍ଯ୍ୟରେ ତାଙ୍କ ଅବେଗ ବେଗବତୀ ଝରଣା ଠାରୁ ବି କମ୍ ନୁହେଁ । ଜଣେ ସଫଳ ଅଧ୍ୟାପକ ଭାବେ ଛାତ୍ରଛାତ୍ରୀଙ୍କ ନିକଟରେ ସେ ଯେତିକି ଆଦରଣୀୟ, ଅଧ୍ୟକ୍ଷଭାବେ ସଚ୍ଚୋଟ, ଦକ୍ଷ ଓ ପାରିବା ପଣିଆ ପାଇଁ ଶିକ୍ଷା ବିଭାଗରେ ସେତିକି ଗ୍ରହଣୀୟ । ଛାତ୍ର ଜୀବନରେ ଜଣେ ନିର୍ଭୀକ ଛାତ୍ର ନେତା ଭାବେ ସେ ନଜିର ସୃଷ୍ଟି କରିଛନ୍ତି । ତାଙ୍କ ସାରାଜୀବନ କଟିଛି ଶିକ୍ଷା ଶିକ୍ଷାୟତନ, ପରି ଏକ ସୀମାହୀନ ସମାଜରେ ଯେଉଁଠି ସମସ୍ୟାର ଅନ୍ତନାହିଁ, କି ସମାଧାନର ପନ୍ଥାନାହିଁ । ଛାତ୍ର ଜୀବନରେ ଛାତ୍ରମାନଙ୍କ ନେତୃତ୍ୱ ନେବାଭଳି ଶିକ୍ଷକତା ସମୟରେ ରାଜ୍ୟର ସମଗ୍ର ଶିକ୍ଷକ ସମାଜକୁ ନେତୃତ୍ୱ ଦେବାରେ ତାଙ୍କର ଅବଦାନ ଅବିସ୍ମରଣୀୟ । ଦାବି ପୂରଣ ପାଇଁ ସହଧର୍ମୀମାନଙ୍କ ଚିନ୍ତନ ବୈଠକରେ ହେଉ ବା ରାଜରାସ୍ତାକୁ ଓହ୍ଲାଇବାରେ ହେଉ । ପ୍ରତିଟି ଜଟିଳ ପରିସ୍ଥିତିରେ ତାଙ୍କ ସୁଚିନ୍ତିତ ବିଗ୍ରହ ଭୁଲିବାର ନୁହେଁ । ଶିକ୍ଷକ ସମାଜର ତାଙ୍କ ସମସାମୟିକ ବହୁ ସଂଗ୍ରାମୀ ସାଥୀ ଏକଥା ମୁକ୍ତ କଣ୍ଠରେ ସ୍ୱୀକାର କରିଛନ୍ତି । ଦାବି ହାସଲ ପାଇଁ ଗଣତାନ୍ତ୍ରିକ ଧାରାରେ ସଂଗ୍ରାମ କରିବାରେ ତାଙ୍କର ଦୃଢ଼ ଆସ୍ଥା ଥିବାରୁ ଭାବ ପ୍ରବଣତା ତାଙ୍କୁ ଆଦୌ ସ୍ପର୍ଶ କରିନାହିଁ ।

୧୯୬୩ ମସିହାର କଥା । ସେତେବେଳେ କଲେଜ ସ୍ତରରେ ପ୍ରତିବର୍ଷ ପରି ୟୁଥ୍ ଫେଷ୍ଟିଭାଲ୍ ହୋଇଥାଏ । ବାଣୀବିହାରରେ ପ୍ରାୟ ଚାରିପାଞ୍ଚଦିନ ଧରି ହେଉଥିବା ଏ ଉତ୍ସବରେ ବିଭିନ୍ନ କଲେଜରୁ ଛାତ୍ରଛାତ୍ରୀ ଯୋଗଦେଇ ବିଭିନ୍ନ ବିଭାଗରେ ପ୍ରତିଯୋଗିତାରେ ଅଂଶ ଗ୍ରହଣ କରିଥିଲେ । ସେ ବର୍ଷ ମୋ କଲେଜ (ବିଜେବି) ଏହି ଉତ୍ସବରେ ଅଂଶୀଦାର ଥିଲା । ବିଜେବି କଲେଜର ଛାତ୍ର ସଂସଦର ସାଧାରଣ ସଂପାଦକ ଥିବା ଦୃଷ୍ଟିରୁ ଏ ଉତ୍ସବକୁ ମୁଁ ବି

ଯାଇଥାଏ । ସେଠି ଭୋଳିବାବୁ କଲେଜର ଜଣେ ଛାତ୍ରୀ ସମେତ କେତେକ ଛାତ୍ରଙ୍କୁ ନେଇ ଉତ୍ସବରେ ଭାଗନେବାକୁ ଆସିଥାନ୍ତି । ରାଜ୍ୟସ୍ତରୀୟ ଉତ୍ସବରେ ନବଗଠିତ ଜଗତସିଂହପୁର କଲେଜର ପିଲାମାନେ ଭାଗନେଇ ଆତ୍ମ ବିଶ୍ୱାସ ବଢାନ୍ତୁ ଏଭଳି ଚିନ୍ତନ ଥିଲା ତାଙ୍କର । ନୂଆ କଲେଜ ଗଢିବାର ପରିଚ୍ଳନା କର୍ତ୍ତୃପକ୍ଷଙ୍କୁ ସହଯୋଗର ହାତ ବଢାଇବାରେ କେବଳ ମାନସିକତା ନଥିଲା, କାର୍ଯ୍ୟରେ ବି ପରିଣତ ହେଉଥିଲା ।

ବିଂଶ ଶତାବ୍ଦୀର ଶେଷ ଦଶକରେ ବାଚସ୍ପତି ଥାଆନ୍ତି ଯୁଧିଷ୍ଠିର ଦାସ । କିଶନ ନଗର ନିର୍ବାଚନ ମଣ୍ଡଳୀରୁ ଜନତା ଦଳ ଟିକଟରେ ଜିତି ସେହିବର୍ଷ ପ୍ରଥମଥର ବିଧାୟକ ହୋଇଥିଲେ ମଧ୍ୟ ବିଧାନସଭାର ବାଚସ୍ପତି ଭାବେ ନିର୍ବାଚିତ ହୋଇଥାନ୍ତି । ତାଙ୍କ ନିର୍ବାଚନ ମଣ୍ଡଳୀରେ ଥାଏ କିଶୋରନଗର କଲେଜ । ମନ୍ତ୍ରୀ ଓ ବିଧାୟକ ଗଣ ନିଜ ନିର୍ବାଚନ ମଣ୍ଡଳୀରେ ଥିବା କଲେଜ ପରିଚ୍ଳନା କମିଟିର ଅଧ୍ୟକ୍ଷ ଭାବରେ ନିଜ କଲେଜକୁ ସେମାନଙ୍କର ମନୋନୀତ ବ୍ୟକ୍ତିଙ୍କୁ ଅଧ୍ୟକ୍ଷ କରିନେବାରେ ବହୁ ନଜିର୍ ରହିଛି । ଯୁଧିଷ୍ଠିର ଦାସ ଏହି ମନୋଭାବର ବ୍ୟକ୍ତି ନଥିଲେ । ତେଣୁ କିଶୋର ନଗର କଲେଜକୁ କିଏ ଅଧ୍ୟକ୍ଷ ହୋଇ ଆସିବେ ସେଥିପାଇଁ ସେ କାହାକୁ କହି ନଥିଲେ । ଶିକ୍ଷା ବିଭାଗର ଗତାନୁଗତିକ ଢଙ୍ଗରେ ଭୋଳିବାବୁଙ୍କର ଏ କଲେଜକୁ ଅଧ୍ୟକ୍ଷ ଭାବରେ ବଦଳି ହୋଇଥିଲା । ମୋର ସୌଭାଗ୍ୟ କି ଦୁର୍ଭାଗ୍ୟ ମୁଁ ଜାଣେନା ; ଯୁଧିଷ୍ଠିର ଦାସ ମୋତେ ତାଙ୍କ ସୂଚନା ଅଧିକାରୀଭାବେ ନିଯୁକ୍ତି ଦେଇଥିଲେ । ଦିନେ ମୁଁ ବାଚସ୍ପତିଙ୍କ କାର୍ଯ୍ୟାଳୟରେ ଥାଏ, ଭୋଳିବାବୁ ହଠାତ୍ ଅଫିସରେ ପହଞ୍ଚିଲେ । ତାଙ୍କୁ ଦେଖି "ସାର୍ ହଠାତ୍ ଆପଣ କୁଆଡ଼େ ଆସିଛନ୍ତି; କୁହନ୍ତୁ" କହି ବସିବାକୁ ଅନୁରୋଧ କଲି ସେ ନବସି ମୋତେ ବାହାରକୁ ଡାକିଲେ ଓ ଯାହା କହିଲେ ତାହା ଏହିପରି "ମୋର କିଶୋର ନଗର କଲେଜକୁ ଅଧ୍ୟକ୍ଷ ଭାବେ ବଦଳି ହୋଇଛି; ମୁଁ ଜଏନ୍ କରିବି କି' ନାଁ" ? ଏକଥା ଶୁଣି ମୁଁ ଯେଉଁ ଖୁସି ହୋଇଥିଲି ତାହା ଏଠି ଉଲ୍ଲେଖ କରିବାକୁ ମୋର ଭାଷା ନାହିଁ । ସବୁପ୍ରକାର ସହଯୋଗର ପ୍ରତିଶ୍ରୁତି ମୋ ପକ୍ଷରୁ ତାଙ୍କ ପାଇଁ ରହିଛି କହି ବାଚସ୍ପତିଙ୍କ ସହ ଦେଖା କରାଇଲି । ଯୁଧିଷ୍ଠିର ଦାସ ଏକ ନିଆରା ମଣିଷ । ସେ ବି ସହଯୋଗ ପାଇଁ କଥା ଦେଲେ ଓ କଲେଜକୁ ଆଦର୍ଶ କଲେଜଟିଏ କରିବାକୁ ପରାମର୍ଶ ଦେଲେ । ସେଠାରେ ଅଧ୍ୟକ୍ଷ ରହି ଅସଜଡ଼ା କଲେଜକୁ ବହୁ ଭାବରେ ସଜାଡ଼ି ଦେଇଥିଲେ । ଅଧ୍ୟାପନାର ଢଙ୍ଗ ବଦଳି ଯାଇଥିଲା । କଲେଜର ଉନ୍ନତି ପାଇଁ ବିଭିନ୍ନ ପ୍ରସ୍ତାବ ବାଢ଼ି ତାକୁ କାର୍ଯ୍ୟକାରୀ କରିବା ଦିଗରେ ସେ ଯେଉଁ ପ୍ରଚେଷ୍ଟା କରିଥିଲେ ତାହା ସେତେବେଳର ଛାତ୍ରଛାତ୍ରୀ ପରିଚାଳନା କମିଟି ଓ ତାଙ୍କ ସହକର୍ମୀ ଅଧ୍ୟାପକ ଅଧ୍ୟାପିକା କେବେ ଭୁଲିବେ ନାହିଁ । ତାଙ୍କରି ସମୟରେ କଲେଜର ବାର୍ଷିକ ଉତ୍ସ

ବଙ୍କୁ ରାଜ୍ୟପାଳଙ୍କୁ ଆମନ୍ତ୍ରଣ କରି କଲେଜର ମର୍ଯ୍ୟାଦା ବଢାଇଥିଲେ । ଅଧ୍ୟକ୍ଷଭାବେ ତାଙ୍କ ପ୍ରଶାସନିକ ଦକ୍ଷତାର ମୂକସାକ୍ଷୀ ହେଉଛି କିଶୋର ନଗର କଲେଜ ।

ଆଗରୁ ଉଲ୍ଲେଖ କରିଛି ଯେ ମୁଁ ତାଙ୍କର ଛାତ୍ରନଥିଲି । କିନ୍ତୁ ସାର୍ ବୋଲି ସମ୍ବୋଧନ କରି ଆସିଛି । କିଶୋର ନଗର କଲେଜରେ ତାଙ୍କ ଅଧ୍ୟକ୍ଷ ଭାବରେ ଥିବା ସମୟରେ ତାଙ୍କ ସହିତ ଏକ ସର୍ବସାଧାରଣ ଅନୁଷ୍ଠାନରେ କାର୍ଯ୍ୟକରିବାର ପ୍ରଥମ ସୁଯୋଗ ମୋତେ ମିଳିଥିଲା ଓ ଏହି ସମୟରେ ତାଙ୍କ ଠାରୁ ବହୁ ଶ୍ରଦ୍ଧା ମୋତେ ମିଳିଛି । ତାଙ୍କର ସବୁଠାରୁ ମହାନତା ହେଉଛି ଯେ ମୋତେ ଏବେବି ଗୌରାଙ୍ଗ ବାବୁ ବୋଲି ଡାକନ୍ତି, ଜଣେ ବନ୍ଧୁ ଭାବରେ ଦେଖନ୍ତି, ବିଭିନ୍ନ ପ୍ରସଙ୍ଗରେ ଆଲୋଚନା କରନ୍ତି । ଅଧ୍ୟାପକ ଜୀବନରୁ ସେବା ନିବୃତ ହେବାପରେ ଜଗତସିଂହପୁର ଜିଲ୍ଲାର ବିଭିନ୍ନ ସାଂସ୍କୃତିକ ଜାଗରଣର ସେ ଥିଲେ କର୍ଣ୍ଣଧାର । ଅଳକା କଳାମଣ୍ଡପ, ବାଳକୃଷ୍ଣ ମହାନ୍ତି ସ୍ମୃତି ସ୍ମରଣ ପାଇଁ ଜୟନ୍ତୀ ସମାରୋହ ପୁସ୍ତକ ମେଳା ବିଭିନ୍ନ ସାହିତ୍ୟ ତଥା ସଂସ୍କୃତି ମଞ୍ଚର ସୃଷ୍ଟି ପଛରେ ରହିଛି ତାଙ୍କର ବଳିଷ୍ଠ ଅବଦାନ । ଏହି ସମୟ ମଧ୍ୟରେ ତାଙ୍କ ଲେଖନୀରୁ ଯେଉଁ ଗ୍ରନ୍ଥସବୁ ସୃଷ୍ଟି ହୋଇଛି ସେସବୁ ଓଡ଼ିଆ ସାରସ୍ୱତ ଗନ୍ତାଘରକୁ ସମୃଦ୍ଧ କରିଛି । ତାଙ୍କର ଏ ପ୍ରତିଟି କାର୍ଯ୍ୟରେ ମହେନ୍ଦ୍ର କୁମାର ଆଗ୍ରର୍ଯ୍ୟ ସହଯୋଗ କରି ଆସିଛନ୍ତି । ସାଥୀ କୁଳମଣିବାବୁ ଆରପାରିରେ । ତାଙ୍କ ସହିତ ପ୍ରତିଟି କାର୍ଯ୍ୟରେ ଆଜି ସହଯୋଗ କରୁଛନ୍ତି ହେମନ୍ତ ରଥ, ଗୋପାଳ ମିଶ୍ର ଉତ୍କଳ ମହାନ୍ତି ପ୍ରଭୃତି । ଜଗତସିଂହପୁରର ଅତୀତ ଓ ବର୍ତ୍ତମାନ ତିନୋଟି ଗ୍ରନ୍ଥ ତାଙ୍କ ସଂପାଦନାରେ ପ୍ରକାଶ ପାଇଛି । ପ୍ରତିଟି ସାହିତ୍ୟିକ, ଐତିହାସିକ, ଛାତ୍ର, ଶିକ୍ଷକ, ସାଧାରଣ ଲୋକଙ୍କ ପାଇଁ ଏ ସଂକଳନଟି ହେଉଛି ଅମୂଲ୍ୟ ଗ୍ରନ୍ଥ । ଯାହାକୁ ସଂକଳନ କରିବା ପାଇଁ ତାଙ୍କ ନିଷ୍ଠା ଓ ନିରନ୍ତର ପ୍ରଚେଷ୍ଟାର ତୁଳନା ନାହିଁ । ଏ ସଂପର୍କରେ ମୋର ଗୋଟେ ଛୋଟ ଅନୁଭୂତିକୁ ଉଲ୍ଲେଖ ନକରି ରହିପାରୁନି । ଥରେ ମୋତେ ଘରକୁ ଡାକି ଜଗତସିଂହପୁରରେ ଛାତ୍ର ଆନ୍ଦୋଳନ ସଂପର୍କରେ ଲେଖାଟିଏ ଲେଖିବାକୁ କହିଲେ । ମୁଁ ଭାରି ଢିଲା ଲୋକ । ଲେଖିବି ଲେଖିବି ବୋଲି ଦିନ ମାସ ଗଡ଼ିଗଲିଲା । ଲେଖାପାଇଁ କେତେଯେ ଟେଲିଫୋନ୍ କରିଛନ୍ତି ସେକଥା ନକହିବା ଭଲ । ଶେଷରେ ବ୍ରହ୍ମାସ୍ତ୍ର ପ୍ରୟୋଗ ହେଲା । ସକାଳୁ ସକାଳୁ ଚାଲି ଚାଲି ମୋ ପାଖରେ ଥରେ ନୁହେଁ ଦୁଇ ତିନିଥର ପହଞ୍ଚିଗଲେ । ଆଉ ଯାଏ କୁଆଡ଼େ । ବସି ଲେଖି ଦେଇଆସିଲି । ୧୯୬୪ର ଛାତ୍ର ଆନ୍ଦୋଳନରେ ମୋର ସକ୍ରିୟ ଭୂମିକା ଥିବାରୁ ଅନେକ ଆତ୍ମକେନ୍ଦ୍ରିକ ଶବ୍ଦ ବ୍ୟବହାର ହେବା ସ୍ୱାଭାବିକ । ଏ ଦୃଷ୍ଟିରୁ ଏହାକୁ ସଂପାଦକ ସଂପାଦନା କରିନେବାକୁ ଅନୁରୋଧ କରିଥିଲି । କିନ୍ତୁ ସେପରି ଶବ୍ଦରେ ହାତ ନମାରି ଅନ୍ୟ ଏକ ଖଣ୍ଡବାକ୍ୟକୁ ଉଠାଇ ଦେଲେ । ସେହି ଐତିହାସିକ ଛାତ୍ର

ଆନ୍ଦୋଳନରେ ସ୍ୱଳ୍ପ ବୟସର ସ୍କୁଲ ଛାତ୍ରଛାତ୍ରୀଗଣ ବିଭିନ୍ନ ଶୋଭାଯାତ୍ରାରେ ପୂର୍ବତନ ଦୁଇ ମୁଖ୍ୟମନ୍ତ୍ରୀଙ୍କୁ ମିଶାଇ ଯେଉଁ ନିନ୍ଦାବାଦର ସ୍ଲୋଗାନ ଦେଉଥିଲେ ମୋ ଲେଖାଟିରେ ଏହା ଉଲ୍ଲେଖ ଥିଲା । ସଂପାଦନା ବେଳେ ଏହି ସ୍ଲୋଗାନକୁ ଉଠାଇ ଦେଇ ଲେଖାଟି ପ୍ରକାଶ କରିଥିଲେ । ଏହି ସ୍ଲୋଗାନ ସେତେବେଳେ ସାରା ରାଜ୍ୟରେ ଚର୍ଚ୍ଚାର ବିଷୟ ଥିଲା । ତାଙ୍କର ତେଜୋଦୀପ୍ତ ପ୍ରତିଭାର ବହ୍ନିମାନ ଶିଖା ଆଗରେ ଏଥିପାଇଁ ପ୍ରତିବାଦ କରିପାରି ନଥିଲି । ବହୁଦିନ ପରେ ଏକ ଅନ୍ତରଙ୍ଗ ମୁହୂର୍ତ୍ତରେ ଏଥିପାଇଁ ଜିଜ୍ଞାସା କଲାବେଳେ 'ଶାଳୀନତା ଦୃଷ୍ଟିରୁ ଏକାକୁ ଲେଖାଟିରୁ ବାଦ ଦିଆଯାଇଥିଲା ବୋଲି କହିଥିଲେ । 'ସେଦିନ ତାଙ୍କ ପ୍ରତି ଥିବା ମୋର ସମ୍ମାନ ଆହୁରି ବଢିଯାଇଥିଲା ।

ତାଙ୍କ ସହ ଏକାଠି କାର୍ଯ୍ୟକରିବାର ସୁଯୋଗ ମୋତେ ମିଳିଥିଲା ଜିଲ୍ଲା ମହୋତ୍ସବର ସ୍ମରଣିକା "ଆଦିପତ୍ର" ସଂପାଦନା ସମୟରେ ସ୍ମରଣିକା ସଂପାଦନ ପାଇଁ ଉଦ୍ଦିଷ୍ଟ ସବ୍‌କମିଟିରେ ମୋତେ ରଖିବା ପାଇଁ ସେ ପ୍ରସ୍ତାବ ଦେଇଥିଲେ ଏବଂ ପ୍ରସ୍ତୁତି କମିଟି ଏହାକୁ ଅନୁମୋଦନ ପରେ ସଂପାଦନା ମଣ୍ଡଳୀରେ ଅନ୍ୟତମ ସଦସ୍ୟ ଭାବେ ଅନ୍ତର୍ଭୁକ୍ତ ହେଲି । କମିଟିର କାର୍ଯ୍ୟ କଲାବେଳେ ତାଙ୍କ ପରିଚୟ ପରିସର ଯେ ଏତେ ବ୍ୟାପକ ତାହା ମୋତେ ସ୍ତମ୍ଭୀଭୂତ କରିଦେଲା । ରାଜ୍ୟର ବିଭିନ୍ନ ପଦପଦବୀର ଭିନ୍ନ ଭିନ୍ନ ବ୍ୟକ୍ତିତ୍ୱଙ୍କ ସହ ସଂପର୍କ କରି "ଆଦିପତ୍ର" ଲେଖା ମାଗିସାରିଥାନ୍ତି । ଅନୁଗତ ମହେନ୍ଦ୍ରବାବୁ ଏ ସବୁ କାର୍ଯ୍ୟରେ ସାହାଯ୍ୟ କରିବାରେ କମ ନିପୁଣ ନୁହଁନ୍ତି । ଯେପରି ଭାବରେ ନିଜ ଟେଲିଫୋନକୁ ଦୈନିକ ଘଣ୍ଟା ଘଣ୍ଟା ବ୍ୟବହାର କରି ଲେଖା ସବୁକୁ ସେ ସଂଗ୍ରହ କରନ୍ତି ତାହା ମୋ ନିଜ ଅଭିଜ୍ଞତାରୁ ଜାଣିଛି । ତାଙ୍କ ସହ ଏହି ସଂପାଦନା କାର୍ଯ୍ୟରେ ସାମିଲ୍ ହୋଇ ବହୁ ସ୍ନେହ ପାଇଛି  ଯାହା ମୋ ପାଇଁ ସାହିତ୍ୟ ସଂପଦ କହିଲେ ଭୁଲ ହେବନାହିଁ । ଗତ ୨୦୧୫ର "ଆଦିପତ୍ର" ପ୍ରକାଶନ ବେଳକୁ ସେ ଅସୁସ୍ଥ ଥିଲେ । ମହେନ୍ଦ୍ରବାବୁ ଓ ମୁଁ ତାଙ୍କୁ ଦେଖାକଲାବେଳେ ସେ ସଂପାଦନା କାର୍ଯ୍ୟ କରିପାରୁନାହାନ୍ତି ବୋଲି ବେଦନାସିକ୍ତ ମନରେ ଅନ୍ତରର କଥା ପ୍ରକାଶ କରୁଥାନ୍ତି । ଜଣେ କର୍ମଚଞ୍ଚଳ ସାରସ୍ୱତ ସାଧକର ମାନସିକତାକୁ କେବଳ ଅନୁଭବି ହିଁ ବୁଝିପାରିବ । ଆଜି ତାଙ୍କର ପରିସ୍ଥିତିରେ କରୁଣାମୟ ଜଗନ୍ନାଥଙ୍କ ନିକଟରେ ଏତିକି ପ୍ରାର୍ଥନା ଉତ୍କଳ ଜନନୀଙ୍କ ବାଣୀଭଣ୍ଡାରକୁ ଆହୁରି ସମୃଦ୍ଧ କରିବା ପାଇଁ ତାଙ୍କୁ ସୁସ୍ଥ ଆଉ ନିରାମୟ ଜୀବନ ପ୍ରଦାନ କରନ୍ତୁ । ■

# ଡକ୍ଟର ଭୋଳାନାଥ ରାଉତ
# ଜଣେ ସଂସ୍କୃତି ସଂପନ୍ନ ବ୍ୟକ୍ତି

ରାଜକିଶୋର ଖଟୁଆ

ଜଗତସିଂହପୁର ସ୍ୱାମୀ ବିବେକାନନ୍ଦ ସ୍ମାରକ ମହାବିଦ୍ୟାଳୟରେ ଡଃ ଭୋଳାନାଥ ରାଉତ ଅଧ୍ୟାପକ ଥିବା ସମୟରେ ଜଗତସିଂହପୁର ଠାରେ କୌଣସି ନୃତ୍ୟ ଗୀତ ଆଦି ସାଂସ୍କୃତିକ ଶିକ୍ଷା ଅନୁଷ୍ଠାନ ନଥିଲା । ଡ କଳ୍ପତରୁ ବିଶ୍ୱାଳ, ଭୋଳାନାଥ ରାଉତ ଏକ ସାଂସ୍କୃତିକ ଅନୁଷ୍ଠାନ ପ୍ରତିଷ୍ଠା କରିବା ଉଦେଶ୍ୟରେ ପୁଣ୍ୟତୋୟା ଅଳକା ନଦୀନାମରେ ଶ୍ରୀପତି ନନ୍ଦଙ୍କୁ ଧରି ଅଳକା କଳାମଣ୍ଡପ ଗଠନ କରିଥିଲେ । ଏହା ଜଗତସିଂହପୁର ଜିଲ୍ଲାର ପ୍ରଥମ ସାଂସ୍କୃତିକ ଅନୁଷ୍ଠାନ । ତତ୍‌କାଳୀନ କଂଗ୍ରେସ ନେତା ମହନ୍ତ ହରମୋହନ ଦାସଙ୍କୁ ସଭାପତି ଓ ବିଷ୍ଣୁ ଚରଣ ମହାନ୍ତିଙ୍କୁ ସଂପାଦକ ରୂପେ ମନୋନୀତ କରି ଅନୁଷ୍ଠାନ ପରିଚାଳନା କରୁଥିଲେ ।

ଏହି ସମୟରେ ସେମାନେ କବିଚନ୍ଦ୍ର କାଳି ଚରଣ ପଟ୍ଟନାୟକଙ୍କର ଜୟନ୍ତୀ ପାଳନ ମହାସମାରୋହରେ ଅନୁଷ୍ଠିତ କରିଥିଲେ ଏବଂ କେତେକ ସ୍ଥାନରେ ସାଂସ୍କୃତିକ କାର୍ଯ୍ୟକ୍ରମ କରୁଥିଲେ ।

୧୯୬୯ ମସିହାରେ ଉକ୍ତ ଅନୁଷ୍ଠାନଟି ବଂଦ ହେବାକୁ ଯାଉଥିଲା ଠିକ୍ ଏହି ସମୟରେ ୧୯୭୦ ମସିହାରେ ମୁଁ ଜଗତସିଂହପୁରରେ ଓକିଲାତି କରିବାକୁ ଆସିଥିଲି । ମୁଁ କଟକରେ ଥିବା ଅବସ୍ଥାରେ ଗୁରୁ ଦୟାନିଧି ଦାସଙ୍କ ପ୍ରତିଷ୍ଠିତ କଳାଭବନର ସଂପାଦକ ଥିଲି । କଟକ ସହରରେ ବିଭିନ୍ନ ସାଂସ୍କୃତିକ କାର୍ଯ୍ୟକ୍ରମ କରୁଥିଲି ଜଗତସିଂହପୁରରେ ପହଞ୍ଚି ଜାଣିବାକୁ ପାଇଲି ଉକ୍ତ ଅନୁଷ୍ଠାନଟି ମୁମୂର୍ଷୁ ଅବସ୍ଥାରେ ଅଛି । ତତ୍‌କାଳୀନ ଏସ୍.ଡି.ଓ ସତ୍ୟନାରାୟଣ ମହାନ୍ତିଙ୍କ ସହାୟତାରେ ଉକ୍ତ ଅନୁଷ୍ଠାନର ପୁନଃଉଦ୍ଧାର କରି ଡାକ୍ତର କଳ୍ପତରୁ ବିଶ୍ୱାଳ, ଡ. ରାଉତଙ୍କୁ ଧରି ପୁନର୍ବାର ଅନୁଷ୍ଠାନଟିକୁ କାର୍ଯ୍ୟକ୍ଷମ କରାଇଲି । ସେଥିରେ U.B.I Field officer ହରିହର ରଥ ପୂର୍ଣ୍ଣ ସହଯୋଗ କଲେ । ଗୁରୁ ଅକ୍ରୁର ମହାରଣା ପ୍ରଫୁଲ୍ଲ ବଳ ଏବଂ ନୃତ୍ୟଗୁରୁ ଦୁର୍ଗାଚରଣ ରଣବୀରଙ୍କ ଦ୍ୱାରା ନୃତ୍ୟ, ସଂଗୀତ ଓ ତାବଲା ଓ ଓଡ଼ିଶୀ ନୃତ୍ୟ ଶିକ୍ଷାଦାନ ଚାଲିଲା । ଜଗତସିଂହପୁର ଟାଉନ୍‌ହଲ ଉଦ୍‌ଘାଟନ ସମୟରେ ଉକ୍ତ ଅନୁଷ୍ଠାନ

ଦ୍ୱାରା ସାଂସ୍କୃତିକ କାର୍ଯ୍ୟକ୍ରମ କରି ଏହି ଅନୁଷ୍ଠାନ ବେଶ୍ ସୁନାମ ଅର୍ଜନ କରିଥିଲା ଏବଂ ଜିଲ୍ଲାର ସମସ୍ତ ପ୍ରମୁଖ ସ୍ଥାନରେ ଥିବା ବିଭିନ୍ନ କାର୍ଯ୍ୟକ୍ରମରେ ନୃତ୍ୟ ପରିବେଷଣରେ ବେଶ୍ ସୁନାମ ଅର୍ଜନ କରିଥିଲା । ବର୍ତ୍ତମାନ ଓଡ଼ିଶାର ସୁନାମଧନ୍ୟ ଗାଇକା ଗୀତାଦାସ ଏଠାରେ ଗୀତଶିକ୍ଷା କରୁଥିଲେ ଯେହେତୁ ତାଙ୍କର ବାପା ଏଠାରେ ତହସିଲ୍‌ଦାର ଥିଲେ । ଡଃ ଭୋଳାନାଥ ରାଉତ ଶ୍ରୀମା ଶ୍ରୀଅରବିନ୍ଦ ଆଶ୍ରମରେ ଜଣେ ଭକ୍ତଥିଲେ ଓ ନିଜକୁ ଶ୍ରୀମା ଓ ଶ୍ରୀ ଅରବିନ୍ଦଙ୍କ ଆଦର୍ଶରେ ଅନୁପ୍ରାଣିତ କରିଥିଲେ ଏବଂ ଅନୁଷ୍ଠାନର ବିଭିନ୍ନ କାର୍ଯ୍ୟକ୍ରମ ପରିଚାଳନା କରୁଥିଲେ । ଏବଂ ଜଣେ ସୁବକ୍ତା ଓ ଲେଖକ ଥିଲେ । ତାଙ୍କର ଲେଖା ଅଳକାମଣ୍ଡପର ଛାତ୍ରଛାତ୍ରୀମାନେ ନୃତ୍ୟ ସଂଗୀତରେ ପରିବେଷଣ କରୁଥିଲେ ।

ଏହି ସମୟରେ ଶ୍ରୀ ସୋମନାଥ ମହାପାତ୍ର ହାଟରେ ସ୍ୱାତୀ ରଙ୍ଗମଞ୍ଚ ଗଠନ କରି ପ୍ରଥମ ଟିକେଟ୍ ସେଲ୍ ଯାତ୍ରାସହ ବାଳକୃଷ୍ଣ ଜୟନ୍ତୀ ପ୍ରତି ବର୍ଷ ପାଳନ କରୁଥିଲେ ଏଥିରେ ଅଳକା କଳାମଣ୍ଡପ ଡଃ କଳ୍ପତରୁ ବିଶ୍ୱାଳ କସ୍ତୁରୀ ସେନାପତି, ଭଗବାନ ରାଉତ, ନିମାଇଁ ରାଉତ, ଅଭିମନ୍ୟୁ ମହାରଣା, ଚିତ୍ତରଞ୍ଜନ ଓଝା, ଦ୍ୱିଜବର ବେହେରା, ଅନିଲ୍ ସେନାପତି, ଶୁକଦେବ ମହାରଣା, ହେମଲତା ଦାସ, ମନୋରଞ୍ଜନ ଓଝା, ବନମାଳି ଓଝା, ଡଃ ଭୋଳାନାଥ ରାଉତ ଏବଂ ମୁଁ ସକ୍ରିୟ ଭାବେ ଅଂଶ ଗ୍ରହଣ କଲୁ ଏବଂ ପ୍ରତିବର୍ଷ ସାଂସ୍କୃତିକ କାର୍ଯ୍ୟକ୍ରମ ମାନ ପରିବେଷଣ କରୁଥିଲୁ ଅନ୍ନପୂର୍ଣ୍ଣା (ଏ)ର କଳାକାର ମାନଙ୍କୁ ଉକ୍ତ ମଞ୍ଚରେ ସମ୍ବର୍ଦ୍ଧନା ଜ୍ଞାପନ କରାଯାଇଥିଲା । ଏଥିରେ ନିମାଇଁ ଚରଣ ପଟ୍ଟନାୟକ, ଖଗେନ୍ଦ୍ରନାଥ ଚୌଧୁରୀ , ଜଗଦାନନ୍ଦ ମହାନ୍ତି, ବାମନଚରଣ ମହାପାତ୍ର ପ୍ରମୁଖ ସହଯୋଗ କରିଥିଲେ । ପରବର୍ତ୍ତୀ କାଳରେ ଗୀତିନାଟ୍ୟ ଅନୁଷ୍ଠାନ ରାଧାକୃଷ୍ଣଙ୍କର ମାନଭଞ୍ଜନ ଗୀତିନାଟ୍ୟ ପରିବେଷଣ କରିଥିଲେ । ସେମାନଙ୍କୁ ମଧ୍ୟ ସମ୍ବର୍ଦ୍ଧିତ କରାଯାଇଥିଲା । ପ୍ରତିବର୍ଷ ବାଳକୃଷ୍ଣ ଜୟନ୍ତୀ ମହାସମାରୋହରେ ପାଳନ କରାଯାଉଥିଲା ଏଥିରେ ଭୋଳାନାଥ ରାଉତ ପ୍ରମୁଖ ଭୂମିକା ଗ୍ରହଣ କରୁଥିଲେ ।

ଅଳକା କଳାମଣ୍ଡପର ବାର୍ଷିକ ଉତ୍ସବରେ ବିଭିନ୍ନ ମନ୍ତ୍ରୀ ଓ ବକ୍ତାମାନେ ଆସି ଯୋଗଦାନ କଲାବେଳେ ଡଃ ଭୋଳାନାଥ ରାଉତଙ୍କ ପରାମର୍ଶରେ ସବୁକାର୍ଯ୍ୟ ସଂପାଦାନ ହେଉଥିଲା । ଡକ୍ଟର କଳ୍ପତରୁ ବିଶ୍ୱାଳଙ୍କ କ୍ଲିନିକ୍‌ରେ ବସି ବିଭିନ୍ନ ଆଲୋଚନା କରି ଏ ଅଞ୍ଚଳର ସାଂସ୍କୃତିକ ପରଂପରା ଏବଂ ସାଂସ୍କୃତିକ କାର୍ଯ୍ୟକ୍ରମ ଗ୍ରହଣ କରାଯାଇ ଏ ଅଞ୍ଚଳର ଏକ ସାଂସ୍କୃତିକ ପରିବେଶ ସୃଷ୍ଟି କରାଯାଇଥିଲା । ■

# ଭୋଳାନାଥ ବାବୁଙ୍କୁ ଯେତିକି ଜାଣେ

ଡାକ୍ତର ନଟବର ନାୟକ

ମୁଁ ୧୯୬୧ରେ ଶ୍ରୀକୃଷ୍ଣ ଏକାଡେମୀରେ ଯୋଗ ଦିଏ ଓ ୧୯୬୨ ଠାରୁ ଜଗତସିଂହପୁର ବଜାରରେ ଅବସ୍ଥାନ କରେ । ଏହା ପରେ ପ୍ରତିଷ୍ଠିତ ହୁଏ ଏସ୍.ଭି.ଏମ୍. କଲେଜ । ଭୋଳିବାବୁ ଏହି କଲେଜରେ ଓଡ଼ିଆ ଅଧ୍ୟାପକ ଭାବରେ ଯୋଗଦିଅନ୍ତି । ଜଗତସିଂହପୁର ମାଛଗାଁ ରାସ୍ତାର ଉତ୍ତରପଟେ ଖେରସ ମୌଜାରେ ମୋର ବାସଗୃହ । ମୋ ବାସଗୃହ ପୂର୍ବପଟେ ସେ ଗୋଟିଏ ବାସଗୃହ ନିର୍ମାଣ କରି ବାସ କରନ୍ତି । ସେ ମୋର ପଡୋଶୀ ହେବା କାରଣରୁ ତାଙ୍କ ମୋ ମଧ୍ୟରେ ସୁସଂପର୍କ ରହିବା ସ୍ୱାଭାବିକ ।

ସେ ଜଣେ ସାହିତ୍ୟିକ ଓ ଲେଖକ ହୋଇଥିବାରୁ ଜଗତସିଂହପୁର ଅରବିନ୍ଦ ଆଶ୍ରମ ନିକଟରେ ଅଳକା ପ୍ରେସ୍ ସ୍ଥାପନ କରନ୍ତି । ଏହା ବୋଧହୁଏ ଏ ଅଞ୍ଚଳର ପ୍ରଥମ ପ୍ରେସ୍ । ଏହି ପ୍ରେସ୍‌ରେ ମୁଁ 'ପ୍ରତିହିଂସା ନାମକ' ଏକ ନାଟକ ଛପାଇଥିଲି । ଏଥିରେ ତାଙ୍କର ମତାମତ ସ୍ଥାନ ପାଇଛି ତାରିଖ ୧୫.୦୪.୬୨ । ପ୍ରେସ୍ ଏହି ତାରିଖ ପୂର୍ବରୁ ପ୍ରତିଷ୍ଠା ହୋଇଥିବା ଜଣାପଡ଼େ । ଏହା ପୂର୍ବରୁ ବା ପରେ ଠିକ୍ ଭାବରେ ମନେ ନାହିଁ, ମୁଁ ଏହି ପ୍ରେସ୍‌ରେ ଆଉ ଗୋଟିଏ 'ହୋମିଓପାଥି' ପୁସ୍ତକ ଛପାଇଥିଲି । ଏହି ପ୍ରେସ୍ ପ୍ରତିଷ୍ଠା ଫଳରେ ସାହିତ୍ୟିକମାନେ ବହି ଓ ପତ୍ରିକା ଛାପିବାର ସୁବିଧା ପାଇଲେ ବିଭିନ୍ନ କାରଣରୁ ଏହି ପ୍ରେସ୍ ଅଳ୍ପଦିନ ପରେ ବନ୍ଦ ହୋଇଗଲା ।

ନାଟ୍ୟକାର ବାଳକୃଷ୍ଣ ମହାନ୍ତିଙ୍କ ଜୟନ୍ତୀ ପାଳନ କରିବାରେ ସେ ପ୍ରମୁଖ ଭୂମିକା ନେଉଥିଲେ । ତାଙ୍କୁ ଏ ଦିଗରେ ସହାୟତା କରୁଥିଲେ ସ୍ୱର୍ଗତଃ ସୋମନାଥ ମହାପାତ୍ର, ପଳାଶୋଳର ସ୍ୱର୍ଗତଃ ଯୋଗେନ୍ଦ୍ର ଷଡଙ୍ଗୀ ଓ ମାଧବାନନ୍ଦ ମନୋହାରୀ । ଏହି ଜୟନ୍ତୀ ଜଗତସିଂହପୁର ସାଂସ୍କୃତିକ ପରିଷଦ ତରଫରୁ ପାଳିତ ହେଉଥିଲା । ଭୋଳିବାବୁ ଏହାର ମୁଖ୍ୟ ପୁରୋଧା ଥିଲେ । ଏବେ ବହୁ ସାଂସ୍କୃତିକ ସଂଗଠନ ଗଢି ଉଠିଲେ ମଧ୍ୟ ବାଳକୃଷ୍ଣ ଜୟନ୍ତୀ ଆଉ ପାଳିତ ହେଉନାହିଁ ।

ସେ ଜଣେ ସୁସଂଗଠକ । କଲେଜ ସ୍ତରରେ ଯେଉଁ ସଂଘ ଥିଲା ସେ ଥିଲେ ତାହାର ଜଣେ ସକ୍ରିୟ ସଭ୍ୟ ଓ ଅନେକ ସମୟରେ ମୁଖ୍ୟ ପଦବୀରେ ମଧ୍ୟ ରହୁଥିଲେ । ସବୁ ସାଂସ୍କୃତିକ ଅନୁଷ୍ଠାନରେ ଯୋଗ ଦେଉଥିଲେ । ଅନେକ ସମୟରେ ଓଡ଼ିଶା ମାଧ୍ୟମିକ ସଭାସଂଘର ପୂର୍ବତନ ସଭାପତି ସ୍ୱର୍ଗତ ଅର୍ଜୁନ ଦାଶ ତାଙ୍କୁ ସହଯୋଗ ଦେଉଥିଲେ ।

ଜଗତସିଂହପୁର ପ୍ରତିବର୍ଷ ଯେଉଁ ପୁସ୍ତକମେଳା ହୁଏ ସେଥିରେ ସେ ମୁଖ୍ୟ ଭୂମିକା ଗ୍ରହଣ କରନ୍ତି ଓ ଏହାର ମୁଖପତ୍ର ମଧ୍ୟ ସଂପାଦନା କରିଥାନ୍ତି । ଅଳକା ସ୍ମରଣିକା ତାଙ୍କ ସଂପାଦନାରେ ପ୍ରକାଶ ପାଇଛି । ଯେଉଁଥିରେ କି ମୁଁ ଏହାର ସହଯୋଗୀ ସଂପାଦକ ଭାବରେ କାର୍ଯ୍ୟ ତୁଲାଇଛି ।

ନିକଟରେ ସେ ଜଗତସିଂହପୁର ଗବେଷଣା ପରିଷଦ ଗଠନ କରି ଏହାର ସଭାପତି ରହିଛନ୍ତି । ଏହି ପରିଷଦ ତରଫରୁ ସେ ନାରୀ ଲେଖିକା ଜ୍ଞାନପୀଠ ପୁରସ୍କାର ପ୍ରାପ୍ତ ଶ୍ରୀମତୀ ପ୍ରତିଭା ରାୟ ଓ ଜ୍ଞାନପୀଠ ପୁରସ୍କାରପ୍ରାପ୍ତ ବିଶିଷ୍ଟ କବି ସୀତାକାନ୍ତ ମହାପାତ୍ର ଓ ହରପ୍ରସାଦ ଦାସଙ୍କୁ ସମ୍ବର୍ଦ୍ଧନା ଦେଇଥିଲେ । ଏଥିରେ ଏହି ଜିଲ୍ଲାର ଅନେକ ସାହିତ୍ୟିକ ଯୋଗ ଦେଇଥିଲେ । ସେ ଶ୍ରୀମା ଅରବିନ୍ଦଙ୍କ ଜଣେ ଭକ୍ତ, ଜଗତସିଂହପୁର ଅରବିନ୍ଦ ଆଶ୍ରମ ନିର୍ମାଣରେ ମଧ୍ୟ ତାଙ୍କର ଭୂମିକା ରହିଛି । ତାଙ୍କର ସର୍ବଶ୍ରେଷ୍ଠ କୃତି ହେଉଛି ଜଗତସିଂହପୁର ଜିଲ୍ଲା ଇତିହାସ ସଂକଳନ । ଏହା ଏକ ମହତ୍ତ୍ୱପୂର୍ଣ୍ଣ କାର୍ଯ୍ୟ । ସେ ସରଳାଦେବୀଙ୍କ ଗ୍ରନ୍ଥାବଳି ସଂକଳନ କରୁଥିବା କଥା ମୋତେ କହୁଥିଲେ । ତାହା ବୋଧହୁଏ ଛପା ହୋଇ ପାରିନାହିଁ ।

ମୁଁ ତାଙ୍କର ଦୀର୍ଘ ନିରାମୟ ଜୀବନ ପାଇଁ ପ୍ରଭୁ ଜଗନ୍ନାଥଙ୍କ ପାଖରେ ପ୍ରାର୍ଥନା କରୁଛି । ■

ଖେରସ, ଜଗତସିଂହପୁର

# ସ୍ମୃତିର ଚିତ୍ରପଟରେ ପୂଜ୍ୟ ଭୋଳିବାବୁ

ବାସୁଦେବ ସ୍ୱାଇଁ

୧୯୬୨ ମସିହାରେ ଯେତେବେଳେ ମୁଁ ରେଭେନ୍‌ସା ମହାବିଦ୍ୟାଳୟରେ ଫାଷ୍ଟ ଇୟର ଡିଗ୍ରୀରେ ନାମ ଲେଖାଇଲି ସେତେବେଳେ ଭୋଳିବାବୁ ପଞ୍ଚମ ବାର୍ଷିକ ପି.ଜି. ଛାତ୍ର । ତା ପୂର୍ବରୁ ମୁଁ କହି ରଖେ ମୋର ଦାଦାଙ୍କର ଭୋଳିବାବୁଙ୍କ ବାପାଙ୍କ ସହିତ ପୂର୍ବରୁ ପରିଚୟ ଥିଲା । ଆମର ସଂଗୀତ ପାର୍ଟି କଟକର ତାଙ୍କ ରାଉସପାଟଣା ବାସ ଭବନରେ ଆଶ୍ରୟ ନେଇଥିଲା । ସେବେଠୁଁ ଭୋଳିବାବୁଙ୍କୁ ମୁଁ ଦେଖିଥିଲି । କିନ୍ତୁ ତା ଆଗରୁ ପରିଚୟ ନଥିଲା ।

ତେବେ କଲେଜର ସଭା ସମିତିରେ ତାଙ୍କର ପରିଚୟ ପାଇଥିଲି ? ରେଭେନ୍‌ସା ଛାଡ଼ିବା ପରେ ମୋର କର୍ମ ସଂସ୍ଥାନରେ ବ୍ୟସ୍ତ ରହି ବିଜୁବାବୁଙ୍କର କଳିଙ୍ଗ ଟିଉବ୍‌ସ୍ ରେ ଚାକିରି କରିଥିଲି । ମାତ୍ର ତାହା ବନ୍ଦ ହୋଇଯିବାରୁ ଚାକିରି ଛାଡ଼ିଦେଇ ସ୍ୱର୍ଗତ ଡକ୍ଟର ପ୍ରାଣକୃଷ୍ଣ ପରିଡ଼ାଙ୍କ ସୁପାରିଶରେ ଏସ୍-ଭି-ଏମ୍ କଲେଜରେ ଯୋଗଦାନ କଲି ଏବଂ ଜାଣିଲି ଭୋଳିବାବୁ ଏହି କଲେଜର ଓଡ଼ିଆ ଅଧ୍ୟାପକ ? ଠୁରା ମଣିଷଟିଏ, ସଫେଦ୍ ପୋଷାକ ପରିପାଟୀ ସହିତ ମୁଖ ମଣ୍ଡଳରେ ହର୍ଷୋତ୍‌ଫୁଲ ଆଭା, ସର୍ବଦା କର୍ମଚଞ୍ଚଳ, କର୍ମମୁଖର । ବଡ଼ ଉଦାର କ୍ଷମାଶୀଳ ମଣିଷଟିଏ ।

ଏହି ଏସ୍-ଭି-ଏମ୍ କଲେଜରେ ଗୋପବନ୍ଧୁ ମଲ୍ଲିକ ଥାଆନ୍ତି କେୟାର ଟେକର । ଥରେ କଲେଜର ଉତ୍ସବ ସରିଯାଇଥାଏ । ଭୋଳିବାବୁ ଥାଆନ୍ତି ପ୍ରିନ୍‌ସିପାଲ୍ ଇନ୍‌ଚାର୍ଜ । ପ୍ରିନ୍‌ସିପାଲ୍‌ଙ୍କ ଅଫିସରୁ ଗୋପବନ୍ଧୁଙ୍କ ପାଖକୁ ଅର୍ଡର ଆସିଲା -କଲେଜର ହଣ୍ଡା, ହାଣ୍ଡି, କଡ଼ା, ଚେୟାର, ଟେବୁଲ୍ ସାମିଆନା ଆଦି ଯେତେ ଜିନିଷ ସେ ସବୁକୁ ସଫା ସୁତୁରା କରି ଯଥା ସ୍ଥାନରେ ନିର୍ଦ୍ଦିଷ୍ଟ ସମୟରେ ରଖିବାକୁ ହେବେ ନଚେତ୍ କଠୋର କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯିବ ? ଗୋପବନ୍ଧୁ ବଡ଼ ନିରୀହ ଓ ଭୟାଳୁ ମଣିଷଟିଏ । ମୋତେ ଅଫିସ୍ ଅର୍ଡର ଦେଖାଇଲା ? ମୁଁ ଭାବିଲି ଏହା କ'ଣ ମାର୍ଶାଲ ଅର୍ଡର ? ମୁଁ ଟିକିଏ କବିପ୍ରାଣର ମଣିଷଟିଏ । ଗୋପବନ୍ଧୁଙ୍କ ପ୍ରତି ମୋର ସମବେଦନା ଜଣାଇ ବିପ୍ଳବଧର୍ମୀ କବିତାଟିଏ ଲେଖିଲି ?

କବିତାଟି- "ସଦ୍ୟ ଆହତ ସର୍ପ ପରି ମୋ ଜଳୁଛି ଅନଳ କଣା
ଭୋଳିବାବୁ ତମକୁ ଜଣା" ଇତ୍ୟାଦି...

ବଡ ଦୁଃଖ ପରିତାପର ବିଷୟ, କଲେଜ୍‌ରେ ଥିବା ପ୍ରସନ୍ନ ରାୟ କାଗଜ ଖଣ୍ଡିକ ଛଡ଼ାଇ ନେଇ ଭୋଳିବାବୁଙ୍କୁ ଦେଖାଇବାରେ ସେ ଅଗ୍ନିଶର୍ମା ହୋଇ ଉଠିଲେ । ଅବଶ୍ୟ ମୁଁ ଜଣେ ଅଧ୍ୟୟନ କର୍ମଚାରୀ ହିସାବରେ ଉପରିସ୍ଥ ଅଫିସରଙ୍କ ବିରୁଦ୍ଧରେ ଲେଖିବା ଗର୍ହିତ କାର୍ଯ୍ୟ ବୋଲି ଅନୁଭବ କଲି । କଥା ଉଠିଲା ଏ କବିତାଟିକୁ ସେତେବେଳକାର କଲେଜ୍ ପ୍ରେସିଡେଣ୍ଟ୍ ଉତ୍କଳ ଉନିଭରସିଟିର କୁଳପତି ବିଦ୍ୟାଧର ମିଶ୍ରଙ୍କୁ ଦେଖାଇ ତାଙ୍କ ବିଚାରକୁ ନିଆଯିବ । କଲେଜ ହୁଲ୍‌ସ୍ଥୁଲ୍ । ଜାଣିଲି ଆଉ ରକ୍ଷା ନାହିଁ । ତେଣୁ ଧୀର ପଦ ଚାଳି ପ୍ରିନ୍‌ସିପାଲ୍‌ଙ୍କ ରୁମ୍‌ରେ ଉପସ୍ଥିତ ରହି କାକୁସ୍ଥ ଭାବରେ ଭୋଳିବାବୁଙ୍କୁ କ୍ଷମା ଭିକ୍ଷା କଲି ? ସେ କ୍ଷମା ଦେଲେ । ମୁଁ ଆଶ୍ୱସ୍ତ ଅନୁଭବ କଲି ।

ସ୍ୱନାମଧନ୍ୟ ଭୋଳିବାବୁ ସାହିତ୍ୟ ସାଧନାକୁ ନିଜର ବ୍ରତ ରୂପେ ଧରି ନେଇଛନ୍ତି । ଓଡ଼ିଆ ସାହିତ୍ୟକୁ ତାଙ୍କର ଗବେଷଣା ଜନିତ ପୁସ୍ତକ ଋଦ୍ଧିମନ୍ତ କରିପାରିଛି । ଜଗତସିଂହପୁରର ଇତିହାସ ହେଉଛି ତାଙ୍କର ଅମରକୃତି ? ବ୍ୟସ୍ତ ବହୁଳ ଜୀବନର ପ୍ରତ୍ୟେକ ମୁହୂର୍ତ୍ତଟି ତାଙ୍କ ପାଇଁ ବହୁ ମୂଲ୍ୟବାନ । ଜଣେ ନିରଳସ, କର୍ତ୍ତବ୍ୟନିଷ୍ଠ, ସ୍ନେହଶୀଳ, ଗୁଣଗ୍ରାହୀ ମଣିଷ ଭାବରେ ସର୍ବତ୍ର ପରିଚିତ ? ସଦା ପ୍ରଫୁଲିତ ହସ ହସ ମୁହଁ ତାଙ୍କ ବ୍ୟକ୍ତିତ୍ୱର ଅନ୍ୟ ଦିଗ । ଉଦାରତା ଏବଂ ମହାନତା ତାଙ୍କର ସମସ୍ତ କାର୍ଯ୍ୟକଳାପରୁ ବାରି ହୋଇ ପଡ଼େ । ସାହିତ୍ୟ, ସଂସ୍କୃତି, ଆଧ୍ୟାତ୍ମିକତା, ଧର୍ମ ଦର୍ଶନ, ସମାଜସେବା ପରୋପକାରିତା ସବୁର ପୂର୍ଣ୍ଣାଙ୍ଗ ବିକାଶ ତାଙ୍କ ଠାରେ ଦେଖିବାକୁ ମିଳେ ? ଜଣେ ପରିପୂର୍ଣ୍ଣ ସଫଳ ମଣିଷ ହିସାବରେ ସେ ସର୍ବମାନ୍ୟ ପରିଚିତ ବ୍ୟକ୍ତି ।

ଆଜି ଆମେ ସମସ୍ତେ ପରିଣତ ବୟସରେ ଉପନୀତ । କିଏ କେତେବେଳେ ଏ ଧରାଧାମକୁ ବିଦାୟ ନେବ-ବିଶ୍ୱ ନିୟନ୍ତା ଭଗବାନଙ୍କୁ ଜଣା । ତଥାପି ସ୍ମୃତି ଟିକିକ ଜନ ମାନସରେ ଝଲକୁ ଥିବ ।

"ସ୍ମୃତି ତ କଦାପି ନୁହେଁ ଫିଙ୍ଗିବାର/ ଫିଙ୍ଗି ପାରିଲେ ସେ ଲଭନ୍ତା ନିସ୍ତାର"

ଅବଶେଷରେ ଶ୍ରୀମା ଶ୍ରୀଅରବିନ୍ଦଙ୍କ ସଦାଶ୍ରୟୀ ଭକ୍ତ ଭୋଳିବାବୁଙ୍କ ଦୀର୍ଘ ନିରାମୟ ଜୀବନ କାମନା କରି ଶ୍ରୀ'ମା'ଙ୍କ ପାଦ ପଦ୍ମରେ ସମର୍ପଣ ଜନିତ ଅଳିକରି ରହୁଛି । ଜୟ ଜଗନ୍ନାଥ । ■

ଗୋପାଳସାଗର, ଜଗତସିଂହପୁର

# ଜଗତସିଂହପୁର ଐତିହ୍ୟ ଓ ସାଂସ୍କୃତିକ ଅଭ୍ୟୁଦୟରେ ଡକ୍ଟର ଭୋଳାନାଥ ରାଉତ

ନିକୁଞ୍ଜ କିଶୋର ବେହେରା

ସାହିତ୍ୟ ଭାରତୀଙ୍କର ପଦାରବିନ୍ଦରେ ନିଜକୁ ସମର୍ପିତ କରି ଆପଣାର ଚୌହଦୀରୁ ଅନେକ ସାଉଁଟା ଅନୁଭବକୁ ପାଥେୟ କରି କଳ୍ପନାର କଳ୍ପଲୋକର ବହୁବିଧ ଅଳଙ୍କାରରେ ଓଡ଼ିଆ ସାହିତ୍ୟକୁ ଭୂଷିତ କରିଥିବା ଜଣେ ନିରଭିମାନ, ନିରହଙ୍କାର ବ୍ୟକ୍ତିତ୍ୱ ଡ. ଭୋଳାନାଥ ରାଉତ । ଜ୍ଞାନର ଗାଣ୍ଡୀବରେ ଚେତନାର ଶର ଯୋଖି ସାହିତ୍ୟ କାରଙ୍କ ମନୋରଥରେ ସାରଥୀ ସାଜି ସୁନ୍ଦର, ସୁଢଳ ଓ ସୁମାର୍ଗରେ ସୃଜନୀରଥକୁ ଚାଳନା କରି ସମାଜ ସଂସ୍କାର, ସଂସ୍କୃତି କ୍ଷେତ୍ରରେ ନିଜର ଏକ ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିଥିବା ଏହି ବ୍ୟକ୍ତି ଆଜି ସମସ୍ତ ହୃଦୟର ଜନନାୟକ । ନିଜର ଔଦାର୍ଯ୍ୟ, ଚାତୁର୍ଯ୍ୟ ଓ ମାଧୁର୍ଯ୍ୟରେ ସଭିଙ୍କ ହୃଦୟକୁ ଛିଡି ବିମୋହିତ କରିଥିବା ସେହି ଯୋଗଜନ୍ମା ଆଜି ଆମ୍ଭମାନଙ୍କର ନମସ୍ୟ ଓ ଦିଗ୍‌ଦର୍ଶକ ।

ସତନ୍ତରୀବର୍ଷର ସାହିତ୍ୟରୂପକ ତଟିନୀରେ କଳକଳ ନିନାଦିତ ଫେନିଳ ଜଳ ରାଶିରେ ସଫଳ ଓ ଅସଫଳର ଅସରନ୍ତି ଢେଉ । ସେ ଢେଉରେ ଭାସିଯାଇଛି ଅନେକ ସ୍ମୃତି ଓ ବିସ୍ମୃତିର ପଦଚିହ୍ନ । ଯାହାକୁ ସାଉଁଟିଲେ ସୃଷ୍ଟିହୁଏ କେତେବେଳେ ସୁଖର ଚେନାଏ ହସତ ଆଉ କେତେବେଳେ ଦୁଃଖର ଶୁଖିଲା ମୁହଁଟିଏ । ସେହି ନିର୍ଲିପ୍ତ, ଅନେକ ପ୍ରେରଣାର ଉତ୍ସ ପାଲଟିଥିବା ହସ ହସ ମୁହଁଟି ମୋର ପରମପୂଜ୍ୟ ଗୁରୁଜୀ ଅଧ୍ୟାପକ ଡଃ ଭୋଳାନାଥ ରାଉତଙ୍କର । ଅବିରାମ ସଂଗ୍ରାମ ଦୃଢ ନେତୃତ୍ୱ, ଉଚ୍ଚକୋଟୀର ସାରସ୍ୱତ ସାଧକ, ଜନସେବାର ସାର୍ଥକ ବ୍ରତଧାରୀ, ଦୁର୍ନୀତି, ଅନୀତି ଠାରୁ ଅନେକ ଦୂରର ମଣିଷ ସେ ଲୋକାଭିମୁଖୀ ତଥା ପ୍ରଗତିଶୀଳ ଆଭିମୁଖ୍ୟକୁ ନେଇ ଜଗତସିଂହପୁର ଜିଲ୍ଲାର ଏକ ସ୍ୱତନ୍ତ୍ର ପରିଚୟ ସମଗ୍ର ରାଷ୍ଟ୍ରରେ ସୃଷ୍ଟି କରିବାରେ ପ୍ରୟାସ ଡଃ ରାଉତଙ୍କ ଚିନ୍ତାଧାରକୁ ରଶ୍ମିମନ୍ତ କରିଛି । ଶୋଷିତ ଶୋଷକର ଅତ୍ୟାଚାରରୁ, ପୁଞ୍ଜିବାଦର ଦାବାନଳରେ ପୋଡ଼ି ଯାଉଥିବା ମଣିଷକୁ ସମାଜବାଦ ଚିନ୍ତାଧାରାରେ ପରିଚାଳିତ କରିବାର ଲକ୍ଷ୍ୟନେଇ ଲେଖନୀ ଚାଳନା କରି ଦରଦୀ ମଣିଷର ଅମୋଘ ଅସ୍ତ୍ରକୁ ବ୍ୟବହାର କରି ଡ. ରାଉତ ସୃଷ୍ଟି କରିଛନ୍ତି ଏକ ଇତିହାସ ।

ସୁଜଳା, ସୁଫଳା, ଶସ୍ୟଶାମଳା, ବୀରପ୍ରସବିନୀ ଜଗତସିଂହପୁର, ଯେଉଁଠି ସ୍ୱାଧୀନତା ସଂଗ୍ରାମର ଅନେକ ମହାନାୟକ ଓ ନାୟିକାଙ୍କର ଅନେକ ସଫଳତା ଘୁଙ୍ଗୁରର ରୁଣୁ ଝୁଣୁ ବାୟୁମଣ୍ଡଳକୁ ଶବ୍ଦର ତରଙ୍ଗରେ ତରାଙ୍ଗାୟିତ କରୁଥିଲା, ତାହା ଯେତେବେଳେ ମାଟି, ଗୋଡ଼ି, ଚଟାଣତଳେ ଅବକ୍ଷୟମୁଖୀ ହେବାକୁ ଲାଗିଥିଲା ଡଃ ରାଉତଙ୍କ ଦ୍ୱାରା ସଂକଳିତ "ଜଗତସିଂହପୁର: ଅତୀତ ଓ ବର୍ତ୍ତମାନ" ପୁସ୍ତକ ମାଧ୍ୟମରେ ପୁଣି ଜାଗ୍ରତ ହୋଇ ଆଗାମୀ ବଂଶଧରମାନଙ୍କୁ ହଜିବାକୁ ବସିଥିବା ଜଗତସିଂହପୁର ଐତିହ୍ୟ ସାଂସ୍କୃତିକ ପରଂପରା, ବୀରତ୍ୱ, ଅଦମନୀୟ ସାହସିକତା, ପାରାକାଷ୍ଠାକୁ ଉଜ୍ଜୀବିତ କରି ଆଗାମୀ ପିଢିକୁ ଦିଗ୍‌ଦର୍ଶନ ଦେବାରେ ସହାୟକ ହୋଇଛି ଏଥିରେ ସନ୍ଦେହ ନାହିଁ । ପୂଜ୍ୟ ସାର୍‌ଙ୍କର ମାନବିକତା ଅବର୍ଣ୍ଣନୀୟ । ଅବର୍ଣ୍ଣନୀୟ ଏହାର ଗଭୀରତା ଓ ଗମ୍ଭୀରତା । ଯେତେ ଅନୁଶୀଳନ କଲେ ସେତେ ଅଧିକରୁ ଅଧିକ ମାନବିକତାର ଆତ୍ମତତ୍ତ୍ୱ ପ୍ରକଟିତ ହୁଏ । କେତେ ନବଲେଖକ, ନବଯୁବକଙ୍କୁ ଉତ୍ସାହିତ କରିଛନ୍ତି ଲେଖନୀ ଧରିବାକୁ , ସର୍ଜନଶୀଳତାର ପରିଚୟ ଦେବାକୁ ।

ଡକ୍ଟର ଭୋଳାନାଥ ରାଉତ ଜଗତସିଂହପୁର ଜିଲ୍ଲାର ପୂରପଲ୍ଲୀଠାରୁ ଆରମ୍ଭକରି ସମଗ୍ର ରାଜ୍ୟରେ ଏକ ପରିଚିତ ନାମ । ଏକାଧାରାରେ ଜଣେ ଗାଳ୍ପିକ, ନାଟ୍ୟକାର ସମାଲୋଚକ, ଗବେଷକ, ସାହିତ୍ୟିକ ଓ ଦକ୍ଷ ସଂଗଠକ ଭାବରେ ନିଜର ପରିଚୟ ପ୍ରତିଷ୍ଠା କରିଛନ୍ତି । ଅନେକ ସଂଗଠନର ସେ ଜନ୍ମଦାତା । ଅଭ୍ୟୁଦୟ ସାହିତ୍ୟ ସମାଜ, ଜଗତସିଂହପୁର ସାହିତ୍ୟ ସଂସଦ, ଅଳକା କଳାମଣ୍ଡପ ପରି ଅନୁଷ୍ଠାନର ପ୍ରତିଷ୍ଠାତା ସଂପାଦକ ରହି କରିଯାଇଥିବା ଅନେକ ଲୋକଭିମୁଖୀ କାର୍ଯ୍ୟ ପାଇଁ ଉକ୍ତ ଅନୁଷ୍ଠାନଗୁଡ଼ିକ ନିକଟରେ ସେ ଚିରସ୍ମରଣୀୟ । ପ୍ରଧାନତଃ ଜଣେ ପ୍ରତିଶ୍ରୁତିବଦ୍ଧ ମାନବବାଦୀ, ସଂସ୍କାରଧର୍ମୀ ସମ୍ବେଦନଶୀଳ ପ୍ରାବନ୍ଧିକଭାବେ ମଣିଷ ସମାଜର ଦୁଃଖକୁ ଲାଘବ କରିବାରେ ତାଙ୍କର ପ୍ରୟାସ ତାଙ୍କୁ ସହସ୍ରହୃଦୟରେ ଚିରସବୁଜ କରି ରଖିଛି ଓ ରଖିବ । ଏହା ଚିରନ୍ତନ ସତ୍ୟ । ସମାଜର ବୈଷମ୍ୟ ଓ ସମତା ଆଣିବା ଦିଗରେ ତାଙ୍କର ବ୍ୟକ୍ତିତ୍ୱ ଓ କୃତିତ୍ୱ ସମାଜପାଇଁ ଏକ ବିରଳ ଉଦାହରଣ । ସମସ୍ତ ଘାତ ପ୍ରତିଘାତ, ପ୍ରତିକୂଳ ପରିସ୍ଥିତି ଓ ପରିବେଶକୁ ଏଡ଼ାଇ ଦାଣ୍ଡିରାମାୟଣରେ ଓଡ଼ିଶାର ଲୋକସଂସ୍କୃତି, ସାହିତ୍ୟିକ ସମାଲୋଚନା, ବୈଦିକ ସମାଜ, ସାହିତ୍ୟ ଓ ସଂସ୍କୃତି, ସାହିତ୍ୟରେ ତତ୍ତ୍ୱ ଓ ତଥ୍ୟ, କାବ୍ୟ ଓ କବି ଓଡ଼ିଶାର ରାଜନୈତିକ, ସାଂସ୍କୃତିକ ଓ ସାମାଜିକ ଇତିହାସ, ଲେଖା ଓ ଲେଖକ, ଅନୁଚ୍ଚାରିତ ସ୍ୱର (ଗଳ୍ପ) ଶତାବ୍ଦୀର ସ୍ୱପ୍ନ (ଏକାଙ୍କିକା ) ଇତ୍ୟାଦି ରଚନା କରି ତାଙ୍କ ଉଚ୍ଚକୋଟୀର ସର୍ଜନଶୀଳତାର ପରିଚୟ ପ୍ରଦାନ କରିଛନ୍ତି ।

ଉତ୍କଳ ମା'ର ଏହି ବରପୁତ୍ରଙ୍କର ଜନ୍ମ ୧୯୩୮ ମସିହା ଫେବୃୟାରୀ ମାସ ୫ତାରିଖ ଏକ ଅମୃତ ମୁହୂର୍ତ୍ତରେ । ଜଗତସିଂହପୁର ଜିଲ୍ଲା ନାଉଗାଁ ବ୍ଲକ୍‌ର ନନ୍ଦୀଗ୍ରାମ ଜନ୍ମସ୍ଥାନ । ପିତା

ବୃନ୍ଦାବନ ରାଉତ ଓ ମାତା ଉତ୍କଳମଣି ଦେବୀଙ୍କର ଜ୍ୟେଷ୍ଠ ସନ୍ତାନ । ସେ ସମୟରେ ଓଡ଼ିଶାର ସୁପ୍ରସିଦ୍ଧ ଉଚ୍ଚବିଦ୍ୟାଳୟ ଅଲଣାହାଟ ହାଇସ୍କୁଲ୍‌ରୁ ମାଟ୍ରିକ୍ ପାସ୍‌କରି କଟକର ଖ୍ରୀଷ୍ଟ ମହାବିଦ୍ୟାଳୟ , ରେଭେନ୍‌ସା ମହାବିଦ୍ୟାଳୟ ଓ ମଧୁସୂଦନ ଆଇନ୍ ମହାବିଦ୍ୟାଳୟରେ ଅଧ୍ୟୟନ କରିଜଣେ କୃତୀ ଛାତ୍ରର ପରିଚୟ ସୃଷ୍ଟି କରିଥିଲେ ଡଃ ରାଉତ । ଓଡ଼ିଶା ମାଟିର ସେହି ଜଗତସିଂହପୁର ଜିଲ୍ଲାର ଅନ୍ୟତମ ଶିକ୍ଷକ ନେତୃତ୍ୱ ଯିଏକି ଖାଲି ରାଜ୍ୟ, କିମ୍ବା ଜାତୀୟ ସ୍ତରରେ ନୁହେଁ ଆନ୍ତର୍ଜାତୀୟ ସ୍ତରରେ ୱାର୍ଲଡ ଟିଚର୍ସଆସୋସିଏସନର ଦୀର୍ଘ ଦିନଧରି ଉପସଭାପତି ରହିଥିଲେ ସେହି ଅବନୀ ବରାଳଙ୍କର ସମସାମୟିକ ଥିଲେ ଡ. ଭୋଳାନାଥ । ସ୍ୱଚକ୍ଷୁରେ ମୁଁ ଦେଖିଛି ଯେଉଁଦିନ ଅବନୀ ବରାଳଙ୍କ ଦେହାନ୍ତ ହେଲା ସେଦିନ ଡ. ରାଉତଙ୍କର ଦୁଃଖ ହୃଦୟର କୋହକୁ ଚପାଇ ଅବନୀବାବୁଙ୍କ ଶବାଧାରରେ ପୁଷ୍ପଗୁଚ୍ଛ ପ୍ରଦାନ ବେଳେ ଡ. ରାଉତଙ୍କର ନୟନରୁ ବର୍ଷିଥିଲା ଲୁହ ଦୂରରେ ଠିଆ ହୋଇ ମୂକସାକ୍ଷୀ ପାଲଟିଥିବା ସାରଙ୍କ ଅନେକ ଛାତ୍ରମାନଙ୍କ ମଧ୍ୟରୁ ଜଣେ ଥିଲି ମୁଁ ।

କୁହାଯାଏ 'ଛୋଟ ଥିଲେ ପଚାରି, ବଡ଼ ଥିଲେ ବିଗୁରି' କାର୍ଯ୍ୟ କରିବା ଦରକାର । ଅନେକ ସମୟରେ ଆମ୍ଭଭଳି କେତେକ ଶିକ୍ଷକ ଓ ଅଧ୍ୟାପକମାନଙ୍କ ସହିତ ଅନେକ ଆଲୋଚନା କରି ନିଷ୍ପତ୍ତିନେବା ଅନେକବାର ଦେଖିଛି ମୁଁ । ଏହା ଥିଲା ତାଙ୍କ ଉଦାରତା ଓ ମହନୀୟତାର କାର୍ଯ୍ୟ । ଜଗତସିଂହପୁର ଜିଲ୍ଲା ହେଲା ୧୯୯୩ ମସିହାରେ । ୨୦୦୧ମସିହା ଠାରୁ ପ୍ରତିବର୍ଷ ଏପ୍ରିଲ୍ ମାସରେ ଜିଲ୍ଲାଉତ୍ସବ ପାଳନ କରାଯିବା ସହିତ ଉତ୍ସବର ମୁଖପତ୍ର 'ଆଦିପତ୍ର' ପ୍ରକାଶ ପାଇଥାଏ । ଏହି ଆଦିପତ୍ର ପ୍ରକାଶନର ଗୁରୁଦାୟିତ୍ୱ ଡ. ରାଉତ ସଂପାଦନା କରିବା ସହିତ ଅମ୍ଭେ ଯେଉଁମାନେ ଲେଖାଲେଖିକରୁ ସେମାନଙ୍କୁ ଡାକି ଅନେକ ପୂର୍ବରୁ କ'ଣ ଲେଖିବ, କିପରି ଲେଖିବ ଭଳି ଅନେକ ଉପଦେଶ ଦେବା ସହିତ ଆବଶ୍ୟକୀୟ ସଂଶୋଧନ କରି ଉକ୍ତ ପ୍ରବନ୍ଧକୁ ପ୍ରକାଶ କରି ନୂତନ ଲେଖକ ମାନଙ୍କୁ ଉତ୍ସାହିତ କରିବାର କାର୍ଯ୍ୟ ଆଜି ଡଃ ରାଉତଙ୍କୁ ଏହି ଲେଖକଙ୍କ ନିକଟରେ ଚିରସ୍ମରଣୀୟ କରିରଖିଛି ଏବଂ ରଖିଥିବ ଏଥିରେ ସନ୍ଦେହ ନାହିଁ ।

ସର୍ବୋପରି ତାଙ୍କର ମାନସ ସନ୍ତାନ "ଜଗତସିଂହପୁର : ଅତୀତ ଓ ବର୍ତ୍ତମାନ" ପୁସ୍ତକ ସଂକଳନ କରିବାରେ ତାଙ୍କର କଷ୍ଟ, ଉଦ୍ୟମ, ହୃଦୟର ଯନ୍ତ୍ରଣା ଜଣେ ପାଖରୁ ନଦେଖିଥିଲେ କେହି ବୁଝିପାରିବନାହିଁ । ଆଗାମୀ ପିଢିର ଗବେଷକ ମାନଙ୍କ ପାଇଁ ଜିଲ୍ଲା ସଂସ୍କୃତି ବିଭାଗ ଦ୍ୱାରା ପ୍ରକାଶିତ ଏହି ତିନୋଟି ଗ୍ରନ୍ଥ ତାଙ୍କୁ ଯେ ସମଗ୍ର ପାଠକଙ୍କ ମାନସରେ ଚିରସବୁଜ କରି ରଖିବ ଏହା ଚିରନ୍ତନ ସତ୍ୟ ।

ସମୁଦ୍ରକୂଳରେ ଦଣ୍ଡାୟମାନହୋଇ ସମୁଦ୍ରର ଗଭୀରତା ନିର୍ଣ୍ଣୟ କରିବାର ପ୍ରୟାସ ଯେପରିବୃଥା ଆସ୍ଫାଳନ । ସେହିଭଳି ଯେତେ ଆଲୋଚନା କଲେ ମଧ୍ୟ ଏହି ସାରସ୍ୱତ ସମ୍ଭାରର ନାୟକଙ୍କ ଜ୍ଞାନର ଗଭୀରତା ନିର୍ଣ୍ଣୟ କରିବା କଷ୍ଟକର । ଓଡ଼ିଆ ଭାଷା ସାହିତ୍ୟ ଓ ସଂସ୍କୃତିର ନବଜାଗରଣ ପାଇଁ ଡକ୍ଟର ରାଉତଙ୍କ ଭୂମିକା ସର୍ବଦା ସ୍ମରଣୀୟ । ସାହିତ୍ୟ ସମାଜର ପ୍ରତିବିମ୍ବ ଅନ୍ୟପକ୍ଷରେ ସଂସ୍କୃତି ଜ୍ଞାନଗତି ଉତ୍କର୍ଷକୁ ବୁଝାଇଥାଏ । ଏହା ସମାଜକୁ ମାର୍ଜିତ ଓ ନୀତିଯୁକ୍ତ କରିଥାଏ । ଡକ୍ଟର ରାଉତଙ୍କର ଜଗତସିଂହପୁର ଜିଲ୍ଲାର ଐତିହ୍ୟ ଓ ସାଂସ୍କୃତିକ ମହାନୀୟତାକୁ ସାହିତ୍ୟ ମାଧ୍ୟମରେ ପ୍ରକଟିତ କରି ଜନ ଜୀବନକୁ କ୍ରିୟାଶୀଳ କରିବାର ପ୍ରଚେଷ୍ଟା ପ୍ରକୃତରେ ପ୍ରଶଂସା ଯୋଗ୍ୟ । ସମାଜରେ ପ୍ରଚଳିତ ବିଧିବିଧାନଗୁଡ଼ିକୁ ନିଜ ଲେଖନୀମାଧ୍ୟମରେ ଚିତ୍ରିତ କରି ଓଡ଼ିଆ ସାହିତ୍ୟକୁ ପରିପୁଷ୍ଟ କରି ବିଶ୍ୱଭ୍ରାତୃତ୍ୱ ଭାବ ସୃଷ୍ଟି କରିବା ସାରଙ୍କ ମହାନୁଭବତାର ପରିଚୟ ପ୍ରଦାନ କରିଥାଏ ।

ସଂକ୍ଷେପରେ କୁହାଯାଇପାରେ ଡ. ଭୋଳାନାଥ ରାଉତ ନୁହଁନ୍ତି ଜଣେ ବ୍ୟକ୍ତି । ସେ ଅନେକ ବିରଳ ବ୍ୟକ୍ତିତ୍ୱର ଅଧିକାରୀ । ଗୋଟିଏ ପ୍ରତିଭାର ସେ ଅଧିକାରୀ ନୁହଁନ୍ତି । ସେ ଅନେକ ପ୍ରତିଭାର ପୁଷ୍ପଗୁଚ୍ଛ । ଏକାଧାରରେ କର୍ତ୍ତବ୍ୟନିଷ୍ଠ ସମୟାନୁବର୍ତ୍ତୀ ଛାତ୍ରବତ୍ସଳ ପ୍ରବୀଣ ଅଧ୍ୟାପକ, ଦକ୍ଷ ସଂଗଠକ, ସୁବକ୍ତା, ଜ୍ଞାନର ଗନ୍ତାଘର, ମିଷ୍ଟଭାଷୀ ସମାଜସେବକ ଇତ୍ୟାଦି । ସେ ଶିଶୁ ଭଳି ସରଳ ଏବଂ ଫୁଲଭଳି କୋମଳ । ତାଙ୍କର ସହିଷ୍ଣୁତା, ଦକ୍ଷତା, ଶିକ୍ଷାଦାନ ଶୈଳୀ ପାଇଁ ସେ ଆମ୍ଭମାନଙ୍କ ନିକଟରେ ଏକ ଯୋଗଜନ୍ମା ଓ ପୁଣ୍ୟାତ୍ମା ।

ଶେଷରେ : ହେ ପୂଜ୍ୟ ମହାନ୍ ଗୁରୁଗରୀୟାନ୍

ଘେନ ମୋର ପ୍ରଣତି

ତୁମ୍ଭ ଦିବ୍ୟକୀର୍ତ୍ତି ଗାଉ ତବ ସ୍ତୁତି

ଯୁଗେ ଯୁଗେ ଥାଉ କିରତି ।



ଅବସରପ୍ରାପ୍ତ ଜାତୀୟ ଓ ରାଜ୍ୟ ପୁରସ୍କାରପ୍ରାପ୍ତ କୃତୀ ପ୍ରଧାନଶିକ୍ଷକ
ଠାକୁର ପାଟଣା, ଜଗତସିଂହପୁର

# ଡକ୍ଟର ଭୋଳାନାଥ ରାଉତ: ଅନନ୍ୟ ଯୁଗସ୍ରଷ୍ଟା ସାହିତ୍ୟିକ

ଉତ୍କଳ ରଞ୍ଜନ ମହାନ୍ତି

ଜଗତସିଂହପୁର ଜିଲ୍ଲାର ମହାନ୍ ଉତ୍କଳୀୟ ସଂସ୍କୃତି, ସାମାଜିକ ଚାଲିଚଳନୀ ଓ ପରମ୍ପରା ଅତୀବ ଗୌରବମୟ । ବିଭିନ୍ନ କ୍ଷେତ୍ରରେ ସମଗ୍ର ଓଡ଼ିଶା ଏକ ଅଗ୍ରଣୀ ଜିଲ୍ଲା ଭାବରେ ନିଜର ଏକ ସ୍ୱତନ୍ତ୍ର ପରିଚୟ ସୃଷ୍ଟିକରି ପାରିଛି । ଓଡ଼ିଆ ଭାଷା ସାହିତ୍ୟର ଉନ୍ମେଷ କାଳର ସାରସ୍ୱତ ସାଧକ ଯୁଗସ୍ରଷ୍ଟା କାଳଜୟୀ ଓ ଯୋଗଜନ୍ମା ଆଦିକବି ସାରଳାଦାସଙ୍କ ଠାରୁ ଆରମ୍ଭକରି ପଞ୍ଚସଖା ଯୁଗର ମହାପୁରୁଷ ଯଶୋବନ୍ତଙ୍କ ପର୍ଯ୍ୟନ୍ତ ଏବଂ ତାର ପରବର୍ତ୍ତୀ କାଳରେ ଏହି ପୁଣ୍ୟଭୂମିର ଅନେକ ମହନୀୟ ସାରସ୍ୱତ ପ୍ରତିଭା ସେମାନଙ୍କ ଅନବଦ୍ୟ ସର୍ଜ୍ଜନାରେ ଓଡ଼ିଆ ଭାଷା ସାହିତ୍ୟର ଭଣ୍ଡାରକୁ ସମୃଦ୍ଧ କରିବା ସହିତ ଏହି ଜିଲ୍ଲାକୁ ଗୌରବ ମଣ୍ଡିତ କରିଛନ୍ତି । ସେହିମାନଙ୍କ ମଧ୍ୟରୁ ନାଉଗାଁ ବ୍ଲକ୍ ଅନ୍ତର୍ଗତ ଏକ ସୁଖ୍ୟାତ ପଲ୍ଲୀ ନନ୍ଦିଗ୍ରାମରେ ୧୯୩୮ ମସିହା ଫେବୃୟାରୀ ୫ତାରିଖ ଦିନ ଜନ୍ମଗ୍ରହଣ କରିଥିବା ଡକ୍ଟର ଭୋଳାନାଥ ରାଉତ ହେଉଛନ୍ତି ଅନ୍ୟତମ । ଜଣେ ସଫଳ ସମାଲୋଚକ, ବିଶିଷ୍ଟ ସାହିତ୍ୟିକ, ପ୍ରବୀଣ ଅଧ୍ୟାପକ, ସୁଦକ୍ଷ ସମୀକ୍ଷକ ଓ ଉଚ୍ଚକୋଟୀର ସଂପାଦକ ଭାବେ ସର୍ବଜନ ଆଦୃତ ।

ପିତା ବୃନ୍ଦାବନ ରାଉତ ଓ ମାତା ଉତ୍କଳମଣି ରାଉତଙ୍କର ସୁପୁତ୍ର ଭାବେ ଗ୍ରାମ ପ୍ରାଥମିକ ବିଦ୍ୟାଳୟରୁ ଶିକ୍ଷା ଆରମ୍ଭ କରି ରେଭେନ୍‌ସା ମହାବିଦ୍ୟାଳୟରୁ ଓଡ଼ିଆରେ ସ୍ନାତକୋତ୍ତର ଶିକ୍ଷା ଶେଷ କରି ୧୯୬୩ ମସିହାରୁ ସ୍ୱାମୀ ବିବେକାନନ୍ଦ ସ୍ମାରକ ମହାବିଦ୍ୟାଳୟ, ଜଗତସିଂହପୁରରେ ଅଧ୍ୟାପନା କାର୍ଯ୍ୟ ଆରମ୍ଭ କରିଥିଲେ । ସାହିତ୍ୟର ବହୁବିଧ ଦିଗରେ ତାଙ୍କର ଅଗାଧ ପାଣ୍ଡିତ୍ୟକୁ ପାଥେୟକରି ଅଧ୍ୟାପକ, ପ୍ରାଧ୍ୟାପକ ଓ ଅଧ୍ୟକ୍ଷଭାବରେ ବିଭିନ୍ନ ମହାବିଦ୍ୟାଳୟରେ କାର୍ଯ୍ୟକରି ଶେଷରେ ୧୯୯୮ ମସିହାରେ କେନ୍ଦ୍ରାପଡ଼ା ମହାବିଦ୍ୟାଳୟରୁ ଉପାଧ୍ୟକ୍ଷ ଭାବେ ଅବସର ଗ୍ରହଣ କରିଥିଲେ । "ଦାଣ୍ଡି ରାମାୟଣରେ ଓଡ଼ିଶାର ଲୋକସଂସ୍କୃତି" ଉପରେ ଗବେଷଣାତ୍ମକ ପ୍ରବନ୍ଧ ରଚନା କରି ଉତ୍କଳ ବିଶ୍ୱବିଦ୍ୟାଳୟରୁ ପିଏଚ୍. ଡି. ଉପାଧି ଲାଭ କରିଥିଲେ । ଦୀର୍ଘ ୩୫ବର୍ଷ କାଳ ଶିକ୍ଷାଦାନ ମଧ୍ୟରେ ଅଗଣିତ ଛାତ୍ରଛାତ୍ରୀ

ତାଙ୍କଠାରୁ ଶିକ୍ଷାଲାଭକରି ବିଭିନ୍ନ କ୍ଷେତ୍ରରେ ସମାଜରେ ପ୍ରତିଷ୍ଠିତ ହୋଇପାରିଛନ୍ତି । ସାହିତ୍ୟର ବହୁ ଜଟିଳ ତତ୍ତ୍ୱ ଓ ତଥ୍ୟକୁ ଅତି ସରଳ, ସାବଲୀଳ ଓ ବୋଧଗମ୍ୟ କରି ଶିକ୍ଷା ପ୍ରଦାନ କରିବାରେ ତାଙ୍କର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ସର୍ବୋପରି ଜଣେ ବିଜ୍ଞ ସାହିତ୍ୟିକ ଭାବରେ ସାହିତ୍ୟର ବହୁବିଧ ଦିଗ ଉପରେ ତାଙ୍କର ଅଗାଧ ପାଣ୍ଡିତ୍ୟର ପଟାନ୍ତର ନାହିଁ । ଓଡ଼ିଆ ପ୍ରାଚୀନ ସାହିତ୍ୟ ମୂଲ୍ୟାୟନରେ ଡକ୍ଟର ରାଉତଙ୍କର ନିଷ୍ଠାପର ସାଧନା ଉଲ୍ଲେଖନୀୟ ।

ତୁଳସୀ ଦୁଇ ପତ୍ରରୁ ବାସିବା ସଦୃଶ ଛାତ୍ରାବସ୍ଥାରୁ ତାଙ୍କ ସାହିତ୍ୟିକ ପ୍ରତିଭାର ପରିଚୟ ସୁସ୍ପଷ୍ଟ । ସମୟୋପଯୋଗୀ ବହୁ ଉପାଦେୟ ଶିକ୍ଷଣୀୟ ଗଳ୍ପ ଓ ଏକାଙ୍କିକାମାନ ରଚନା କରି ତତ୍‌କାଳୀନ ଯୁବସାହିତ୍ୟ ଗୋଷ୍ଠୀର ଜଣେ ଅଗ୍ରଗଣ୍ୟ ଲେଖକ ଭାବେ ବେଶ୍ ଆଦୃତ ହୋଇ ପାରିଥିଲେ । ନାଟକ ରଚନା କରିବା ସହ ଜଣେ ସଫଳ ଅଭିନେତା ଭାବେ ଅଭିନୟ କରି ଦର୍ଶକ ମଣ୍ଡଳୀକୁ ବିମୁଗ୍ଧ କରିବା ସହ ଉଚ୍ଚ ପ୍ରଶଂସିତ ହୋଇଛନ୍ତି । ଓଡ଼ିଆ ସାହିତ୍ୟ ବିଭିନ୍ନ ବିଭାଗରେ ଲେଖନୀ ଚାଳନା କରି ସଫଳତା ଅର୍ଜନ କରିଛନ୍ତି । ବିଭିନ୍ନ ସମୟରେ ତାଙ୍କ ଦ୍ୱାରା ଲିଖିତ ବହୁ ଆଲୋଚନାରେ ସେ ତାଙ୍କର ସ୍ୱକୀୟ ଦୃଷ୍ଟିଭଙ୍ଗୀର ପରିଚୟ ପ୍ରଦାନ କରିଛନ୍ତି । ତାଙ୍କ ଦ୍ୱାରା ରଚିତ ଓଡ଼ିଆ ସାହିତ୍ୟରେ ତତ୍ତ୍ୱ ଓ ତଥ୍ୟ, ସାହିତ୍ୟିକ ସମାଲୋଚନା, କାବ୍ୟ ଓ କବି, ଲେଖା ଓ ଲେଖକ, ଓଡ଼ିଶାର ସାଂସ୍କୃତିକ, ସାମାଜିକ ଓ ରାଜନୈତିକ ଇତିହାସ, ବୈଦିକ ସାହିତ୍ୟ ଓ ସଂସ୍କୃତି, ମହାପୁରୁଷ ଅଚ୍ୟୁତାନନ୍ଦ ଆଦି ବହୁ ଉପାଦେୟ ପୁସ୍ତକ ପାଠକ ମହଲରେ ବେଶ୍ ଆଦୃତ ହୋଇଅଛି । ଜଗତସିଂହପୁର ଜିଲ୍ଲାରେ ପ୍ରକାଶିତ ହୋଇଥିବା ବରପୁତ୍ରମାନଙ୍କର ସ୍ମରଣିକା, ଜିଲ୍ଲା ପ୍ରଶାସନ ଠାରୁ ଆରମ୍ଭକରି ସାହିତ୍ୟିକ ଅନୁଷ୍ଠାନ ପର୍ଯ୍ୟନ୍ତ ପ୍ରକାଶିତ ପତ୍ରିକାରେ ମୁଖ୍ୟ ସଂପାଦକ ଭାବେ ଦାୟିତ୍ୱ ବହନ କରି ଜଣେ ଉଚ୍ଚକୋଟୀର ସଂପାଦକ ଭାବେ ଖ୍ୟାତି ଅର୍ଜନ କରିଛନ୍ତି । ସର୍ବୋପରି 'ଜଗତସିଂହପୁର ଅତୀତ: ଓ ବର୍ତ୍ତମାନ' ସଂକଳନର ମୁଖ୍ୟ ସଂପାଦକ ଭାବେ ଜିଲ୍ଲାର ସମସ୍ତ ଦିଗକୁ ଆଲୋକିତ କରି ଏକ ଐତିହାସିକ ତଥା ସାଂସ୍କୃତିକ ଦଲିଲ ପ୍ରସ୍ତୁତ କରିବାର ପ୍ରୟାସ ଡକ୍ଟର ରାଉତଙ୍କୁ ତାଙ୍କ ନିଷ୍ଠାପର ସାଧନାରେ ସିଦ୍ଧିଲାଭ କରାଇବା ସହ ଆଣି ଦେଇଛି ଚରମ ସଫଳତା । ଜଗତସିଂହପୁର ଜିଲ୍ଲା ସଂସ୍କୃତି ପରିଷଦ ଆନୁକୂଲ୍ୟରେ ଜଗତସିଂହପୁର ଜିଲ୍ଲା ମହୋତ୍ସବ ଅବସରରେ ପ୍ରକାଶିତ ସ୍ମରଣିକା "ଆଦିପତ୍ର"ର ମୁଖ୍ୟ ସଂପାଦକ ଓ ସ୍ମରଣିକା କମିଟିର ଅଧ୍ୟକ୍ଷ ଭାବେ ୨୦୦୨ରୁ ୨୦୧୪ ମସିହା ପର୍ଯ୍ୟନ୍ତ ନିରବଚ୍ଛିନ୍ନ ଭାବେ କାର୍ଯ୍ୟଭାର ଗ୍ରହଣ କରି ସଫଳତାର ସହ ସଂପାଦନ ପୂର୍ବକ ପାଠକ ମହଲରେ ବେଶ୍ ପ୍ରିୟଭାଜନ ହେବା ସହ ନିଜସ୍ୱ ପରାକାଷ୍ଠା ପ୍ରଦର୍ଶନ କରିପାରିଛନ୍ତି ।

ଯେତ କହିବାକୁ ଗଲେ ଏକାଧାରାରେ ଜଣେ ପ୍ରବୀଣ ଶିକ୍ଷାବିତ, ସୁଦକ୍ଷ ସମାଲୋଚକ, ବିଶିଷ୍ଟ ସାହିତ୍ୟିକ, ସତ୍ୟନିଷ୍ଠ ଗବେଷକ, ସଫଳ ନାଟ୍ୟକାର, ଉଚ୍ଚକୋଟୀର ସାହିତ୍ୟ ସଂଗଠକ ଓ ବିଶେଷ କରି ନିଷ୍ଠାପର ସଂକଳକ ତଥା ସଂପାଦକ ଭାବରେ ଡକ୍ଟର ରାଉତଙ୍କର ଉଲ୍ଲେଖନୀୟ ଅବଦାନର ସ୍ୱୀକୃତି ସ୍ୱରୂପ ସେ ବହୁ ସଂଖ୍ୟକ ସରକାରୀ ଓ ବେସରକାରୀ ପ୍ରତିଷ୍ଠାନରୁ ସମ୍ବର୍ଦ୍ଧନା ପାଇବା ସହ ସମ୍ମାନର ଅଧିକାରୀ ହୋଇଛନ୍ତି । ସେଥି ମଧ୍ୟରୁ ଓଡ଼ିଶାର ଅନେକ ପ୍ରତିଷ୍ଠିତ ମହାବିଦ୍ୟାଳୟ, ଓଡ଼ିଶା ସାହିତ୍ୟ ଏକାଡେମୀ, ନିଖିଳ ଉତ୍କଳ ଶିକ୍ଷକ ମହାସଂଘ, ଉତ୍କଳ ବିଶ୍ୱବିଦ୍ୟାଳୟ ଆଦି ଅନ୍ୟତମ । ଜଣେ ଅଗ୍ରଗଣ୍ୟ ସାହିତ୍ୟ ଅନୁରାଗୀ ଭାବେ ତାଙ୍କର ଅମ୍ଳାନ କୀର୍ତ୍ତି ଓ ଅଭୁଲା ସ୍ମୃତି ଯେତିକି ସାହିତ୍ୟ, ସଂସ୍କୃତି ଓ ପରଂପରା ପ୍ରେମୀ ଜନମାନସକୁ ଉଦ୍‌ବେଳିତ ଓ ଉଦ୍‌ଭାସିତ କରୁଛି ଠିକ ସେହିପରି ଜଣେ ଶିକ୍ଷା ଅନୁରାଗୀ ଆଦର୍ଶ ଶିକ୍ଷକ ନେତା ଭାବେ ତାଙ୍କର କର୍ମନିପୁଣ ସାଂଗଠନିକ ଦକ୍ଷତା, ଶିକ୍ଷା, ଶିକ୍ଷକ ଓ ଶିକ୍ଷାୟତନର ସମୃଦ୍ଧି ତଥା ବିକାଶ କଳ୍ପେ ସେତିକି ସୁଗମ ଓ ଅନୁପମ ଥିଲା । ସେ ନିଖିଳ ଉତ୍କଳ ଶିକ୍ଷକ ମହାସଂଘର ପୂର୍ବତନ ସଭାପତି ମଣ୍ଡଳୀର ସଭ୍ୟ, ନିଖିଳ ଉତ୍କଳ ବେସରକାରୀ ମହାବିଦ୍ୟାଳୟ ଶିକ୍ଷକ ସଂଘର ପୂର୍ବତନ ଯୁଗ୍ମ ସଂପାଦକ ଓ ଉପସଭାପତି, ନିଖିଳ ଉତ୍କଳ ଓଡ଼ିଆ ଅଧ୍ୟାପକ ସମ୍ମେଳନର ପୂର୍ବତନ ସାଧାରଣ ସଂପାଦକ କାର୍ଯ୍ୟକାରୀ ସଭାପତି ସର୍ବୋପରି ବର୍ତ୍ତମାନ ସଭାପତି ଭାବରେ କାର୍ଯ୍ୟଭାର ଗ୍ରହଣ କରି ନିଜର ସାଙ୍ଗଠନିକ ପାରଦର୍ଶିତା ଓ ପରାକାଷ୍ଠା ପ୍ରଦର୍ଶନ କରି ପାରିଛନ୍ତି । ଅଭ୍ୟୁଦୟ ସାହିତ୍ୟ ସମାଜର ପୂର୍ବତନ ସଂପାଦକ, ଜଗତସିଂହପୁର ଅଳକା କଳାମଣ୍ଡପର ପୂର୍ବତନ ସଂପାଦକ, ଉତ୍କଳ ବିଶ୍ୱବିଦ୍ୟାଳୟର ପୂର୍ବତନ ସିନେଟ୍ ସଭ୍ୟ ଓ ଆମେରିକାର ବାୟୋଗ୍ରାଫିକାଲ୍ ପ୍ରତିଷ୍ଠାନର ଗବେଷଣା ପାଇଁ ଉର୍ଦ୍ଧିଷ୍ଠ ଉପଦେଷ୍ଟା ମଣ୍ଡଳୀର ଅବୈତନିକ ସଭ୍ୟଭାବେ କାର୍ଯ୍ୟକରି ଶିକ୍ଷା, ସାହିତ୍ୟ, ସଂସ୍କୃତି, ଐତିହ୍ୟ, କଳା ଓ ପରଂପରା ପ୍ରତି ତାଙ୍କର ଗଭୀର ଅନୁରାଗର ପରିଚୟ ସୃଷ୍ଟି କରିପାରିଛନ୍ତି । ପ୍ରତିଟି କ୍ଷେତ୍ରରେ ଡକ୍ଟର ରାଉତ ତାଙ୍କର ନିଜସ୍ୱ ନୂତନତ୍ୱ ଓ ମୌଳିକ ଚିନ୍ତାଧାରା ରୁଚି ଓ ପରିକଳ୍ପନାକୁ ବାସ୍ତବରୂପରେଖ ଦେବା ଲାଗି ଅଦମ୍ୟ ପ୍ରଚେଷ୍ଟା କରିଛନ୍ତି । ନିରବଛିନ୍ନ ସଂଗ୍ରାମ କରିଛନ୍ତି ଓ ନିଷ୍ଠାପର କାର୍ଯ୍ୟଧାରାକୁ ବଜାୟ ରଖିଛନ୍ତି, ଯାହାକିତାଙ୍କୁ ସଫଳତାର ଶୀର୍ଷଭାଗରେ ଉପନୀତ କରାଇ ପାରିଛି । ■

'ଆକାଶ ଗଙ୍ଗା"
ବାଗସାହି, ଜଗତସିଂହପୁର

# ସାରସ୍ୱତ ସାଧକ ଭୋଳାନାଥ

ରବୀନ୍ଦ୍ରନାଥ ମିଶ୍ର

ଏହି ଅନିତ୍ୟ ସଂସାରରେ ଜନ୍ମଗ୍ରହଣ କରି ନିଜର କାର୍ଯ୍ୟକଳାପରେ ଅନେକ ଯଶସ୍ୱୀ ହୋଇଥିଲା ବେଳେ କେତେକ ଲୋକଲୋଚନର ଅନ୍ତରାଳରେ ରହିଯାଇଥାନ୍ତି । ଯେଉଁମାନଙ୍କର ଜନ୍ମରେ ଦେଶ ଦଶର ଉପକାର ସାଧିତ ହୁଏ, ସମାଜର ମଙ୍ଗଳ ସାଧନ ହୁଏ, ସେହିମାନେ ଜନ୍ମନେବା ଉଚିତ୍ । ଭର୍ତ୍ତୃହରି ତାଙ୍କ ନୀତି ଶତକରେ କହିଛନ୍ତି -

ଯେଷାଂ ନ ବିଦ୍ୟା ନତପୋ ନଦାନଂ ନଗ୍ୱପି ଶୀଳଂ ନଗୁଣୋନଧର୍ମଃ

ତେମର୍ତ୍ତ୍ୟଲୋକେ ଭୁବିଭାର ଭୂତା ମନୁଷ୍ୟ ରୂପେଣ ମୃଗାଶ୍ଚରନ୍ତି ।

ଅର୍ଥାତ୍ ଯେଉଁମାନଙ୍କ ଠାରେ ବିଦ୍ୟା, ସାଧନା, ଦାନ, ଧର୍ମ ଓ ଉତ୍ତମ ଚରିତ୍ର ନଥାଏ, ସେମାନେ ଏହି ମର୍ତ୍ତ୍ୟପୃଷ୍ଠରେ ଜନ୍ମ ଗ୍ରହଣ କରି ମୃଢ ପଶୁଙ୍କ ପରି କେବଳ ପୃଥିବୀକୁ ଭାରାକ୍ରାନ୍ତ କରିଥାନ୍ତି ମାତ୍ର । ସେହି ମର୍ମରେ ଅଗ୍ନିପୁରାଣ କୁହନ୍ତି -

ନରତ୍ୱଂ ଦୁର୍ଲ୍ଲଭଂ ଲୋକେ ବିଦ୍ୟା ତତ୍ର ସୁଦୁର୍ଲ୍ଲଭାଃ

କବିତ୍ୱଂ ଦୁର୍ଲ୍ଲଭଂ ତତ୍ର ଶକ୍ତିସ୍ତତ୍ର ସୁଦୁର୍ଲଭାଃ ।

ଏହି ସଂସାରରେ ମନୁଷ୍ୟ ଜୀବନ ଅତ୍ୟନ୍ତ ଦୁର୍ଲ୍ଲଭ ଅଟେ କାରଣ ଯେଉଁ ନର କଳେବର ଧାରଣ ପାଇଁ ଦେବତାମାନେ ମଧ୍ୟ ଆଗ୍ରହ ପ୍ରକାଶ କରିଥାନ୍ତି । ମନୁଷ୍ୟ ଦେହ ଧାରଣ କରି ବିଦ୍ୟା ଅଧ୍ୟୟନ ନକଲେ ସେହି ମନୁଷ୍ୟ ଶରୀର ଧାରଣ ନିରର୍ଥକ ହୋଇଥାଏ । ବିଦ୍ୟା ଅଧ୍ୟୟନରେ କି ଲାଭ ? ଯଦି ବିଦ୍ୟା ଅଧ୍ୟୟନରେ କବିତ୍ୱ ଜାଗ୍ରତ ନହେଲା । ତେଣୁ ଏହିସବୁ ଆଲୋଚନାରୁ ପ୍ରତୀୟମାନ ହୁଏ ଯେ, ସାହିତ୍ୟ ସଂଗୀତ କଳାବିହୀନ, ସାକ୍ଷାତ୍ ପଶୁ ପୁଚ୍ଛ ବିଷାଣ ବି ହୀନ ଅର୍ଥାତ୍ ସାହିତ୍ୟ ସଂଗୀତ ଓ କଳାରେ ଜ୍ଞାନ ନଥିବା ବ୍ୟକ୍ତି ଶିଙ୍ଗ ଓ ଲାଙ୍ଗୁଳ ନଥିବା ପଶୁ ସଦୃଶ ।

ଆମର ଆଲୋଚ୍ୟ ପ୍ରତିଭା ଡ. ଭୋଳାନାଥ ରାଉତ ବହୁମୁଖୀ ପ୍ରତିଭାର ଅଧିକାରୀ ଅଟନ୍ତି । ବାପା ମା' ନାମସିନା ଦେଲେ ଭୋଳାନାଥ କିନ୍ତୁ ଚେହେରାରେ ଓ ବୁଦ୍ଧିରେ ସେ ଗଣେଶ ତୁଲ୍ୟ । ସର୍ବଦା ଭାବରେ ଭୋଳା ଏହି ବିସ୍ମୟ ବ୍ୟକ୍ତିତ୍ୱ ଗାଁରେ ପ୍ରାଥମିକ ଶିକ୍ଷା

ସମାପ୍ତ ପରେ ମାଧ୍ୟମିକ ଶିକ୍ଷା ଲାଭ କରିଥିଲେ ସ୍ୱନାମଧନ୍ୟ ଅଲଣାହାଟ ହାଇସ୍କୁଲ୍‌ରେ । ପରେ ଖ୍ରୀଷ୍ଟ ମହାବିଦ୍ୟାଳୟରୁ ସ୍ନାତକ ଡିଗ୍ରୀ ଲାଭକରି ସାରିଲା ପରେ ରେଭେନ୍‌ସା ମହାବିଦ୍ୟାଳୟରୁ ଓଡ଼ିଆରେ ସ୍ନାତକୋତ୍ତର ଉପାଧୀ ଲାଭକରିଥିଲେ । ସ୍ୱାମୀ ବିବେକାନନ୍ଦ ସ୍ମାରକ ମହାବିଦ୍ୟାଳୟ ଓଡ଼ିଆ ବିଭାଗରେ ଅଧ୍ୟାପନା ଆରମ୍ଭ କରିଥିଲେ ଏବଂ ଉତ୍କଳ ବିଶ୍ୱବିଦ୍ୟାଳୟରୁ ପିଏଚ୍.ଡି. ଲାଭ କରିଥିଲେ । ଓଡ଼ିଆ ଭାଷାର ଆଦି କବି ସାରଳା ଦାସଙ୍କଠାରୁ ଆରମ୍ଭ କରି ଆଜି ପର୍ଯ୍ୟନ୍ତ ଯେତେ ସିଦ୍ଧ ସାଧକଗଣ ଓଡ଼ିଆଭାଷାର ସମୃଦ୍ଧି ସାଧନରେ ଚେଷ୍ଟିତ, ସେମାନଙ୍କ ମଧ୍ୟରୁ ଅନେକ ଜଗତସିଂହପୁର ମାଟିରେ ଜନ୍ମଗ୍ରହଣ କରିଛନ୍ତି । ସେମାନଙ୍କ ମଧ୍ୟରୁ ଯଶୋବନ୍ତ, ବାରଙ୍ଗ, ବାଉଳି ପ୍ରଭୃତି ପ୍ରାଚୀନ ସାହିତ୍ୟର ସମୃଦ୍ଧି ସାଧନ କରିଥିବା ବେଳେ ମଧ୍ୟଯୁଗୀୟ ସାହିତ୍ୟକୁ ଭ୍ରମବର ରାୟ ପ୍ରଭୃତି କେତେଜଣ ଉନ୍ନତିର ଚରମ ସୋପାନରେ ଅଧିଷ୍ଠିତ କରାଇଥିଲେ । ଆଧୁନିକ ସାହିତ୍ୟକୁ ଋଦ୍ଧିମନ୍ତ କରିଥିବା ସାହିତ୍ୟିକମାନଙ୍କ ମଧ୍ୟରେ ବିଭୂତି ପଟ୍ଟନାୟକ, ପ୍ରତିଭାରାୟ, ନିତ୍ୟାନନ୍ଦ ଶତପଥୀ, ହରପ୍ରସାଦ ଦାସ, ଉଦୟନାଥ ଷଡ଼ଙ୍ଗୀ ପ୍ରଭୃତି ଆହୁରି ଅନେକଙ୍କ ନାମ ଉଲ୍ଲେଖଯୋଗ୍ୟ । ହେଲେ ଡକ୍ଟର ଭୋଳାନାଥ ରାଉତ ସାହିତ୍ୟ କ୍ଷେତ୍ରରେ ଜଣେ ଅନ୍ୟତମ ବହୁଦିଗଦର୍ଶୀ ନାୟକ । ତାଙ୍କର ସାଧନା ସାହିତ୍ୟର ବିଭିନ୍ନ ଦିଗକୁ ସ୍ପର୍ଶ କରିଛି । କବିତା, ପ୍ରବନ୍ଧ, ଉପନ୍ୟାସ, ଜୀବନୀ, ଗଳ୍ପ, ନାଟକ ଓ ଓଡ଼ିଆ ସାହିତ୍ୟର ଇତିହାସ ସମ୍ବନ୍ଧୀୟ ସମାଲୋଚନାମୂଳକ ବିଭିନ୍ନ ପୁସ୍ତକ ରଚନା ଓ ସଂପାଦନା କରି ସେ ବର୍ତ୍ତମାନ ଜଗତସିଂହପୁର ସାହିତ୍ୟ ସମାଜର ପିତାମହ ଭୀଷ୍ମ ସାଜିପାରିଛନ୍ତି । ତାଙ୍କଦ୍ୱାରା ସଂପାଦିତ ଓ ସଂକଳିତ "ଜଗତସିଂହପୁର ଅତୀତ ଓ ବର୍ତ୍ତମାନ" ପୁସ୍ତକ ତାଙ୍କୁ ଜନମାନସରେ ଚିର ଅମର କରି ରଖି ପାରିବ ଏହା କହିବା ବାହୁଲ୍ୟ ମାତ୍ର । ଏହି ପୁସ୍ତକ ଜଗତସିଂହପୁର ଐତିହ୍ୟ ଓ ସଂସ୍କୃତିର ପ୍ରତିଫଳନ । ଜଣେ ଦର୍ପଣରେ ସ୍ୱୟଂ ପ୍ରତିବିମ୍ବ ଦେଖି ନିଜକୁ ଚିହ୍ନିଲା ଭଳି ଗୋଟାଏ ଜାତି ଅତୀତର ଇତିହାସକୁ ପଢିବା ଅର୍ଥାତ୍ ଆଲୋଚନା କରି ନିଜର ତ୍ରୁଟିକୁ ସୁଧାରି ନେଇଥାଏ । ଯାହା ଆଜି ଆମ ହାତରେ, ତାହା ହେଉଛି ଡଃ ଭୋଳାନାଥ ରାଉତଙ୍କର ଦାନ । ସ୍ୱାଧୀନତା ସଂଗ୍ରାମରେ ଜଗତସିଂହପୁର ଭୂମିକା ଥିଲା ଅତି ପ୍ରଶଂସନୀୟ । ଯେଉଁମାନେ ନିଜର ସୁଖସ୍ୱାଚ୍ଛନ୍ଦ୍ୟକୁ ବଳିଦେଇ ସ୍ୱାଧୀନତାର ସ୍ୱାଦ ଚାଖିବା ଓ ଚଖେଇବା ପାଇଁ ସଦାତତ୍‌ପର ଥିଲେ, ସେମାନଙ୍କର ତ୍ୟାଗ ତିତିକ୍ଷାକୁ ଭାଷାରେ ସଜାଇ ଭୋଳାନାଥ ଉତ୍ତରପିଢିଙ୍କ ପାଇଁ ସାଇତି ରଖିଛନ୍ତି ଏ ପୁସ୍ତକ ସବୁରେ । ନାରୀନେତ୍ରୀ ସରଳାଦେବୀ ଗ୍ରନ୍ଥାବଳୀ ଓ ଯାହା ଆଜି ପ୍ରକାଶ ଅପେକ୍ଷାରେ ଓ ଜାତୀୟ କବି ବୀରକିଶୋର ସ୍ମରଣିକା, ପ୍ରିୟନାଥଦେ ସ୍ମରଣିକା,

ମାଳତୀ ଚୌଧୁରୀ ସ୍ମରଣିକା, ବିଶ୍ୱମ୍ଭର ପରିଡ଼ା ସ୍ମରଣିକା, ପ୍ରଭୃତି ସଂପାଦନା କରି ସେମାନଙ୍କର ସ୍ୱାଧୀନତା ସଂଗ୍ରାମରେ ଭୂମିକାକୁ ଲୋକ ଲୋଚନକୁ ଆଣି ପାରିଛନ୍ତି । ତା ଛଡ଼ା ପୁସ୍ତକ ମେଳାର ସ୍ମରଣିକା ଓ ଜିଲ୍ଲା ଉତ୍ସବର ମୁଖପତ୍ର ଆଦିପତ୍ର ସଂପାଦନା କରି ଜିଲ୍ଲାର ବିଭିନ୍ନ ପ୍ରାନ୍ତରେ ରହି ନାନା କ୍ଷେତ୍ରରେ ପ୍ରତିଭା ଅର୍ଜନ କରି ଝଡ଼ିପଡୁଥିବା ବଣ ମଲ୍ଲୀମାନଙ୍କର ପରିଚୟ ସର୍ବ ସାଧାରଣରେ ପ୍ରକାଶ କରି ଆସୁଛନ୍ତି ।

ନିଜର ପାଣ୍ଡିତ୍ୟ ଓ ବାଗ୍ମିତା ଯୋଗୁଁ ବିଭିନ୍ନ ଅନୁଷ୍ଠାନ ଦ୍ୱାରା ଏପରିକି ସାହିତ୍ୟ ଏକାଡେମୀ ଦ୍ୱାରା ସମ୍ବର୍ଦ୍ଧିତ ହୋଇପାରିଛନ୍ତି ସେ । ବିଭିନ୍ନ ନାମକରି ଅନୁଷ୍ଠାନ ତାଙ୍କୁ ନାନା ସମ୍ମାନରେ ସମ୍ମାନିତ କରି ଅଛନ୍ତି । ବିଭିନ୍ନ ସଂଗଠନର ସଂପାଦକ, ସଭାପତି ବିଶେଷ କରି ଉତ୍କଳ ବିଶ୍ୱବିଦ୍ୟାଳୟର ସିନେଟ ସଭ୍ୟ ପଦବୀ ମଣ୍ଡନ କରି ପାରିଛନ୍ତି ମଧ୍ୟ ସେ । ଜଣେ ଲବ୍ଧ ପ୍ରତିଷ୍ଠ ସାହିତ୍ୟିକ ସମାଲୋଚକ ଓ ଗବେଷକଭାବେ ସାରା ଓଡ଼ିଶାବାସୀ ତାଙ୍କୁ ଜାଣନ୍ତି । ଜୀବନର ସାୟାହ୍ନରେ ଉପନୀତ ହୋଇଥିଲେ ମଧ୍ୟ ତାଙ୍କର ସାହିତ୍ୟ ପ୍ରତି ଅନୁରାଗ ଦେଖିଲେ ଯେ କୌଣସି ସାହିତ୍ୟପ୍ରେମୀ ଆଶ୍ଚର୍ଯ୍ୟାନ୍ୱିତ ହେବେ ଏଥିରେ ସନ୍ଦେହ ନାହିଁ । ସେ ଜଣେ ମାତୃଭକ୍ତ । ଦୁର୍ଗାଦେବୀଙ୍କ ଉପାସନାରେ ସେ ସମୟ ବିତାଇ ଥାନ୍ତି । ପ୍ରାୟ ଚାଳିଶି ବର୍ଷରୁ ଉର୍ଦ୍ଧ୍ୱହେବ ତାଙ୍କଘରେ ଶାରଦୀୟ ଦୁର୍ଗାପୂଜା ଓ ବାସନ୍ତୀକ ଦୁର୍ଗାପୂଜା ଅନୁଷ୍ଠିତ ହୋଇ ଆସୁଅଛି । ସାରା ପରିବାରରେ ଏକ ଆଧ୍ୟାତ୍ମିକ ଉଦ୍‌ବେଳନ ଯେକୌଣସି ବ୍ୟକ୍ତିଙ୍କୁ ନିଷ୍ଚୟ ଆକୃଷ୍ଟ କରିବ । ତାଙ୍କର ଧୀର, ସ୍ଥିର କଥାବାର୍ତ୍ତା, ନମ୍ରବଚନ, ଋଷିପ୍ରତିମ ଚେହେରା ଗୁଣଜ୍ୟଙ୍କର ବାଣୀକୁ ସ୍ମରଣ କରାଇ ଦିଏ- "ନମ୍ରନ୍ତି ଫଳିନୋ ବୃକ୍ଷାଃ ନମ୍ରନ୍ତି ଗୁଣିନୋ ଜନାଃ," ।

ଆସନ୍ତୁ ମିଳିମିଶି ଆମେ ସବୁ ଏହି ସାରସ୍ୱତ ସାଧକଙ୍କର ଦୀର୍ଘ ନିରାମୟ ଜୀବନ କାମନା କରି ଜଗତ ନାଥ ଜଗନ୍ନାଥଙ୍କ ପାଖରେ ପ୍ରାର୍ଥନା କରିବା ।

"ନୀଳାଦ୍ରିବିହାରୀ ପାଦତଳେ ଅଳି
ନିରୋଗ ରୁହନ୍ତୁ ଭୋଳାନାଥ
ସାହିତ୍ୟ ସାଧନେ କଟୁ ତାଙ୍କ ଦିନ
କରିଦିଅ ତାଙ୍କୁ ଦୀର୍ଘାୟୁଷ ।।

।। ଜୟ ଜଗନ୍ନାଥ ।। ■

ଶିକ୍ଷକ, ଶ୍ରୀକୃଷ୍ଣ ଏକାଡେମୀ, ଜଗତସିଂହପୁର
ମୋ- ୯୮୬୧୨୬୦୯୧୧

# ଭୋଳାନାଥ ସାର୍ଙ୍କୁ ମୁଁ ଯେପରି ଜାଣେ.....

ଆଡଭୋକେଟ୍ ବାସୁଦେବ

ମାତୃଭୂମି, ମାତୃଭାଷା, ଆମର ସଂସ୍କୃତି, ଐତିହ୍ୟ, ପରଂପରା ପ୍ରତି ଅନୁରାଗ ରଖି ତା'ର ଗୌରବ ରଖିବାକୁ ପ୍ରତ୍ୟେକ ଓଡ଼ିଆ ବ୍ୟକ୍ତିଙ୍କର ଆନ୍ତରିକ ପ୍ରଚେଷ୍ଟା ଆମ ଜାତି ପକ୍ଷରେ ହେବା ନିତାନ୍ତ ଆବଶ୍ୟକ ।

ଇତିହାସରୁ ଜଣାପଡ଼େ ଓଡ଼ିଶା ଓ ଓଡ଼ିଆ ଭାଷା ବହୁଘାତ ପ୍ରତିଘାତ ସମ୍ମୁଖୀନ ହୋଇଛି । ବହୁ ସଂଗ୍ରାମ ଓ ଆନ୍ଦୋଳନ ଫଳରେ ଓଡ଼ିଶା ୧୯୩୬ ମସିହା ଏପ୍ରିଲ୍ ପହିଲାରେ ଏକ ସ୍ୱତନ୍ତ୍ର ପ୍ରଦେଶ ଭାବରେ ଘୋଷଣା କରାଗଲା । ଏହି ଆନ୍ଦୋଳନର ମୁଖ୍ୟ ଭାବରେ ଯେଉଁ ମହାମନୀଷୀ ମାନେ ତାଙ୍କର ତ୍ୟାଗ ଓ ଶ୍ରମଦାନ କରିଛନ୍ତି ସେମାନେ ଓଡ଼ିଆ ଜାତି ପାଇଁ ଗର୍ବ ଗୌରବ ଓ ସଦାସର୍ବଦା ନମସ୍ୟ ହୋଇ ରହିଥିବେ ।

ତାଙ୍କର ଅଧ୍ୟାପନା ଜୀବନର ଆରମ୍ଭ ହୋଇଥିଲା ୧୯୬୩ ମସିହାରେ ଜଗତସିଂହପୁର ସ୍ୱାମୀ ବିବେକାନନ୍ଦ ସ୍ମାରକ ମହାବିଦ୍ୟାଳୟରେ । ଏହି ମହାବିଦ୍ୟାଳୟର ପ୍ରତିଷ୍ଠାର ଆଦ୍ୟ ଭାଗରେ ମୁଁ ଜଡ଼ିତ । ସେତେବେଳେ ଆମେ କୁନିକୁନି ପିଲା ହୋଇଥାଉ । କଲେଜ ତିଆରି ପାଇଁ ସ୍କୁଲପାଠ ସରିବା ପରେ ଇଟା ଦୁଇଖଣ୍ଡ ହାତରେ ଧରି କଲେଜ ସ୍ଥଳରେ ପହଞ୍ଚାଇବା ଥାଏ ଆମ ସମସ୍ତଙ୍କର ଦାୟିତ୍ୱ । ଜଗତସିଂହପୁରରେ ଯଦି ମହାବିଦ୍ୟାଳୟ ତିଆରି ହୋଇ ନଥାନ୍ତା ମୁଁ ଆଜି "ବାସୁଦେବ" ଆଡ୍‌ଭୋକେଟ୍ ହେବାର ସ୍ୱପ୍ନ ଅଧୁରା ହୋଇଯାଇଥାଆନ୍ତା । କାରଣ ବାହାର କଲେଜରେ ପାଠ ପଢିବା ପାଇଁ ପରିବାର ସମ୍ବଳ ଯୋଗାଇ ଦେବା କଷ୍ଟକର ହୋଇଥାଆନ୍ତା । ୧୯୬୯-୭୦ରୁ ୭୩-୭୪ ମସିହା ପର୍ଯ୍ୟନ୍ତ ସ୍ୱାମୀ ବିବେକାନନ୍ଦ ସ୍ମାରକ ମହାବିଦ୍ୟାଳୟରେ ଡଃ ଭୋଳାନାଥ ସାର୍ଙ୍କ ସହ ମୋର ସଂପର୍କ ସୃଷ୍ଟି ହୁଏ । ମୋର ମାତୃଭାଷା ହିନ୍ଦି ଥିବା କାରଣରୁ ସାର୍ ମୋତେ ପାଠ ପଢାଇ ନାହାଁନ୍ତି । କିନ୍ତୁ ସେ ଆମ ସାର୍ । କଲେଜରେ ପାଠ ପଢିବା ବେଳେ ସେ ତାଙ୍କର ଅଭିଭାବକାତ୍ୱ ଆମ ଉପରେ ଜାହିର କରିଥିଲେ ଯାହା ତାଙ୍କର କର୍ତ୍ତବ୍ୟ ଥିଲା; କିନ୍ତୁ ଆମେ ଆମର କର୍ତ୍ତବ୍ୟ କରି ଚାଲିଥିଲୁ । ଛାତ୍ର ମାନଙ୍କର ସମସ୍ୟା ହେଉ, ମହାବିଦ୍ୟାଳୟର ସମସ୍ୟା ହେଉ ଆମେ ଆମର ସ୍ୱର ଉତ୍ତୋଳନ

ଯାଙ୍କୁ କର୍ତ୍ତବ୍ୟ କରିଚାଲିଥିଲୁ । ମହାବିଦ୍ୟାଳୟର ଶିକ୍ଷା ସମାପ୍ତ ପରେ ଶିକ୍ଷକ ସଂଘ ଆନ୍ଦୋଳନରେ ମୁଁ ହୋଇଗଲି ସାର୍‌ଙ୍କର ଜଣେ ସଂଗ୍ରାମୀ ସାଥୀ ।

ଭୋଲାନାଥ ସାର କେବଳ ଜଣେ ସାହିତ୍ୟିକ, ଗବେଷକ, ଲେଖକ ନୁହଁନ୍ତି ସେ ମଧ୍ୟ ଶିକ୍ଷକ ସମାଜର ସମୂହ କାମ ପାଇଁ ଆନ୍ଦୋଳନର ଜଣେ ବିଦ୍ଧାଣି । ଶିକ୍ଷକ ଆନ୍ଦୋଳନର ବୈଠକ ତାଙ୍କ ଘରେ ଅନୁଷ୍ଠିତ ହୋଇଛି । ନିର୍ଦ୍ଦେଶ ଅନୁସାରେ କାର୍ଯ୍ୟ ମଧ୍ୟ ହୋଇଛି । ସାର୍‌ଙ୍କ ବାପାଙ୍କ ଠାରୁ ଆରମ୍ଭ କରି ପରିବାର ସଦସ୍ୟଙ୍କ ସହିତ ମୋର ଘନିଷ୍ଠ ସଂପର୍କ ରହିଛି । କଲେଜ ସମୟରେ ବିଭିନ୍ନ କ୍ଷେତ୍ରରେ ସାର୍ ମର୍ମାହତ ହୋଇଛନ୍ତି । ତାଙ୍କ ପ୍ରତି ଅନ୍ୟାୟ ହୋଇଛି କ୍ଷମତା ଧାରୀଙ୍କ ଦ୍ୱାରା ତଥାପି ସେ ସଂଘର୍ଷ କରି ବଞ୍ଚିଛନ୍ତି ।

ସାର୍‌ଙ୍କ ସଂପର୍କରେ ଲେଖିବା ପାଇଁ ମୋର ଯୋଗ୍ୟତା ନାହିଁ, ମୋର ଭାଷା ନାହିଁ । ତେଣୁ ସେ ସଂପର୍କରେ ମୋର ବେଶି ବକ୍ତବ୍ୟ ରଖିବା ଧୃଷ୍ଟତା ହେବ । ମୁଁ ମୋର ସାହିତ୍ୟ ବୁଝିଛି ସମାଜର ଅବହେଳିତ ମଣିଷ ଉପରେ ହେଉଥିବା ଅନ୍ୟାୟ ଅତ୍ୟାଚାର ବିରୋଧରେ ଲଢିବା । ଏ ମାଟିର ମଣିଷର ପେଟ ଚାଖଣ୍ଡକ ପାଇଁ ଖାଦ୍ୟ, ମୁଣ୍ଡ ଗୁଞ୍ଜିବା ପାଇଁ ବାସଗୃହ ଓ ନିତମ୍ବ ଚାଖଣ୍ଡକ ପାଇଁ କନା ସଂଗ୍ରହ ପାଇଁ ନିଜର କର୍ତ୍ତବ୍ୟ ସଂପାଦନ କରିବା । ଏହାହିଁ ମୋ ପାଇଁ ଧର୍ମ ବୋଲି ମୁଁ ବିଚାର କରିଛି । ଏହି କାର୍ଯ୍ୟରେ ସାର୍‌ଙ୍କର ମୋ ପ୍ରତି ସମର୍ଥନ ଥିଲା, କିନ୍ତୁ ପରିସ୍ଥିତି ଓ ସରକାରୀ ଚାକିରି କାରଣରୁ ସେ ତାହା ସଂପାଦନ କରିପାରି ନାହାଁନ୍ତି ।

ସାର୍‌ଙ୍କ ସଂପର୍କରେ ଲେଖିବା ପାଇଁ ଅନେକ ରହିଛି । ସାରଙ୍କ ସଂପର୍କରେ ଅଭିନନ୍ଦନିକା ପ୍ରକାଶ ପାଇବ । ଏହା ତାଙ୍କର ପରିବାରର କର୍ତ୍ତବ୍ୟ ନ ହୋଇ ଏହା ଆମ ସମସ୍ତଙ୍କର କର୍ତ୍ତବ୍ୟହେଉ । ଆଜିର ମଣିଷ ସମସ୍ତେ, ନିଜ ପରିବାର ପାଇଁ ବ୍ୟସ୍ତ, ସମାଜ ପ୍ରତି ଆମର କିଛି କର୍ତ୍ତବ୍ୟ ଅଛି ଏହା ଆମେ ସମସ୍ତେ ଭୁଲି ଯାଉଛନ୍ତି । ତାହାଲେ ଏ ସମାଜ ରହିବ କିପରି ? ଯଦି ଆମେ ସମାଜରେ ଭଦ୍ରମୁଖା ପିନ୍ଧା ମଣିଷମାନେ, ବିଭିନ୍ନ ପଦ ପଦବି ଥିବା ମଣିଷମାନେ ଛାତ୍ରାବସ୍ଥାରୁ ଜୀବନର ମଧ୍ୟାହ୍ନ ମଧ୍ୟରେ ଏହା ଅନୁଭବ କରିବା ନାହିଁ ତା ହେଲେ କ'ଣ ବାର୍ଦ୍ଧକ୍ୟରେ କେବଳ ଅନ୍ୟଠାରୁ ପାଇବା ପାଇଁ ଚାହିଁ ରହିବା । ବଦଳୁ ଏ ଅବସ୍ଥା ଏ ଚିନ୍ତାଧାରା ବଦଳୁ । ବଦଳୁ ଏ ମାନସିକତା । ଆମେ ଏକ ନୂଆ ସମାଜର ମଣିଷ ଭାବରେ ବଞ୍ଚିରହୁ । ■

ସିପି, ଜଗତସିଂହପୁର

# ମୁଁ ତାଙ୍କୁ ଯେତିକି ଜାଣିଛି

ରୂପେଶ ରଞ୍ଜନ ରାଉତ

ସମାଜ ଓ ଜାତି ଯୁଗେ ଯୁଗେ ଯୋଗଜନ୍ମାଙ୍କର ପଦପାଦରେ କେବଳ ପୂତ ଓ ଧନ୍ୟ ହୁଏ ନାହିଁ ବରଂ ହୁଏ ମାର୍ଜିତ । ସଂଗଠିତ ଓ ଋଦ୍ଧିମନ୍ତ । ସେମାନଙ୍କର ତ୍ୟାଗ, ତିତିକ୍ଷା ଓ ସେବା ଜାତି ତଥା ଦେଶ ପାଇଁ ଅବିସ୍ମରଣୀୟ ମହାନ୍ ଦାନ । ସେମାନଙ୍କ ମୁଖର ବାଣୀ ଜନସାଧାରଣଙ୍କର ପ୍ରାଣରେ ଭରିଦିଏ ନୂତନ ଉନ୍ମାଦନା ଓ କର୍ମପ୍ରେରଣା । ପ୍ରତି ଦେଶରେ ସମୟର ଆହ୍ୱାନରେ ଏଭଳି ଯୋଗଜନ୍ମାଙ୍କର ଆବିର୍ଭାବ ଘଟେ । କବି, ସାହିତ୍ୟିକ, ଲେଖକ, ସମାଜସେବକ, ଶିକ୍ଷକ, ଚିକିତ୍ସକ, ନେତା ଓ ଶିଳ୍ପୀ ଆଦି ବିଭକ୍ତ ଭୂମିକାରେ ସେମାନଙ୍କ ଅବତୀର୍ଣ୍ଣ ହୁଅନ୍ତି । କାଳର କଷଟି ପଥରରେ ସେମାନଙ୍କ କର୍ମ ହୁଏ ପରୀକ୍ଷିତ ଓ ପୁରସ୍କୃତ । ଉତ୍କଳମଣି ଗୋପବନ୍ଧୁ, ଭକ୍ତକବି ମଧୁସୂଦନ, ଶ୍ରୀମା, ଶ୍ରୀ ଅରବିନ୍ଦ, ରାମକୃଷ୍ଣ, ସ୍ୱାମୀବିବେକାନନ୍ଦ, ଆଗ୍ରର୍ଯ୍ୟ ହରିହର ଏହିପରି ଜଣେ ଜଣେ ଜନବନ୍ଦ୍ୟ ମହାମାନବ । ସେହିପରି ଉତ୍କଳ ଭୂମିର ଜଣେ ସୁଯୋଗ୍ୟ ସନ୍ତାନ ହେଉଛନ୍ତି, ଡକ୍ଟର ଭୋଳାନାଥ ରାଉତ । ସେ ଏକ ଧାରାରେ ଜଣେ କବି ଲେଖକ, ସାହିତ୍ୟିକ, ପ୍ରାବନ୍ଧିକ, ନାଟ୍ୟକାର, ଛାତ୍ରବତ୍ସଳ ପ୍ରାଧ୍ୟାପକ ନିର୍ଭୀକ ଓ କରିତ୍କର୍ମା ।

ପିତା କଟକରେ ମୋହରିଅରି କରୁଥିବାରୁ ସେ କଟକରେ ବାପାଙ୍କ ପାଖରେ ରହି ଖ୍ରୀଷ୍ଟ କଲେଜରୁ ଆଇ.ଏ.ପାସ୍ କରି ରେଭେନ୍‌ସା କଲେଜ (ବର୍ତ୍ତମାନର ରେଭେନ୍‌ସା ବିଶ୍ୱବିଦ୍ୟାଳୟ) ରୁ ଏମ୍.ଏ. ପାଶ୍ କରିଥିଲେ । ବାପାଙ୍କ କଥାକୁ ସମ୍ମାନ ଜଣାଇ ସେ ମଧ୍ୟ ମଧୁସୂଦନ ସଂଧ୍ୟା ଆଇନ୍ ମହାବିଦ୍ୟାଳୟରୁ ଆଇନ ପାଠ ଅଧ୍ୟୟନ କରିଥିଲେ । ବାପା ଗ୍ହୁଁଥିଲେ ପୁଅ ଜଣେ ଓକିଲ ହେଉ । କିନ୍ତୁ ବିଧିର ନିଷ୍ପତ୍ତି ଅନୁଯାୟୀ ସେ ଜଣେ ଭଲ ଅଧ୍ୟାପକ ହେଲେ । ସେହି ସମୟରେ ଜଗତସିଂହପୁରରେ ନୂଆ କରି "ସ୍ୱାମୀ ବିବେକାନନ୍ଦ ସ୍ମାରକୀ ମହାବିଦ୍ୟାଳୟ" ଖୋଲିଥାଏ । ବୋଧହୁଏ ୧୯୬୨ ମସିହାର କଥା । ଓଡ଼ିଶାର ତତ୍କାଳୀନ ମୁଖ୍ୟମନ୍ତ୍ରୀ ସ୍ୱର୍ଗତ ବିରେନ୍ ମିତ୍ର କଲେଜର ପରିଚାଳନା କମିଟିର ସଭାପତି ଓ

ଜଗତସିଂହପୁର ସୁଜଙ୍କ ଗ୍ରାମର ଅବସର ପ୍ରାପ୍ତ ପୁଲିସ୍ ଅଫିସର ସ୍ୱର୍ଗତ ନନ୍ଦ ସଂପାଦକ ଥାନ୍ତି ।

ସ୍ୱର୍ଗତ ବିରେନ୍ ମିତ୍ର କଟକର ବିଧାୟକ ହୋଇଥିବାରୁ ପିତା ସ୍ୱର୍ଗତ ବୃନ୍ଦାବନ ରାଉତଙ୍କର ବିରେନ୍ ମିତ୍ରଙ୍କ ସହିତ ଘନିଷ୍ଠ ସଂପର୍କ ଥାଏ । ତାଙ୍କର ପରାମର୍ଶ କ୍ରମେ ଭୋଳାନାଥ ଓଡ଼ିଆ ଅଧ୍ୟାପକ ଭାବେ ଯୋଗଦାନ କରି ଓ କଲେଜରେ ଦୀର୍ଘ ସମୟ ଧରି ଉପାଧ୍ୟକ୍ଷ ଦାୟିତ୍ୱ ସଂପାଦନ କରି ସେ ଜଣେ ଛାତ୍ରବତ୍ସଳ ଅଧ୍ୟାପକ ଭାବରେ ସୁନାମ ଅର୍ଜନ କରିଥିଲେ ।

ସେତେବେଳେ ଜଗତସିଂହପୁର ମୁଦ୍ରଣ ପ୍ରେସ୍ ନଥିବାରୁ ଜନସାଧାରଣ କଟକ ଉପରେ ନିର୍ଭର କରୁଥିଲେ । ସେ ନିଜସ୍ୱ ଉଦ୍ୟମରେ ଜଗତସିଂହପୁର "ଅଳକା ପ୍ରେସ୍" ପ୍ରତିଷ୍ଠା କରି ଜନସାଧାରଣଙ୍କର ଅସୁବିଧା ଦୂର କରିବାକୁ ଚେଷ୍ଟା କରିଥିଲେ । ସେ କଳା, ସଂଗୀତ ଓ ନାଟକ ଅନୁରାଗୀ ଥିଲେ । ସେ ଖ୍ରୀଷ୍ଟ କଲେଜରେ ବି.ଏ ପଢୁଥିବା ସମୟରେ "ଅନ୍ନପୂର୍ଣ୍ଣା ଏ" ରଙ୍ଗମଞ୍ଚରେ କେତେକ ନାଟକରେ ମଧ୍ୟ ଅଭିନୟ କରିଥିଲେ । ତେଣୁ ଜଗତସିଂହପୁରରେ ସେ କେତେକ ବଦାନ୍ୟ ବ୍ୟକ୍ତିଙ୍କ ସହଯୋଗରେ "ଅଳକା କଳା ମଣ୍ଡପ" ପ୍ରତିଷ୍ଠା କରିଥିଲେ । ଯାହାକି ଆଜି ଗୋଟିଏ ଭଲ ସଂଗୀତ ଅନୁଷ୍ଠାନ ଭାବରେ ଉଭା ହୋଇ ପାରିଛି । ■

ନନ୍ଦିଗ୍ରାମ, ନାଉଗାଁ, ଜଗତସିଂହପୁର

# ଅସରନ୍ତି ପ୍ରେରଣାର ଉତ୍ସ ଭୋଳାନାଥ ରାଉତ

ଉପେନ୍ଦ୍ର ନାଥ ବିଶ୍ୱାଳ

ସ୍ୱାମୀ ବିବେକାନନ୍ଦ ମହାବିଦ୍ୟାଳୟର ପୂର୍ବତନ ଅଧ୍ୟକ୍ଷ, ସାହିତ୍ୟ ସାଧକ, ଅସରନ୍ତି ପ୍ରେରଣାର ଉତ୍ସ ପ୍ରଫେସର ଶ୍ରୀଯୁକ୍ତ ଭୋଳାନାଥ ରାଉତ ହେଉଛନ୍ତି ଜଗତସିଂହପୁର ଜିଲ୍ଲାର ଏକ ଅନନ୍ୟ ଅମ୍ଳାନ ପ୍ରତିଭା । ବାଣୀକ୍ଷେତ୍ର ଜଗତସିଂହପୁରରେ ବହୁ ମହାନ ଆତ୍ମା ଜନ୍ମନେଇ ଦେଶ ବିଦେଶରେ ସେମାନଙ୍କର ପ୍ରତିଭାକୁ ବିତରଣ କରି ଆମ ଜିଲ୍ଲା ଓ ରାଜ୍ୟର ନାମକୁ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ କରାଇ ପାରିଛନ୍ତି । ସାହିତ୍ୟ, ବିଜ୍ଞାନ, ଧର୍ମ, ରାଜନୀତି, ସ୍ୱାଧୀନତା ସଂଗ୍ରାମ ପ୍ରଭୃତି ବିବିଧକ୍ଷେତ୍ରରେ ଜଗତସିଂହପୁରର ଏହି ମହାନ ବ୍ୟକ୍ତିମାନେ ନାମ କମାଇବା, ସହିତ ପୃଥିବୀକୁ ଦିଗ୍‌ଦର୍ଶନ ଦେଇଛନ୍ତି ଓ ଦେଉଛନ୍ତି । ଆଜିର ପ୍ରେରଣା ଦାୟୀ ବ୍ୟକ୍ତିତ୍ୱମାନଙ୍କ ମଧ୍ୟରେ ପୂଜ୍ୟ ଭୋଳିବାବୁ ଜଣେ ମହାନ ସାଧକ; ଯେକି ଶିକ୍ଷା ଓ ସାହିତ୍ୟ କ୍ଷେତ୍ରରେ ଦେଶକୁ ମାର୍ଗ ଦର୍ଶନ କରିଛନ୍ତି । ଅଧ୍ୟାପକ ଓ ଅଧ୍ୟକ୍ଷ ଥିବା ସମୟରେ ଶିକ୍ଷା କ୍ଷେତ୍ରରେ ଉନ୍ନତି ପାଇଁ ବହୁତ ପ୍ରେରଣାଦାୟୀ ବହି ଲେଖି ଛାତ୍ରମାନଙ୍କ ଦ୍ୱାରା ଓ ଅଧ୍ୟାପକ ଅଧ୍ୟାପିକାମାନଙ୍କ ଦ୍ୱାରା ଉଚ୍ଚ ପ୍ରଶଂସିତ ହେଉଛନ୍ତି ।

ବଡ଼ ଆନନ୍ଦର କଥା ପୂଜ୍ୟ ଭୋଳିବାବୁ ଅବସର ନେବା ପରେ ଜଗତସିଂହପୁର ଜିଲ୍ଲା ଇତିହାସ ଲେଖିବାକୁ ମନ ବଳାଇ ଅକ୍ଳାନ୍ତ ପରିଶ୍ରମ ଗବେଷଣା କରିଛନ୍ତି । ଗ୍ରାମେ ଗ୍ରାମେ ବୁଲି ତଥ୍ୟ ସଂଗ୍ରହ କରି ସେ ଯେଉଁ ଅମୂଲ୍ୟ ରତ୍ନ ଜିଲ୍ଲା ଇତିହାସ ଲେଖି ଯାଇଛନ୍ତି ତାହା ଯୁଗ ଯୁଗ ଧରି ଆମକୁ ପ୍ରେରଣା ଦେଉଥିବ । ଏହି ବହିରେ ସାରସ୍ୱତ ସାଧକ ମାନଙ୍କର ଜୀବନୀ, ବୈଜ୍ଞାନିକ, ରାଜନୈତିକ, ଧାର୍ମିକ ସମାଜ ସୁଧାରକ, ସ୍ୱାଧୀନତା ସଂଗ୍ରାମର ଇତିହାସ ମଠ, ମନ୍ଦିରମାନଙ୍କର ପୂର୍ବ ପରଂପରାର ଇତିହାସ ପ୍ରଭୃତି ଏପରି ସୁନ୍ଦର ନିଖୁଣ ଭାବରେ ଅତ୍ୟନ୍ତ ଜୀବନ୍ତ ଭାବରେ ଲେଖାଯାଇଛି ଯାହା ଆମକୁ ପ୍ରେରଣା ଦେଉଛି, ଉତ୍ସାହିତ ମଧ୍ୟ କରୁଛି । ଏପରି କିଛି କଥା ନାହିଁ ଯାହା ସେ ଛାଡ଼ି ଯାଇଛନ୍ତି । ମୋଟାମୋଟି କହିବାକୁ ଗଲେ ପୂଜ୍ୟ ରାଉତବାବୁଙ୍କର ଜିଲ୍ଲା ଇତିହାସ ଲେଖନୀରେ ଅକ୍ଳାନ୍ତ ପରିଶ୍ରମ ଓ ତାଙ୍କୁ ସାହାଯ୍ୟ କରିଥିବା ଶତାଧିକ ବ୍ୟକ୍ତିମାନଙ୍କର ପ୍ରେରଣା ଉତ୍ସାହ ଓ ସହଯୋଗକୁ ଜିଲ୍ଲାବାସୀ ଯୁଗଯୁଗ ଧରି ମନେ ରଖିବେ ।

ପୂଜ୍ୟ ଭୋଳିବାବୁ ମୋର ପିତୃପ୍ରତିମ ମୋତେ ସବୁବେଳେ ପ୍ରେରଣା ଦେଇଆସିଛନ୍ତି । ମୁଁ ତାଙ୍କ ଘରକୁ ଗଲେ ବାବା ବୋଲି ସମ୍ବୋଧନ କରିଥାନ୍ତି । ମୁଁ ତାଙ୍କୁ ପ୍ରଣାମ କଲାପରେ ସେ ମୋତେ ପାଖରେ ବସାଇ ଜିଲ୍ଲା, ରାଜ୍ୟର ରାଜନୀତି ବିଷୟରେ ପଚ୍ଚାରି ବୁଝନ୍ତି, ଅକ୍ଲାନ୍ତ ପରିଶ୍ରମ କରି ଦେଶ ଧର୍ମ ସଂସ୍କୃତି ବଞ୍ଚାଇବା ପାଇଁ ପ୍ରେରଣା ଦିଅନ୍ତି । ■

ବି.ଜେ.ପି. ଜିଲ୍ଲା ସଭାପତି

ଜଗତସିଂହପୁର

# ସାହିତ୍ୟିକ ଭୋଳାନାଥ ରାଉତ

ରବି ମହାନ୍ତି

ମାନବିକତାର ସର୍ବନିକଟତମ ସଂଜ୍ଞାହିଁ ସାହିତ୍ୟ ଓ ମାନବସମାଜ ନିମନ୍ତେ ଅକୃତ୍ରିମ ସ୍ନେହରୁ ହିଁ ସାହିତ୍ୟର ସୃଷ୍ଟି । ଆଜିର ପ୍ରତିକ୍ରିୟାଶୀଳ ଓ ମାନବୀୟ ମୂଲ୍ୟବୋଧହୀନ ମଣିଷ ଅହରହ ସଂଗ୍ରାମଶୀଳ ସମାଜ ସାହିତ୍ୟ ପାଇଁ ନା ଅଛି ଶ୍ରଦ୍ଧା ନା ଅଛି ସମୟ । ଏଭଳି ଏକ ଘଡ଼ି ସନ୍ଧି ସମୟରେ ଶ୍ରୀଯୁକ୍ତ ଭୋଳିବାବୁ (ମୁଁ ତାଙ୍କୁ ଯେଉଁ ନାମରେ ଡାକେ) ନିଶ୍ଚୟ ଏକ ବିରଳ ବ୍ୟକ୍ତିତ୍ୱ ସାହିତ୍ୟାନୁରାଗୀ ଶିକ୍ଷାବିତ୍ ଓ ସଂଗଠକ ଭାବରେ ସେ ଯେ ଜଣେ ମଣିଷ ପରି ମଣିଷ ଏହା ତାଙ୍କୁ ନିକଟରୁ ଦେଖିଥିବା ଯିଏ କେହି ଅନୁଭବ କରିବେ। ତାଙ୍କର ଅଭିନନ୍ଦନିକା ପ୍ରକାଶ ଯେ ଏକ ଉତ୍ତମ ପ୍ରଚେଷ୍ଟା ଏଥିରେ ଦ୍ୱିମତହେବାର କିଛି ନାହିଁ । ଜୀବନକୁ ଯେଉଁ କୋଣରୁ ଦେଖିଲେ ବି ଏହା ସୁନ୍ଦର, ଏତିକି ଅନ୍ତତଃ ଭୋଳିବାବୁଙ୍କ ଜୀବନରୁ ଶିକ୍ଷଣୀୟ ।

ପ୍ରକାଶନଟି ବର୍ତ୍ତମାନ ଓ ଆଗାମୀ ପିଢି ପାଇଁ ଏକ ଅମୂଲ୍ୟ କୃତି ହୋଇ ପାରିବ ବୋଲି ମୋର ଆଶା । ■

କୁହାଳିଆକୁ ସମୟ ଅଣ୍ଟେ ନାହିଁ କାଶିବାକୁ, କିନ୍ତୁ କାମିକା ପାଇଁ ସମୟ ସବୁବେଳେ ପ୍ରଶସ୍ତ ଓ ସୁଲଭ । ଏ କି କଥା ! ଦିନରାତି ୨୪ଘଣ୍ଟା ତ ସମସ୍ତଙ୍କ ପାଇଁ ସମାନ । କଥା ରହିଛି ମନୋଭାବରେ, ଇଚ୍ଛା ଶକ୍ତିରେ, ନିଜର ପୌରୁଷରେ । "ପୌରୁଷାତ୍ ଜାୟତେ ସିଦ୍ଧିଃ ପୌରୁଷାତ୍ ଧୀମତାଂ କ୍ରମଃ" । ପୌରୁଷରୁ ମିଳେ ସିଦ୍ଧି, ବୁଦ୍ଧିମାନର ଜୀବନକ୍ରମର ମୂଳ ହେଉଛି ପୌରୁଷ । କହିବା ବାହୁଲ୍ୟ ହେବନାହିଁ, ଅଧ୍ୟାପକ ଡକ୍ଟର ଭୋଳାନାଥ ରାଉତ ଜଣେ ଏହିପରି ବ୍ୟକ୍ତିସତ୍ତା, ଯିଏ ନିରହଂକାର ଓ ସ୍ୱାର୍ଥହୀନ ଜଣେ କର୍ମୀ ।